

## ସୁସ୍ମିତା ବାଗ୍‌ଚୀ

ଜନ୍ମ : ସେପ୍ଟେମ୍ବର, ୧୯୬୦

ଶିକ୍ଷାଗତ ଯୋଗ୍ୟତା : ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଉପାଧିପ୍ରାପ୍ତ ।

ଅଭିଜ୍ଞତା : ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଧୀନରେ ଅଧ୍ୟାପିକା ଭାବେ କର୍ମଜୀବନ ଆରମ୍ଭ । ଅଧୁନା ମାସିକ ପତ୍ରିକା 'ସୁଚରିତା'ର ସହଯୋଗୀ ସଂପାଦିକା ।

ପ୍ରକାଶନ :

ଗଳ୍ପ ସଂକଳନ :

| | |
|---|---|
| ଆକାଶ ଯେଉଁଠି କଥା କହେ | (୧୯୯୦) |
| ଛାଇ ସେପାଖ ମଣିଷ | (୧୯୯୧) |
| ନୈବେଦ୍ୟ | (୧୯୯୬) |
| ଭିନ୍ନ କୂଳ, ଅନ୍ୟ ଢେଉ | (୧୯୯୭) |
| ବସୁଧାର ପ୍ରଶ୍ନ | (୧୯୯୯) |

ଭ୍ରମଣ କାହାଣୀ :

| | |
|---|---|
| ମୋ ଝର୍କାରୁ ପୃଥିବୀ | (୧୯୯୫) |

ଉପନ୍ୟାସ :

| | |
|---|---|
| ପ୍ରବାସର ପକ୍ଷୀ | (୧୯୯୮) |
| ସ୍ରୋତପର୍ଣ୍ଣା | (୨୦୦୦) |

ପୁରସ୍କାର : ୧୯୯୪ରେ ତାଙ୍କର ଗଳ୍ପ ସଂକଳନ 'ଆକାଶ ଯେଉଁଠି କଥା କହେ' ପାଇଁ ଓଡ଼ିଶା ରାଜ୍ୟ ସାହିତ୍ୟ ଏକାଡ଼େମି ପୁରସ୍କାର ପ୍ରାପ୍ତ ।

ସ୍ରୋତପର୍ଣ୍ଣା
ସୁସ୍ମିତା ବାଗ୍‌ଚୀ
ପ୍ରକାଶକ :
ସୁଚରିତା ପବ୍ଲିକେଶନ୍ସ
୪୩୧, ସହିଦ ନଗର
ଭୁବନେଶ୍ୱର-୭୫୧୦୦୭
ମୁଦ୍ରଣ :
ଅପ୍‌ଟିମା ପ୍ରିଣ୍ଟସ୍
ସୁତାହାଟ, କଟକ-୧
ପ୍ରଥମ ପ୍ରକାଶନ :
ଅକ୍ଟୋବର, ୨୦୦୦
ମୂଲ୍ୟ :
ଏକଶତ ଷାଠିଏ ଟଙ୍କା ମାତ୍ର

**SROTAPARNA**
**Susmita Bagchi**
Published by:
**Sucharita Publications**
431, Saheed Nagar
Bhubaneswar-7
Printers:
**Optima Prints**
Sutahat, CuttacK-1
First Edition:
October, 2000
Price:
**Rupees One hundred sixty only**

COVER DESIGN:
**Srinath**
Student, Std.IV
**Spastics Society of Karnataka**
5th Cross, Indira Nagar Ist Stage
Bangalore 560 038

The Spastics Society is a voluntary Organisation dedicated to providing services to children with cerebral palsy - a disorder of movement and posture resulting from a permanent, non-progressive defect of the immature brain.

ତେପନ ବର୍ଷ ପରେ ବି ଯିଏ ପାବ୍‌ନାର
ପାଣି, ପବନ, ମାଟି ଓ ଆକାଶକୁ ଝୁରି
ହୁଅନ୍ତି ସେଇ ମା' (ଶାଶୂ)ଙ୍କ ହାତରେ...

ସେତେବେଳେ ସାଇରନ୍ ବାଜୁଥିଲା କି ନାହିଁ, ଏବେ ଆଉ ମନେ ନାହିଁ। କିନ୍ତୁ ସନ୍ଧ୍ୟାର ଅବ୍ୟବହିତ ପୂର୍ବରୁ ଘରର କବାଟ, ଝରକା ବନ୍ଦ କରି ଦିଆ ଯାଉଥିଲା। ମୋଟା ପର୍ଦ୍ଦା ବା ଚଦର ତା' ସାମ୍ନାରେ ଟାଣି ଦିଆ ହେଉଥିଲା। ଘର ଭିତରର ମିଞ୍ଜି ମିଞ୍ଜି ଆଲୁଅ ଯେମିତି ବାହାରକୁ ନ ଯାଏ। ବଡ଼ମାନଙ୍କୁ ପଚାରିଲେ ଉତ୍ତର ମିଳୁଥିଲା - ବ୍ଲାକ୍ ଆଉଟ୍। ଯୁଦ୍ଧ ଚାଲିଛି। ଭାରତ-ପାକିସ୍ତାନ ଯୁଦ୍ଧ।

ଦିନେ ଯୁଦ୍ଧ ସରିଗଲା। ଭାରତ ଯେଉଁ କାରଣ ନେଇ ପାକିସ୍ତାନ ବିରୁଦ୍ଧରେ ଅସ୍ତ୍ର ତୋଳିଥିଲା, ସେଥିରେ ସେ ସଫଳ ହୋଇଗଲା। ସେତିକିବେଳେ ମୁଁ ପ୍ରଥମ ଶୁଣିଲି 'ବାଙ୍ଗଲାଦେଶ'ର ଜନ୍ମ କଥା। ଏହା ପୂର୍ବରୁ ଦେଶଟିକୁ କୁହାଯାଉଥିଲା ପୂର୍ବ ପାକିସ୍ତାନ। ତା' ପୂର୍ବରୁ ପୁଣି ଏଇଟି ଅବିଭାଜିତ ଭାରତବର୍ଷର ଅଂଶ ବିଶେଷ ଥିଲା।

ଏଗାର ବର୍ଷ ବୟସରେ ମୁଁ ବାଙ୍ଗଲାଦେଶ ବିଷୟରେ କେବଳ ଏତିକି ତଥ୍ୟ ଆହରଣ କରି ପାରିଥିଲି। ପରେ ହୁଏତ ସ୍କୁଲ୍, କଲେଜରେ ସେଇ ଦେଶର ଇତିହାସ, ଭୂଗୋଳ ସମ୍ପର୍କିତ ଜ୍ଞାନ ମୋର ବଢ଼ିଥିଲା। କିନ୍ତୁ ଦେଶଟିକୁ ଚିହ୍ନିବାର ସୁଯୋଗ ଆଉ ହୋଇ ନ ଥିଲା।

ବାହା ହୋଇ ମୁଁ ପାଦ ଦେଲି ବଙ୍ଗୀୟ ପରିବାରରେ। ସ୍ୱାମୀଙ୍କୁ ଛାଡ଼ିଦେଲେ ସେଠି ସମସ୍ତେ ନୂଆ। ସମସ୍ତଙ୍କୁ ନିଜର କରିବାକୁ ମୋର ଆଗ୍ରହ, ହେଲେ ମନରେ ଭୟ, କିଛି ଆଶଙ୍କା। ଏ ନୂଆ ପରିବେଶରେ ମୋତେ ସହଜ କରିବା ପାଇଁ ଯିଏ କ୍ରମାଗତ ଭାବରେ ଚେଷ୍ଟା କରି ଯାଉଥିଲେ, ସେ ମୋ ଶାଶୂ।

ଆମ ବାହାଘରର ପ୍ରାୟ ଏଗାର ବର୍ଷ ଆଗରୁ ଭୀଷଣ ଅସୁସ୍ଥ ହୋଇଯାଇ ଦୁଇ ଆଖି ସମ୍ପୂର୍ଣ୍ଣ ଭାବରେ ହରେଇଥିଲେ ସେ। କିନ୍ତୁ ସେଥି ନେଇ ତାଙ୍କର କୌଣସି ଅଭିଯୋଗ ନ ଥିଲା। ତିକ୍ତତା ନ ଥିଲା। ସ୍ୱଚ୍ଛ, ଉଜ୍ଜ୍ୱଳ ମନ ତାଙ୍କର।

ଅଧିକାଂଶ ଦିନ ଦି'ପହରେ ଏକାଠି ଖାଇବା ବେଳେ ଶାଶୂ ପାବ୍ନାରେ କଟାଇଥିବା ତାଙ୍କ ପିଲାଦିନ କଥା ଗପନ୍ତି। କାହାଣୀଟିଏ କହିବା ଭଳି ବର୍ଣ୍ଣନା କରନ୍ତି ଛୋଟ ବଡ଼ ଘଟଣା। କହନ୍ତି ତାଙ୍କ ବାପା ମା', ଭାଇ ଭଉଣୀଙ୍କ କଥା। ସାଙ୍ଗସରିଶା, ସାହିପଡ଼ିଶାଙ୍କ କଥା।

କଥାରୁ କଥାରୁ ମୁଁ ଜାଣିଲି ଯେ ଏଇ ପାବ୍‌ନା ଏବେ ବାଙ୍ଗଲାଦେଶରେ।

ବର୍ଷ ବର୍ଷ ଧରି ପାବ୍‌ନାର କାହାଣୀ ଶୁଣିବା ପରେ ଦିନେ ମୋର ମନେ ହେଲା, ମୁଁ ଯେମିତି ସେଇ ଛୋଟ ସହରଟିକୁ ଦେଖିଛି। ତା'ର ରାସ୍ତା ଘାଟ ଚିହ୍ନିଛି। ଜାଣିଛି ସେଠିକାର କଚିରିକୁ। ଥାନାକୁ। 'ଅନ୍ନଦାଗୋବିନ୍ଦ ଲାଇବ୍ରେରୀ'କୁ। ପାଦ ଦେଇ ଚହଲାଇଛି ଇଚ୍ଛାମତୀ ନଈର ପାଣିକୁ। ଆଉ ପୁଣି ଯେମିତି ଅତି ନିଜର ଭାବରେ ଜାଣିଛି ଗୌରୀଦିଦି, ଆବିଦ୍ ଚାଚାଙ୍କୁ। ବୀରେନ୍ କାକା, ଉମାଦି'ଙ୍କୁ।

ସେଇ ସମୟରେ ପ୍ରଥମ କରି 'ସ୍ରୋତପର୍ଣ୍ଣା' ଲେଖିବାର ଆଗ୍ରହ ମୋ ଭିତରୁ ଆସିଲା। କିନ୍ତୁ ଇଚ୍ଛାକୁ ବାସ୍ତବ ରୂପ ଦେଉ ଦେଉ କଟିଗଲା ବେଶ୍ କିଛି ବର୍ଷ।

'ସ୍ରୋତପର୍ଣ୍ଣା'ର ପୃଷ୍ଠଭୂମି ସ୍ୱାଧୀନତା ପୂର୍ବର ଭାରତ। ମୁଁ ଯେଉଁ ସବୁ ଐତିହାସିକ ଘଟଣାର ଅବତାରଣା ଏଥିରେ କରିଛି, ସେସବୁ କାଳ୍ପନିକ ନୁହଁ। ଯେମିତି କାଳ୍ପନିକ ନୁହଁ ଗାନ୍ଧିଜୀ, ସୁବାସ ବୋଷ୍, ସୂର୍ଯ୍ୟ ସେନ୍‌ଙ୍କ ଚରିତ୍ର। କିନ୍ତୁ ଉପନ୍ୟାସ ରଚନା କରିବା ବେଳେ ଅଧିକାଂଶ ଚରିତ୍ର ଓ ପାରିପାର୍ଶ୍ୱିକ ଘଟଣାକୁ ମୁଁ ନିଜ କଳ୍ପନାରୁ ରଙ୍ଗ ଦେଇଛି।

କାହାଣୀଟିର ପୃଷ୍ଠଭୂମି ଯେହେତୁ ପୂର୍ବବଙ୍ଗ, ସେଥିପାଇଁ ମୁଁ କେତେଗୁଡ଼ିଏ ବଙ୍ଗଳା ଶବ୍ଦ ବ୍ୟବହାର କରିଛି। ଯେମିତିକି ଭାଇନା ବଦଳରେ ଦାଦା, ନାନୀ ବଦଳରେ ଦିଦି, ଭାଉଜ ବଦଳରେ ବୌଦି, ଆଈ ବଦଳରେ ଦିଦିମା', ଭିଣେଇ ବଦଳରେ ଜାମାଇବାବୁ। ପ୍ରୟୋଜନରେ କେତୋଟି ଉର୍ଦ୍ଦୁ ଶବ୍ଦ ମଧ୍ୟ ଏଥିରେ ସ୍ଥାନ ଦେଇଛି।

ଉପନ୍ୟାସଟି 'ସୁଚରିତା'ରେ ଧାରାବାହିକ ରୂପେ ପ୍ରକାଶ ପାଇବା ବେଳେ ମୁଁ ବହୁ ସହୃଦୟ ପାଠକପାଠିକାଙ୍କଠାରୁ ସ୍ନେହଭରା ଚିଠି ପାଇଛି। ଆଜି ଉପନ୍ୟାସ ପ୍ରକାଶ ପାଇବା ଅବସରରେ ମୁଁ ସେମାନଙ୍କୁ ଅନ୍ତରର ଧନ୍ୟବାଦ ଜଣାଉଛି।

ସୁସ୍ମିତା ବାଗ୍‌ଚୀ

୨୪୮, ସେକ୍ଟର୍ ୪
୧୯ ମେନ୍, ୧୫ କ୍ରସ୍
ଏଚ୍. ଏସ୍. ଆର୍. ଲେ ଆଉଟ୍
ବାଙ୍ଗାଲୋର ୫୬୦୦୩୪

ଶେଷ ମାର୍ଗଶୀରର ଖରାବେଳ। ଇଂରାଜୀ କ୍ୟାଲେଣ୍ଡର ଅନୁସାରେ ୧୯୩୬ ସାଲର ଡିସେମ୍ବର ମାସ। ପୂର୍ବବଙ୍ଗର ପାବ୍‌ନା ସହର ଉପରେ ନରମ ଖରାର ପତଳା ଚଦରଟିଏ ବିଛେଇ ହୋଇ ରହିଥିଲା। ସରୁ ରାସ୍ତାର ଦୁଇ କଡ଼େ କେଉଁ ଆବହମାନ କାଳରୁ ରହି ଆସିଥିବା ବଡ଼ ବଡ଼ ଗଛମାନ ପବନରେ ଦୋହଲି ଦୋହଲି ଶୀତ ଖରାକୁ ଉପଭୋଗ କରୁଥିଲେ ଯେମିତି। ପାବ୍‌ନାର ମାଟି ଉପରେ ସେମାନଙ୍କର ଛାଇ ହସି ଖେଳି ବୁଲୁଥିଲା।

ଅନୁପମା କିନ୍ତୁ କିଛି ଦେଖି ପାରୁ ନ ଥିଲା। କିଛି ବି ନୁହଁ।

ଡାହାଣ ହାତ ପାପୁଲି ଓଠ ତଳେ ଦେଇ କହୁଣୀକୁ ପେଟ ଉପରେ ଚାପି ରଖି ସେ କାହିଁ କେତେବେଳଠୁଁ ଦାଣ୍ଡ ବାରଣ୍ଡାରେ ବସି ଯାଇଥିଲା ଯେ ଏପର୍ଯ୍ୟନ୍ତ ବସି ହିଁ ରହିଛି। ଆଣ୍ଠୁଯାଏଁ ଲମ୍ବା କଳା ଆଉ ନାଲି ଛିଟର ଫ୍ରକ୍‌ଟାକୁ ଟାଣି ପାଦ ଘୋଡ଼େଇ ଦେଇଛି ସେ। ନହେଲେ ମାଛିଟାଏ ଯେ କି ହଇରାଣ କରୁଥିଲା! କାଲି ଖେଳୁ ଖେଳୁ ଗୋଡ଼ି ବାଜି ପାଦ ଖଣ୍ଡିଆ ହେଇଯାଇଥିଲା। ମା'ଙ୍କୁ କହିଥିଲେ ଔଷଧ ଲଗା ତ ପରେ ହେଇଥାଆନ୍ତା, ଆଗ ପିଠିରେ ନିର୍ଘାତ ମାଡ଼ ପଡ଼ିଥାଆନ୍ତା। ସେଇ ଖଣ୍ଡିଆଟା ଟିକିଏ ପୂଜେଇ ଯାଇଛି ଆଜି। ଆଉ ସେଇଥିପାଇଁ ମାଛିଟା ଲାଗିଛି ତା' ପଛରେ। ଫ୍ରକ୍‌କୁ ଟାଣି ପାଦ ତଳେ ଚାପି ଧରିଲା ସେ। ଆଉ ମାଛିର ସାଧ ଅଛି? ରାଗରେ ଯେମିତି ମାଛିର ଗଣଗଣିଆ ଆଉ ଟିକିଏ ବଢ଼ିଗଲା। ଉଡ଼ି ଆସି ତା' କପାଳରେ ଠିକ୍ ଦୁଇ ଆଖିର ମଝିଆମଝି ବସିଗଲା ସେ।

ଧେତ୍‌ତେରି! ବାଁ ହାତ ଦେଇ ମାଛିଟାକୁ ଘଉଡ଼ାଇ ଦେଲା ସେ। ଦିଦିମା'ର ପୁରୁଣା କଳା ପାନ ବଟୁଆଟା ହାତରେ ଥିଲା। ତା' ଭିତରେ ଥିବା କାଚ

ଗୋଲିଗୁଡ଼ିକ ଆର୍ତ୍ତନାଦ କରି ଉଠିଲେ। ରାଗରେ ବଟୁଆଟିକୁ ପାହାଚ ଉପରେ କଚି ଦେଇ ଅନୁପମା ବିଡ଼ବିଡ଼େଇ କହିଲା- "ବୋକା ! ବୋକା !"

ନଅ ବର୍ଷର ଛୋଟ ମନଟା ତା'ର ରହି ରହି ବିଷେଇ ଉଠୁଥିଲା ରବି, ଟୁଟୁ ଓ ବାବୁଲ ଉପରେ। ତିନି ଜଣଯାକ କହିଥିଲେ ଆଜି ଟିକିଏ ବେଳାବେଳି ଆସିବେ, ଚାରିଟା ବାଜିବାର ଅନେକ ଆଗରୁ। ଚାରିଟା ବେଳେ ତ ସମସ୍ତେ ଖେଳନ୍ତି; ସେଥିରେ ପୁଣି କି ମଜା ? ଦୁଇ ପହର ସମୟରେ ଯେତେବେଳେ ରାସ୍ତା ଘାଟ ଟିକିଏ ନିସ୍ତବ୍ଧ ହୋଇଯାଏ, ଘରେ ମା', କାକୀମା', ମାମୀମା'ମାନେ ସପ ପକେଇ ଟିକିଏ ଗଡ଼ି ପଡ଼ନ୍ତି, ସେତେବେଳେ ସିନା ଖେଳିବାର ଅସଲ ମଜା। ରବି, ଟୁଟୁ ଓ ବାବୁଲ କ'ଣ ଏକଥା ବୁଝିପାରନ୍ତି ନାହିଁ? ଟୁଟୁ, ବାବୁଲ ଦୁଇ ଭାଇ। ଶ୍ୟାମରଞ୍ଜନ ଜେଠୁଙ୍କର ଦଶ ବର୍ଷର ଜାଆଁଳା ପୁଅ। ସେମାନଙ୍କୁ ନିଶ୍ଚୟ ରମା ଜେଠୀମା' ଘର ଭିତରେ ପୂରେଇ ଦାଣ୍ଡ କବାଟଟା ଦେଇ ଦେଇଛନ୍ତି। ଆଉ ତାଙ୍କ ଘରର ଯେଉଁ ବିରାଟ ଦାଣ୍ଡ କବାଟ ! କାହାର ଛୁ' ଅଛି ହାତ ବଢ଼େଇ ଖୋଲିବାର ? ହେଲା ଏବେ ଦାଣ୍ଡ କବାଟର ଖିଡ଼କିକୁ ହାତ ପାଇବ ନାହିଁ, ବାଡ଼ିପଟ କବାଟଟା ତ ଅଛି। ସେଇଟାର ଛିଟିକିଣିଟା ଭାଙ୍ଗି ଯାଇଛି ଯେ ତଳୁ ଖାଲି ଗୋଟାଏ ପଥର ଦେଇ ଅଟକା ହୋଇଥାଏ। ସେଇପଟେ ବାହାରି ଆସି ପାଚିରୀ ଡେଇଁ ପଡ଼ିଥିଲେ ତ କଥା ସରି ଥାଆନ୍ତା। ମୋଟା ବୁଦ୍ଧିଆ ଗୁଡ଼ାକ।

ରବି କଥା ଅନୁପମା ବେଶୀ ଭାବେ ନାହିଁ। ଏଗାର ବର୍ଷ ଆସି ହେଲାଣି। ସେମାନଙ୍କ ଭିତରେ ସବୁଠାରୁ ବଡ଼। ଅଥଚ କି ଡରୁଆ ଆଉ ନାକକାନ୍ଦୁରା ! ତା'ର ତ ନ ଆସିବାଟା ସ୍ୱାଭାବିକ। ପଟର ପଟର ହୋଇ ସେମାନଙ୍କର ଦୁଇ ପହରେ ଗୁଲି ଆଉ ଗୁଚିଡାଣ୍ଡୁ ଖେଳିବାର ଯୋଜନାଗୁଡ଼ିକ ସବୁ କହି ଦେଇଥିବ ତା' ବଡ଼ ଦୁଇ ଭଉଣୀଙ୍କ ଆଗରେ। ବାସ୍ - ସେମାନେ ସେମାନଙ୍କର ମା' ଅର୍ଥାତ୍ ଶୈଳ ମାସୀକୁ କହି ରବିକୁ ଜବରଦସ୍ତି ପଢ଼ା ଘରେ ବସେଇ ରଖିଥିବେ।

ଉଃ, କାହିଁକି ଯେ ଏହିମାନଙ୍କ ଭଳିଆ ସାଙ୍ଗ ତାକୁ ମିଳିଲେ ? ଏଗୁଡ଼ାକ ପୁଣି ପୁଅ ! ଶାଢ଼ି ଚୁଡ଼ି ପିନ୍ଧି ଖାଲି ଚୁଲି ପାଖରେ ବସିବାର ଯୋଗ୍ୟ। ମୁହଁ ମୋଡ଼ି ନେଲା ଅନୁପମା।

"ଏ ଅନି, ଖେଳିବୁ ?" ପଡ଼ିଶା ଘର ନାରଣ କାକାଙ୍କ ବଡ଼ ଝିଅ ରୁନି ପାଚିରୀ ଉପରୁ ଉଙ୍କି ମାରି ପଚାରିଲା ।

"କି ଖେଳ ?" ଫୋପାଡ଼ିବା ଭଳି ଅନୁପମାର ପ୍ରଶ୍ନ । ତା'ର ସମବୟସୀ ଏଇ ରୁନିଟିକୁ ସେ ଆଦୌ ଦେଖି ପାରେନାହିଁ । ସବୁବେଳେ ତା' ନାଁରେ ଏଣୁତେଣୁ କଥା କହି ମା'ଙ୍କଠାରୁ ଗାଳି ଖୁଆଏ । ଅନ୍ୟ ବେଳ ହୋଇଥିଲେ ଅନୁପମା ତା' ସାଙ୍ଗରେ ପଦେ କଥା ମଧ୍ୟ କହି ନ ଥାଆନ୍ତା । ମୁହଁ ମୋଡ଼ି ଦେଇ ଥାଆନ୍ତା । କିନ୍ତୁ ଆଜି କଥା ଭିନ୍ନ । ସେଇଥିପାଇଁ ପଚାରିଦେଲା, "କି ଖେଳ ?"

"ଡାଲି ଭାତ ରନ୍ଧା ଖେଳ । ମୁଁ ଚାରିଟା ସନ୍ଦେଇ ବୋଉଠୁଁ ଆଣିଛି ।"

ଅନୁପମା ଅପସନ୍ଦ କଲା ଭଳି କହିଲା, "ଧେତ୍ - ଯେତେକ ମାଇକିନିଆ ଖେଳ । ମୁଁ ଖେଳି ପାରିବି ନାହିଁ । ତୁ ଯଦି ବାଟି ଖେଳିବୁ ତେବେ ଆ ।"

କାବା କାବା ମୁହଁରେ ରୁନି କିଛି ସମୟ ତାକୁ ଚାହିଁଲା । ମାଇକିନିଆ ଖେଳ ?? ଅନି ନିଜେ କ'ଣ କି ? ଫୁଲେଇଟା । ତା' ସାଙ୍ଗରେ ଖେଳିବାକୁ ଚାହୁଁନି । ନ ଖେଳିଲେ ନାହିଁ । ପଡ଼ାଟା ଭିତରେ ତା'ର ଆଉ ସାଙ୍ଗ ନାହାନ୍ତି କି ? ରୁନି ଘର ଭିତରକୁ ଚାଲି ଯିବାକୁ ବସିଲା । ହଠାତ୍ ପୁଣି କ'ଣ ଭାବି ଟିକିଏ ରହିଯାଇ କହିଲା, "ମୋତେ ସେ ବାଟି ଫାଟି ଖେଳି ଆସେ ନାହିଁ । ...ଚଟା ଖେଳିବୁ ?"

"ହଉ ।" ସାଲିସ କରିବା ଭଙ୍ଗୀରେ ପାହାଚ ଉପରୁ ଉଠି ଠିଆ ହେଲା ଅନୁପମା । ଚଟା ଖେଳ ଚଳିବ । କେବେ କେମିତି ସେ ଦିଦି ସାଙ୍ଗରେ ଚଟା ଖେଳେ । କିନ୍ତୁ ଦିଦିଟା ଏମିତି ଗୁନ୍ଦୁରୀ ଯେ କେବେ କେହି ଚଟା ଖେଳି ତା' ସାଙ୍ଗରେ ଜିତିପାରେ ନାହିଁ । ବେଳେ ବେଳେ ଅତିଶୟ ହୋଇଗଲେ ଆଗରୁ ଅନୁପମା ଦୌଡ଼ି ଯାଉଥିଲା ମା'ଙ୍କ ପାଖକୁ । ହେଲେ ଏବେ ସେ ବୁଝି ଯାଇଛି । ଦିଦି ବିରୁଦ୍ଧରେ ଅଭିଯୋଗ ନେଇ ମା'ଙ୍କ ପାଖକୁ ଗଲେ କିଛି ଲାଭ ନାହିଁ । ସବୁ ଭାଇ ଭଉଣୀଙ୍କ ଭିତରେ ସବୁଠାରୁ ବେଶୀ ଗେହ୍ଲା ସେ ମା'ଙ୍କର । କାହିଁକି ? ଖାଲି ମା'ଙ୍କ ଭଳି ସୁନ୍ଦର ରୂପ ଆଉ ଚମ୍ପା ରଙ୍ଗର ଦେହ ପାଇଛି ବୋଲି ? ନିଜ ହାତ ଗୋଡ଼କୁ ଚାହିଁ ଦେଖେ ଅନୁପମା । କାହିଁ, ତା' ଦେହ ରଙ୍ଗଟା ତ ସେଭଳି କିଛି ଅସନା ନୁହଁ । ଦର୍ପଣରେ ନିଜ ମୁହଁ ବି ମନ୍ଦ ଲାଗେ

ନାହିଁ। ହଁ, ଦିଦି ଭଳି ଖଣ୍ଡାଧାର ନାକ ତା'ର ନୁହଁ। ବଡ଼ ବଡ଼ ଟଣା ଟଣା ଆଖି ମଧ୍ୟ ନୁହଁ। ହେଲେ, ସବୁ ନେଇ ବେଶ୍ ଭଲ ଇ ତ। ତା'ହେଲେ ମା' କାହିଁକି ସବୁବେଳେ କହନ୍ତି କାଳୀ ଝିଅ ? କାଳୀ ଝିଅମାନେ କ'ଣ ଅସନା ?

ରୁନି ପାଚିରୀ ଡେଇଁ ତା' ପାଖରେ ପହଞ୍ଚିଗଲା। ସରୁ କାଠି ନେଇ ଘର କାଟୁ କାଟୁ ପଚାରିଲା, "ତୁ ଆଗ ଖେଳିବୁ ନା ମୁଁ।"

"ତୁ ଖେଳ୍ ଆଗ।" ଅନୁପମାର ମାଙ୍କଡ଼ ଭଳି ଡେଇଁବାକୁ ବେଶୀ ଇଚ୍ଛା ହେଉ ନ ଥାଏ। ଆଉ ଯଦି ପ୍ରଥମ ଥରରେ ଘର ଭିତରେ ଖପରା ପକେଇ ନ ପାରେ, ତା'ହେଲେ ଏ ମେଞ୍ଚଡ଼ ରୁନି ସାମ୍ନାରେ ତା' ନାକ କଟିଯିବନି ?

ରୁନି ଖେଳ ଆରମ୍ଭ କଲା। ବାରଣ୍ଡାର ଖୁମ୍ବକୁ ପିଠି ଦେଇ ଆଉଜି ବସି ଅନୁପମା ରୁନିର ଖେଳ ନ ଦେଖି ଚାହିଁଥିଲା ରାସ୍ତାକୁ। ସାପ ଭଳି ଧୂଳିଆ ରାସ୍ତା ଲମ୍ବିଯାଇଛି କାହିଁ କେତେ ଦୂରକୁ। ଛୋଟ ସହର ତାଙ୍କର ଏଇ ପାବନା। ଢ଼ାକା, କଲିକତା ଭଳି ଏତେ ବଡ଼ ନୁହଁ, କିନ୍ତୁ ନିହାତି ଛୋଟ ବି ତ ନୁହଁ। କୋର୍ଟ ଅଛି, କେତେ ଅଫିସ ଅଛି, ଦି'ଦିଟା ମଟର ଗାଡ଼ି ଅଛି। 'ଅନ୍ନଦା ଗୋବିନ୍ଦ ପାଠାଗାର' ଭଳି ଜଣାଶୁଣା ଲାଇବ୍ରେରୀ ଅଛି। ତା'ଛଡ଼ା ରହିଛି ଭଲ ସ୍କୁଲ। ଗୋଟାଏ କଲେଜ। କେତେ ପୁଣି ଦୋକାନ ବଜାର। କିଣା ବିକା କରିବାକୁ କାହୁଁ କେଉଁଠୁ ଲୋକ ଆସନ୍ତି।

ଅନୁପମା ଜନ୍ମରୁ ପାବନା ଦେଖି ଆସୁଛି। ତା'ର କାହିଁ କେତେ ବର୍ଷ ଆଗରୁ ତା' ବାବା ଆସି ଏଇଠି ରହି ଯାଇଛନ୍ତି। କେତେ ବର୍ଷ ଆଗରୁ କେଜାଣି। ବେଳେବେଳେ ବାପାଙ୍କ ପାଖରେ ଗେହ୍ଲେଇ ହେଇ ସେ ପଚାରେ, "କାହିଁକି ଗାଁ ଛାଡ଼ି ଚାଲି ଆସିଲ, ବାବା ?"

ବାବାଙ୍କ ମୁହଁ ଗମ୍ଭୀର ହୋଇଯାଏ। ସେପାଖରୁ ଚିଡ଼ି ଉଠନ୍ତି ମା'। "ତୋର କ'ଣ ପଚାରିବାକୁ ଆଉ କିଛି ନାହିଁ କିଲୋ ? ଦିନଟାଯାକ ଖଟିବା ପରେ ଟିକିଏ ସ୍ଥିର ହୋଇ ବସିଛନ୍ତି ତୋ ବାବା। କାହିଁକି ହଇରାଣ କରୁଛୁ ?"

ମା'ଙ୍କ କଥାରେ କାନ ନ ଦେଇ ଅନୁପମା ପୁଣି ପଚାରେ, "କୁହନା ବାବା, କାହିଁକି ଗାଁ ଛାଡ଼ି ଏ ସହରକୁ ଚାଲି ଆସିଲ ?"

"ତୁ ବଡ଼ ହେଲେ ସବୁ କହିବି।"

"ନାଇଁ, ଏବେ କୁହ।" ବାବାଙ୍କର ଗେହ୍ଲୀ ଝିଅ ଅନି ଦିନେ ଜିଦି ଧରି

ବସିଲା ।

''ଗାଁରେ ଆମର ବହୁତ ଜମି । ନଡ଼ିଆ ବଗିଚା, ଆମ୍ବ ବଗିଚା, ଛୋଟ ପୋଖରୀ - ସବୁ ଥିଲା । ଖୁବ୍ ଭଲରେ ଚଳୁଥିଲୁ ଆମେ । ତୋ ଠାକୁର୍ଦ୍ଦା ଥିବାଯାକେ ଗାଁରେ ସବୁ ଠିକ୍ ଚାଲିଥିଲା । ହେଲେ ସେ ମରିଯିବା ପରେ ଅନ୍ୟମାନେ ବାଡ଼ିଆପିଟା ହୋଇ ସବୁ ମାଡ଼ି ବସିଲେ ।''

''କେଉଁମାନେ ?''

ବାବା ସେଦିନ କିଛି ସମୟ ପାଇଁ ଚୁପ୍ ହୋଇଯାଇଥିଲେ । ତା'ପରେ ରହି ରହି କହିଥିଲେ, ''କିଏ ଆଉ, ତୋ ଜେଠୁମାନେ ।''

ମା' ଖିଙ୍କାରି ଉଠିଥିଲେ, ''ଯା ତ ଏଠୁ, ଅନି । ...ତମେ ବି କେମିତିଆ । କାହିଁକି ସେ ପୁରୁଣା ଘା'କୁ ଉଖାରି ବସୁଛ ? ଖାଲି ରକ୍ତ ବୋହିବା ସାର ହେବ ସିନା । ଠାକୁର ଯେତିକି ଦେଇଛନ୍ତି ସେତିକି ଆମ ପାଇଁ ଯଥେଷ୍ଟ । ବାବା କାକାଙ୍କ ଜମି ପାଇଁ ଅଯଥା କଳିତକରାଳରେ ପଶିନ, ଭଲ ହିଁ କରିଛ । ଆମର ସେସବୁ ଅଶାନ୍ତିରୁ ଦୂରେଇ ରହିବା ଭଲ ।''

ଅନୁପମା ସେଦିନ ମା'ଙ୍କଠାରୁ ଗାଳି ଖାଇ ଉଠିଯାଇଥିଲା । ଯାଉ ଯାଉ କାନରେ ପଡ଼ିଯାଉଥିଲା ବାବାଙ୍କର କଥା କେଇ ପଦ । ''ଶ୍ରଦ୍ଧା, ତୁମ ମନଜୋରରେ ସିନା ସହର ଆସିଲି । ହେଲେ ବଡ଼ ଚିନ୍ତା ହୁଏ । ଏଠି ଭଲରେ ଚଳିଯାଉଛେ, କିନ୍ତୁ ଦି' ପଇସା ତ ସଞ୍ଚି ହେଉ ନାହିଁ ।''

''ହେବ ହେବ । ଦେଖିବ ରହିଥା, ଦିନେ ସବୁ ହେବ ।''

''କେଜାଣି... ମୋର ତ ବଡ଼ ଭୟ ହୁଏ । ...ଯାହା ରୋଜଗାର, ସେଥିରୁ ବେଶୀ ଭାଗ ଚାଲିଯାଉଛି ଘର ଭଡ଼ାରେ । ବାକୀ ସବୁ ଖର୍ଚ୍ଚବାର୍ଚ୍ଚ ଯିବା ପରେ ହାତରେ କେଇଟା ପଇସା ରହୁଛି ?''

''ଯେତିକି ରହୁଛି ସେତିକି ଆମ ପାଇଁ ଯଥେଷ୍ଟ । ସେଇଥିରେ ତ ପୁଣି ଆମର ଆମ୍ବବଗିଚା ପାଖ ଜମି କିଣା ହେଇଗଲା । ହେଲା କି ନାହିଁ ?''

''ତା' ତ ହେଲା । କିନ୍ତୁ ଘରଟାଏ କରିବାର ଶକ୍ତି ମୋର ଅଛି କି ?''

''ତା' ବି ଦିନେ ହେବ ।''

''ଶ୍ରଦ୍ଧା, ତମ ଭଳି ଯଦି ମୁଁ ଏତେଟା ଆଶାବାଦୀ ହେଇପାରନ୍ତି, ତା'ହେଲେ ଆଉ କଥା ଥିଲା ? ହେଲେ... ପିଲାଙ୍କ ଭବିଷ୍ୟତ କଥା ଭାବିଲେ ମୋର

ହାଲୁକ ଶୁଖି ଯାଉଛି। ଯେତେ ଯାହା ହେଉନା କାହିଁକି, ସାତପୁରୁଷି ଜମିରୁ ମୁହଁ ବୁଲେଇ ଚାଲି ଆସିବାଟା ବୋଧହୁଏ ମୋର ଉଚିତ ହୋଇନାହିଁ।''

ମା' ଖୁବ୍ ନରମ ସ୍ୱରରେ କହିଥିଲେ, ''ତୁମେ ଭବିଷ୍ୟତ ପାଇଁ ଏତେ ଚିନ୍ତା କର କାହିଁକି? ଠାକୁର ସବୁ ଭଲ କରିବେ।''

ଭବିଷ୍ୟତ? ଭବିଷ୍ୟତ ପୁଣି କ'ଣ? ବାବା ଭବିଷ୍ୟତ ବିଷୟରେ ଏତେ ଭାବି ହୁଅନ୍ତି କାହିଁକି? ସେମାନେ ତ ବେଶ୍ ଭଲରେ ଅଛନ୍ତି। ଦାଦା ସବୁବେଳେ କ୍ଲାସ୍‌ରେ ପ୍ରଥମ ହୋଇ ଆସୁଥିଲା। ଏବେ ଅତି ଭଲ ନମ୍ବର ରଖି ଆଇ.ଏସ୍‌ସି ପାସ୍ କରିବା ପରେ ଡାକ୍ତରୀ ପଢୁଛି। ଛୋଟଦା' ଦାଦା ଭଳି ଅତି ଭଲ ପଢ଼େ ନାହିଁ। କିନ୍ତୁ ପ୍ରଥମ ଦଶ ଜଣଙ୍କ ଭିତରେ ରହେ ସବୁବେଳେ। ଦିଦିଟା ଟିକିଏ ହୁଣ୍ଡୀ। ତଥାପି ତ ବର୍ଷକୁ ବର୍ଷ ମୋଟାମୋଟି ଭଲ ନମ୍ବର ରଖି ପାସ୍ କରିଯାଉଛି। ଆଉ ରହିଲା ତା' ନିଜ କଥା। ସେ ତ ଅତି ଭଲ ପଢ଼େ। ବାବା କେତେଥର ଗେହ୍ଲା କରି କହିଛନ୍ତି, ''ସବୁ ପିଲାଙ୍କ ଭିତରେ ଏଇ ମା'ଟା ମୋର ବେଶୀ ବୁଦ୍ଧିଆ।''

ମା' ଚିଡ଼ନ୍ତି, ''ବୁଦ୍ଧି? କି ବୁଦ୍ଧି ମ? ଯେତେକ ମନ୍ଦ ବୁଦ୍ଧି ମୁଣ୍ଡରେ ମୁଣ୍ଡେଇ ବସିଛି। ନହେଲେ ମାଙ୍କଡ଼ା ପିଲାଙ୍କ ସାଙ୍ଗରେ ରାସ୍ତା ଉପରେ ସେ ବାଟି, ଗୁଚିଡାଣ୍ଡୁ ଖେଳନ୍ତା?''

''ଯାଃ - ଗାର ଉପରେ ଖପରା ପଡ଼ିଗଲା।'' ରୁନିର ସ୍ୱରରେ ଧ୍ୟାନ ଭାଙ୍ଗିଲା ଅନୁପମାର।

ଏଥର ତା' ପାଳି।

''ମୋ ପାଖରେ ଖପରା ନାହିଁ।''

''ଖପରା ନାହିଁ??'' ଆଶ୍ଚର୍ଯ୍ୟ ହୋଇଗଲା ରୁନି। ଏଇଟା କି ଝିଅପିଲା କେଜାଣି ଲୋ ମା'। ଫ୍ରକ୍ ପକେଟ୍‌ରୁ ଚାରି ପାଞ୍ଚଟା ଖପରା କାଢ଼ି ପାପୁଲିରେ ରଖିଲା ସେ। ''ହଉ, ଏଇଥିରୁ ଗୋଟିଏ ନେ। କିନ୍ତୁ ଖେଳ ସରିଲେ ମୋତେ ଫେରାଇ ଦେବୁ। କେତେ କଷ୍ଟରେ ରଞ୍ଜୁ ଘର ପାଖ ପଡ଼ିଆରୁ ଖୋଜି ଆଣିଛି।''

ବେଖାତିର କଳା ଭଳି ଚାରିକୋଣିଆ ଛୋଟ ଖପରାଟେ ରୁନିର ହାତ ପାପୁଲି ଉପରୁ ଉଠେଇ ଆଣି ପ୍ରଥମ ଘରେ ପକାଇଲା ଅନୁପମା। ଘର ଡେଇଁ ଦ୍ୱିତୀୟ ଘରକୁ ଗଲାବେଳେ ରହିଗଲା ସେ। ଦୂରରୁ, ବହୁତ ଦୂରରୁ,

ରାସ୍ତା ଯେଉଁଠି ଆରମ୍ଭ ହୋଇଛି, ସେଇଠୁ ଆସୁଛି ଘୋଡ଼ା ଗାଡ଼ିଟିଏ ।

ତାଙ୍କ ରାସ୍ତାରେ ପୁଣି ଘୋଡ଼ାଗାଡ଼ି ? ଏ ଅଣଓସାରିଆ ରାସ୍ତାରେ ତ ଜମା ଦଶ ବାରଟା ଘର । ସେଠି ପୁଣି କାହା ଘରକୁ ଘୋଡ଼ାଗାଡ଼ି ଆସୁଛି ? ନିଶ୍ଚୟ ପାରୁଲ୍ କାକୀମା'ଙ୍କ ଦାଦା ଆସୁଛନ୍ତି । କାକୀମା' ସେଦିନ ତାଙ୍କ କଥା ମା' ଆଗରେ କହୁଥିଲେ । କଲିକତାରେ ରହନ୍ତି । ବଡ଼ ବ୍ୟବସାୟ, ବହୁତ ରୋଜଗାର । ଯା ଭିତରେ ଦିନେ ସାନ ଭଉଣୀ ଭିଣେଇ ଘରକୁ ଆସିବେ ବୋଲି କଥା ଦେଇଛନ୍ତି । ଗତ ଚାରି .ବର୍ଷ ଧରି କେବେ ଆସି ନାହାନ୍ତି ତ !

ଏ ରାସ୍ତାର ଶେଷ ଘରଟି ଅନୁପମା ଭଉିକାଙ୍କର । ତାଙ୍କ ଘରର ପାଞ୍ଚଟା ଘର ଆଗରୁ ରାଜୁ କାକା, ପାରୁଲ୍ କାକୀମା'ଙ୍କ ଘର ।

''ଏ ଅନି, କ'ଣ ହେଲା ? ଖେଳ ଶୀଘ୍ର ।'' ରୁନି ବ୍ୟସ୍ତ ହୋଇ ପଡୁଥିଲା ।

''ରହ ମ, ଦେଖୁନୁ, ଲିପି ଭଉିକାଙ୍କ ମାମୁ ବୋଧହୁଏ ଆସୁଛନ୍ତି । ଘୋଡ଼ା ଗାଡ଼ିଟାଏ ରାସ୍ତା ସେମୁଣ୍ଡରେ ।''

''ଲିପି ଭଉିକାଙ୍କ ମାମୁ ? ତୁ କେମିତି ଜାଣିଲୁ ?'' ରୁନି ଦୂରକୁ ଚାହିଁଲା । ସତରେ ତ । ଘୋଡ଼ା ଗାଡ଼ିଟାଏ ଆସୁଛି । ଇସ୍ - କି ମଜା ବାବୁନ, ଲିପି ଓ ଜିତୁର । ମାମୁ ଆଣିଥିବା ନୂଆ ଜାମା ପିନ୍ଧି ହାତରେ କଲିକତି ମିଠା, ଖେଳଣା ଧରି ବାରଣ୍ଡାରେ ଧାଡ଼ି ହୋଇ ବସିଯିବେ । କି ମିଠା ଆଣିଥିବେ ତାଙ୍କ ମାମୁ ? ଭୀମ୍ ନାଗର ସନ୍ଦେଶ ନା କ୍ଷିତୀଶ ଦାସର ରସଗୋଲା ? ରୁନିର ପାଟି ଲାଳେଇ ଆସୁଥିଲା ।

ଆରେ, ଏଇ ତ ରାଜୁ କାକାଙ୍କ ଘର ଟପିଗଲା ଘୋଡ଼ା ଗାଡ଼ିଟା । ଅନି ସତେ ଯେମିତି ଆକାଶରୁ ତୋଳି କଥା କହେ । ମୁଣ୍ଡ ଝୁଙ୍କାଇ ରୁନି ଘୋଡ଼ା ଗାଡ଼ି ଭିତରେ ବସିଥିବା ସବାରୀକୁ ଦେଖିବାର ଚେଷ୍ଟା କଲା । ସିଧା ରାସ୍ତାଟାର ଠିକ୍ ମଝିରେ ଆସୁଛି ଗାଡ଼ିଟା । ଜମା ଦେଖି ହେଉନି । ହେଲେ ଏ ଗିଲ କରା ପଞ୍ଜାବୀ, କୁଞ୍ଚ କଗା ଶାନ୍ତିପୁରୀ ଧୋତି । କିଏ ପିନ୍ଧେ ଏମିତିଆ ଲୁଗା ? ଏ ଗଳିରେ ? ପୁଣି କାହାର ସାମର୍ଥ୍ୟ ଅଛି ଘୋଡ଼ାଗାଡ଼ିଟାଏ ଭଡ଼ା କରିବାର ?

''ଆଲୋ ଅନି, ସତ୍ୟ ଜେଠୁ ଆସୁଛନ୍ତି କିଲୋ ?''

ସତ୍ୟ ଜେଠୁ ? ମାନେ ବାବା ? ଅନୁପମା ରୁନି ଭଳି ମୁଣ୍ଡ ବଙ୍କେଇ

ଦେଖିବାକୁ ଚେଷ୍ଟା କଲା ।

ବାବା ପୁଣି ଘୋଡ଼ାଗାଡ଼ିରେ ? ଆଜିଯାଏଁ କେବେ ଅନୁପମା ଏକଥା ଦେଖିନାହିଁ। ତାଙ୍କର ଏଠି ଘୋଡ଼ାଗାଡ଼ି ମାତ୍ର ଅଳ୍ପ କେତେଟା। ସେଗୁଡ଼ାକ କେବଳ କଚେରୀ ପାଖରେ ହିଁ ଥାଆନ୍ତି। କାଳେ କେଉଁ ବଡ଼ଲୋକ ମହକିଲ ତା' ଓକିଲ ପାଇଁ ଘୋଡ଼ାଗାଡ଼ି ଭଡ଼ା କରିଦେବ ! ହେଲେ ବାବା କେବେହେଲେ ଘୋଡ଼ା ଗାଡ଼ିରେ ବସନ୍ତି ନାହିଁ।

''ଜୀବଟାଏ ମୋ ଓଜନକୁ ଟାଣି ଟାଣି ଆଣିବ ? ନା- ସେକଥା ହୋଇ ପାରିବ ନାହିଁ।'' ଥରେ ବାବା କାହା ପ୍ରଶ୍ନରେ ଉତ୍ତର ଦେଇଥିଲେ। ''କାଇଁ ମୋର ସାଇକେଲ କ'ଣ ଖରାପ କି ? ନିଜ ବୋଝ ମୁଁ ନିଜେ ଟାଣୁଛି। ଆଉ କାହା କାନ୍ଧ ମୁଣ୍ଡରେ ତ ଲଦି ଦେଉ ନାହିଁ।''

ଅନୁପମା ସବୁବେଳେ ଦେଖି ଆସିଛି। କି ଖରା, କି ବର୍ଷା, କି ଶୀତ - ସାଇକେଲ ଖଣ୍ଡିକ ଚଢ଼ି ଦଶଟା ବେଳେ କଚିରୀକୁ ଯାଆନ୍ତି ବାବା। ପୁଣି ଆସିବା ବେଳେ ସେଇ ସାଇକେଲରେ ଫେରି ଆସନ୍ତି।

ତାଙ୍କର ଅବଶ୍ୟ ସେମିତି ନାମୀ ଦାମୀ ମହକିଲ ଜୁଟନ୍ତି ନାହିଁ ଯିଏ କି ପୂରାଟା ଘୋଡ଼ାଗାଡ଼ି ଭଡ଼ା କରି ପଠେଇ ଦେବ। ହେଲେ ମା'ଙ୍କ କହିବା ଅନୁସାରେ ତ ଓକିଲାତିରେ ରୋଜଗାର ମନ୍ଦ ହୁଏ ନାହିଁ। ଚାହିଁଲେ ଥରେ ଅଧେ ତ ବାବା ଥାଟରେ ଆସି ପାରନ୍ତେ ? ଏ ଗଳିରେ, ସାଙ୍ଗମାନଙ୍କ ଆଗରେ ଅନୁପମାର ମୁଣ୍ଡ ଟିକିଏ ଉପରକୁ ଉଠେଇ ଦେଇ ପାରନ୍ତେ। ହେଲେ ନା, କାହା ପାଇଁ ନିଜ ଆଦର୍ଶ ଛାଡ଼ିବେ ନାହିଁ ବାବା। ଅନୁପମା ବା କି ଛାର। ତଥାପି ସେ ଥରେ ସମ୍ଭାଳି ନ ପାରି ପଚାରି ଦେଇଥିଲା।

ବାବା ତା' ମୁଣ୍ଡ ଆଉଁଶି ଦେଇ ଉତ୍ତର ଦେଇଥିଲେ, ''ମା'ରେ, ଏ ଘୋଡ଼ାଗାଡ଼ି ଯେତିକି ଭଡ଼ା ନଉଛି, ସେତିକିରେ ଗରିବ ପିଲାଟିଏର ପନ୍ଦର ଦିନର ସ୍କୁଲ ଦରମା ହୋଇଯିବ। ଅଯଥା ପଇସାକୁ ଏମିତି ନଷ୍ଟ କଲେ ଠାକୁର ସହିବେ ?''

''କିନ୍ତୁ ତୁମେ ତ ଚାରିଟା ପିଲାଙ୍କୁ ହଷ୍ଟେଲରେ ରଖାଇ ସ୍କୁଲରେ ପଢ଼ାଉଛ।''

''ବୋକୀଟା, ଆମ ଦେଶରେ କ'ଣ ସେଇ ଚାରୋଟି ଖାଲି ଗରିବ ପିଲା ? କେତେ ସେମାନଙ୍କ ଭଳି ଅଛନ୍ତି। ସମସ୍ତଙ୍କୁ କ'ଣ ମୁଁ ପଢ଼ାଇ ପାରିବି

ନା ସମସ୍ତଙ୍କ ଖବର ମୁଁ ବୁଝି ପାରିବି ? ତେବେ ଅଯଥା ଖର୍ଚ୍ଚ ନ କରି ଯେତିକି ଯାହା କରି ପାରିବି ତାହା କରିବା କ'ଣ ଉଚିତ ନୁହଁ ?''

ଛୋଟ ଅନୁପମା ଏତେ ଗଭୀରକୁ ଯାଇ ଚିନ୍ତା କରି ପାରି ନ ଥିଲା, ହେଲେ ଯା ପରେ କ'ଣ ବାବାଙ୍କୁ କିଛି କହି ହୁଏ ?

ଅଥଚ ସେଇ ବାବା ସତରେ ଆଜି ଘୋଡ଼ା ଗାଡ଼ିରେ ଆସୁଛନ୍ତି ?

ପଞ୍ଜାବୀ, ଧୋତିରୁ ତ ମନେ ହେଉଛି ବାବା। ତାଙ୍କର୍ ବି ଏଇଭଳିଆ ଚଟି ହଳେ ଅଛି। କିନ୍ତୁ ଗୋଡ଼ଟା ଏମିତି ବଙ୍କା ହୋଇ ଅଛି କାହିଁକି ? ଘୋଡ଼ା ଗାଡ଼ିରେ ଆଉ ଜଣେ କିଏ ବସିଛି ନା କ'ଣ ?

ଅନୁପମା ଆଖି ଢ଼ଳେଇ ଚାହିଁଲା। ହଁ ତ ଆଉ ଜଣେ କିଏ ବସିଛି। ସେ ଲୋକଟା ବାବାଙ୍କ କାନ୍ଧକୁ ଏମିତି ଜାବୁଡ଼ି ଧରିଛି କାହିଁକି ? ବାବାଙ୍କ ମୁଣ୍ଡଟା ବି ଢ଼ଳି ଯାଇଛି ସେ ଲୋକର ବେକ ପାଖକୁ। କ'ଣ ହେଲା ? ବାବାଙ୍କ ଦେହ ବେଶୀ ଖରାପ ହେଲା ନା କ'ଣ ? ଏଇ କିଛି ଦିନ ଧରି ଭାରି ମୁଣ୍ଡ ବିନ୍ଧୁଥିଲା ବୋଲି ବାବା କହି ହେଉଥିଲେ। ଆଜି ସକାଳେ କେଇଥର ବାନ୍ତି ବି ହେଇଯାଇଥିଲା। ମା' ବ୍ୟସ୍ତ ହେଇ ଡାକ୍ତର ଦେଖାଇବା କଥା କହିଥିଲେ, ହେଲେ ବାବା କାହିଁକି ଶୁଣନ୍ତେ ? କଥା ଉଡ଼େଇ ଦେଇ କହିଥିଲେ, ''ତମର ଯେଉଁ କଥା, ଶ୍ରଦ୍ଧା। ଖରା ଟିକେ ଲାଗି ଯାଇଛି କି କ'ଣ, ସେଥିପାଇଁ ଦୌଡ଼ିବି ଡାକ୍ତର ପାଖକୁ ?''

''ଏ ବର୍ଷ ସେମିତି ଗରମ ପଡ଼ିଲାଣି କେଉଁଠି ଯେ ଖରା ଲାଗିଯିବ ? ତୁମେ କାହାକୁ ହେଲେ ଦେଖାଅ।''

ବାବା ମା'ଙ୍କ କଥାରେ ଗୁରୁତ୍ୱ ଦେଇ ନ ଥିଲେ। ମୁଣ୍ଡରେ କନା ପଟିଟିଏ ବାନ୍ଧି ଦେଇ ଅଫିସ ବାହାରି ଯାଇଥିଲେ।

ସେଇ ମୁଣ୍ଡ ବିନ୍ଧା, ବାନ୍ତିରୁ କିଛି ବେଶୀ ହେଇଗଲା କି ? ଏମିତି ମୁଣ୍ଡ ବିନ୍ଧାରୁ ଶ୍ୟାମରଞ୍ଜନ ଜେଠୁଙ୍କ ମା'ଙ୍କର କ'ଣ ସବୁ ବଡ଼ ରୋଗ ବାହାରି ଯାଇଥିଲା। ତା' ପରଠୁଁ ଆଜିଯାଏଁ ସେ ପଡ଼ି ରହିଛନ୍ତି ବିଛଣାରେ। ନା ଉଠି ବସି ପାରନ୍ତି, ନା ଚାଲବୁଲ କରିପାରନ୍ତି। ବାବାଙ୍କର କ'ଣ ସେଇମିତି କିଛି...

ଅନୁପମା ହାତରୁ ଖପରା ପଡ଼ିଗଲା। ଦେହ ହାତ କାଠ ହୋଇ ପାଟିଟା ଯେମିତି ଜାବ ପଡ଼ି ଆସୁଛି। ''ମା' ଗୋ !!'' ବିକଟାଳ ଚିତ୍କାର କରି ଅନୁପମା

ସେଇଠି ଗଛ ତଳେ ଲଥ୍ କରି ବସିଗଲା । କଥା କହିବାର ବା ଆଉ କିଛି କରିବାର ଶକ୍ତି ସେତେବେଳକୁ ନ ଥିଲା ଟା'ର ।

ଟା' ପାଟି ଶୁଣି ଭିତରୁ ଶ୍ରଦ୍ଧା ବାହାରି ଆସିବା ଆଗରୁ ଘୋଡ଼ାଗାଡ଼ିଟା ତାଙ୍କ ଦୁଆରେ ରହିସାରିଥିଲା । ବାବାଙ୍କୁ ଧରି ବସିଥିବା ଲୋକ ଜଣକ ରୁନିକୁ ହାତଠାରି ପାଖକୁ ଡାକି କ'ଣ କହିଲେ । ରୁନି ଧାଇଁ ଧାଇଁ ଚାଲିଗଲା ତାଙ୍କ ଘର ଭିତରକୁ ଆଉ ସା୍ଙ୍ଗେ ସାଙ୍ଗେ ବାହାରକୁ ଦୌଡ଼ି ଆସିଲେ ନାରଣ କାକା ।

ନାରଣ କାକା ଓ ଅନ୍ୟ ଲୋକଟି କୌଣସି ମତେ ଧରାଧରି କରି ବାବାଙ୍କୁ ଓହ୍ଲେଇଲେ । ଅନୁପମା ଦେଖିଲା ବାବାଙ୍କର ଆଖିଟା କେମିତି ମନକୁ ମନ ଖୋଲୁଛି ଆଉ ବନ୍ଦ ହେଉଛି । ଗତ ଦୁର୍ଗାପୂଜାରେ ମାମୁ ପଠେଇଥିବା ପୁଅ କଣ୍ଢେଇ ଭଳି । ମୁହଁଟି ମଧ ସେଇଭଳି ଚୂନ ସାଦା । କେଉଁଠି ଯେମିତି ପଳେ ରକ୍ତ ନାହିଁ । ଗୋଡ଼ ବି ପକେଇ ପାରୁନାହାନ୍ତି ସିଧା କରି ।

ଏତିକି ବେଳେ ଭିତରୁ ବାହାରି ଆସିଲେ ଅନୁପମାର ମା' । ''କ'ଣ କିଲୋ ଅନି, ଏଡ଼େଟାଏ ଚିତ୍କାର କଲୁ କାହିଁକି ? ଦି'ପହର ସାରା ନ ଶୋଇ କେତେ ନାଟ ତୋର ହେଉଛି...''

ପାଟିର କଥା ଅଧା ରହିଗଲା ତାଙ୍କର । ଘର ଦାଣ୍ଡର ଦୃଶ୍ୟ ଦେଖିବା ପରେ ଅନିକୁ ଆଉ କ'ଣ କହିଥାଆନ୍ତେ ସେ ? ''କ'ଣ ହେଲା, ନାରଣ ? ୟାଙ୍କର କ'ଣ ହୋଇଛି ?'' ହାଉଳି ଖାଇ ଉଠିଲେ ସେ ।

''ତମେ ବ୍ୟସ୍ତ ହୁଅନି ବୌଦି, ବାହାର ଘର ତକ୍ତପୋଷ ଉପରେ ଚଦରଟାଏ ବିଛେଇ ଦିଅ ଶୀଘ୍ର । ସତ୍ୟଦା'ର ମୁଣ୍ଡ କ'ଣ ହୋଇ ଯାଉଛି ।'' ଦେହ ବେଶୀ କିଛି ବିଗିଡ଼ି ନ ଥିବା ଭଳି ନାରଣ କାକା କଥାଟା କହିଦେଲେ ।

ମା' ଧାଇଁ ଗଲେ ଘର ଭିତରକୁ ।

''ଆସ୍ତେ ଆସ୍ତେ ।'' ବାବାଙ୍କ ସାଙ୍ଗରେ ଆସିଥିବା ମଣିଷ ଜଣଙ୍କ ପାହାଚରେ ବାବାଙ୍କ ପାଦ ଉଠାଇବାର ଚେଷ୍ଟା କରୁ କରୁ କହି ପକେଇଲେ । ତାଳ ଗଛ ଭଳି ସଳଖ ଗୋଡ଼ ଦିଇଟାକୁ ପାଞ୍ଚଟା ପାହାଚ ଚଢ଼େଇବା କ'ଣ ସହଜ କଥା ? ଆଖିର ଇଶାରାରେ ଗାଡ଼ିବାଲାକୁ ଡାକିଲେ ନାରଣ କାକା । ଘୋଡ଼ା ଗାଡ଼ିକୁ ସେଇଠି ଥିବା ଖୁଣ୍ଟରେ ବାନ୍ଧି ଦେଇ ଗାଡ଼ିବାଲା ବାବାଙ୍କ ଦୁଇ ପାଦକୁ

ଟେକି ଧରିଲା । ଆଉ ଅସୁବିଧା ନାହିଁ। ତିନି ଜଣ ମିଶିକରି ବାବାଙ୍କୁ ଶୁଆଇ ଦେଲେ ତକ୍ତପୋଷର ସଫା ଚଦର ଉପରେ ।

ନିଜର ପଥର ହୋଇଯାଇଥିବା ଗୋଡ଼ ଦିଇଟାକୁ ଘଷି ଘଷି ସେମାନଙ୍କ ପଛେ ପଛେ ଆସିଲା ଅନୁପମା । ଭିତରକୁ ପଶିଯିବାର ସାହସ ନାହିଁ। ସେଇଠି ବାହାର କବାଟକୁ ଲାଗି ଠିଆ ହୋଇ ରହିଲା ସେ ।

ବାବାଙ୍କ ପାଦରୁ ଅଣ୍ଟାଯାଏ ସରୁ ଚଦରଟିଏ ଘୋଡ଼େଇ ଦେଇ଼ ଗଳା ଝାଡ଼ି ତାଙ୍କ ସାଙ୍ଗରେ ଆସିଥିବା ମଣିଷଟି କଥା ଆରମ୍ଭ କଲା, ''ମୁଁ ବନବିହାରୀ ଗଙ୍ଗୋପାଧ୍ୟାୟ ଆଜ୍ଞା । ସତ୍ୟପ୍ରିୟ ବାବୁଙ୍କ ସାଙ୍ଗରେ ଓକିଲାତି କରେ । ଆଜି ହଠାତ୍ ସତ୍ୟପ୍ରିୟ ବାବୁ କଚିରୀ ଭିତରେ ବେହୋସ ହୋଇଗଲେ । ଆମେ ପାଣି ଦେଇ ସାଷ୍ଟାମ କରାଇବାର ଚେଷ୍ଟା କଲୁ। କିନ୍ତୁ କିଛି ଲାଭ ନ ହେବାରୁ ଜଣେ କିଏ ଯାଇ ଡାକ୍ତରଟିଏ ଡାକି ଆଣିଲା ।''

''ଡାକ୍ତର କ'ଣ କହିଲେ ?'' ଶ୍ରଦ୍ଧା ଉଦ୍‌ବିଗ୍ନ ଭାବରେ ପଚାରି ଉଠିଲେ ।

ବନବିହାରୀ ବାବୁ ଚୁପ୍ ହୋଇ ଯାଇଥିଲେ । ପାଟିରେ ତାଙ୍କର ଭାଷା ନ ଥିଲା ।

''କ'ଣ କହିଲେ ଡାକ୍ତର ? ସତ୍ୟ ଦା' ଭଲ ହୋଇଯିବ ତ ଶୀଘ୍ର ?'' ନାରଣ କାକା ଶ୍ରଦ୍ଧାଙ୍କର କଥାକୁ ଆଉ ଥରେ ଦୋହରାଇଲେ ।

''ଡାକ୍ତର କହିଲେ ଲକ୍ଷଣରୁ ଜଣା ପଡୁଛି - ମେନିନ୍‌ଜାଇଟିସ୍ ।''

''ସେଇଟା ପୁଣି କି ରୋଗ ?'' ଅପାଠୋଇ ଶ୍ରଦ୍ଧା କିଛି ବୁଝି ପାରୁ ନ ଥିଲେ ।

''ମସ୍ତିଷ୍କର ରୋଗ । ଅତି ଭୟଙ୍କର ।''

''ଭଲ ହେବାକୁ କେତେଦିନ ଲାଗିବ ?''

ଏଥର ମୁଣ୍ଡ ଉଠାଇ ଅନୁପମାର ମା'ଙ୍କୁ ଟିକିଏ ଚାହିଁଲେ ବନବିହାରୀ ଗଙ୍ଗୋପାଧ୍ୟାୟ । ପରିଷ୍କାର ଲୋକ, ସବୁବେଳେ ପରିଷ୍କାର କଥା କହି ଆସିଛନ୍ତି । ଏବେ ଏଇ ଅପ୍ରୀତିକର ପରିସ୍ଥିତିରେ ପଡ଼ି କ'ଣ ମିଛ କହି ଛଡ଼୍ରଛାଡ଼ ଦେବେ ? ନା ପାରିବେ ନାହିଁ। ପୁଣି ମୁଣ୍ଡ ତଳକୁ କରିନେଲେ ସେ । ପାଟିରୁ କଥା ଯେତେବେଳେ ବାହାରିଲା, ସେତେବେଳେ ତାଙ୍କ ଗଳାର ସ୍ୱର ସରୁ ହୋଇ ଯାଇଛି, ''ଡାକ୍ତର କହିଲେ ଯେ ସେ ନାଚାର । ରୋଗ ଆଗରୁ ଧରା ପଡ଼ିଥିଲେ

ହୁଏତ ସେ ଚେଷ୍ଟା କରି ପାରିଥାଆନ୍ତେ। ହେଲେ ଏବେ କାହାର କିଛି କରିବାର ନାହିଁ...''

''କାହାର କିଛି କରିବାର ନାହିଁ!!'' ଶ୍ରଦ୍ଧାଙ୍କର ଶାନ୍ତ ସ୍ୱର ଟାଣି ହୋଇ କେମିତି ବିକୃତ ହୋଇଯାଉଛି।

''ଆପଣ ଘର ଲୋକଙ୍କୁ ଖବର ଦେଇ ଦିଅନ୍ତୁ।'' ବନବିହାରୀ ବାବୁ ଉଠି ଯିବାକୁ ବାହାରିଲେ।

ମା' ଏମିତି ଚୁପ ହୋଇଯାଇଛନ୍ତି କାହିଁକି? ଆଖିରେ ଲୁହ ନାହିଁ, ପାଟିରେ କଥା ନାହିଁ। ନିଶ୍ୱାସ ଯାଉଛି କି ନାହିଁ, ତା' ବି ଜଣା ପଡୁନି। ଅନୁପମାକୁ ବହୁତ ଡର ଲାଗିଲା। ଇଚ୍ଛା ହେଲା ଧାଇଁଯାଇ ମା'ଙ୍କୁ ଟିକିଏ ଜାବୁଡ଼ି ଧରିବ। ଜୋରରେ ହଲେଇ ଦେବ ତାଙ୍କୁ। ନା, କିଛି ବି କରି ପାରୁନି ସେ। ତା' ପାଦ ଦିଇଟା ଯେ ଘୁଞ୍ଚିବାକୁ ନାରାଜ।

ଆଖପାଖରେ ଭିଡ଼ ଜମି ଗଲାଣି। ଶୁନିଠୁଁ ଖବର ପାଇ ତାଙ୍କ ଗଳିର ଆଉ କେତେ କିଏ ଆସି ପହଞ୍ଚି ଗଲେଣି ସେଠି।

ହଠାତ୍ ଉଠି ଠିଆ ହେଲେ ଶ୍ରଦ୍ଧା। ଗାଲର ହନୁହାଡ଼ ଦିଇଟା କଠିନ ହୋଇଯାଇଛି। ଆଖିରେ ଅସ୍ୱାଭାବିକ ତୀବ୍ର ଦୃଷ୍ଟି। ଅନୁପମା ଶଙ୍କିଗଲା। ଏମିତି କାହିଁକି ଦିଶୁଛନ୍ତି ମା'? କିଛି କରି ବସିବେନି ତ? କିଛି ହୋଇ ଯିବନି ତ ତାଙ୍କର? ଗୋଟାଏ ଯୁଗ ଯେମିତି କଟିଗଲା। ସେଇ ଏକାଜାଗାରେ କାଠ ଭଳି ଠିଆ ହୋଇ ଶ୍ରଦ୍ଧା ଗମ୍ଭୀର ଭାବରେ କହିଲେ, ''ନା - ମୁଁ ଏମିତି ଯାଙ୍କୁ ଯିବାକୁ ଦେବିନି। ନାରଣ, ତୁମେ ଟିକିଏ ଯାଅ। ସହରରେ ଯେଉଁ ସାହେବ ଡାକ୍ତର ଅଛନ୍ତି ତାଙ୍କୁ ନେଇ ଆସ। ଯେତେ ଖର୍ଚ୍ଚ ହେଉ ପଛକେ। ଡାକ୍ତରୀରେ ନ ହେଲେ ମୁଁ ହୋମିଓପ୍ୟାଥି, କବିରାଜି କରେଇବି।''

କିଛି ନ କହି ନାରଣ ଚାଲିଗଲେ। ଗୁଡ଼ାଏ ସମୟ ଶ୍ରଦ୍ଧା ସେମିତି ଠିଆ ହୋଇ ରହିଲେ ତାଙ୍କ ବାଟକୁ ଚାହିଁ। ତାଙ୍କ ପାଖକୁ ଯିବାକୁ କାହାର ଯେମିତି ସାହସ ହେଉ 'ନ ଥିଲା। କେତେବେଳକେ ତାଙ୍କ ହାତରେ ହାତ ରଖିଲେ ସଲ୍‌ମା। ବାବାଙ୍କର ସ୍କୁଲ୍ ଦିନର ପ୍ରିୟ ସାଙ୍ଗ ଆବିଦ୍ ରହମାନ୍‌ଙ୍କ ଘରଣୀ। ଅନି ଡାକେ ଆବିଦ୍ ଚାଚା, ସଲମା ଚାଚି। ସେମାନେ ଏଠୁ ପ୍ରାୟ ଗୋଟାଏ କିଲୋମିଟର ଦୂରରେ ଇଚ୍ଛାମତୀ ନଦୀ ପାଖରେ ରହନ୍ତି। ସେମାନଙ୍କୁ ବି ଖବର

ମିଳି ସାରିଲାଣି !

ଶ୍ରଦ୍ଧାଙ୍କୁ ଆସ୍ତେ ଟାଣିନେଇ ତଳେ ବସେଇ ଦେଲେ ସଲ୍ମା। ସେଇଠି ମହକିଲମାନଙ୍କ ପାଇଁ ପଡ଼ିଥିବା ଚୌକିରୁ ଗୋଟିକରେ ବସିଥିଲେ ଆବିଦ୍ ରହମାନ। ସେ ରହି ରହି ହଠାତ୍ କହିଲେ, "ଭାବିଜାନ୍, ମୁଁ ଢ଼ାକା ଖବର ପଠେଇ ଦେଉଛି। ଅନିରୁଦ୍ଧକୁ ଜଣେ କେହି ଡାକି ଦେଇ ଆସୁ। ଏତେବେଳକେ ସେ ପାଖରେ ଥିଲେ ଗୋଟିଏ ବଡ଼ ଭରସା।"

ଶ୍ରଦ୍ଧା କିଛି କହିଲେ ନାହିଁ।

କାହିଁକି ମା' କିଛି କହୁନାହାନ୍ତି ? ଅନୁପମା ବିକଳ ହୋଇ ପଡ଼ିଲା। କାହିଁକି ଏମିତି ଲୋକ ଢ଼ାକା ଯିବ ଦାଦାକୁ ଡାକି ଆଣିବାକୁ ? ଡାକ୍ତରୀ ପାଠ ଖେଳ ଘର ନା କ'ଣ ? ବାପାଙ୍କର ସବୁଦିନେ ଭାରି ଇଚ୍ଛା ଥିଲା ଯେ ତାଙ୍କ ବଡ଼ ପୁଅ ବହୁତ ପଢ଼ିବ। ସେଇ ଇଚ୍ଛାକୁ ସମ୍ମାନ ଦେଇ ଦାଦା ଏଇ ମାତ୍ର ମେଡ଼ିକାଲ୍ କଲେଜରେ ପଢ଼ା ଆରମ୍ଭ କରିଛି। କେତେ ବଡ଼ ବଡ଼ ମୋଟା ମୋଟା ବହି ! କେତେ କଠିନ ପାଠ ! ଏମିତି ତା'ର ପାଠ ମାରା କରି ତାକୁ ଡକେଇ ଆଣିବାର ମାନେ କ'ଣ ?

ଅନୁପମାର ପିଲା ମନଟା ସବୁ ଠିକ୍ ବୁଝି ପାରୁ ନ ଥିଲା। ଦିଦି ଏଇଠି ଥାଆନ୍ତା କି ! ଅନ୍ୟ ବେଳେ ଯେତେ କଜି କରୁ ପଛକେ, ଏବେ ସେ ପାଖରେ ଥିଲେ ନିଶ୍ଚୟ ତା'ର ସାହସ ବଢ଼ି ଯାଇଥାଆନ୍ତା। କିନ୍ତୁ ସେ ଯାଇଛି ତା'ର ସାଙ୍ଗ ବିଶାଖା ଘରକୁ। ତାଙ୍କ ମା'ଙ୍କଠୁଁ ସିଲେଇ ଶିଖିବାକୁ। ମା' ତ ତାକୁ ଆଉ ଏକା ଛାଡ଼ି ନ ଥାଆନ୍ତେ; ସେଥିପାଇଁ କେତେ ତେଲେଇ ଛୋଟ ଦା'କୁ ନେଇ ଯାଇଛି। ଏତେବେଳକୁ ଆସିଯିବା କଥା। ଛୋଟ ଦା' ନିଶ୍ଚୟ ବିଶାଖାର ବଡ଼ଭାଇଙ୍କ ସାଙ୍ଗରେ ଖେଳ କଥା ଆଲୋଚନା କରିବାକୁ ବସିଯାଇଛି। ଥରେ ସେ ଚୁଲି ପାଉଁଶ ଆଲୋଚନା ଆରମ୍ଭ ହେଲେ ଆଉ ତାକୁ ଉଠାଏ କିଏ ? କେତେ ବେଳ ହୋଇଗଲାଣି। ଆଉ ଟିକକରେ ସନ୍ଧ୍ୟା ହେବ। ଆସୁଥିବେ ବୋଧହୁଏ।

ଅନୁପମାର ଉପର ଭଉଣୀ ଅର୍ଚ୍ଚନା ଆଉ ଚଉଦ ବର୍ଷର ଭାଇ ଅମରେଶ ଆସି ପହଞ୍ଚିଲେ ଅଳ୍ପ ସମୟ ଭିତରେ। ସେମାନଙ୍କ ପଛେ ପଛେ ହିଁ ସାହେବ ଡାକ୍ତରଙ୍କୁ ଧରି ପହଞ୍ଚିଲେ ନାରଣ। କାନରେ ନଳୀଟାଏ ଲଗେଇ, ନଳୀର

ଅନ୍ୟପାଖଟି ଅନୁପମା ବାବାଙ୍କର ଛାତି ଉପରେ ଚାପି ଧରି ସେ କ'ଣ ସବୁ ଶୁଣିଲେ। ତା'ପରେ ଆହୁରି କି କି ଯନ୍ତ୍ରପାତି ଦେଇ ବିଭିନ୍ନ ପରୀକ୍ଷା ନିରୀକ୍ଷା କଲେ। ଆଖି ଭିତର ଦେଖିଲେ, ହାତ ମୁଠା କରି ଖୋଲି କ'ଣ ଜାଣିବାକୁ ଚାହିଁଲେ। ଘର ଭିତର ଏକଦମ ନିସ୍ତବ୍ଧ, କୋଳାହଳଶୂନ୍ୟ। ପତରଟାଏ ପଡ଼ିଲେ ଶବ୍ଦ ହେବ। ସମସ୍ତେ ଉତ୍କଣ୍ଠିତ ଭାବରେ ଅପେକ୍ଷା କରିରହିଛନ୍ତି ଡାକ୍ତରଙ୍କର ରାୟକୁ।

ଅଧ ଘଣ୍ଟାଏ କାଳ ଏପାଖ ସେପାଖ କରି ପରୀକ୍ଷା କରିବା ପରେ ସାହେବ ଡାକ୍ତର ଉଠି ଠିଆ ହେଲେ। ଥରେ ଶ୍ରଦ୍ଧାଙ୍କ ମୁହଁକୁ ଓ ଆଉ ଥରେ ନାରଣଙ୍କ ମୁହଁକୁ ଚାହିଁ ସେ ମୁଣ୍ଡ ହଲେଇ ଦେଲେ। "ସରି।" ପୁଣି ଭଙ୍ଗା ଭଙ୍ଗା ବଙ୍ଗଳାରେ କହିଲେ, "ମୋର ଆଉ କିଛି କରିବାର ନାହିଁ।" ତାଙ୍କୁ ନେଇ ଆସିଥିବା ଘୋଡ଼ାଗାଡ଼ିରେ ଉଠି ଚାଲିଗଲେ ସେ।

ଡାକ୍ତରଙ୍କ ନିଷ୍ପତ୍ତିକୁ ଘର ଭିତରେ ବସିଥିବା ଲୋକମାନେ ଚୁପ୍‌ଚାପ୍ ମାନି ନେଲେ ନାହିଁ। କିଏ ଯାଇ ପଦ୍ମ ପୋଖରୀ ପାଖରେ ରହୁଥିବା କାଳୀପଦ କବିରାଜଙ୍କୁ ନେଇ ଆସିଲା। କିଏ ପୁଣି ହୋମିଓପ୍ୟାଥିରେ ନାଁ କରିଥିବା ଗୁରୁଚରଣଙ୍କୁ ଡାକି ଆଣିଲା। କିନ୍ତୁ ସମସ୍ତଙ୍କର ରାୟ ସେଇ ଏକ। ସମସ୍ତେ ରୋଗୀକୁ ଦେଖି ନେଇ ମୁଣ୍ଡ ହଲେଇ ଦେଇ ଚାଲିଗଲେ। ନା- ଜୀବନର ଆଶା ନାହିଁ।

କ'ଣ ଏମିତି ସମସ୍ତେ କହୁଛନ୍ତି ଆଜେବାଜେ କଥା ? ଅନୁପମା ଚୁପ୍‌ଚାପ୍ ଯାଇ ଦିଦି ପିଠିକୁ ଲାଗିକରି ବସିଲା। ବାର ବର୍ଷର ଦେହଟାକୁ ଶାଢ଼ିରେ ପୂରା ଗୁଡ଼େଇ ଅର୍ଚ୍ଚନା ବସିଛି କେମିତି ଜଣେ ବୟସ୍କା ମହିଳାଙ୍କ ପରି। ତା' ଆଖିରୁ ଏମିତି ଅନବରତ ଲୁହ ବୋହୁଛି କାହିଁକି ? ଅନୁପମା କିଛି ବୁଝୁ ନ ଥିଲା। ଅଧା ଭୋକ, ଅଧା ଭୟରେ ଆଖି ପତା ବନ୍ଦ ହୋଇ ଯାଉଥିଲା ତା'ର। ସେଇଠି ଦିଦିର ଶାଢ଼ିକୁ ମୁଠେଇ ଧରି ମାଟିଟା ଉପରେ ଶୋଇ ପଡ଼ିଲା ସେ।

କେତେ ବେଳ ହେବ କେଜାଣି, କାନ୍ଦର ଗୋଟାଏ ବିରାଟ ଲହରୀ ଘର ଭିତରକୁ ଦୋହଲାଇ ଦେଲା। ଧଡ଼ପଡ଼ ହୋଇ ଉଠି ବସିଲା ଅନୁପମା। ଝର୍କା ଦେଇ ସୂର୍ଯ୍ୟର ପ୍ରଥମ କିରଣ ଘର ଭିତରକୁ ପଶି ଆସିଛି। ରାତି କଟିଯାଇ ସକାଳ ହେଲାଣି। ତା' ପାଖରୁ ଉଠିଯାଇ ବାବାଙ୍କ ବାଁ ପାଦ ପାଖରେ ବସି

ରହିଛି ଦିଦି। ଅନ୍ୟ ପାଖରେ ମା'। ବାବାଙ୍କ ମୁଣ୍ଡ ପାଖରେ ବସି ରହିଛି କିଏ ? ଦାଦା !! ସେ କେତେବେଳେ ଆସିଲା ?

ହେଲେ ଏମିତି ସମସ୍ତେ ବଡ଼ ପାଟି କରି କନ୍ଦାକଟା କରୁଛନ୍ତି କାହିଁକି ?

"ଦେ ରେ ବାପା ଅନିରୁଦ୍ଧ, ବାବା ପାଟିରେ ଟିକିଏ ଗଙ୍ଗା ଜଳ ଦେ।" କିଏ ଜଣେ ମୋଟା କଣ୍ଠରେ କହି ପକେଇଲେ।

ବାଁ ହାତରେ ଆଖିଟା ପୋଛି ନେଇ ଦାଦା ବାବାଙ୍କ ପାଟିରେ ସାମୁକାଏ ଗଙ୍ଗାଜଳ ଦେଲା। ପ୍ରଥମ ଥର ପାଣିଟା ଭିତରକୁ ଗଲା, କିନ୍ତୁ ଦ୍ୱିତୀୟ ଥରର ପାଣିଟା ଓଠ ଦେଇ ଗଡ଼ି ଆସିଲା ତଳକୁ। ଜୋରରେ ଥରେ ନିଶ୍ୱାସ ନେଲେ ବାବା। ତା'ପରେ ମୁଣ୍ଡଟା ଢଳିଗଲା ଡାହାଣ ପଟକୁ। ଓଠ ଦିଇଟା ସାମାନ୍ୟ ମେଲି ହୋଇଗଲା।

ସହରଟାଯାକ ଲୋକ କେଇଟା ମୁହୂର୍ତ୍ତ ଭିତରେ ଜାଣିଗଲେ ଖବରଟି। ସତ୍ୟପ୍ରିୟ ମୁଖୋପାଧ୍ୟାୟ ଚାଲିଗଲେ।

ବାବାଙ୍କୁ କୋକେଇରେ ଶୁଆଇ ରାସ୍ତାରେ ଖଇ କଉଡ଼ି ବିଞ୍ଚି ବିଞ୍ଚି ନେଇଯିବାର ଜମା ଦିନଟାଏ ହୋଇଛି, ଅଥଚ ମନେହେଉଛି ଯେମିତି ସବୁ କିଛି ଅନ୍ୟ ରକମ। ଜଣେ ମଣିଷ ଚାଲିଗଲେ କ'ଣ ଏମିତି ସଂସାରଟା ଓଲଟ ପାଲଟ ହୋଇଯାଏ ?

ସେଇ ଆଗର ଦିନ ଭଳି ବାରଣ୍ଡାରେ ବସି କହୁଣୀ ଭରାଦେଇ ଭାବି ହେଉଥିଲା ଅନୁପମା। ନା, ଆଜି ସେ ରବି, ଟୁଟୁ, ବାବୁଲ ପାଇଁ ଅପେକ୍ଷା କରି ବସିନାହିଁ। ସେମାନେ ଆଜି ଆସିବେ ନାହିଁ, ଭଲ କରି ଜାଣିଛି ସେ। ରୁନି ମଧ୍ୟ ଆସିବ ନାହିଁ; ତାକୁ ଅନ୍ୟ ଖେଳ ସାଥୀ ମିଳି ଯାଇଛି।

ଆଜି ଅନୁପମା ଏକା। ଛୋଟଙ୍କ ପୃଥିବୀ ତା'ଠୁ ଦୂରେଇ ରହିଛି। ଆଉ ବଡ଼ଙ୍କ ପୃଥିବୀରେ ତା'ର ପ୍ରବେଶ ନିଷେଧ।

ମୁହଁ ବଙ୍କେଇ ଘର ଭିତରକୁ ଚାହିଁଲା ସେ। ଭିତରେ ମା'ଙ୍କର ନାରଣ କାକା, ଚାରୁ କାକୀମା' ସାଙ୍ଗରେ କ'ଣ ସବୁ ଜରୁରୀ କଥାବାର୍ତ୍ତା ଚାଲିଛି।

ମା'ଙ୍କ ପାଦ ପାଖରେ ବସି ରହିଛି ଦାଦା। ପଛ ପଟେ ଠିଆ ହେଇଛି ଛୋଟ ଦା'।

ବିବ୍ରତ ସ୍ୱରରେ ହଠାତ୍ ନାରଣ କହି ଉଠିଲେ, "ତୁମେ ଏ ବିଷୟରେ ଆଉ ଟିକିଏ ଭାବ ବୌଦି। ...ପିଲାଙ୍କ ଭବିଷ୍ୟତ କଥା ତ ଭାବିବାକୁ ହେବ।"

ଚାପା ସ୍ୱରରେ ଶ୍ରଦ୍ଧା କହି ଉଠିଲେ, "ଭବିଷ୍ୟତ !! ଆଉ ମୁଁ ଭବିଷ୍ୟତ କଥା ଭାବିବି ନାହିଁ, ନାରଣ। ତୁମ ଦାଦା ସବୁବେଳେ ପିଲାଙ୍କ ଭବିଷ୍ୟତ ସଜାଡ଼ିବା ପାଇଁ ଭାବି ହେଉଥିଲେ। ବ୍ୟସ୍ତ ହେଉଥିଲେ। ହେଲେ ହେଲା କ'ଣ ? ହଠାତ୍ କରି ଯେ ତାଙ୍କୁ ଏମିତି ଚାଲିଯିବାକୁ ହେବ ଏକଥା କ'ଣ ସେ ନିଜେ ଜାଣିଥିଲେ ? ତାଙ୍କ ପିଲାଏ ଯେ ଏମିତି କମ୍ ବୟସରୁ ପିତୃହରା ହେଇଯିବେ, ଏକଥା କ'ଣ ସେ ସ୍ୱପ୍ନରେ ବି ଭାବିଥିଲେ ? ...ଛାଡ଼ ସେସବୁ କଥା। ମୁଁ ମୋ କର୍ତ୍ତବ୍ୟ କରିଯିବି। ପିଲାଙ୍କ ଭବିଷ୍ୟତ ପିଲାଏ ନିଜେ ଗଢ଼ିନେବେ, ନାରଣ।"

"ଶ୍ରଦ୍ଧା ଦିଦି," ଚାରୁ ଶ୍ରଦ୍ଧାଙ୍କ ହାତ ଉପରେ ହାତ ରଖି କହିଲେ, "ତୁମେ ଆମ୍ବ ବଗିଚା ପାଖ ଜମି ଉପରେ ଘର ଖଣ୍ଡିଏ କରିବା ପାଇଁ କେତେ କଳ୍ପନା ଜଳ୍ପନା କରି ରଖିଥିଲ। ଏବେ ପାଣି ଦରରେ ଜମିଟାକୁ ବିକ୍ରି କରିଦେବ ?"

ଦୀର୍ଘ ନିଶ୍ୱାସ ନେଲେ ଶ୍ରଦ୍ଧା। "କ'ଣ ଆଉ କରିବି ରେ ଚାରୁ। ତୋ ଦେଢ଼ଶୁରଙ୍କ ଶ୍ରାଦ୍ଧ ଯଦି ଭଲରେ ନ ହୁଏ, ତେବେ ମୋ ଭିତରେ ଚିରଦିନ ପାଇଁ ଅସନ୍ତୋଷ ରହିଯିବ। ଥାଆନ୍ତା କି କିଛି ପୋତାଧନ, ତା'ହେଲେ ମୁଁ ଜମା ସେ ଜମିରେ ହାତ ଦେଇ ନ ଥାଆନ୍ତି। ଦି' ଚାରି ଖଣ୍ଡ ଗହଣା ରହିଛି। ହେଲେ ସେସବୁ ତ ଦରକାର ହେବ ଅର୍ଚ୍ଚନା, ଅନିଙ୍କ ବାହାଘର ବେଳେ। ସେତକ ଏବେ ବିକ୍ରି କରିଦେଲେ ପରେ ଆଉ ଗଢ଼ି ପାରିବି କି ନାହିଁ କିଏ ଜାଣେ। ଯେଉଁ ତ ପୋଡ଼ା ଭାଗ୍ୟ ମୋର। ...ଜମି ପଛକେ ଯାଉ, ପଡ଼ିଥାଉ ସେତକ ଗହଣା।"

ଏହାପରେ ବୋଧହୁଏ ନାରଣ କି ଚାରୁଙ୍କର କିଛି କହିବାର ନ ଥିଲା। "ଠିକ୍ ଅଛି ବୌଦି, ତୁମେ ଯାହା ଚାହୁଁଛ, ସେୟା ହେବ।"

"ନାରଣ," ଅନୁନୟ ହେଇ ଶ୍ରଦ୍ଧା କହିଲେ, "ମୋର ଏଇ କାମଟା ତୁମକୁ କରିଦେବାକୁ ହେବ ଭାଇ। ଜମିଟା ବିକ୍ରି କରେଇ ଦେବାକୁ ହେବ। ମୁଁ ଏକା ସ୍ତ୍ରୀ ଲୋକ। ଘର ବାହାରେ କେବେ ପାଦ ଦେଇନି। ଆଉ ଏ

ପୁଅ ଦି'ଟା ତ ମୋର ଏପର୍ଯ୍ୟନ୍ତ ପାରି ଉଠି ନାହାନ୍ତି..."

"ବୌଦି, ତୁମେ ଚିନ୍ତା କରନି। ତୁମ ଜମି ବିକ୍ରି ହେଇଯିବ। ଅସୁବିଧାରେ ପଡ଼ିଛ ବୋଲି ପାଣି ଦରରେ ଜମି ବିକ୍ରି ହେବାକୁ ମୁଁ ଦେବିନି। ବଜାରର ଦର ଯାହା, ତା' ବୁଝି ମୁଁ ନିଜେ କିଣି ନେବି।" ଆଖି ଲୁହ ଲୁଚେଇବାକୁ ନାରଣ ଉଠିଗଲେ।

ଶ୍ରଦ୍ଧା କିଛି ସମୟ ନିରବ ହେଇ ସେଇ ଘରେ ବସି ରହିଲେ। ଦେହରୁ ସବୁ ଶକ୍ତି ଯେମିତି ନିଗିଡ଼ି ଯାଇଛି। ଉଠିବାର କ୍ଷମତା ନାହିଁ। କିଛି କରିବାର ସ୍ପୃହା ନାହିଁ। ଏତେ ଶୀଘ୍ର ସବୁ ସରିଗଲା ?

"ମା'..." ଅନିରୁଦ୍ଧ ସ୍ୱରରେ ଶ୍ରଦ୍ଧା ମୁହଁ ଘୂରାଇଲେ।

"ଖବର ଦେବାକୁ ହେବ। ଜେଠୁମାନଙ୍କୁ। ଦିଦିମା'ଙ୍କୁ। ଆଉ ତୁମେ ଯାହାକୁ ଯାହାକୁ କହିବ।"

"ହଁ।" ଆଖି ଲୁହ ପୋଛି ଉଠି ଠିଆ ହେଲେ ଶ୍ରଦ୍ଧା। ଏବେ ତାଙ୍କୁ ହିଁ ଦଣ୍ଡ ଧରିବାକୁ ହେବ। ଏମିତି ଭାଙ୍ଗି ପଡ଼ିଲେ ବାକୀ ସବୁ କାମ ହେବ କେମିତି ? କ'ଣ କେମିତି କରିବେ ପିଲାମାନେ ?

"ବାବାରେ, ଆଜି ଲୋକ ପଠେଇବାକୁ ହେବ ସବୁ ଆଡ଼େ। କଲିକତାକୁ କିଏ ଯାଇ ପାରିବ କି ?"

"ହଁ ମା'। ନାରଣ କାକା କହୁଥିଲେ ସେ ଜଣେ ଦି'ଜଣଙ୍କ ସାଙ୍ଗରେ କଥା କହି ସାରିଛନ୍ତି। ...ତୁମେ ଚିନ୍ତା କରନି, କେହି ରାଜି ନ ହେଲେ ମୋ ସାଙ୍ଗମାନେ ତ ଅଛନ୍ତି। ସେମାନେ ଦୌଡ଼ାଦୌଡ଼ି କରି ସବୁଆଡ଼େ ଖବର ଦେଇ ଆସିବେ।"

"ଆଚ୍ଛା।"

ସତ୍ୟପ୍ରିୟ ମୁଖୋପାଧ୍ୟାୟଙ୍କର ଚାଲିଯିବା ଖବର ଆଗ ପଠା ହେଲା ତାଙ୍କ ଭାଇମାନଙ୍କ ପାଖକୁ। କିନ୍ତୁ ସେମାନେ କେହି ଆସି ନ ଥିଲେ। କେବଳ ଖବର ଆସିଥିଲା ଯେ ସେମାନେ ସେଇଠି ଗାଁରେ ପୁରୋହିତଙ୍କ କଥା ମାନି ଶୁଦ୍ଧ ହୋଇଯିବେ। ନିଜେ ସତ୍ୟ ଯେତେବେଳେ ସଂପର୍କ କାଟିଦେଇ ଚାଲିଯାଇଥିଲା, ସେମାନେ ତା' ପାଇଁ ଆଉ ଅଧିକା କିଛି କରିବା ବା ପାଳିବାର ଆବଶ୍ୟକତା ନାହିଁ ବୋଲି ପଣ୍ଡିତେ କହିଛନ୍ତି।

ସେଇ ଏକାଦିନ ଖବର ଗଲା ଶ୍ରଦ୍ଧାଙ୍କର ବାପଘର ଗାଁକୁ। ଖବର ନେଇ ଯାଇଥିଲା ରାଖାଲ। ନାରଣଙ୍କର ଦୂର ସମ୍ପର୍କୀୟ ଭାଇ ଜଣେ।

ଶ୍ରଦ୍ଧାଙ୍କ ବାପଘର ଦିନେ ଧନ ଜନ ଗୋପ ଲକ୍ଷ୍ମୀରେ ଭରିକରି ଥିଲା। କିନ୍ତୁ ସେସବୁର ଦେଖା ଚାହାଁ ତାଙ୍କର ବାପା ଠିକ୍ ଭାବରେ କରିପାରିଲେ ନାହିଁ। ସହଜେ ଦାନ ଧର୍ମର ମନୋବୃତ୍ତି; ତା' ଉପରେ ପୁଣି ଦୁଇ ଦୁଇଟା ବିଧବା ଭଉଣୀଙ୍କ ସଂସାରର ଖର୍ଚ୍ଚ। ସେଇ ଭଉଣୀମାନଙ୍କର ଅକୃତଜ୍ଞ ପିଲାଙ୍କୁ ମଣିଷ କରି, ନିଜ ଝିଅମାନଙ୍କର ବାହାଘର କରି ସାରିବା ପରେ ଖୁବ କମ୍ ସମ୍ପତ୍ତି ବାକୀ ରହିଥିଲା। କିନ୍ତୁ ଶ୍ରଦ୍ଧାଙ୍କ ବାପାଙ୍କୁ ନିଜର ଅର୍ଥାଭାବ ବୁଝିବାକୁ ବା ଭୋଗିବାକୁ ହେଇ ନ ଥିଲା।

ପୁଅ ବାହାଘରର କେଇଟା ଦିନ ପରେ ଦିନେ ଅଚାନକ ଭାବରେ ସ୍ତ୍ରୀଙ୍କ ହାତ ଓ କପାଳ ଶୂନ୍ୟ କରିଦେଇ ସେ ସଂସାର ଛାଡ଼ିଥିଲେ। ରାତିରେ ମଣିଷଟି ଖାଇ ପିଇ ଶୋଇଥିଲା। ସକାଳକୁ ସବୁ ଶେଷ। ସମସ୍ତେ କହିଥିଲେ ସୁଖ ମୃତ୍ୟୁ।

ଟାଣୁଆ ମଣିଷ ଶ୍ରଦ୍ଧାଙ୍କ ମା'। ସେ ଭାଙ୍ଗି ପଡ଼ି ନ ଥିଲେ। ମନରେ ଜୋର ଆଣି ନିଜ ଜୀବନକୁ ସଜାଡ଼ି ନେଇଥିଲେ। ଏଠି ସେଠି ବାକୀ ରହିଯାଇଥିବା ଟିକି ସୋରିଷ ପ୍ରମାଣର ସମ୍ପତ୍ତିକୁ ଏକାଠି କରି ସେ ନିଜ ପାଇଁ ଚଳିବାର ବ୍ୟବସ୍ଥା କରି ନେଇଥିଲେ। ଯେମିତିକି ଜୀବନର ଶେଷ ଅବସ୍ଥାରେ କାହା ପାଖରେ ହାତ ପତେଇବାକୁ ନ ହୁଏ।

ଝିଅମାନେ ତ ସହଜେ ପରଘରୀ। ପୁଅ ପାଖରୁ ବି ମନ ତୁଟି ସାରିଛି।

ଗୋଟିଏ ବୋଲି ପୁଅ ତାଙ୍କର। ବିନୟ। ସବୁଠାରୁ ସାନ। କେତେ ଆଦର ଯତ୍ନରେ ତାକୁ ବଢ଼େଇ ଥିଲେ। କେତେ ଦେଖି ଚାହିଁ ତାକୁ ବାହା କରେଇଥିଲେ। ହେଲେ କଲିକତାରେ ବଢ଼ିଥିବା ବୋହୂ ଗାଁରେ ଚଳି ପାରିଲା ନାହିଁ। ବିନୟ ତାକୁ ବୁଝେଇବା ଦୂରେ ଥାଉ, ନିଜେ କଲିକତି ଥାଟ ଦେଖି, ଶ୍ୱଶୁର ଘର ବିଷୟ ସଂପତ୍ତି ଦେଖି ଭଳିଗଲା। ତା'ର ଏମିତି ମତିଭ୍ରମ ହେଲା ଯେ ଶେଷରେ ସେ ଘର ଜୋଇଁ ହୋଇ କଲିକତାରେ ରହିଗଲା।

ଏବେ ଗାଁର ସାତ ପୁରୁଷୀ ଭିଟାମାଟିରେ ବୁଢ଼ୀ ଏକା।

ରାଖାଲର ଡାକରେ ସେ ହିଁ ବାହାରକୁ ବାହାରି ଆସିଲେ। ''କିଏ ?

କାହାକୁ ଖୋଜୁଛ ବାବା ?''

ବାଳ ପାଚି ଯାଇଛି। ଆଖି କୋରଡ଼ରେ ପଶି ଯାଇଛି। କେଇଟା ଦାନ୍ତ ନାହିଁ। ହେଲେ ଏବେ ବି ଶକ୍ତ ସାମର୍ଥ ବୁଢ଼ୀ। ଚୁଲି ଲିପୁଥିଲେ କି କ'ଣ, ସେଇ ଗୋବର ମଖା ହାତରେ ବାହାରକୁ ବାହାରି ଆସିଛନ୍ତି।

ତାଙ୍କୁ କିଛି ସମୟ ଚୁପ ହେଇ ଦେଖିଲା ରାଖାଲ।

''କିଏ ବା ତମେ ?'' ବୁଢ଼ୀଙ୍କର ସାମାନ୍ୟ ବିରକ୍ତି ମିଶା କଥାରେ ରାଖାଲ ସମ୍ବିତ ପାଇଲା। ଘରେ ଆଉ କେହି ନାହାନ୍ତି। ଏଡ଼େ ବଡ଼ କଥାଟା ସିଧାସଳଖ ବୁଢ଼ୀଙ୍କୁ କହିବାକୁ ହେବ ?

ନ କହି ଉପାୟ କ'ଣ ଯେ! ମନକୁ ଶକ୍ତ କରି ରାଖାଲ ପାଟି ଖୋଲିଲା। ''ମାସୀମା', ମୁଁ ପାବନାରୁ ଆସିଛି। ଆପଣଙ୍କୁ ଖବର ଦେବାର ଥିଲା...''

''ପାବନାରୁ ? ଶ୍ରଦ୍ଧା ପଠେଇଛି ତମକୁ ? ସେଇ କଥା କହୁନ।'' ରାଖାଲର କଥା ଶେଷ ହେବା ଆଗରୁ ବୁଢ଼ୀ ଦୁଇ ପାଟି ହସ ହସିନେଇ କହିଲେ।

''ନା, ମତେ ନାରଣ ମିତ୍ର ପଠେଇଛନ୍ତି। ଖବର ଦେଇ...''

''ନାରଣ ମିତ୍ର ? ସେ କିଏ ?? ଶ୍ରଦ୍ଧା ପାଖ ଘରେ ଯିଏ...'' ଶ୍ରଦ୍ଧାଙ୍କ ମା'ଙ୍କ ମନରେ ବୋଧହୁଏ କିଛି ଭୟ ବସା ବାନ୍ଧିଯାଇଥିଲା। ନ ହେଲେ କାହିଁକି ତାଙ୍କର ଗଳାର ସ୍ୱର ଏମିତିଆ ଶୁଣା ଯାଇଥାଆନ୍ତା ? ପାଟିର କଥା ନ ହେଲେ କାହିଁକି ଜଡ଼େଇ ହେଇ ଯାଇଥାଆନ୍ତା ?

''ଆଜ୍ଞା।'' ରାଖାଲ ଛେପ ଢୋକିଲା। ତା'ପରେ ମନକୁ ଶକ୍ତ କରି ଏକା ନିଶ୍ୱାସକେ କହି ପକେଇଲା, ''ସତ୍ୟପ୍ରିୟ ବାବୁ ଚାଲିଗଲେ, ମାସୀମା'। ସବୁ ଦିନ ପାଇଁ।''

ଶ୍ରଦ୍ଧା ମା'ଙ୍କର ଆଖି ଜଳି ଉଠିଲା। ସେ ଚିତ୍କାର କରି ଉଠିଲେ, ''କାହିଁକି ସକାଳୁ ସକାଳୁ ଏମିତି ଅଶୁଭ କଥା ସବୁ ତୁଣ୍ଡକୁ ଆଣୁଛ ? ମୋ ଝିଅ ତୁମର କ'ଣ କ୍ଷତି କରିଛି ଯେ ତା'ର ଏତେ ବଡ଼ ସର୍ବନାଶ ଚିନ୍ତା କରୁଛ ?''

''ମାସୀମା' ଗୋ, ଏମିତିଆ କଥା କ'ଣ କିଏ ବନେଇ ଚୁନେଇ କହିବ ? ଆମର ସବୁ ଭାଗ୍ୟ ଖରାପ। ନ ହେଲେ ଏତେ କମ୍ ବୟସରେ ଏମିତି ଭାବରେ କ'ଣ ସତ୍ୟପ୍ରିୟ ବାବୁ ଚାଲିଯାଇଥାଆନ୍ତେ ?'' ଶ୍ରଦ୍ଧା ମା'ଙ୍କ କଥାରେ ଆଦୌ ଅପମାନିତ ନ ହେଇ ଛଳ ଛଳ ଆଖିରେ ରାଖାଲ କହିଥିଲା।

ଏତେବେଳକେ କଥାର ଭୟାବହତା ବୁଢ଼ୀଙ୍କ ଶୁଖିଲା ଚମଡ଼ା ଭିତରେ ପଶିପାରିଲା । ରାଖାଲର ଭଙ୍ଗା ଭଙ୍ଗା ଗଳାରୁ ବାହାରି ଆସିଥିବା ଚରମ ସତ୍ୟକୁ ସେ ଆଉ ଅସ୍ୱୀକାର କରି ପାରିଲେ ନାହିଁ ।

''ଶ୍ରଦ୍ଧା ମା' ଲୋ ।'' ହାଉଳି ଖାଇ ସେ ସେଇଠି ବସିଗଲେ ।

''ତୋର ଏ ଦୁର୍ଦ୍ଦଶା କିଏ କଲା ଲୋ ମା' । କାହାର କୁଦୃଷ୍ଟି ତୋ ଶଙ୍ଖା ସିନ୍ଦୂର ଉପରେ ପଡ଼ିଗଲା ଲୋ ! ବିଧାତା ଏଇ ବୟସରୁ ତୋ ଖାଇବା ପିନ୍ଧିବା ଦିନ ସାରିଦେଲା !!'' ଓଠ ଥରି ଥରି ପାଟି କଣରୁ ଲାଳ ଗଡ଼ି ଆସୁଛି । ଆଖି ଲୁହ ଝରି ମିଶିଗଲାଣି ସେଥିରେ । କେଉଁଠିକି ଦୃଷ୍ଟି ନାହିଁ । ''ହରି ହେ, ଏଇ ଖବର ଶୁଣାଇବାକୁ ଏତେ ଦିନ ଧରି ମତେ ବଞ୍ଚାଇ ରଖିଥିଲ !!'' ବାରମ୍ବାର ଏଇ କଥା ପଦକ ବିଡ଼ିବିଡ଼େଇ ଉଠୁଛନ୍ତି ସେ ।

''ମାସୀମା', ଧୈର୍ଯ୍ୟ ଧର । ଏମିତି ବ୍ୟସ୍ତ ହେଲେ ସେଠି ଅନ୍ୟମାନଙ୍କୁ ଦେଖିବ କିଏ ? ...ଆପଣଙ୍କୁ ସାଙ୍ଗରେ ନେଇ ଯିବାକୁ ନାରଣ ଦା' କହିଛନ୍ତି । ସେଠି ସବୁ କାମ ଅଟକି ଅଛି ।''

''ହଁ, ଯିବି । ମୁଁ ଏବେ ଯିବି । ମୋ ମା'ଟା ସେଠି କେତେ ବାଡ଼େଇ କଚାଡ଼ି ହେଉଥିବ ! ମୋ ମା' ଲୋ...'' ଆଖି ଲୁହ ଶାଢ଼ି କାନିରେ ପୋଛି ନେଇ ଉଠି ବସିଲେ ସେ । ବାତୁଳୀଙ୍କ ଭଳି ଘର ଭିତରେ ପଶି ଯାଉ ଯାଉ ଆଖି ଲୁହରେ ଅନ୍ଧୁଣୀ ହେଇଗଲେ କି କ'ଣ, ଦୁଆର ବନ୍ଧଟାକୁ ଦେଖି ପାରିଲେ ନାହିଁ । ହଠାତ୍ କରି ଝୁଣ୍ଟି ମୁହଁ ମାଡ଼ି ପଡ଼ିଗଲେ ସେଇଠି ।

ରାଖାଲ ଧାଇଁ ଆସିଲା । ରାସ୍ତାରେ ଯାଉଥିବା କେଇ ଜଣ ହାଁ ହାଁ ହେଇ ଦୌଡ଼ି ଆସିଲେ । ହେଲେ ସେତେବେଳକୁ ଯାହା ହେବା କଥା ହେଇ ସାରିଥିଲା । ମୁଣ୍ଡ ଫାଟି, ଡାହାଣ ହାତ ଭାଙ୍ଗି ସେ କି ଦୂରବସ୍ଥା ! ଆଉ ଝିଅ ପାଖକୁ ଯିବେ କ'ଣ ?

ଗାଁ ଲୋକଙ୍କର ସାହାଯ୍ୟ ନେଇ ବୁଢ଼ୀଙ୍କର ଦେଖା ଚାହାଁର ବ୍ୟବସ୍ଥାଟିଏ କରି ଦେଇ ରାଖାଲକୁ ଏକା ଏକା ପାବନା ଫେରି ଆସିବାକୁ ହେଲା ।

ରାଖାଲ ଯେତେବେଳେ ଶ୍ରଦ୍ଧାଙ୍କ ବାପଘର ଗାଁକୁ ଯାଇଥିଲା, ସେଇ ଏକା ସମୟରେ ଲୋକ ପଠା ହେଇଥିଲା ତାଙ୍କ ଭଉଣୀମାନଙ୍କର ଶାଶୂଘର ଗାଁକୁ ।

ଅନ୍ୟ ଜଣେ ଯାଇଥିଲା କଲିକତା । ତାଙ୍କ ସାନ ଭାଇ ବିନୟକୁ ଖବର

ଦେବାକୁ ।

ଭଉଣୀମାନଙ୍କ ପକ୍ଷରେ ଆସିବା ସମ୍ଭବ ହେଲାନାହିଁ । ସେମାନେ କିଛି କିଛି ଟଙ୍କା ପଠେଇ ଦେଇ ଆଖିରୁ କେବଳ ଲୁହ ଢାଳିଥିଲେ ସାନ ଭଉଣୀର ଏ ଦୂରବସ୍ଥା ପାଇଁ । ହେଲେ ଖବର ପାଇ ସାଙ୍ଗେ ସାଙ୍ଗେ ଚାଲି ଆସିଥିଲା ବିନୟ । ପାଖରେ ଠିଆ ହୋଇଥିଲା । ଜବରଦସ୍ତି ହାତରେ ଟଙ୍କା ଗୁଞ୍ଜିବାକୁ ଚେଷ୍ଟା କରିଥିଲା । କିନ୍ତୁ ଶ୍ରଦ୍ଧାଙ୍କ ଭଳି ସ୍ୱାଭିମାନୀ ମଣିଷ ଘର ଜୋଇଁ ହେଇଯାଇଥିବା ସାନ ଭାଇଠୁ ପୁଣି ଟଙ୍କା ନେଇ ଥାଆନ୍ତେ ?

"ଟଙ୍କା କ'ଣ ହେବରେ ବୁନୁ । ଏଇ ଦେଖୁନୁ ସବୁ କାମ ପାଇଁ ଟଙ୍କା ରହିଛି ।" ଜମି ବିକ୍ରି ଟଙ୍କା ସାନ ଭାଇକୁ ଦେଖାଇ ଥିଲେ ଶ୍ରଦ୍ଧା । ପୁଣି ମୁହଁ ଘୂରାଇ ନେଇ ଯୋଡ଼ିଥିଲେ, "ତୋ ଜାମାଇ ବାବୁ ସବୁ ବ୍ୟବସ୍ଥା କରି ଯାଇଛନ୍ତି ରେ ।"

"ଥାଉ ଛୋଟ ଦି । ମୁଁ ନାରଣ ଦା'ଠୁ ସବୁ ଶୁଣିଛି," ଆହତ ସ୍ୱରରେ ବିନୟ ଉତ୍ତର ଦେଇଥିଲା, "...ମୁଁ ଥାଉ ଥାଉ ତୁ ଜମି ବିକ୍ରି କରି ଦେଲୁ ?"

"କ'ଣ ହେଇଗଲା ସେଇଠୁ ? ପରେ ପୁଣି ପିଲାଏ ଚାକିରି ବାକିରି କଲେ ଜମି ଘର ହେବନି କି ?"

ଚଟ୍ କରି ମୁହଁ ବୁଲାଇ ତା' ଉପର ଭଉଣୀକୁ ଦେଖିଲା ବିନୟ । ଏତେ ଦମ୍ଭ ? ଏତେ ବିଶ୍ୱାସ ? ଅଥଚ ଏଇ ଛୋଟ ଦି'ର ସାନ ଭାଇ ହେଇ ସେ କେମିତି ନିଜ ସଂସାର ନିଜେ ମୁଣ୍ଡାଇବାର ସାହସ ରଖି ପାରିଲା ନାହିଁ! କ୍ଷଣିକ ଆନନ୍ଦର ମୋହରେ କେମିତି ନିଜକୁ ବିକ୍ରି କରିଦେଲା ନିର୍ଦ୍ୱନ୍ଦ୍ୱରେ !

ଏବେ ତା'ର ସବୁ ଥାଇ ମଧ୍ୟ ଯେମିତି କିଛି ନାହିଁ । ନିଜେ ବେକ ଗଳେଇଛି ବଳି କାଠରେ, ବାହାରିବାର ସାମର୍ଥ୍ୟ କାହିଁ ?

ନିରବ ଭାବରେ ଦୀର୍ଘ ନିଶ୍ୱାସ ନେଲା ବିନୟ । ଧୀରେ ଧୀରେ କହିଲା, "ଠିକ୍ କହିଲୁ, ଛୋଟ ଦି' । ତୋ ପିଲାଏ ତ ଭଲ ପାଠ ପଢୁଛନ୍ତି । ନିଶ୍ଚେ ଦିନେ ଭଲ ଭଲ ଚାକିରି କରିବେ । ଆଉ ତୋର ସବୁ ଦୁଃଖ ଯିବ । ...ହେଲେ ଛୋଟ ଦି, ସେମାନଙ୍କ ପାଠ ବନ୍ଦ କରିବୁନିଟି ।"

କିଛି ନ କହି ଚୁପ୍ ରହିଥିଲେ ଶ୍ରଦ୍ଧା । ଜୋର ଦେଇ କିଛି କହିବାକୁ ସାହସ ନାହିଁ । କିଏ ଜାଣେ ତାଙ୍କ ଭାଗ୍ୟରେ କ'ଣ ଲେଖା ଅଛି । ଚାରି

ଚାରିଟା ପିଲାଙ୍କର ପାଠ ପଢ଼ା ସେ କ'ଣ ସତରେ ସମ୍ଭାଳି ପାରିବେ ? ସେଥିରେ ପୁଣି ଅନିରୁଦ୍ଧର ମେଡ଼ିକାଲ ପାଠ ।

"ଛୋଟ ଦି, ଗୋଟିଏ ଅନୁରୋଧ କରିବି । ରଖିବୁ ?" ହଠାତ୍ ଅନୁନୟ ଭରା ସ୍ୱରରେ ବିନୟ କହି ଉଠିଲା ।

"କ'ଣ କହ ।"

"ମୋତେ ଅନିରୁଦ୍ଧର ପଢ଼ା ଦାୟିତ୍ୱ ଦେ ନା଼ରେ ଛୋଟ ଦି ।"

"ଅନିରୁଦ୍ଧର ପଢ଼ା ! ମେଡ଼ିକାଲ୍ ପଢ଼ା !!"

"ହଁ । ତାକୁ ଢାକାରୁ ନେଇ ଆସି କଲିକତାରେ ପଢ଼େଇବି ମୁଁ । ତା'ର ପାଠକୁ ପାଠ ହେବ । ଆଉ ମୁଁ ବି ତା' ଉପରେ ଆଖି ରଖି ପାରିବି ।"

ମାମୁ ପଛେ ଲାଙ୍ଗୁଡ଼ ଭଳି ବୁଲୁଥିବା ଅନୁପମା କାନରେ ଏଇ କଥା କେତେ ପଦ ପଡ଼ିଯାଇଥିଲା ।

କଲିକତା ? ଦାଦା କଲିକତାରେ ପଢ଼ିବ ?? ଇସ୍ - କି ମଜା ତା'ର । ଅଦେଖା କଲିକତାକୁ ମନେ ମନେ କଳ୍ପନା କରି ନେଇ ଉଲ୍ଲସିତ ହେଇ ଉଠିଥିଲା ଅନୁପମା ।

ଆଉ ଶ୍ରଦ୍ଧା ? ଶ୍ରଦ୍ଧା ତ ଆଶ୍ୱା ବାଡ଼ି ପାଇ ଯାଇଥିଲେ ।

ଭଲରେ ଭଲରେ ଶ୍ରାଦ୍ଧ ହେଇଗଲା । କୌଣସି କିଛିର ଅଭାବ ରହିବାକୁ ଶ୍ରଦ୍ଧା ଦେଇ ନ ଥିଲେ । ବ୍ରାହ୍ମଣ ଭୋଜନ, ମତ୍ସ୍ୟମୁଖୀ - ସବୁ ସୁଚାରୁ ରୂପେ ହେଇଗଲା ।

ଏଠୁ ସେଠୁ ଯେଉଁ କେତେ ଜଣ ଦୂରବନ୍ଧୁ ଖବର ପାଇ ଆସିଥିଲେ ସେମାନେ ଚାଲିଗଲେଣି । ବିନୟ ମଧ୍ୟ ଆଉ ଥରେ ଅନିରୁଦ୍ଧର ଦାୟିତ୍ୱ ନେବା କଥା ଶ୍ରଦ୍ଧାଙ୍କୁ କହି ଦେଇ ଫେରିଗଲାଣି କଲିକତା ।

ସେ କଲିକତା ଫେରିଯିବା ପରେ କେତେ ଦିନ ଗୁମ୍ ହୋଇ ରହିଲା ଅନିରୁଦ୍ଧ । ତା'ପରେ ଦିନେ ଆସି ରୁଦ୍ଧ ସ୍ୱରରେ ମା'ଙ୍କୁ କହିଲା, "ମୁଁ ଆଉ ପଢ଼ିବିନି ମା' । ପଢ଼ା ଛାଡ଼ି ଦେବି ।"

ବଜ୍ର ଯେମିତି ପଡ଼ିଥିଲା ଶ୍ରଦ୍ଧାଙ୍କ ମୁଣ୍ଡରେ । "ପାଗଳ ହେଲୁ କିରେ ବାପା ?"

''ନା ମା', ମୁଁ ପାରିବି ନାହିଁ। ଏତେଟା ସ୍ୱାର୍ଥପର ହୋଇ ପାରିବି ନାହିଁ। ମୋ ପଢ଼ା ଖର୍ଚ୍ଚ ମାମୁ ଦେବେ। ଆଉ ବାକୀ ଭାଇଭଉଣୀଙ୍କ ପଢ଼ା ଖର୍ଚ୍ଚ ଦେବ କିଏ? କିଏ ତମମାନଙ୍କୁ ତିନିବେଳା ଖାଇବା ଯୋଗାଇବାର ବ୍ୟବସ୍ଥା କରିବ? ମାମୁଙ୍କ ପାଇଁ କ'ଣ ଏତେ କରିବା ସମ୍ଭବ? ତୁମେ କହ। ...ତା'ଛଡ଼ା ମୁଁ କ'ଣ ତୁମକୁ ଜାଣିନି। ମାମୁ ତୁମକୁ ସାହାଯ୍ୟ କରିବାକୁ ଚାହିଁଲେ ବି ତୁମେ ହାତ ପାତି କିଛି ନେବନି।''

''ତୁ ଏତେ ଭାବି ହେଉଛୁ କାହିଁକି କହ ତ। ମୁଣ୍ଡ ଉପରେ ଠାକୁର ଅଛନ୍ତି। ଦେଖିବୁ, ସେ ଠିକ୍ ଚଳେଇ ନେବେ ଆମକୁ।'' ମୁହଁରେ ଶୁଖିଲା ହସ ଖେଳାଇ ଶ୍ରଦ୍ଧା କହିଥିଲେ। ''ବୃନ୍ଦୁର ସାହାଯ୍ୟ ନେବା କି ପ୍ରୟୋଜନ।''

''ତା'ହେଲେ ମୋ ପଢ଼ା ଦାୟିତ୍ୱ କାହିଁକି ତାଙ୍କୁ ଦେଉଛ? ସେଇଟା ବି ଏକରକମ ହାତ ପାତି ସାହାଯ୍ୟ ନେବା ହେଲା ନାହିଁ କି?''

''ସେ ଅନ୍ୟ କଥା।''

''ଅନ୍ୟ କଥା!! ଅନ୍ୟ କଥା କେମିତି? ...ତୁମେ ମତେ ଭୁଲେଇବାର ଚେଷ୍ଟା କରନି ମା'। ମୁଁ କ'ଣ ଆଉ ଛୁଆଟିଏ ହୋଇ ଅଛି? ...ତା'ଛଡ଼ା ମୁଁ ଚାଲିଗଲେ ଏଠି ତୁମର ସବୁ କ'ଣ ହେବ?''

''କିଛି ନା କିଛି ବ୍ୟବସ୍ଥା ହୋଇଯିବରେ।''

''କ'ଣ ବ୍ୟବସ୍ଥା କରିବ ତୁମେ ମା'? କାହା ଘରେ ଯାଇ ବାସନ ମାଜିବ? ଘର ଓଳା ପୋଛା କରିବ?'' ଅନିରୁଦ୍ଧର ଆଖିରେ ଲୁହ ଭରି ହୋଇଯାଇଥିଲା। ''ମୁଁ ଥାଉ ଥାଉ ମୋ ଭାଇ ଭଉଣୀ ଅନ୍ୟର ଅଇଁଠା ଖାଇବେ? ଆଉ ତୁମେ କହୁଛ ଯେ ଅଚିନ୍ତ ଭାବରେ ମୁଁ ମାମୁଙ୍କ ପଇସାରେ ହଷ୍ଟେଲରେ ତିନି ବେଳା ଗୋଗ୍ରାସ ପକେଇ ବର୍ଷ ବର୍ଷ ଧରି କଲିକତାରେ ପଢ଼ିଯିବି। ନା ମା', ମୁଁ ପାରିବି ନାହିଁ।''

ଶ୍ରଦ୍ଧା ଅବାକ ହୋଇ କେବଳ ନିଜ ବଡ଼ ପୁଅକୁ ଦେଖୁଥିଲେ। ତାଙ୍କୁ କ'ଣ ଜଣାଥିଲା ଯେ ଆତ୍ମସମ୍ମାନ ଜଗିବାରେ ଅନିରୁଦ୍ଧ ବାପଠାରୁ ବି ଆଉ ପାଦେ ଆଗରେ ଅଛି। କେତେ ସ୍ୱପ୍ନ ନେଇ ଜନ୍ମ ଦେଇଥିଲେ ତାକୁ। କେତେ ଆଶା ସଜାଇ ରଖିଥିଲେ ତା' ପାଇଁ। ଏମିତି ସବୁ ପାଣିଫୋଟକା ଭଳି ମିଳେଇ ଯିବ?

''ବାବୁରେ, ତୋ ବାବାଙ୍କର କେତେ ଇଚ୍ଛା ଥିଲା ଯେ ତୁ ଡାକ୍ତର ହେବୁ, ରୋଗୀ ସେବା କରିବୁ, ଦେଶ ବିଦେଶରେ ନାଁ କରିବୁ...।''

ମା'ଙ୍କୁ ଆଉ କିଛି କହିବାକୁ ଦେଲା ନାହିଁ ଅନିରୁଦ୍ଧ, ''ଥାଉ ମା' ଥାଉ। ସମସ୍ତଙ୍କର ସବୁ ସ୍ୱପ୍ନ କ'ଣ ସତ ହୁଏ ? ବାବାଙ୍କର ଆହୁରି ବି ତ କେତେ ସ୍ୱପ୍ନ ଥିଲା - ଦେଶ ସ୍ୱାଧୀନ ହେବ। ଫୁଲ ଫଳରେ ଭରିଯିବ ପୃଥିବୀ। କେଉଁଠି କେହି ଗରିବ ରହିବେ ନାହିଁ। ଅଶିକ୍ଷିତ ରହିବେ ନାହିଁ। ହେଲା କି ସେମିତି କିଛି ?''

ଏହା ପରେ ଆଉ କ'ଣ କହିଥାଆନ୍ତେ ଶ୍ରଦ୍ଧା ? କହିବା ପାଇଁ ସତରେ କ'ଣ କିଛି ବାକୀ ଥିଲା ?

ଚୁପଚାପ ଭାବରେ କଟିଗଲା ସଂସାରର କେଇଟା ଦିନ। ତା'ପରେ ଧୀରେ ଧୀରେ ଗତାନୁଗତିକ ଜୀବନରେ ଛୋଟ ଛୋଟ ପରିବର୍ତ୍ତନ ଆସିବା ଆରମ୍ଭ ହୋଇଗଲା।

ଅନି ଦେଖୁଥିଲା ବାବାଙ୍କ ସାଇକେଲ ଚଢ଼ି ହାତରେ କାଗଜ ପତ୍ରର ଛୋଟ ପ୍ୟାକେଟ୍‌ଟିଏ ଧରି ତା' ବଡ଼ ଦାଦା କୁଆଡ଼େ କୁଆଡ଼େ ବାହାରି ଯାଉଥିଲା ଏବଂ ଫେରି ଆସି ମୁଣ୍ଡ ହଲେଇ ଦେଇ ଖୁବ୍ ମନମରା ହୋଇ ମା'ଙ୍କୁ କହୁଥିଲା, ''ନା, ହେଲାନି।''

ଖାଲି ସେତିକି ନୁହଁ, କେବେ ଘରୁ ବାହାରୁ ନ ଥିବା ମା' ମୁଣ୍ଡରେ ଓଢ଼ଣା ଟାଣି ଦେଇ ମଝିରେ ମଝିରେ କୁଆଡ଼କୁ ବାହାରି ଯାଉଥିଲେ। କେତେବେଳେ ସାଙ୍ଗରେ ଦାଦା ତ କେତେବେଳେ ପୁଣି ଛୋଟ ଦା'। କୁଆଡ଼େ ଏତେ ଯାଉଛନ୍ତି ମା' ? ହଠାତ୍ କ'ଣ ଏତେ କାମ ଲାଗିଗଲା ଯେ ତାଙ୍କର ?

ଦିନେ ଆଉ ରହି ନ ପାରି ଛୋଟ ଦା'କୁ ପଚାରି ଦେଲା ସେ। ଦାଦାକୁ ପଚାରିଲେ ତ ଗାଳି ଶୁଣିବାକୁ ହେବ କେବଳ। ବରଂ ଛୋଟ ଦା'ର ଝିଙ୍ଗାସିବା ଉତ୍ତର ଭଲ।

''ଆଜି ମା'ଙ୍କ ସାଙ୍ଗରେ କୁଆଡ଼େ ଯାଇଥିଲୁ କି ଛୋଟଦା' ?''

''ତତେ ଜଣା ନାହିଁ କି ?''

ଅନୁପମା ମୁଣ୍ଡ ହଲେଇ ଦେଲା।

"ଘର ଖୋଜି।"

"ଘର ଖୋଜି? କାହିଁ, ଏ ଘରେ କି ଅସୁବିଧା ଯେ?"

"ମତେ ସେସବୁ ପଚାରନା। ମୁଁ ଜଣେଇଶରେ ନାହିଁ କି ବିଶ୍ୱରେ ନାହିଁ। ରହ, ଖାଲି ମ୍ୟାଟ୍ରିକ୍‌ଟା ପାସ୍ କରିଯାଏ, ତା'ପରେ ଦେଖିବୁ ଏ ସଂସାରଟା ଓଲଟେଇ ଦେଇ ଥୋଇଦେବି।" ରୁକ୍ଷ ଭାବରେ କଥାତକ ଫୋପାଡ଼ି ଦେଇ ଅମରେଶ ଚାଲିଗଲା।

ଅବାକ ହେଇ ତା' ଯିବା ବାଟକୁ ଚାହିଁ ରହିଥିଲା ଅନୁପମା। ଛୋଟ ଦା' ତ ଆଗରୁ ଏତେ ରାଗୁ ନ ଥିଲା। ଆଜିକାଲି କଥା କଥାକେ ଏମିତି ଅଗ୍ନିଶର୍ମା ହେଇ ଯାଉଛି କାହିଁକି? ତା'ପରେ... ସେ ଯେଉଁ ଘର ଖୋଜା କଥା କହିଲା...। ସେମାନେ ଘର ଖୋଜିବାର କ'ଣ ଅଛି ଯେ। ତାଙ୍କର ତ ଏତେ ବଢ଼ିଆ ଘର ଅଛି। ଘର ଚାରିଆଡ଼େ ଆଖି ବୁଲେଇ ନେଇ ମନେ ମନେ ଭାବିଲା ଅନୁପମା। ହେଲେ କାହାକୁ ପଚାରିବ ସେ?

"ଅନି ... ଏ ଅନି"

"ଆସୁଛି ମା'।"

"କ'ଣ କରୁଥିଲୁ ରେ?"

"କିଛି ନାହିଁ।"

"ତା'ହେଲେ ତୁ ଗୋଟାଏ କାମ କର। ତୋର ଯାହା ବହି, ଖେଳଣା ଅଛି, ସେତକ ସଜାଡ଼ି ନେ। ଆଉ କେଇଟା ଦିନ ପରେ ଏ ଘର ଛାଡ଼ିବାକୁ ହେବ ଯେ।"

ପୁଣି ସେଇ ଘର ଛାଡ଼ିବା କଥା। କାହିଁକି ଘର ଛାଡ଼ିବାକୁ ହେବ? ଅନୁପମା କିଛି ପଚାରିବା ଆଗରୁ ଝଡ଼ ଭଳି ଘର ଭିତରକୁ ପଶି ଆସିଲେ ନାରଣ। "ଏ ମୁଁ କ'ଣ ଶୁଣୁଛି, ବୌଦି?"

"କି କଥା, ନାରଣ?"

"ଅନିରୁଦ୍ଧ କହିଲା ଯେ କେଇଟା ଦିନ ଭିତରେ ଆପଣମାନେ ଏ ଘର ଛାଡ଼ି ଚାଲିଯିବେ। ଏକଥା ସତ ବୌଦି?"

ଶ୍ରଦ୍ଧା ଚୁପ୍ ରହିଲେ।

"କାହିଁକି ବୌଦି? କାହିଁକି? କାହିଁକି ଏତେ ବଡ଼ ଶାସ୍ତି ଦେଉଛନ୍ତି। ମୁଁ

କି ଅପରାଧ କଲି ଯେ ଆପଣ ଏ ଘର ଛାଡ଼ି ଦେବା କଥା ଭାବୁଛନ୍ତି।''

ଶ୍ରଦ୍ଧା ନିଜ ଆଖି ଶାଢ଼ି କାନିରେ ପୋଛି ନେଇ କହିଥିଲେ, ''ସେମିତି କାହିଁକି କହୁଛ, ନାରଣ। ତୁମେ ଅନିର ବାବାଙ୍କ ପାଇଁ ଯାହା କରିଛ, ନିଜ ଭାଇ ବି କରିବନି। ଆଉ ଅଧିକା ବୋଝ ମୁଁ ତୁମ ଉପରେ ଲଦି ଦେଇ ପାରିବି ନାହିଁ।''

''ବୋଝ। କି ବୋଝ, ବୌଦି? ସତ୍ୟ ଦା' ମୋତେ ତା' ନିଜ ସାନ ଭାଇ ଭଳି ଭଲ ପାଉଥିଲା। ମୁଁ ତା' ପରିବାର ପାଇଁ ଏତିକି କରି ପାରିବିନି?''

''ତୁମେ ବୁଝୁନ, ନାରଣ। ଆଗରୁ ତୁମ ଦାଦା ଯେତିକି ଘର ଭଡ଼ା ଦେଉଥିଲେ, ଆମେ କ'ଣ ଆଉ ସେତିକି ଦେଇ ପାରିବୁ?''

''ତୁମଠୁ ଘର ଭଡ଼ା କିଏ ମାଗୁଛି, ବୌଦି?'' ଆଖି ଛଳ ଛଳ ହୋଇ ଯାଇଥିଲା ନାରଣଙ୍କର।

ଶ୍ରଦ୍ଧା ଟିକିଏ ଚୁପ ରହି କହିଥିଲେ, ''ମାଗିବା ନ ମାଗିବାରେ କ'ଣ ଅଛି? ତୁମେ ଘର ଭଡ଼ା ଆୟ ଉପରେ ନିର୍ଭର କର। ମୁଁ କ'ଣ ଜାଣିନି? କେମିତି ଭଡ଼ା ନ ଦେଇ ଏଠି ରହିବି? ...ଆମକୁ ଅଟକାଅ ନାହିଁ, ନାରଣ।''

ଆଉ କିଛି କହି ନ ପାରି ଅଭିମାନରେ ସେଠୁ ଚାଲିଗଲେ ନାରଣ।

ନାରଣଙ୍କର ଚାଲିଯିବା ବାଟକୁ ଚାହିଁ ଶ୍ରଦ୍ଧା ମନେ ମନେ କହିଲେ, 'ତୁମକୁ ଆଉ କ'ଣ ବୁଝାଇବି, ନାରଣ? ଯେଉଁ ଆତ୍ମସମ୍ମାନ ବୋଧ ପିଲାଙ୍କ ବାବା ମୋ ଭିତରେ ଭରି ଦେଇ ଯାଇଛନ୍ତି, ସେଇଟା ମାସକ ଭିତରେ ଛାଡ଼ି ଦେବି କେମିତି?'

ଘରର ଗୋଟିଏ କଣରେ ରହିଥିବା ତା'ର କଣ୍ଢେଇମାନଙ୍କୁ ସଜାଡ଼ି କାଠ ବାକ୍ସରେ ରଖୁ ରଖୁ ଅନୁପମା ମା'ଙ୍କ ମନ ତଳର କଥା ଯେମିତି ପଢ଼ିପାରିଲା। କିନ୍ତୁ ବୁଝି ପାରିଲା ନାହିଁ। ସେ ଚୁପଚାପ ନିଜ କଣ୍ଢେଇତକ ରଖି ସାରିବା ପରେ ମା'ଙ୍କ କଥା ମାନି ବହି ଖାତା ଏକାଠି କରିବା ଆରମ୍ଭ କରିଦେଲା। ପରେ ବାକୀ ବହି ଖାତା ସାଙ୍ଗରେ ବଡ଼ କାଠ ଡବାରେ ସେସବୁ ରଖା ହେବ।

ଛୋଟ ଛୋଟ ହାତ ଦିଇଟା ତା'ର କାମ କରି ଚାଲିଥିଲେ, କିନ୍ତୁ ମନ ଭିତରେ ଖେଳି ବୁଲୁଥିଲା କେତେ ଆଉର କେତେ କଥା।

ସବୁ ବନ୍ଧାବନ୍ଧି ସରିଲାଣି । କାଲି ସେମାନେ ଏ ଘର ଛାଡ଼ିବେ । ଅନୁପମା ଧୀର ପାଦରେ ଘର ଭିତରୁ ବାହାରି ଆସି ବାହାର ବାରଣ୍ଡାର କାଠ ଖୁଣ୍ଟକୁ ଆଉଜି ବସିଲା । ଘର ଭିତରେ ଭଲ ଲାଗୁନି । କିଛି ବି ଭଲ ଲାଗୁନି ।

ଘରର ସାମ୍ନା ପଟେ ଥିବା ବାବାଙ୍କ ଅଫିସ୍‌ରେ କାଠ ଆଲମାରୀ ଭିତରେ ଧାଡ଼ି ଧାଡ଼ି ଆଇନ୍ ବହି ସାଇତା ହୋଇ ରଖା ହୋଇଥିଲା । ସବୁଦିନ ଦେଖି ଦେଖି ଆଖି ଦିଇଟା ଅଭ୍ୟସ୍ତ ହୋଇ ଯାଇଥିଲା ତା'ର । ହଠାତ୍ ଶୂନ୍ୟ ହୋଇଗଲା ସ୍ଥାନଟି । ଘର ଛାଡ଼ିବାକୁ ହେବ ବୋଲି ମା' ଆଲମାରୀ ସହିତ ବହିତକ ଲାଇବ୍ରେରୀକୁ ଦାନ କରିଦେଇଛନ୍ତି ।

କେହି କେହି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଏତେ ଗୁଡ଼ାଏ ବହି, ଏମିତି ଶୁଖିଲାରେ କିଏ ଦାନ କରେ ? ବୋକା ନା କ'ଣ ? ରହି ନ ପାରି ଜଣେ ଦି'ଜଣ ପଚାରି ବି ଦେଇଥିଲେ । ଆଉ ଶ୍ରଦ୍ଧା ନିର୍ଲିପ୍ତ ଭାବରେ ଉତ୍ତର ଦେଇଥିଲେ, "ବିକ୍ରି କରିଥିଲେ କୋଉ ହଜାର ଲକ୍ଷ ମିଳିଯାଇଥାଆନ୍ତା ଯେ ! ବରଂ ମଣିଷର ସ୍ମୃତି ଟିକକ ସାଇତା ହୋଇ ଥାଉ । କାହିଁ କେତେ ଯୁଗ ପରେ କିଏ ଯଦି ଲାଇବ୍ରେରୀରେ ପଶି ଏ ବହିରୁ ଗୋଟାଏ ଓଲଟାଏ, ତେବେ ତ ତା' ଆଖିରେ ପଡ଼ିବ ମଣିଷଟିର ନାଁ । ସେଇ ଭଲ ।"

ବହିଗୁଡ଼ାକ ମା' ଦେଲେ ତ ଦେଲେ । ହେଲେ ଗୋଲ କାଠ ଉପରେ ଲଗା ହୋଇଥିବା ବିରାଟ ହରିଣ ସିଙ୍ଗ ଦିଇଟା ନାରଣ କକେଇଙ୍କୁ ଦେଇ ଦେବାର କ'ଣ ଥିଲା ? ବୁଦ୍ଧି ହେବା ଦିନଠୁଁ କବାଟ ଉପର କାନ୍ଥରେ ସେଇଟା ଦେଖି ଆସୁଥିଲା ଅନୁପମା, ଏବେ ଜାଗାଟି କି ଖାଲି ଖାଲି ଲାଗୁଛି !

କେବଳ ଅଫିସ୍ ଘର, କବାଟ ଉପରର କାନ୍ଥ ନୁହଁ, ପୂରା ଘରଟା ଇ କେମିତି ଅନ୍ୟରକମ ଲାଗୁଛି । ମନେ ହେଉଛି ଭୁଲ୍‌ରେ ଯେମିତି ଆଉ କାହା ଘରକୁ ସେ ପଶି ଆସିଛି ।

ଯେଉଁଠି ସେଦିନ ବାବାଙ୍କର ଅସାଡ଼ ଦେହଟାକୁ ବୋହି ଆଣି ଅନ୍ୟମାନେ ରଖି ଦେଇ ଯାଇଥିଲେ, ସେଇଠି ସେଇ ଖଟ ସେମିତି ଅଛି । କିନ୍ତୁ ତା' ଉପରେ ତକ୍ତପୋଷ, ଚଦର, ତକିଆ କିଛି ନାହିଁ । ସେଠି ରଖା ହୋଇଛି ଦିଇଟା ଟିଣ ଟ୍ରଙ୍କ୍ ଓ ଗୋଟାଏ କାଠ ଡବା । ଆଖପାଖରେ ବନ୍ଧା ହୋଇ ରହିଛି

ଘରର ବାକୀ ସବୁ ଜିନିଷ। ଦୁଇ ପହରର ଖିଆପିଆ ପରଠୁ ଦାଦା ଓ ଛୋଟ' ଦା' ସାଙ୍ଗରେ ମିଶି ମା' ରୋଷେଇ ଘର ଜିନିଷ ବାନ୍ଧୁଛନ୍ତି।

ଆଜି ରାତିରେ ଘରେ ଖିଆପିଆ ନାହିଁ। ନାରଣ କାକାଙ୍କ ଘରେ ଖାଇବେ ସେମାନେ। ସେଇଠି ଗଣ୍ଡେ ଗଣ୍ଡେ ଖାଇ ସପ ଉପରେ ଗଡ଼ିଯିବେ। ଖାଲି ଗୋଟିଏ ରାତି କଥା।

ଅନୁପମାର ଛାତିଟା କେମିତି ଗୋଳେଇ ହୋଇଗଲା। କାହିଁକି ଛାଡ଼ିବାକୁ ହେଉଛି ଏ ଘର? ସେମାନଙ୍କର ନିଜ ଘର ନୁହଁ ବୋଲି? ଆଖିରେ ଲୁହ ଭର୍ତ୍ତି ହେଇଗଲା ତା'ର।

ଏତେ ଦିନ ଧରି ସେ ଜାଣି ମଧ ନ ଥିଲା ଯେ ଘରଟା ନାରଣ କାକାଙ୍କର। କେବଳ ଏଇ ଘର ନୁହଁ, ଆଖପାଖର ଆଉ ଦିଇଟା ଘରର ମାଲିକ କୁଆଡ଼େ ଏଇ ନାରଣକାକା। ତାଙ୍କ ବାପା ରଖି ଦେଇ ଯାଇଥିବା ଘର ଗୁଡ଼ିକ ଭଡ଼ା ଲଗେଇ ଯେତିକି ସେ ପାଆନ୍ତି, ସେଥିରେ ଆନନ୍ଦରେ ଚଳିଯାଆନ୍ତି। ନାରଣକାକାଙ୍କୁ ଘରୁ ବାହାରିବାକୁ ପଡ଼େ ନାହିଁ ପଇସା ରୋଜଗାର କରିବାକୁ।

ଅଥଚ ଏତେଦିନ ରୁନିକୁ ହିଁ ସେ ସେମାନଙ୍କର ଛୋଟ ଘର ପାଇଁ ଦୟା କରି ଆସୁଥିଲା!

ଅନୁପମା ଖୁଣ୍ଟ ପାଖକୁ ଉଠିଯାଇ ଘର ଆଡ଼କୁ ପଛ କରି କାନ୍ଥକୁ ଆଉଜି ବସିଲା। କିଛି ଭଲ ଲାଗୁନାହିଁ।

କାଲି ଏତେବେଳକୁ ସେମାନେ ନୂଆ ଘରେ ଥିବେ। ନୂଆ ଘର!! ନାଁକୁ ଖାଲି ନୂଆ ଘର। ଇଃ, କି ଭଙ୍ଗା ରୁଜା ଅବସ୍ଥା! ତା' ନାକ କୁଞ୍ଚେଇ ଗଲା। ଗତ କାଲି ସନ୍ଧ୍ୟାରେ ମା'ଙ୍କ ସାଙ୍ଗରେ ଯାଇ ଘର ଦେଖି ଆସିଥିଲା ଅନୁପମା। ଆବିଦ୍ ଚାଚାଙ୍କ ପାଖ ଘରଟା। ନିଜେ ଆବିଦ୍ ଚାଚା ଠିକ୍ କରି ଦେଇଥିଲେ। କହିଥିଲେ, ତାଙ୍କ ପଡ଼ାଟାର ରାସ୍ତା ଭଲ ଭାବରେ ତିଆରି ହୋଇନି ତ ସେଥିପାଇଁ ଘର ଭଡ଼ା ଟିକିଏ କମ୍।

ଖାଲି କଥାର କଥା। ଅନୁପମା କ'ଣ ଏତେ ଛୋଟ ଯେ ବୁଝେନି କିଛି। ଯେଉଁ ତ ଦିବ୍ୟ ଘର, କେତେ ଆଉ ଭଡ଼ା ହୁଅନ୍ତା? ଚଳିବା ପାଇଁ ମାତ୍ର ଦୁଇଟା ବଖରା। ଭିତର ପଟେ ବିରାଟ ଅଗଣା, ସେତିକି ଯାହା ରକ୍ଷା। ଅଗଣାର

ଗୋଟିଏ ପଟ ଡାଟି କବାଟ ଘେରା। ସେଇଟା ରୋଷେଇ ଘର। ଅଗଣା ଟପି ଗଲେ ଯାଇ ଗାଧୁଆ ଘର, ପାଇଖାନା। ବର୍ଷା ଦିନେ ଓଦା ହୋଇ ଯିବା ଆସିବା କରିବାକୁ ହେବ। ଆଉ ରାତି ହେଲେ...? ଅନୁପମା ଭାବିଲା ନାହିଁ ସେ ବିଷୟରେ।

ସୂର୍ଯ୍ୟ ବୁଡ଼ିଗଲାଣି କେତେବେଳୁ। ତଥାପି ରାତି ହୋଇନି। ଅନ୍ଧାରୁଆ ଅନ୍ଧାରୁଆ ହୋଇ ଆସିଲାଣି ଯଦିଓ। ଅନୁପମା ଆକାଶକୁ ଚାହିଁଲା। କିଛି କଳା ମେଘ ଭାସି ଆସିଲେଣି କୁଆଡୁ। ବର୍ଷା ହେବ କି? ବୋଧହୁଏ। ଆଚ୍ଛା, ଏ ମେଘର ନାଁ କ'ଣ? ବାବା ଥିଲେ ସେ ନିଶ୍ଚୟ ଦୌଡ଼ିଯାଇ ପଚାରି ଦେଇଥାଆନ୍ତା। ସଂସାର ଯାକର ସବୁ ପ୍ରଶ୍ନର ଉତ୍ତର ସେ ହିଁ କେବଳ ଜାଣନ୍ତି। ଆଉ କେହି ନୁହଁ।

ହଠାତ୍ ଅନୁପମାର ଆଖିକୁ ଲୁହ ଚାଲିଆସିଲା। ଏମିତି କେତେ ଅବାନ୍ତର ପ୍ରଶ୍ନ ସେ ପଚାରିଛି ବାବାଙ୍କୁ। କେବେହେଲେ ସେ ବିରକ୍ତ ହେଇ ନାହାନ୍ତି। ଖୁବ ମନ ଦେଇ ତା' ପ୍ରଶ୍ନ ଶୁଣିଛନ୍ତି ଏବଂ ପାରୁ ପର୍ଯ୍ୟନ୍ତ ତା'ର ସଠିକ୍ ଉତ୍ତର ଦେଇଛନ୍ତି।

ଏତେ ଭଲ ବାବା ତା'ର, କାହିଁକି ଠାକୁର ତାଙ୍କୁ ନେଇଗଲେ?

କଳା ମେଘ ଭିତରେ ବାବାଙ୍କର ପ୍ରତିଛବି ବୋଧେ ଖୋଜୁଥିଲା ଅନୁପମା। ଦୂରରେ, ବହୁତ ଦୂରରେ ଗୋଟିଏ ଚାପା ଲାଲ ରଙ୍ଗଟିଏ ଝଲସି ଉଠୁଛି। ସୂର୍ଯ୍ୟଙ୍କର ରଶ୍ମି ବୋଧହୁଏ କେଉଁ ବାଟରେ ଯାଇ ପହଞ୍ଚିଯାଇଛି ସେଠି।

ଆଚ୍ଛା, ହଠାତ୍ ଯଦି ମେଜିକ୍ ଭଳି ତାକୁ କିଏ ସେଠିକି ନେଇଯାଏ, ତେବେ ସେ କ'ଣ ଦେଖିବ?

ସିଧା ହେଇ ବସିପଡ଼ିଲା ଅନୁପମା। ଚକଚକ କରୁଛି ଆଖି ଦିଇଟା।

ମେଘ ଆଢୁଆଳରେ ସେଇଟା ପରୀ ରାଇଜ କି?

ଇସ୍, ହଠାତ୍ ସେଇ ପରୀ ରାଇଜରେ ପହଞ୍ଚିଯାଇ ଅନୁପମା ଗୋଟିଏ ଭଲ ପରୀର ଦେଖା ପାଇ ଯାଆନ୍ତା ନାହିଁ? ତା'ପରେ ସେଇ ପରୀକୁ ନିଜର ସବୁ କଥା ଶୁଣେଇ ତାକୁ ନେଇ ଆସନ୍ତା ତାଙ୍କ ପୃଥିବୀକୁ। ଆକାଶରୁ ଓହ୍ଲେଇ ଆସି ପରୀଟି ତାଙ୍କ ହୀରା ନୀଳା ଖଞ୍ଜା ବାଡ଼ିଟିକୁ ଛୁଆଁଇ ଦିଅନ୍ତା ଅନୁପମାର ଜଗତରେ ଏବଂ ସାଙ୍ଗେ ସାଙ୍ଗେ ବଦଳି ଯାଆନ୍ତା ସବୁ କିଛି। ସେମାନେ

ଏଇ ଏକା ଘରେ ରହି ଯାଆନ୍ତେ। ବାବା ସବୁଦିନ ଭଳି ସାଇକେଲ ଚଢ଼ି କଚିରି ଯାଆନ୍ତେ। କଚିରିରୁ ଫେରି ଚାହା ପିଉ ପିଉ ବାରଣ୍ଡାରେ ବସି ଅନିର ଖେଳ ଦେଖନ୍ତେ। ପୁଣି ରାତିରେ କେତେ ଗପ କହନ୍ତେ। ଏମିତି ହେଇ ଯାଆନ୍ତା ନାହିଁ? ପାରିବ ନାହିଁ କେହି କରି ଏମିତି?

ଅପଲକ ଭାବରେ ମେଘମାନଙ୍କୁ ଦେଖୁ ଦେଖୁ ଅନୁପମାର ମନ କେଉଁ ଅଚିହ୍ନା ରାଇଜରେ ପହଞ୍ଚି ସାରିଥିଲା।

ବାହାରର ଛିପିଛିପି ଆଲୁଅ ଲୁଚିଯାଇ ସନ୍ଧ୍ୟା ରାତିକୁ ବାଟ ଦେଖାଇ ସାରିଲାଣି କାହିଁ କେତେବେଳୁ। ଅଥଚ ସେ କିଛି ଜାଣିପାରିନାହିଁ। କଳ୍ପନାର ପରୀ ରାଇଜ ବି ହଜିଗଲାଣି କୁଆଡ଼େ।

"ବାହାରେ କାହିଁକି ବସିଛୁ କିଲୋ ଅନି? ଆ' ଭିତରକୁ ଆ'। ମଶା ଖାଇଯିବେ ତତେ।"

ମା'ଙ୍କ ସ୍ୱର ଶୁଣି ଘର ଭିତରକୁ ଗଲା ଅନୁପମା। କେତେ ଅଦ୍ଭୁତ ଲାଗୁଛି ଘର ଭିତରଟା। ବାବା ନାହାନ୍ତି ବୋଲି ନା? ଭଲହେଲା ସେମାନେ ଏ ଘର ଛାଡ଼ି ଚାଲି ଯାଉଛନ୍ତି। ନ ହେଲେ ସବୁଦିନେ ସକାଳ ହେଲେ ଏ ଘରର ସବୁ ଜିନିଷରୁ 'ବାବା ବାବା' ଭାବ ଆସି ତାକୁ ଖାଇ ଗୋଡ଼ାଇବ। ଭଲ ହେଲା।

ହଠାତ୍ କାହିଁକି ଅଣନିଶ୍ୱାସୀ ଲାଗିଗଲା ତାକୁ। "ମୁଁ ରୁନି ଘରକୁ ଯାଉଛି।" ମା'ଙ୍କର ଉତ୍ତର ଶୁଣିବାକୁ ଅପେକ୍ଷା ନ କରି ନାରଣ କାକାଙ୍କ ଘରକୁ ଚାଲିଗଲା ସେ।

ପର ଦିନ ସକାଳେ ଦିଇଟା ଶଗଡ଼ ଗାଡ଼ି କିଏ ଡାକି ଆଣିଲା। ଅନିରୁଦ୍ଧ ଓ ଅମରେଶ ସାଙ୍ଗରେ ନାରଣ ଓ ଆବିଦ୍ ମିଶି ଜିନିଷ ପତ୍ର ବୁହା ବୁହି କରିବା ଆରମ୍ଭ କରିଦେଲେ।

ନୂଆ ଘରେ ସ୍ଥିର ହୋଇଯିବା ପାଇଁ ବେଶୀ ବେଳ ଲାଗିଲା ନାହିଁ। ଆବିଦ୍ ବଜାରରୁ ଆଣି ଚୁଡ଼ା, କଦଳୀ ଦେଇଗଲେ। ଦିନ ଦିଇଟା ବେଳେ ଚୁଡ଼ା ଚକଟା ଖାଇବା ବିଷୟ ଅନୁପମାକୁ କାହିଁକି ରୁଚିକର ମନେ ହେଇ ନ ଥିଲା। ନିସ୍ପୃହ ଭାବରେ ଚୁଡ଼ା ଗିନାକୁ ଦେଖୁ ଦେଖୁ ସେ ପଚାରିଲା,

''ଆଜି ଭାତ ନାହିଁ ମା' ?''

''କେତେବେଳେ ଆଉ ଭାତ ରାନ୍ଧିବି ? ଏବେ ତ ଆସି ଦିନ ଦିଇଟା ବାଜିଲାଣି । ଏ ବେଳା ଖାଇଦେ କଷ୍ଟ କରି । ରାତିକୁ ଭାତ କରିବି ଯେ ।''

ସବୁଦିନ ଦି'ବେଳା ଭାତ ଖାଇବା ଅନୁପମାର ଅଭ୍ୟାସ । କେବେ କେମିତି ଶ୍ରଦ୍ଧାଙ୍କର ଭୀଷଣ ଦେହ ଖରାପ ହେଲେ ବାବା, ଦାଦା ଆଉ ଦିଦି ବଜାରର ଜଳଖିଆ ଆଣି ଖାଇ ଦେଉଥିଲେ । କିନ୍ତୁ ଅନୁପମା ପକ୍ଷରେ ସେଇଟା ପ୍ରାୟ ଅସାଧ ଥିଲା । କଥାଟା ଜାଣିଥିଲେ ସମସ୍ତେ । ସେଥିପାଇଁ ଘରେ ଭାତ ରନ୍ଧାରେ ଦିନେ ଅଧେ ବ୍ୟତିକ୍ରମ ହେଲେ ନାରଣ କାକା ନିଜେ ଡାକି ନେଉଥିଲେ ତାକୁ । ଅନୁପମା ଯାଇ ରୁନି ଘରେ ଭାତ ଖାଇ ଦେଉଥିଲା ।

ଏଠି ସିନା ତାଙ୍କ ପଡ଼ିଶା ଘରେ ନାରଣ କାକା ନାହାନ୍ତି, ଆବିଦ୍ ଚାଚା ତ ଅଛନ୍ତି । ସେମାନେ କାହିଁକି ଥରେ ବି ଆସି କାହାକୁ ଘରକୁ ଡାକି ନେଉ ନାହାନ୍ତି ? ବାବାଙ୍କର ପରା ଏତେ ସାଙ୍ଗ !

''ମା', ଆଜି ଏ ବେଳାକ ଆବିଦ୍ ଚାଚା ଘରେ ଖାଇ ଦେଇଥିଲେ ହେଇଥାଆନ୍ତା ।'' ଆଉ ରହି ନ ପାରି ସେ କହିଦେଲା ।

ଶ୍ରଦ୍ଧା ଶିହରି ଉଠିଲେ । ଏ ଝିଅଟା ଯେ କି କଥା କହେ ! ''ମୁଣ୍ଡ ଖରାପ ହେଲାଣି କି ତୋର ?''

''ଏଥିରେ ମୁଣ୍ଡ ଖରାପ ହେବାର କ'ଣ ଅଛି ? ସେମାନଙ୍କ ଘରେ ମାଛ ଝୋଳ, ଭାତ ହେଇଛି ଯେ । ଆମ ଅଗଣାଟାର ପାଚିରୀ ଯେଉଁଠି ଭାଙ୍ଗିଯାଇଛି, ସେଇଠୁ ସେମାନଙ୍କ ଅଗଣା, ରୋଷେଇ ଘର ଦେଖାଯାଏ ପରା । ରୋଷେଇ ଘର ବାରଣ୍ଡାରେ ବସି ହାଏଦର୍ ଦାଦା ଆଉ ଜାହାଙ୍ଗୀର ଦାଦା ଖାଉଥିଲେ । ମୁଁ ଦେଖିଛି ଯେ ।''

''ହଇଲୋ ଏ ଅନି, ତୁ ତାଙ୍କ ଖାଇବା ଆଡ଼କୁ ରଙ୍କୁଣୀଙ୍କ ଭଳିଆ ଚାହିଁ ରହିଥିଲୁ ?''

''ଧେତ୍, ରଙ୍କୁଣୀଙ୍କ ଭଳିଆ ଚାହିଁ ରହିବି କାହିଁକି ମ ? ମୁଁ ତ ଅଗଣାରେ ପଡ଼ିଥିବା ଖଟ ଉପରେ ବସି ବହି ପଢୁଥିଲି । ସେତିକି ବେଳେ ଆଖିରେ ପଡ଼ିଗଲା । ହେଲେ ମା'...'' ରହି ରହି କହିଲା ଅନୁପମା, ''ସଲ୍‌ମା ଚାଚୀ ଡାକିଲେ ନାହିଁ । ଥରଟିଏ ବି କହିଲେ ନାହିଁ ଯେ - ଆ, ଅନି, ଦିଇଟା

ଭାତ ଖାଇଦେଇ ଯା । ନା, ନା, କହିଥିଲେ କ'ଣ ମୁଁ ଧାଇଁ ଯାଇଥାନ୍ତି ନା କ'ଣ, ହେଲେ... ?''

''କେମିତି ଡାକିଥାଆନ୍ତେ ମ ? ତୁ କ'ଣ ମୁସଲମାନ ଘରେ ଯାଇ ଭାତ ଖାଇଥାଆନ୍ତୁ ?'' ଶ୍ରଦ୍ଧା ଚିଡ଼ି ଯାଇ କହିଲେ ।

ଆବିଦ୍ ଚାଚା ଭରିକା ଯେ ମୁସଲମାନ୍, ସେ କଥା ଅନୁପମା ଜାଣିଥିଲା । ହିନ୍ଦୁ, ମୁସଲମାନ୍ ଭିତରେ ଯେ ଏ ଦେଶରେ ଏକାଠି ଚଳିବା ଭିତରେ କିଛିଟା ଦୂରତ୍ୱ ବଜାୟ ରଖିବାକୁ ହୁଏ, ତା' ମଧ୍ୟ ତା'ର ଅଜଣା ନ ଥିଲା । ହେଲେ ସେଇ ନିୟମ ଯେ ଆବିଦ୍ ଚାଚାଙ୍କ ପରିବାର ପ୍ରତି ଲାଗୁ ହେବ, ଏକଥା କାହିଁକି ତା'ର ଛୋଟ ମନଟି ଭାବି ପାରୁ ନ ଥିଲା । ଗ୍ରହଣ କରି ପାରୁ ନ ଥିଲା । ଯିଏ ନିଜ କାକାଙ୍କଠୁଁ ବଳି ସବୁ କିଛି କଲେ, ତାଙ୍କ ସହିତ, ତାଙ୍କ ପରିବାର ସହିତ ଏଭଳି ଭେଦାଭେଦ ଭାବ ! ଅନୁପମା ମା'ଙ୍କୁ ଆଉ କିଛି ନ କହି ଚୁପଚାପ୍ ଚୁଡ଼ାତକ ଖାଇ ଚାଲିଗଲା ।

ସନ୍ଧ୍ୟାବେଳେ ନୂଆ ଘରେ ଚୁଲି ଲଗେଇଲେ ଶ୍ରଦ୍ଧା । କାଠ ଚୁଲି ଫୁଙ୍କୁ ଫୁଙ୍କୁ ଧୂଆଁରୁ ହେଉ ବା ଅନ୍ୟ କାରଣରୁ ହେଉ, ଆଖିଟା ବାଷ୍ପେଇ ଗଲା ତାଙ୍କର ।

ସରିଗଲା ଗୋଟିଏ ପର୍ବ । ଏଥର ଆରମ୍ଭ ହେଲା ତାଙ୍କ ଜୀବନର ନୂଆ ଅଧ୍ୟାୟ ।

''ଆଉ ଦିଇଟା ଭାତ ଦିଏ ।'' ଶ୍ରଦ୍ଧା ବଡ଼ପୁଅକୁ ବଳେଇ କରି ଆଉ ଦୁଇ ଗୁଣ୍ଡା ଖୁଆଇବାର ଚେଷ୍ଟା କଲେ ।

''ନା ।'' ମୁଣ୍ଡ ଉପରକୁ ନ ଉଠେଇ ଅନିରୁଦ୍ଧ କହିଲା ।

ଶ୍ରଦ୍ଧାଙ୍କ ତଣ୍ଟି ଭିତରେ କ'ଣ ଯେମିତି ଅଟକି ଯାଉଥିଲା । ହଠାତ୍ କ'ଣ ଯେ ସବୁ ହୋଇଗଲା ତାଙ୍କର ଭରା ସଂସାରରେ ! କାହା ନଜର ଲାଗିଗଲା ! ଯେଉଁ ଘରେ ବାସ୍ନା ସରୁ ଚାଉଳର ଭାତ ନ ହେଲେ କେହି ଖାଇବା ପାଖରେ ବସୁ ନ ଥିଲେ, ସେଠି ଏବେ ବଢ଼ା ହେଉଛି ବଗଡ଼ା ଭାତ । ସ୍ୱାଦ ନାହିଁ,

ବାସ୍ନା ନାହିଁ। ଯେତେ ସାବଧାନରେ ରାନ୍ଧିଲେ ମଧ୍ୟ ପେଜୁଆ ହଉ। ବଜାରର ସବୁଠାରୁ ଶସ୍ତା ଚାଉଳ, ଆଉ କ'ଣ ହୁଅନ୍ତା ? ଥାଆନ୍ତା ବା ସାଙ୍ଗରେ ମାଛ, ମାଂସ କି ସୁଆଦିଆ ତରକାରୀ। ଏବେ ତ ଡାଲି, ଭଜା କି ଚୂନାମାଛର ଚଡ଼ଚଡ଼ି ହେଲେ ଢେର। ମାସର ପ୍ରଥମ କେଇଟା ଦିନ ବଜାର କରିବାକୁ ଯାଇ ଭଲ ମାଛ କିଛି ନେଇ ଆସେ ଅନିରୁଦ୍ଧ। ସେଇ କେଇଟା ଦିନ ମାଛର ଝୋଳ ଦେଇ ଦି' ମୁଠା ଭାତ ଭଲରେ ଖାଏ ସେ। ଆଉ ବାକୀ ଦିନ କଥା କାହିଁକି ପଡ଼ିଛି ?

''ମୋଟା ଭାତ ଗିଳିବାକୁ କଷ୍ଟ ହେଉଛି, ନା ରେ ?''

''ଅସୁବିଧା ପୁଣି କ'ଣ ? ହଷ୍ଟେଲରେ ଥିବା ବେଳେ ତ ଯା'ଠାରୁ କେତେ ବାଜେ ଚାଉଳର ଭାତ ଖାଇବାକୁ ମିଳୁଥିଲା। ସେଥିରେ ପୁଣି ଧାନ ଗୋଡ଼ି ଭର୍ତ୍ତି। ଆଉ ସେଇ ଯୋଉ ବୁଢ଼ା ରୋଷେୟା ଥିଲା ନା, ତା' ରନ୍ଧା ଖାଇଲେ କଲେଜ ଛାତ୍ରଗୁଡ଼ାକ ଆଉ ଛାତ୍ର ନ ରହି ରୋଗୀ ହୋଇଯାଉଥିଲେ। ତାକୁ ସମସ୍ତେ ମିଶି ତଡ଼ିଦେଲେ ବୋଲି ସିନା।'' ମା'ଙ୍କୁ ଭୁଲେଇବାକୁ ଯଥାସମ୍ଭବ ହାଲୁକା ଭାବରେ କହିଲା ଅନିରୁଦ୍ଧ।

ହଷ୍ଟେଲ ! ଏବେ ବି ହଷ୍ଟେଲକୁ ଭୁଲି ନାହିଁ ସେ ! ଆଖିକୁ ପାଣି ଚାଲି ଆସିଲା ତାଙ୍କର। ଶ୍ରଦ୍ଧା ନିଜକୁ ବୁଝେଇବାକୁ ଚେଷ୍ଟା କଲେ। ଅନିରୁଦ୍ଧ ଭୁଲିବ ବା କେମିତି ? କାହିଁକି ବା ଭୁଲିବ ? ଏତେ ବିରାଟ ଗୋଟିଏ ନିଷ୍ପତ୍ତି ସେ ନେଲା ବୋଲି ସବୁ କିଛି ଭୁଲିଯିବ ନା କ'ଣ ?

ଏତେ ଦିନ ପରେ ଶ୍ରଦ୍ଧା ନିଜେ ବି ତ ଭୁଲି ପାରି ନାହାନ୍ତି ତାଙ୍କର ସୁଖମୟ ଅତୀତକୁ।

ଯେତେବେଳେ ଚବିଶ ଘଣ୍ଟା ଭିତରେ ଚାରୋଟି ପିଲା ଆଉ ଗୋଟିଏ ସଇଁତିରିଶ ବର୍ଷର ସ୍ତ୍ରୀକୁ ଏକା ଛାଡ଼ି ସତ୍ୟପ୍ରିୟ ମୁଖୋପାଧ୍ୟାୟ ଚାଲିଗଲେ ସେତେବେଳେ ଶ୍ରଦ୍ଧାଙ୍କୁ ବୁଦ୍ଧି ବାଟ ଦିଶି ନ ଥିଲା। ଯେଉଁ ଭବିଷ୍ୟତ କଥା ଭାବି ସ୍ୱାମୀ ଏତେ ବିବ୍ରତ ହେଉଥିଲେ, ସେଇଟା ଯେ ଏତେ ଶୀଘ୍ର ବିରାଟ ଆଁ ମେଲାଇ ସାମ୍ନାରେ ବସିଯିବ ସେ କଥା ତ ସେ କେବେହେଲେ ଅନୁମାନ କରି ପାରି ନ ଥିଲେ।

ଚିନ୍ତାରେ ଚିନ୍ତାରେ ନିଜ ଭିତରେ ମିଳେଇ ଯାଉଥିଲେ ସେ।

କ'ଣ କରିବେ ? କୁଆଡ଼େ ଯିବେ ? ଶେଷରେ କ'ଣ ସେ ଯାଇ ହାତ ପତାଇବେ ଦେଢ଼ଶୁରମାନଙ୍କ ପାଖରେ ? ଯେଉଁମାନେ ସାନଭାଇର ନ୍ୟାର୍ଯ୍ୟ ଅଧିକାର ଦେବାକୁ ଅରାଜି ହୋଇଥିଲେ, ସେମାନେ ସତେ କ'ଣ ତା'ର ବିଧବା ସ୍ତ୍ରୀ ଆଉ ଚାରିଟା ପିଲାଙ୍କୁ ପାଖରେ ପୂରାଇବେ ? ଅସମ୍ଭବ। ଯଦି ବା ସାଇଭାଇଙ୍କ ବାଧବାଧକତାରେ ସେମାନଙ୍କୁ ପାଖରେ ରଖନ୍ତି, ତା'ହେଲେ ଯେ କି ସମ୍ମାନ ଦେଇ ରଖିବେ ସେକଥା ସେ ଭଲକରି ଜାଣନ୍ତି। ତା' ଅପେକ୍ଷା ବରଂ ଭଲ ଏଇଠି ସହରରେ କିଛି କରି, ଖଟି ପଡ଼ିରହିବା।

ଶ୍ରଦ୍ଧାଙ୍କର ମା' ଝିଅକୁ ତାଙ୍କ ପାଖକୁ ଚାଲି ଆସିବା ପାଇଁ ଖବର ପଠେଇଥିଲେ। କିନ୍ତୁ ଯିବା ପାଇଁ ପାଦ ବଢ଼େଇ ପାରିଲେ ନାହିଁ ଶ୍ରଦ୍ଧା। ଗାଁରେ ଥିବା ଜମିରୁ ଯେତିକି ଆୟ ହୁଏ, ସେଥିରେ ତାଙ୍କ ମା' ସିନା ଭଲରେ ଚଳି ଯାଉଛନ୍ତି, କିନ୍ତୁ ସେତିକି ଆୟ ଉପରେ ଅଧିକ ପାଞ୍ଚଟା ପେଟ ନିର୍ଭର କଲେ କୁଆଡୁ ଆଉ ହେବ ?

ଶ୍ରଦ୍ଧାଙ୍କର ତିନି ଭଉଣୀ। ସମସ୍ତେ ତାଙ୍କଠୁଁ ବଡ଼। ପାଖକୁ ଗଲେ କେହି ହତାଦର କରିବେ ନାହିଁ। ହେଲେ ଚାରିଟା ପିଲା ଧରି ଶ୍ରଦ୍ଧା କେମିତି ସେମାନଙ୍କ ପାଖକୁ ଚାଲିଯିବେ ? ସେମାନେ ସବୁ ନିଜ ନିଜର ପରିବାର ନେଇ ଦୂର ଦୂରାନ୍ତ ଗାଁରେ ସୁଖେ ଦୁଃଖେ ଚଳିଯାଉଛନ୍ତି। ସେମାନଙ୍କ କାନ୍ଧ ଉପରେ ବୋଝର ଭାର ବଢ଼େଇ ଦେବାଟା କ'ଣ ଉଚିତ ହେବ ?

ବାକୀ ରହିଲା ଏକମାତ୍ର ସାନ ଭାଇ ବିନୟ। ସେ ଯେବେଠୁ ସ୍ୱଇଚ୍ଛାରେ ଘର ଛାଡ଼ି ହୋଇ କଲିକତାରେ ରହିଯାଇଛି, ସେବେଠୁ ତା' ସାଙ୍ଗରେ ସମ୍ପର୍କର ଡୋରି ହୁଗୁଳା। ସେଥିପାଇଁ ସେ ଦେବାକୁ ଚାହିଁଲେ ମଧ ତା'ଠୁଁ ପାହୁଲାଟିଏ ନେବା ପାଇଁ ଶ୍ରଦ୍ଧାଙ୍କୁ ବାଧେ। ଯିଏ ନିଜ ଖର୍ଚ୍ଚ ପାଇଁ ଶ୍ୱଶୁର, ଶଳାଙ୍କ ପାଖରେ ହାତ ପତାଏ, ତା' ପାଖରେ ପୁଣି ସେ ହାତ ବଢ଼ାଇବେ !

ଆଦୌ ନୁହେଁ।

ହେଲେ... ହେଲେ ସେ କରିବେ କ'ଣ ? କେମିତି ଘର ଚଳାଇବେ ? କେମିତି ମଣିଷ କରିବେ ପିଲାମାନଙ୍କୁ ?

ମୁଣ୍ଡ ଗୋଳମାଳ ହୋଇ ଯାଇଥିଲା ତାଙ୍କର। ତଥାପି ସେ ନିଜ ଉପରୁ ନିୟନ୍ତ୍ରଣ ହରାଇ ନ ଥିଲେ। କିଛି ତ କରିବାକୁ ହେବ। ସଂସାର ତ ଭସେଇ

ଦେଲେ ଚଳିବ ନାହିଁ।

ପ୍ରଥମେ ସେଥିପାଇଁ ନିଜ ଘରକୁ, ନିଜ ଜୀବନକୁ ଶ୍ରଦ୍ଧା ସଂକୁଚିତ କରେଇ ନେଇଥିଲେ। ନାରଣଙ୍କର ପାଞ୍ଚ ବଖରିଆ ପକାଘରୁ ସେ ଉଠି ଆସିଲେ ଏଇ ଦୁଇ ବଖରିଆ ଖପରଲି ଘରକୁ। ତା'ପରେ ବନବିହାରୀ ବାବୁଙ୍କ ସହାୟତାରେ ସ୍ୱାମୀଙ୍କର ପୁରୁଣା ମହକିଲମାନଙ୍କଠାରୁ ବାକୀ ପଇସା ଆଦାୟ କରିବାର ବ୍ୟବସ୍ଥା କରିଲେ ସେ। କେଇଜଣଙ୍କୁ ତ ମାଗିବା ପର୍ଯ୍ୟନ୍ତ କଥା ଗଲା ନାହିଁ। ଖବର ପାଇ ସେମାନେ ନିଜେ ଆସି ବାକୀ ପଇସା ଦେଇଗଲେ। ଆଉ ବି ଥିଲେ କେଇ ଜଣ, ଯେଉଁମାନେ କି ଏଇଟା ଉପଯୁକ୍ତ ସୁଯୋଗ ମନେକରି କରଛଡ଼ା ଦେଲେ।

ଶ୍ରଦ୍ଧା କାହାକୁ ଦୋଷ ଦେଇ ନ ଥିଲେ; ଅଭିଶାପ ବି ଦେଇ ନ ଥିଲେ। ଯେଉଁଠି ଭାଗ୍ୟ ଏତେ ବଡ଼ ଅନ୍ୟାୟ କଲା, ସେଇଠି ଛାର ରକ୍ତ ମାଂସର ମଣିଷକୁ କି ଦୋଷ ଦେଇଥାଆନ୍ତେ ସେ ?

ଅନିରୁଦ୍ଧ ପାଠ ଛାଡ଼ି ଦେଲା। ମ୍ୟାଟ୍ରିକର ଯୋଗ୍ୟତା ନେଇ ଚାକିରି ଖୋଜି ବୁଲିଲା। ଶେଷରେ ସତ୍ୟପ୍ରିୟ ମୁଖୋପାଧ୍ୟାୟଙ୍କର ଜଣେ ପୁରୁଣା ମହକିଲଙ୍କର ସୁପାରିଶରେ ଗୋଟାଏ ବିଲାତୀ କମ୍ପାନୀରେ ଚାକିରି ମିଳିଗଲା ତାକୁ। କିରାନୀ ଚାକିରି। ମାତ୍ର ପଇଁତିରିଶ ଟଙ୍କା ଦରମା। ହଉ ପଛକେ। ଚଳିବାକୁ କଷ୍ଟ ହେବ, କିନ୍ତୁ କାହା ପାଖରେ ତ ହାତ ପତେଇବାକୁ ପଡ଼ିବନି।

ସାଙ୍ଗେ ସାଙ୍ଗେ ଚାକିରିରେ ଯୋଗ ଦେଇ ଦେଇଥିଲା ଅନିରୁଦ୍ଧ।

ତା'ପରେ ଚାଲି ଗଲାଣି ଗୋଟାଏ ବର୍ଷ। ସବୁ ଅଭ୍ୟାସରେ ପଡ଼ିଗଲାଣି। ଗୋଟିଏ ମଣିଷର ଅନୁପସ୍ଥିତିକୁ ଛାଡ଼ିଦେଲେ ବାକି ସବୁ ସହିତ ନିଜକୁ ସାମିଲ କରି ନେଇସାରିଲେଣି ଶ୍ରଦ୍ଧା।

''ମା', ପାନ ଖଣ୍ଡେ ଦିଅ। ମୁଁ ଅଫିସ୍ ଯାଏଁ। ଲଣ୍ଡନରୁ କିଏ କିଏ ସବୁ ଆସିଛନ୍ତି। ଡେରି ହୋଇଗଲେ ପୁଣି ଅସୁବିଧା।''

ଶ୍ରଦ୍ଧା ସମ୍ବିତ ପାଇଲେ। କି ଅନ୍ୟମନସ୍କ ହୋଇ ପଡ଼ିଥିଲେ ସେ! ପୁଅର ଖିଆ ସରି ସେ ହାତ ମୁହଁ ଧୋଇ ଅଫିସ ଯିବାକୁ ବାହାରିଲାଣି। ଅଥଚ ସେ ସେଇମିତି ପିଢ଼ାଟା ଉପରେ ବସି ରହିଛନ୍ତି! ଆଜିକାଲି ଏମିତି ଭୋଳା ମନ ହୋଇଛି ତାଙ୍କର। ତରବର ହୋଇ ଅଇଁଠା ଥାଳିଟା ଉଠେଇ ନେଇ

ସେ ପୁଅ ପାଇଁ ପାନ ଭାଙ୍ଗି ବସିଲେ। ପୁଅ ଯିବା ପରେ ପରେ ଖାଇବାକୁ ବାଢ଼ି ଦେବାକୁ ହେବ ବାକି ତିନି ପିଲାଙ୍କୁ। ଦଶଟା ବେଳେ ପୁଣି ସ୍କୁଲ ଆରମ୍ଭ।

"ଦାଦା, ଆଜି ପରୀକ୍ଷା ଫିସ୍ ଦେବାକୁ ହେବ।" ହଠାତ୍ ଅମରେଶ ସେଠି ପହଞ୍ଚି ଯାଇ କହିଲା।

ଅଫିସ୍ ଯିବାକୁ ଚଟିରେ ପାଦ ଗଳାଉ ଥିଲା ଅନିରୁଦ୍ଧ। ଏମିତି ହଠାତ୍ କରି ସାନ ଭାଇର ପରୀକ୍ଷା ଫିସ୍ ମାଗିବା ଢଙ୍ଗଟି ତା'ର ପସନ୍ଦ ହେଲା ନାହିଁ। ସ୍ଥିର ଭାବରେ ସେ ମୁହୂର୍ତ୍ତେ ଦେଖିଲା ତାକୁ, "ଆଜି ଦେବାକୁ ପଡ଼ିବ?"

"ହଁ।"

"ଆଗରୁ କାହିଁକି କହିଲୁ ନାହିଁ? ତୁମ ସ୍କୁଲରୁ ନିଶ୍ଚୟ ଏଇକ୍ଷଣି ଖବର ଆସିନି?"

ଦାଦାର ଗମ୍ଭୀର ଗଳାରେ ଡରି ଗଲାନି ଅମରେଶ। ସ୍ୱରରେ କିଛି ବିରକ୍ତି ଗୋଳେଇ ନେଇ କହିଲା, "ଓହୋ, ସବୁବେଳେ କ'ଣ ସବୁକଥା ମନେ ଥାଏ?"

"ଅନ୍ୟ କଥା ଅଲଗା। ମ୍ୟାଟ୍ରିକ ପରୀକ୍ଷା ଫିସ୍ ଦେବା କଥା ତ ଅନ୍ତତଃ ଭୁଲିବା ବିଷୟ ନୁହଁ।"

"ଭୁଲିଗଲି। ଆଉ କ'ଣ କରିବି? ...ଦିଅ ପଇସା।"

ସ୍ଥିର ଭାବରେ ସାନ ଭାଇକୁ କିଛି ସମୟ ଦେଖିଲା, ତା'ପରେ କହିଲା, "ଆଜି ମାସର ପଚିଶ ତାରିଖ। ମୋ ପାଖରେ ପଇସା ନାହିଁ। ତୁ ଆଗରୁ କହିଥିଲେ ମୁଁ କାହାକୁ କହିକରି ବା କିଛି ଧାର ନେଇ ବ୍ୟବସ୍ଥା କରିଥାଆନ୍ତି। ଏଇ ମାତ୍ର ତ ସେକଥା ସମ୍ଭବ ନୁହଁ।"

ହଠାତ୍ ଚିଡ଼ିଗଲା ଅମରେଶ। "ତା'ମାନେ ତୁମେ ଚାହୁଁଛ ଯେ ମୁଁ ମ୍ୟାଟ୍ରିକ ପରୀକ୍ଷା ନ ଦିଏ। ତୁମେ ନିଜେ ପଢ଼ି ପାରିଲ ନାହିଁ ବୋଲି ମୋର ପଢ଼ିବାଟା ବି ସହି ପାରୁନ!"

କିଏ ଯେମିତି ଠାଏ କରି ଅନିରୁଦ୍ଧକୁ ଚଟକଣିଟିଏ ମାରିଲା। ଯନ୍ତ୍ରଣାରେ ଆଖି ବନ୍ଦ ହୋଇଗଲା ତା'ର।

"ଅମୁ!!" ଚିତ୍କାର କରି ଉଠିଲେ ଶ୍ରଦ୍ଧା, "ତୁ କାହାକୁ କ'ଣ କହୁଛୁ!! ଯୋଉ ଭାଇ ଘର ଚଳେଇବା ପାଇଁ ପାଠ ଛାଡ଼ି ଦେଲା, ତାକୁ ତୁ ଏମିତି କଥା କହୁଛୁ! ନିଜ ଭୁଲ ଘୋଡ଼େଇବା ପାଇଁ ତାକୁ ଏମିତି ମନ ଇଚ୍ଛା କଥା

କହି ଚାଲିଛୁ।''

''ଥାଉ ମା' ଥାଉ।'' ଅନିରୁଦ୍ଧ ଓଠ ଚାପି ନିଜକୁ ଅନେକଟା ସମ୍ଭାଳି ନେଲାଣି ସେତେବେଳକୁ। ''ଅମୃ, ମୋ ପାଖରେ ସତରେ ପଇସା ନାହିଁ ଏବେ। ମୁଁ ଅଫିସରେ ଯାଇ କିଛି ବ୍ୟବସ୍ଥା କରୁଛି। ଦି'ପହର ଖାଇବା ସମୟର ଛୁଟିରେ ମୁଁ ନିଜେ ଯାଇ ସ୍କୁଲ ଅଫିସରେ ଦେଇ ଦେବି। ତୁ ବ୍ୟସ୍ତ ହ' ନା।''

ଅମରେଶ ନିରବ ଭାବରେ ଚାଲିଗଲା ସେଠୁ। କାହିଁକି ଯେ ପାଟିରୁ ଏମିତି କଡ଼ା କଡ଼ା କଥା ବାହାରିଗଲା। ବାପା ଯିବା ପରେ ଏଇମିତି ପ୍ରାୟ ହେଉଛି। ବିନା କାରଣରେ ସମସ୍ତଙ୍କ ଉପରେ ଚିଡ଼ି ଲାଗୁଛି ତାକୁ। ଛେଃ - ଏତେ ସବୁ ହିନସ୍ଥା ହେବାକୁ ଥିଲା। ଏବେ ଗୋଟିଏ ଗୋଟିଏ ପଇସା ପାଇଁ ବଡ଼ ଭାଇ ପାଖରେ ଆଣ୍ଠୁ ଭାଙ୍ଗି ଠିଆ ହେବାକୁ ପଡୁଛି। ଆଉ ମା' ବି ରହିଛନ୍ତି ଦାଦା ପଟିଆ ହେଇ। ସବୁ ପଇସାର ହିସାବ ଦରକାର। ଦିନେ ବଜାର ସଉଦା କରିବାକୁ ପାଖରେ ରଖିଥିବା ପଇସାରୁ ଅଳ୍ପ କେଇଟା ପଇସା ଫୁଟବଲ କିଣିବାକୁ ଚାନ୍ଦା ଦେଇ ଦେଲା ଯେ ସେଦିନ ଘରେ କି ନାଟ। ବାପରେ ବାପ। ତା' ବୟସ ଆଉ ଟିକିଏ କମ୍ ହୋଇଥିଲେ ମା' ବୋଧହୁଏ ଦି'ଟା ଚାପୁଡ଼ା କଷି ଦେଇଥାଆନ୍ତେ। ଦାଦା ସେଦିନ ବି କିଛି କହିଲା ନାହିଁ। ଖାଲି କେମିତି ଭାବରେ ତାକୁ ଦେଖିଲା। ହେଲେ ତା' ପରଠୁଁ ବଜାର ସଉଦା କରିବା ଭାରଟା ଚୁପ୍‌ଚାପ୍ ନେଇଗଲା ନିଜ ହାତକୁ। ଯେଉଁ ପଇସେ ଅଣିଏ ପକେଟ୍‌ରେ ପୂରାଇ ପାରୁଥିଲା ଅମରେଶ, ସେଇଟା ମଧ୍ୟ ବନ୍ଦ ହୋଇଗଲା।

ଧେତ୍ - ସବୁ ଗୋଳମାଳ ହୋଇଗଲା। ଏବେ ଏମିତି ଗରିବ ହେଇ ବଞ୍ଚି ରହିବାକୁ ଜମା ଭଲ ଲାଗୁନି ତାକୁ। ମନେ ହେଉଛି ଯେମିତି ସାଙ୍ଗ ସାଥି ମେଳରେ ମୁଣ୍ଡଟା ତା'ର ବାରମ୍ବାର କଟି ଯାଉଛି। କି ଲଜ୍ଜା! କି ଲଜ୍ଜା। ଏଣେ ତା' କ୍ଲବ୍‌ର ଚାନ୍ଦା ଦେବାଟା ବାକି ପଡ଼ିଛି। କେତେଦିନ ଆଉ ଅପେକ୍ଷା କରିବେ ଅନ୍ୟମାନେ? କ୍ଲବ୍‌ରୁ ତଡ଼ି ଦେଲେ ଖେଳଟା ବି ଯିବ। ମା'ଙ୍କୁ କହିଲେ ଲାଭ ନାହିଁ। ଓଲଟା ତା' ଉପରେ ବର୍ଷି ପଡ଼ିବେ ସେ। ହୁଏତ କହିବେ, 'କିଛି ଦିନ ଗଲେ ମ୍ୟାଟ୍ରିକ୍ ପରୀକ୍ଷା। ଏବେ ଖେଳ ଆଉ କ୍ଲବ୍ ଚିନ୍ତା ପଡ଼ିଛି?'

ଅମରେଶ ଭାବିଥିଲା ପରୀକ୍ଷା ଫିସ୍ ପରିମାଣ ଟିକିଏ ବଢ଼େଇ କହି

ବାକୀ ପଇସାଟା ରଖିନେବ କ୍ଲବ୍ ପାଇଁ। କିନ୍ତୁ ସେ ଆଶାଟା ଗଲା। ଏବେ କ'ଣ କରିବ ସେ ? କୋଉଠୁ ଯୋଗାଡ଼ କରିବ ପଇସା ? ଓହୋ ! କାହିଁକି ଯେ ବାପା ଏମିତି ଚଟପଟ ମରିଗଲେ ! ସବୁକିଛି ଓଲଟପାଲଟ ହୋଇଗଲା।

ଭାତ କେଇ ଗୁଣ୍ଡା ପାଟିରେ ପକେଇ ସ୍କୁଲ ବାହାରିଗଲା ଅମରେଶ।

ତା'ରି ଯିବା ବାଟକୁ ଚାହିଁ ଦୀର୍ଘ ନିଶ୍ୱାସ ପକେଇଲେ ଶ୍ରଦ୍ଧା। କାହିଁକି ଯେ ପିଲାଟା ଏମିତି ଦିନକୁ ଦିନ ବିଗିଡ଼ି ଯାଉଛି, ବୁଝି ପାରୁ ନ ଥିଲେ। ତା' ପିଛା ଏତେ ଟଙ୍କା ଖର୍ଚ୍ଚ କରୁଛି ଅନିରୁଦ୍ଧ, ଅଥଚ ସବୁ ଯେମିତି ବୃଥା। ପିଲାଟା କ'ଣ ମ୍ୟାଟ୍ରିକ୍ ପାସ୍ କରିପାରିବ ? ତା' ହାବଭାବ, ପଢ଼ାଶୁଣାରୁ ତ କାହିଁ ଜଣା ପଡୁନି। ସେ ଭାବିଥିଲେ ଯେ ମ୍ୟାଟ୍ରିକ ପାସ୍ କରି ବଡ଼ ଭାଇ ଭଳି କିଛି କାମଦାମ କରିବା ଆରମ୍ଭ କଲେ ଅନିରୁଦ୍ଧ ଉପରୁ ଚାପ ଟିକେ କମିବ। ଅନ୍ତତଃ ଅଫିସ୍‌ରୁ ଫେରି ସେ ଯୋଉ ଦୋକାନୀର ହିସାବ ଲେଖିବାକୁ ଯାଉଛି, ସେଇଟା ଆଉ ତାକୁ କରିବାକୁ ହେବ ନାହିଁ। କିନ୍ତୁ ସତେ କ'ଣ ସେମିତି କିଛି ହେବ ?

ଲୁଗା କାନିରେ ମୁହଁଟା ପୋଛି ନେଇ ଶ୍ରଦ୍ଧା ଘରର ବାକୀ ପଡ଼ିଥିବା କାମ କରିବାକୁ ବସିଲେ।

ଯୋଉ କଥା ତାଙ୍କୁ ଏତେ ଅସ୍ଥିର କରି ଦେଇଥିଲା, ସେଇ କଥା ମୁଣ୍ଡରେ ପୂରେଇ ସାଇକେଲ ଚଲାଉଥିଲା ଅନିରୁଦ୍ଧ। ନିଶ୍ଚୟ ତା'ର କୋଉଠି କିଛି ଭୁଲ୍ ରହିଯାଉଛି। ନ ହେଲେ ତା'ଠାରୁ ତିନି ବର୍ଷ ସାନ ଭାଇ ଏମିତି ମୁହଁ ଉପରେ କଡ଼ା କଡ଼ା କଥା କହି ଦେଇଥାଆନ୍ତା ! ଆଖିରେ ଲୁହ ଭରିଗଲା ତା'ର। ବାବା ! ଏତେ ଗୁଡ଼ାଏ ଦାୟିତ୍ୱ ଦେଇ ଦେଇଗଲ ! ସତେ କ'ଣ ମୁଁ ନେଇ ପାରିବି। ତୁମ ଭଳି ହସି ହସି ତୁଲେଇ ପାରିବି ସେସବୁ !

ଅନ୍ୟମନସ୍କ ଭାବରେ ସାଇକେଲ ଚଲାଉଥିଲେ ମଧ ସାଇକେଲ ଠିକ୍ ପହଞ୍ଚିଗଲା ଲକ୍ଷ୍ୟ ସ୍ଥଳରେ। ନା, ଅଫିସ୍ ନୁହଁ। ଅଫିସ୍ ସାରି ସବୁ ଦିନ ସନ୍ଧ୍ୟା ବେଳେ ସେ ଯେଉଁ ଦୋକାନର ଖାତାପତ୍ର ଦେଖେ, ସେଇଠି।

''ନମସ୍କାର, ଘୋଷ ବାବୁ।''

''ଆରେ ଅନିରୁଦ୍ଧ ଯେ ?'' ଖବର କାଗଜ ଉପରୁ ମୁହଁ ଉଠାଇ ଆଶ୍ଚର୍ଯ୍ୟରେ ଅନିରୁଦ୍ଧକୁ ଦେଖିଲେ ଅନନ୍ତ ନାରାୟଣ ଘୋଷ। ''ଅବେଳରେ କେମିତି ? ଅଫିସ

ନାହିଁ?''

''ଅଛି। ...ହେଲେ ଟିକିଏ ଦରକାର ଥିଲା ଆପଣଙ୍କ ପାଖରେ। ...କେଇଟା ଟଙ୍କା ଯଦି ଆଡ୍‌ଭାନ୍ସ ଦେଇଥାଆନ୍ତେ ... ହଠାତ୍ ଦରକାର ପଡ଼ିଛି ଏ ମାସ ଦରମାରୁ କାଟିନେବେ।'' କୁଣ୍ଠିତ ଭାବରେ ଅନିରୁଦ୍ଧ କହିଲା।

''ଆରେ, ଏଥିରେ ଲଜ୍ଜା ପାଇବାର କ'ଣ ଅଛି? ସୁବିଧା ଅସୁବିଧା କାହାର ନାହିଁ କହିଲ।'' ଟଙ୍କା ବଢ଼େଇ ଦେଲେ ଅନନ୍ତ ଘୋଷ।

''ମୁଁ ଆସୁଛି ତେବେ। ସନ୍ଧ୍ୟା ବେଳେ ଆସିବି।'' ଚାଲିଗଲା ସେ।

ଅନିରୁଦ୍ଧକୁ ଦେଖିଲେ ଏକ ଅଦ୍ଭୁତ ସ୍ନେହ ଭାବ ଅନନ୍ତ ଘୋଷଙ୍କ ମନ ଭିତରେ ଖେଳିଯାଏ। ଆଜିକାଲି ଯୁଗରେ ଏତେ ଭଦ୍ର, ଏତେ ଶାନ୍ତ ପିଲା ପୁଣି ହୁଅନ୍ତି! ନିଜ ପରିବାର ପାଇଁ କି କଷ୍ଟ କରି ଯାଉଛି ସେ! ଆଉ ତାଙ୍କର ଯେଉଁ କୁଳାଙ୍ଗାର ତିନିଟା ଅଛନ୍ତି ଘରେ! ଏତେ ଏତେ ବୟସ ହେଲାଣି ସେଗୁଡ଼ାଙ୍କର। ଅଥଚ କିଛି କାମଦାମ କରିବାର ଆଗ୍ରହ ନାହିଁ। ମନୋବୃତ୍ତି ନାହିଁ। ଖାଲି ତାସ୍ ପିଟି, କଉଡ଼ି ଖେଳି ଦିନଗୁଡ଼ାକ କଟେଇ ଦେଉଛନ୍ତି। ଦୋକାନକୁ ଆସିବାକୁ କହିଲେ କାହାର ମୁଣ୍ଡ ବିନ୍ଧିବ ତ କାହାର ପାଖ ସହରରେ କ'ଣ କାମ ଥିବା କଥା ମନେ ପଡ଼ିଯିବ। ଆଉ ତ ଅଛନ୍ତି ତାଙ୍କର ଗୃହିଣୀ ଲକ୍ଷ୍ମୀଟି। ସେ ଘାଘଡ଼ା ସ୍ୱରରେ ପାଟି କରି ଉଠିବେ, ''ମଲା, ଯଦି ଦୋକାନରେ ସାହାଯ୍ୟ ଦରକାର ହେଉଛି, ତେବେ ଲୋକ ରଖୁନ। ମୋର ଦୁଧଖିଆ ପିଲାଗୁଡ଼ାକ ଯାଇ ସେଠି ଖରା ଗରମରେ ସିଝିବେ କାହିଁକି ମ?''

ନାଇଁ ନାଇଁ, ସିଝିବେ କାହିଁକି ସେମାନେ? ସିଝି ସିଝି ତରଳିଯିବାକୁ ଯେ ଅଛି ସେମାନଙ୍କର ବାପଟି! ମନେ ମନେ ଚିଡ଼ିଗଲେ ବି ପାଟି ଖୋଲି ପାରନ୍ତି ନାହିଁ ଅନନ୍ତ ଘୋଷ। ମୁଣ୍ଡ ନୁଆଁଇ ସବୁ କିଛି ସହିଯିବା ତାଙ୍କର ଚିରାଚରିତ ସ୍ୱଭାବ। ସେଥିପାଇଁ ନା ଗୃହିଣୀଙ୍କ ସାଙ୍ଗରେ ବଚସା କରିପାରନ୍ତି ନା ପୁଅଗୁଡ଼ାଙ୍କ ଉପରେ ଜୋର ଦେଇ ପାରନ୍ତି।

ପୁଅ ତିନିଟାଙ୍କୁ ଏକୋଇଶ, ତେଇଶ, ପଚିଶ ବର୍ଷ। ବାହା ସାହା ହେଇ ପିଲାର ବାପା ହେଇ ସାରିଲେଣି। କିନ୍ତୁ ଗୃହିଣୀଙ୍କ ଆଖିରେ ସେମାନେ ହାତରେ ଖାଇ ଶିଖି ନ ଥିବା କୁନି ପିଲା। ଆଉ ଏ ଅନିରୁଦ୍ଧ? ଊଣେଇଶ ବର୍ଷ ବୟସରେ କି ସଂଗ୍ରାମ କରି ଚାଲିଛି! ପିଲାଟା ଯଦି ବ୍ରାହ୍ମଣ ନ ହେଇ ତାଙ୍କରି

କାୟସ୍ଥ ବଂଶର ହୋଇଥାଆନ୍ତା, ତେବେ ଜବରଦସ୍ତି ସାନଝିଅ ଗୌରୀ ସାଙ୍ଗରେ ତାକୁ ବାହା ଦେଇ ଦିଅନ୍ତେ। ସୁଖୀ ହୁଅନ୍ତା ଝିଅ। କିନ୍ତୁ ଏଭଳି କୁଳୀନ ବ୍ରାହ୍ମଣ ଘରର ପୁଅ ସାଙ୍ଗରେ ଘୋଷ ଘରର ଝିଅ ବାହାଘର !! ରାମ, ରାମ। ଏଭଳି କଥା ମନକୁ ଆଣିବା ହିଁ ପାପ। ଅନିରୁଦ୍ଧ ଯିବା ବାଟକୁ ଚାହିଁ ଦୀର୍ଘନିଶ୍ୱାସ ପକାଇ ଖବରକାଗଜକୁ ପୁଣି ଫେରିଗଲେ ଅନନ୍ତ ନାରାୟଣ ଘୋଷ।

ସେଇଦିନ ଦି'ପହରେ ସମୟ କରି ଅନିରୁଦ୍ଧ ମ୍ୟାଟ୍ରିକ୍ ପରୀକ୍ଷା ଫିସ୍ ସ୍କୁଲ୍ ଅଫିସରେ ଦେଇ ଆସିଲା। ଫିସ୍ ଦେଇ ସ୍କୁଲ୍ ଅଫିସ୍‌ରୁ ବାହାରି ଆସିବା ବେଳେ ହଠାତ୍ ତା'ର ଦେଖା ହୋଇଗଲା ରମାନାଥ ମାଇତିଙ୍କ ସାଙ୍ଗରେ। ସ୍କୁଲ୍‌ର ଗଣିତ ଶିକ୍ଷକ।

''ସାର୍ ନମସ୍କାର।''

''ଆରେ ଅନିରୁଦ୍ଧ ଯେ।'' ପୁରୁଣା ଛାତ୍ରଟିକୁ ଦେଖି ଖୁସୀ ହୋଇଗଲେ ରମାନାଥ ମାଇତି। ''ଏଠି କେମିତି ?''

''ସାନ ଭାଇର ମ୍ୟାଟ୍ରିକ୍ ପରୀକ୍ଷା ଫିସ୍ ଦେବାକୁ ଆସିଥିଲି।''

''ଓ ହଁ, ଅମରେଶ ତୁମ ଭାଇ ପରା। ...'' ଅଧିକା କିଛି କହି ଆସୁ ଆସୁ ଚୁପ୍ ହୋଇଗଲେ ସେ।

କ'ଣ କହିବାକୁ ଚାହୁଁଥିଲେ ସେ ? ହଠାତ୍ ଏମିତି କହି ଆସୁ ଆସୁ ଚୁପ୍ ହୋଇଗଲେ କାହିଁକି ? ଅନିରୁଦ୍ଧ ଉଦ୍‌ବିଗ୍ନ ଭାବରେ ପଚାରିଲା, ''ଅମୁ ଠିକ୍ ଭାବରେ ପଢ଼ାପଢ଼ି କରୁଛି ତ ସାର୍ ?''

ରମାନାଥ ମାଇତି ମୁହୂର୍ତ୍ତେ ଚୁପ୍ ହୋଇଗଲେ। ତା'ପରେ କହିଲେ, ''ଅମରେଶର ଆଜିକାଲି ପାଠରେ ଆଦୌ ମନ ନାହିଁ, ଅନିରୁଦ୍ଧ। ପିଲାଟା ଏତେ ଭଲ ପଢୁଥିଲା, ହଠାତ୍ ଯେ କାହିଁକି ଏତେ ତଳକୁ ଖସିଗଲା, ବୁଝିପାରୁନି। ତା'ର ଟେଷ୍ଟ ପରୀକ୍ଷାର ମାର୍କ ଦେଖିଛ ?''

''ଟେଷ୍ଟ୍ ପରୀକ୍ଷାରେ ଭଲ କରିଛି ବୋଲି କହୁଥିଲା ସେ। କୁଆଡ଼େ ଏଥର ସ୍କୁଲ୍‌ରୁ ମାର୍କ ଲିଷ୍ଟ୍ ଦେଇ ନାହାନ୍ତି। ତା'ର ସତୁରୀ ପର୍ସେଣ୍ଟ୍ ମାର୍କ ଅଛି ଯେ...''

ଅବାକ୍ ଭାବରେ ଅନିରୁଦ୍ଧକୁ ଦେଖିଲେ ରମାନାଥ ସାର୍। ''ସତୁରୀ ପର୍ସେଣ୍ଟ୍।

ସ୍କୁଲରୁ ପୁଣି ମାର୍କ ଲିଷ୍ଟ ଦେଇ ନାହାନ୍ତି। ଏକଥା ସବୁ ତୁମକୁ କିଏ କହିଲା ?''

''କିଏ ଆଉ କହିବ ସାର୍? ଅମୁ ଆସି ଘରେ କହିଛି। କାହିଁକି ପଚାରୁଛନ୍ତି ?''

ଏ କାହିଁକିର ଉତ୍ତର ଦେବା କ'ଣ ଏତେ ସହଜ? ରମାନାଥ ମାଇତି ଅନିରୁଦ୍ଧ ପ୍ରଶ୍ନର ଉତ୍ତର ନ ଦେଇ ଦୂରର ଅନିର୍ଦ୍ଦିଷ୍ଟ କିଛି ଗୋଟିଏ ଦେଖୁଥିଲେ ଏବଂ ଭାବି ହେଉଥିଲେ।

ହଠାତ୍ ନିଜକୁ ନିଜେ କହିଲା ଭଳି ତାଙ୍କ ପାଟିରୁ ବାହାରିଗଲା, ''ଅମରେଶ ମିଛ କହିବା ଆରମ୍ଭ କଲାଣି ତା'ହେଲେ ?''

ଅନିରୁଦ୍ଧ ମୁହଁରୁ ସବୁତକ ରକ୍ତ ଶୁଖିଗଲା। ''ମିଛ !!''

ବର୍ତ୍ତମାନର ଜଗତକୁ ଫେରି ଆସିଲେ ରମାନାଥ ମାଇତି। ନିଜର ପୂର୍ବତନ ପ୍ରିୟ ଛାତ୍ର ଉପରେ ସ୍ନେହ ଓ ଦୁଃଖର ମିଶାମିଶି ଦୃଷ୍ଟିଟିଏ ଘୂରେଇ ଆଣି ସେ କହିଲେ, ''ହଁ। ତୁମକୁ ଅମରେଶ ମିଛ କହିଛି। ଜାଣିଛ, ସେ କୌଣସି ମତେ ସେକେଣ୍ଡ ଡିଭିଜନ୍ ମାର୍କ ରଖିଛି ଟେଷ୍ଟ ପରୀକ୍ଷାରେ। ହେଲେ ସେଇ ସେକେଣ୍ଡ ଡିଭିଜନ୍ ମାର୍କ ତା'ର ମ୍ୟାଟ୍ରିକ୍‌ରେ ରହିବ କି ନାହିଁ ମୋର ଘୋର ସନ୍ଦେହ। ତୁମେ ଟିକିଏ ତା' ପଢ଼ାପଢ଼ି ଦେଖ, ଅନିରୁଦ୍ଧ। ନ ହେଲେ ଯେ ପିଲାଟାର କ୍ୟାରିଅର୍ ନଷ୍ଟ ହେଇଯିବ।''

''ମୁଁ ଦେଖିବି ସାର୍।''

ମୁଣ୍ଡ ତଳକୁ ପୋତି ଅନିରୁଦ୍ଧ ଅଫିସ୍‌କୁ ଫେରି ଆସିଲା, କିନ୍ତୁ କେଉଁଥିରେ ତା' ମନ ଲାଗିଲା ନାହିଁ।

ସବୁ କେମିତି ଗୋଳେଇ ହେଇ ଯାଉଥିଲା ତା' ଭିତରେ ଭିତରେ। ବାବାଙ୍କ ରକ୍ତ ଯେଉଁ ସାନ ଭାଇ ଦେହରେ ବୋହୁଛି, ସେ ପୁଣି ଏତେ ବଡ଼ ମିଛ କଥା କହିପାରିଲା ! କ'ଣ ହେଇଥାଆନ୍ତା ସତ କହିଥିଲେ ? ହୁଏତ ପ୍ରଥମେ ଟିକିଏ ପାଟିତୁଣ୍ଡ କରିଥାଆନ୍ତା ଅନିରୁଦ୍ଧ, କିନ୍ତୁ ପରେ ତ ପାଖରେ ବସାଇ ପାଠ ବୁଝାଇ ଦେଇଥାଆନ୍ତା ! କିଛି ନ ହେଲେ ଆହୁରି କଷ୍ଟ କରି କିଛି ପଇସା ଘର ଖର୍ଚ୍ଚରୁ କାଢ଼ି ନେଇ ତା'ର ଟିଉସନ୍ ବ୍ୟବସ୍ଥା କରିଥାଆନ୍ତା।

ଏଇଥିପାଇଁ ଏତେ ବଡ଼ ମିଛ କହିଲା ସେ !!

କୌଣସିମତେ ଅଫିସ୍ ସାରି ଘୋଷ ବାବୁଙ୍କ ଦୋକାନରେ ଅନିରୁଦ୍ଧ ପହଞ୍ଚିଲା।

କିନ୍ତୁ ସେଠି ମଧ୍ୟ ଠିକ୍ ଭାବରେ କାମ କରିପାରିଲା ନାହିଁ ସେ।

''କ'ଣ ହେଉଛି, ଅନିରୁଦ୍ଧ? ଦେହ ଭଲ ଲାଗୁନି?'' ଅନନ୍ତ ଘୋଷ ଆଶ୍ଚର୍ଯ୍ୟରେ ତା' ଆଡ଼େ ଚାହିଁ ପଚାରିଲେ।

''ମୁଣ୍ଡ ଫାଟି ଯାଉଛି।'' ଦୁଇ ହାତରେ କପାଳ ଚାପି ଧରି ଅନିରୁଦ୍ଧ କହିପକେଇଲା।

''ଆରେ ଆରେ, କହିବ ତ ସେକଥା। ଯାଅ, ଯାଅ। ଘରକୁ ଯାଇ ବିଶ୍ରାମ ନିଅ। ଏସବୁ କାମ ପରେ ହେବ।''

ଅନ୍ୟ ଦିନ କଥା ହେଇଥିଲେ ଅନିରୁଦ୍ଧ ଜମା ଶୁଣି ନ ଥାଆନ୍ତା ତାଙ୍କ କଥା। ହେଲେ ସେଦିନ ସେ ଚୁପ୍‌ଚାପ୍ ଉଠି ସାଇକେଲ୍ ଧରି ଘରକୁ ଚାଲି ଆସିଲା।

ଅଗଣାରେ ପଡ଼ିଥିବା ଦଉଡ଼ିଆ ଖଟରେ ଫାଁ ମାରି ବସିଯାଇ ଗମ୍ଭୀର ସ୍ୱରରେ ଅନିରୁଦ୍ଧ ଡାକିଲା, ''ଅମୃ, ଶୁଣିଯା।''

''ଛୋଟ ଦା' ଏପର୍ଯ୍ୟନ୍ତ ଘରକୁ ଫେରିନି।'' ତା' ହାତକୁ ପାଣି ଗିଲାସେ ବଢ଼ାଇ ଦେଇ ଅର୍ଚ୍ଚନା କହିଲା।

''ଫେରିନି ଘରକୁ?? ଏତେ ବେଳ ହେଲାଣି। ... ମା', ଓ ମା'।''

''କ'ଣ ହେଲା?''

''ରାତି ଏତେ ହେଲାଣି, ଅମୃ ଫେରିନି କାହିଁକି? ତୁମକୁ କିଛି କହି ଯାଇଥିଲା କି?''

କିଛି ଉତ୍ତର ନ ଦେଇ ଶ୍ରଦ୍ଧା ଖଟ ଉପରେ ବସିଗଲେ।

''ଅମୃ କୁଆଡ଼େ ଯାଇଛି ମା'?'' ଆଉ ଥରେ ଅନିରୁଦ୍ଧ ପଚାରିଲା।

''ମୁଁ କେମିତି କହିବି? ଆଜିକାଲି ସବୁବେଳେ ଏଇମିତି ଡେରି ଡେରି କରି ଘରକୁ ଫେରୁଛି ଅମୃ। ଅଧିକାଂଶ ଦିନ ତୋ ସାଇକେଲ ଘଣ୍ଟି ଦାଣ୍ଡରେ ବାଜିବାର ଗୋଟାଏ ମୁହୂର୍ତ୍ତ ଆଗରୁ ଚୋର ଭଳି ଘରେ ପଶିଯାଏ ସେ।'' ହଠାତ୍ କଥା ବଦଳାଇବାର ଚେଷ୍ଟା କରି ଶ୍ରଦ୍ଧା ପଚାରିଲେ, ''... ଆଜି ତୁ ଏତେ ଶୀଘ୍ର ଫେରି ଆସିଲୁ ଯେ? ଦେହ ଭଲ ଅଛି ତ?''

ନିଜ ଦେହ କଥାର କୌଣସି ଜବାବ ନ ଦେଇ ଅନିରୁଦ୍ଧ ପଚାରିଲା,

''ତୁମେ ଅମୁ ବିଷୟରେ ମତେ ଆଗରୁ କିଛି କହିନ କାହିଁକି ମା' ?''

''କ'ଣ କେମିତି କହିବି ? ଏତେ କଷ୍ଟ କରି ଘରକୁ ଫେରୁଛୁ, ସେତିକି ବେଳେ ଅଭିଯୋଗର ତାଲିକା ମେଲାଇଦେବି ?''

''କ୍ଳାନ୍ତ ହେଉଛି ବୋଲି ଏତେ ବଡ଼ କଥାଟାଏ ମତେ କହିବନି ? ମ୍ୟାଟ୍ରିକ ପରୀକ୍ଷା ତା'ର ମୁଣ୍ଡ ଉପରେ, ଏଇ ସମୟରେ କ'ଣ ଏମିତି ଘଣ୍ଟା ଘଣ୍ଟା ଧରି ତା'ର ଘରୁ ବାହାରେ ରହିବା କଥା ?''

''ତୁ ଚିନ୍ତା କରନା । ଆସିଯିବ ଯେ ଅମୁ । ହୁଏତ କୋଉ ସାଙ୍ଗ ପାଖକୁ ପାଠ ବୁଝିବାକୁ ଯାଇଥିବ ।'' ଶ୍ରଦ୍ଧାଙ୍କର ନିଜ କଥା ଉପରେ ନିଜର ଭରସା ନ ଥିଲା ।

''ପାଠ ବୁଝିବାକୁ !! କାହିଁକି ମୋତେ ଭୁଲେଇବାର ଚେଷ୍ଟା କରୁଛ ମା' ?'' ଚାପା ରାଗରେ ଆଖି ଜଳୁଛି ତା'ର ।

କିଛି ନ କହି ଚୁପ୍ ରହିଗଲେ ଶ୍ରଦ୍ଧା ।

''ମା', ତୁମେ ଅର୍ଚ୍ଚନାକୁ ଚାହା କରିବାକୁ ମନା କର । ମୁଁ ଯାଇ ଦେଖେ ଅମୁ କୋଉଠି । ତା' ଚୁଟି ଧରି ଯଦି ଟାଣି ନ ଆଣିଛି ଆଜି ତା'ର ଦିନେକୁ ମୋର ଦିନେ ।'' ପାଦରେ ଚଟି ଗଳେଇ ନେଇ ତମତମ ହେଇ ଘରୁ ବାହାରି ଚାଲିଗଲା ଅନିରୁଦ୍ଧ ।

ଏବଂ ଫେରି ଆସିଲା ଘଣ୍ଟାଏ ପରେ । ଥପ୍ କରି ମାଟି ଉପରେ ବସିଯାଇ ସେ ବିକଳରେ ପାଟି କରି ଉଠିଲା, ''ମା' ଗୋ...''

''କ'ଣ ହେଲାରେ ବାବୁ ?'' ବ୍ୟସ୍ତ ଭାବରେ ଶ୍ରଦ୍ଧା ଭିତରୁ ଧାଇଁ ଆସିଲେ ।

ମା'ଙ୍କୁ କିଛି ନ କହି ଆଣ୍ଠୁ ଉପରେ ମୁହଁ ମାଡ଼ି ଦେଇ ସକ ସକ ହେଇ କାନ୍ଦି ପକେଇଲା ଅନିରୁଦ୍ଧ ।

ଆଶଙ୍କାରେ ଶ୍ରଦ୍ଧାଙ୍କ ହାତ ଗୋଡ଼ ଥଣ୍ଡା ହେଇଗଲା । ପାଟି ଭିତର ଅଠା ଅଠା ହେଇ ଯାଉଛି । ତଥାପି ଟଣା ଗଳାରେ ସେ ପଚାରିପକେଇଲେ, ''ଅମୁ କାହିଁ ? ଏଁ ? ତୁ ପରା ତାକୁ ଆଣିବାକୁ ଯାଇଥିଲୁ ?''

''ମା' ଗୋ,'' ମୁଣ୍ଡ ଉପରକୁ ଉଠେଇଲା ଅନିରୁଦ୍ଧ । ''ମୁଁ ଅମୁର ସାଙ୍ଗ ଖୋକନ୍ ଘରକୁ ଯାଇଥିଲି । ଖୋକନ୍ କହିଲା...''

''କ'ଣ କହିଲା ?''

"ଅମୁ ପାବନା ଛାଡ଼ି ପଳେଇଛି ।"

"ପଳେଇଛି ମାନେ ??"

"ଆଜି ସ୍କୁଲ୍ ଛୁଟି ପରେ ପରେ ସେ ଖୋକନ୍‌ଠୁ ଦିଇଟା ଟଙ୍କା ଧାର ମାଗିଲା । ପଚାରିଲାରୁ କହିଲା ଯେ ସେ ଈଶ୍ୱରଦି ଷ୍ଟେସନ୍ ଯିବ । ସେଠୁ ପୁଣି ଟ୍ରେନ୍ ଧରି ଚାଲିଯିବ ।"

"ଚାଲିଯିବ ? କୁଆଡ଼େ ଚାଲିଯିବ ?"

"କିଏ ଜାଣେ ?"

"କିଏ ଜାଣେ ମାନେ ?? ଖୋକନ୍ ତାକୁ ପଚାରିଲାନି ? ଆଟକିଲା ନାହିଁ ? କିଛି ନ କରି ପାରିଲେ ଦୌଡ଼ି ଆସି ମତେ ଖବରଟା ଦେଇ ପାରିଲା ନାହିଁ ?" ଶ୍ରଦ୍ଧା ସଁ ସଁ ହେଇ କହି ପକେଇଲେ ।

"କାହିଁକି ପର ପିଲାର ଦୋଷ ଧରୁଛ ମା' ? ଆମ ଅମୁ ଯେତେବେଳେ ଏଇମିତି କାଣ୍ଡ କାରଖାନା କରିଛି..."

"ମୁଁ ଦୋଷ କାହିଁକି ଧରିବି ମ ? ହେଲେ ସାଙ୍ଗଟାଏ, ସେ ଥରେ ପଚାରିଲା ନାହିଁ କେମିତି ?"

"ପଚାରିନି ବୋଲି କେମିତି ଜାଣିଲ ? ପଚାରିଥିଲା ଖୋକନ । କିନ୍ତୁ ଅମୁ ତାକୁ କିଛି ଠିକ୍ ଭାବରେ କହିଲା ନାହିଁ । .. ହେଲେ ଜାଣ ମା', ଖୋକନ୍ କହିଲା ଯେ ଅମୁ କୁଆଡ଼େ ଦିନେ ଏମିତି ଘରୁ ଚାଲିଯିବା କଥା ସାଙ୍ଗମାନଙ୍କ ଆଗରେ କହୁଥିଲା । କହୁଥିଲା ଯେ ଏଠି ତାକୁ କିଛି ଭଲ ଲାଗୁନି । ସେ ହୁଏତ ପଳେଇବ ଫରିଦ୍‌ପୁର, ନହେଲେ ଢ଼ାକା କି କଲିକତା ।"

ଢ଼ାକା ? ଫରିଦ୍‌ପୁର ? କଲିକତା ?

କେଉଁଠିକି ଚାଲିଗଲା ତାଙ୍କର ଏଡ଼ିକି ଟିକି ପିଲାଟା ? କାହିଁକି ଏ ଦୁର୍ବୁଦ୍ଧି କଲା ? ଶ୍ରଦ୍ଧା ଭିତରେ ଭିତରେ ବାଡ଼େଇ କଚାଡ଼ି ହେଇ ପଡୁଥିଲେ ।

"ମା', ଅମୁ ଏମିତି କାହିଁକି କଲା ? ମୁଁ ତ ତା'ର କୌଣସି ଅଭାବ ରଖିନି । ବହି ଖାତା ପେନ୍ ପାଇଁ ତାକୁ କେବେ ଅସୁବିଧାରେ ପଡ଼ିବାକୁ ଦେଇନି । ଏଇତ, ଆଜି ତା' ମ୍ୟାଟ୍ରିକ୍ ପରୀକ୍ଷା ଫିସ୍ ବି ନିଜେ ଯାଇ ଦେଇ ଆସିଲି । ... ତା'ହେଲେ ଅମୁ ଏମିତି କାମଟାଏ କାହିଁକି କଲା, କୁହ ତ ମା' ?" ଅନିରୁଦ୍ଧ ବିକଳ ହେଇ ପଚାରି ଉଠିଲା ।

ତା' ପ୍ରଶ୍ନର ଉତ୍ତର ଦେବାକୁ ଭାଷା ନାହିଁ ଶ୍ରଦ୍ଧାଙ୍କ ପାଖରେ। ସେ ଯେମିତି ପଥର ହେଇଯାଉଛନ୍ତି।

''.. ମୁଁ ଏବେ ମୋ ପାଗଳା ସାନ ଭାଇଟାକୁ କୋଉଠି ଖୋଜିବି ଗୋ ମା' ?'' ଅନିରୁଦ୍ଧ ଆଖିରୁ ଟପ୍ ଟପ୍ ହେଇ ଲୁହ ଝରିଆସିଲା।

ହେଲେ ଶ୍ରଦ୍ଧାଙ୍କ ଆଖିରେ ଲୁହ ନ ଥିଲା। ଶୁଖିଲା ଆଖି ଓ ତା'ଠୁ ଆହୁରି ଶୁଖିଲା ସ୍ୱର ନେଇ କହିଲେ, ''ଯାଉ, କପାଳ କଷି ନେଉ ନିଜର।'' ଭିତରକୁ ଚାଲିଗଲେ ସେ। ତାଙ୍କ ଭିତରେ ଭିତରେ ଝରି ଯାଉଥିବା ରକ୍ତ ଧାରକୁ ଅନିରୁଦ୍ଧ ଦେଖିପାରିଲା ନାହିଁ।

ସମସ୍ତେ କହନ୍ତି ସମୟ ଜୀବନର ସବୁ କ୍ଷତ ଭରିଦିଏ। ଭରି ଦେଉ ନ ଦେଉ, ଦିନ ମାସ ବର୍ଷର ଗତିରେ କ୍ଷତର ରକ୍ତକ୍ଷରଣ ଅନ୍ତତଃ କମିଯାଏ। ଏଇ ଯେମିତି ତାଙ୍କ ସ୍ୱାମୀଙ୍କର ଅବେଳରେ ଚାଲିଯିବା ଘଟଣାଟା। ଚୁଲି ଉପରେ ଫୁଟୁଥିବା ଚାଉଳକୁ ଅଦେଖା ଭାବରେ ଚାହିଁ ରହି ଭାବି ହେଉଥିଲେ ଶ୍ରଦ୍ଧା। ତାଙ୍କ ସ୍ୱାମୀଙ୍କର ଯିବାର ବୟସ ହେଇ ନ ଥିଲା। ସଂସାର ଛାଡ଼ିବାର ଆକାଂକ୍ଷା ବି ନ ଥିଲା। ତଥାପି ଯିବାକୁ ହେଲା। ସେତେବେଳେ ଏଇ ପିଲାଙ୍କ ମୁହଁକୁ ଚାହିଁ ଶ୍ରଦ୍ଧା ଦମ୍ଭ ଧରିଥିଲେ। ନିୟତିର ଲୀଳା ଖେଳକୁ ନ ମାନି ଉପାୟ ନାହିଁ - ଏଇଭଳି ଗୋଟାଏ ଭାବ ମୁହଁରେ ଫୁଟେଇଥିଲେ। ମିଛରେ ମିଛରେ ସେଇ ଭାବଟିକୁ ନିଜ ଚେହେରା ଉପରେ ସଜେଇ ରଖି ଚଳପ୍ରଚଳ ହେଉ ହେଉ ଦିନେ ଶ୍ରଦ୍ଧା ଜାଣି ପାରିଥିଲେ ଯେ ସେ ଦୁଃଖର ଭାର କମିଯାଇଛି। ଆଉ ଆଗ ଭଳି ଏକାନ୍ତରେ ତାଙ୍କୁ ମାଡ଼ି ବସୁନାହିଁ।

ମୃତ୍ୟୁ ଭଳି ସତ୍ୟକୁ ନ ମାନି ତାଙ୍କର ଉପାୟ ବା କ'ଣ ଥିଲା ?

ହେଲେ, ଅମୁର ଘର ଛାଡ଼ି ପଳେଇବା ଘଟଣାଟିକୁ ଯେ ସେ କୌଣସି ମତେ ମାନି ନେଇ ପାରୁ ନାହାନ୍ତି! ଅମୁ ଘର ଛାଡ଼ି ଯିବାର ଦୁଇ ମାସ ହେଇଗଲା, ଅଥଚ କିଛି କୁଆଡୁ ଖବର ମିଳିଲା ନାହିଁ!

ଇଚ୍ଛା ନ ଥିଲେ ମଧ୍ୟ ଅନିରୁଦ୍ଧ ପୋଲିସ୍‌ରେ ଖବର ଦେଇଥିଲା। ପୋଲିସ

ବି ଦିନା କେତେ ତତ୍ପରତା ଦେଖାଇଲେ, କିନ୍ତୁ କ୍ରମେ ସେ ଉତ୍ସାହରେ ଭଟ୍ଟା ପଡ଼ିଗଲା। ପଚାରିଲେ, ଉତ୍ତର ମିଳୁଥିଲା, 'ବଡ଼ ବଡ଼ ସହରର ଲକ୍ଷ ଲକ୍ଷ ଜନତା ଭିତରୁ କୋଉଠି ଯାଇ ଖୋଜିବୁ?' ପୁଣି ଭରସା ଦେବା ଭଳି ସେମାନେ କହୁଥିଲେ, 'ନିଶ୍ଚିନ୍ତ ରୁହନ୍ତୁ। କିଛି ଅଘଟଣ ଘଟିଥିଲେ ନିଶ୍ଚୟ ଜଣା ପଡ଼ିଯାଇଥାଆନ୍ତା। ପିଲାଟି ଯେଉଁଠି ଅଛି ଭଲରେ ଅଛି।'

ସାନ୍ତ୍ୱନା ଦେଇ ସେମାନଙ୍କର କର୍ତ୍ତବ୍ୟ ଶେଷ ହେଇଯାଇଥିଲା। କିନ୍ତୁ ଘର ଲୋକେ କ'ଣ ନିଶ୍ଚିନ୍ତ ହେଇ ପାରିଥିଲେ?

ଭାତ ହେଇଗଲାଣି। ଚୁଲି ଉପରୁ ବଡ଼ ଡେକଚିଟା ଓହ୍ଲେଇ ନେଇ ପେଜ ଗାଳି ବସିଲେ ଶ୍ରଦ୍ଧା। ପେଜରୁ ଗରମ ବାମ୍ଫ ଉଠୁଛି। ଆଖି ସାମ୍ନାରେ ଧୂଆଁର ପର୍ଦ୍ଦାଟିଏ। କିନ୍ତୁ ସେଇ ଧୂଆଁଳିଆ ପରିବେଶରେ ସବୁ କିଛି ଜଳଜଳ ହେଇ ଶ୍ରଦ୍ଧାଙ୍କୁ ଦେଖାଯାଉଥିଲା। ଅମୁ ଘର ଛାଡ଼ି ଚାଲିଯିବା ରାତି କଥା। କି ଛଟପଟ ହେଇ ନ ଥିଲେ ଘରଟାଯାକ ଲୋକ ସେଦିନ! ରାତିରେ ଖାଇ ପାରିଲେ ନାହିଁ କେହି। ନିଦ ହେଲାନି କାହାର। ଆଖି ଲୁହ ପୋଛି ପୋଛି ରାସ୍ତାକୁ ଚାହିଁ ଚାହିଁ ରାତି କଟିଗଲା ସମସ୍ତଙ୍କର।

ଯେଉଁ ଅନୁପମା ଭୋକ ଆଦୌ ସମ୍ଭାଳି ପାରେ ନାହିଁ, ସେ ମଧ୍ୟ ସେଦିନ ଭାତ ଥାଳିରେ ହାତ ଦେଇ ପାରିଲା ନାହିଁ। ତା'ର ସବୁତକ କଳି ଛୋଟ ଦା' ସାଙ୍ଗରେ। ଛୋଟ ଦା' ସବୁବେଳେ ତା' ଲମ୍ବା ବେଣୀ ଟାଣି ଧରି ଯାଉଣୁ ଆସୁଣୁ ପିଠିରେ ଶକ୍ତ ବିଧାଟାଏ ଥୋଇଦିଏ। ଖାଇବା ବେଳେ ତା'ରି ଥାଳିରୁ ପୋଟଳ ଭଜାଟିଏ ବା ଡାଲିର ବରାଟିଏ ଚଟ୍ କରି ଉଠାଇ ନେଇ ପାଟିରେ ପକେଇ ଦିଏ। ନାଲିସ୍ କଲେ, ଚୋରିମାନା ଆସି ପଡ଼େ ଅନ୍ୟ ରୂପରେ। ଖାତାରେ କାଳି ଢ଼ଳା ହେଇଯାଇଥାଏ ବା ପେନ୍‌ର ନିବ୍ ଭାଙ୍ଗି ଯାଇଥାଏ।

କମ୍ ହଇରାଣ କରେ ତାକୁ ଛୋଟ ଦା'!

ଅନୁପମାକୁ ଯାଉଣୁ ଆସୁଣୁ ଜଳାଉଥିବା ଛୋଟ ଦା' ଘର ଛାଡ଼ି ଚାଲିଯାଇଛି ମାନେ ତ ତା'ର ଖୁସୀ ହେବା କଥା। କିନ୍ତୁ କାହିଁକି ସବୁ ପିତା ଲାଗିଥିଲା ତାକୁ? କାହିଁକି ଖାଇବା ଜିନିଷ ଦେଖିଲେ ବାନ୍ତି ଲାଗିଥିଲା? କାହିଁକି ଆଖିରେ

ସବୁବେଳେ ଲୁହ ଭର୍ତ୍ତି ହେଇଯାଉଥିଲା ?

ସବୁ ଭାଇ ଭଉଣୀଙ୍କ ଭିତରେ ଶାନ୍ତଶିଷ୍ଟ ଅର୍ଚ୍ଚନା । ସବୁଠାରୁ ବେଶି ନରମ ସ୍ୱଭାବ ତା'ର । ତଥାପି ସେ ମଧ ବ୍ୟସ୍ତ ବିବ୍ରତ ହେଇଯାଇଥିଲା । ସ୍କୁଲ୍ ଯାଇ ପାରି ନ ଥିଲା କେଇଟା ଦିନ । ଅଧିକାଂଶବେଳେ ରାସ୍ତାକୁ ଚାହିଁ ବସି ରହୁଥିଲା । ହଠାତ୍ ଯେମିତି ସେଇ ରାସ୍ତା ଦେଇ ଚାଲି ଚାଲି ଆସି ତାଙ୍କ ଘରେ ପହଞ୍ଚିଯିବ ଛୋଟ ଦା' ।

କେହି ତ ଆସିଲେ ନାହିଁ । କାହା ଖବର ବି ସୁଦ୍ଧା ପହଞ୍ଚିଲା ନାହିଁ । ଦୁଇ ମାସ ହେଇଗଲା ।

ଦୀର୍ଘ ନିଶ୍ୱାସ ନେଇ ଶ୍ରଦ୍ଧା ଭାତ ଡେକ୍‌ଚିର ଘୋଡ଼ଣୀ ଅଳ୍ପ ଖୋଲି ଚୁଲି ପାଖରେ ରଖିଲେ । ପରିବା କଟା ହେଇ ଥୁଆ ହେଇଛି । ସବୁ ମିଶାମିଶି କରି ଝୋଳ ତରକାରୀଟିଏ କରିଦେବେ । ଚୁଲି ଉପରେ କରେଇ ବସେଇ ତେଲ ଦେଉ ଦେଉ ବାହାର ଛିଟିକିଣିଟା କିଏ ଖଡ଼୍ ଖଡ଼୍ କରିଉଠିଲା ।

ଏ ଅବେଳରେ କିଏ ମ ? ଚମକି ପଡ଼ୁ ପଡ଼ୁ ଶ୍ରଦ୍ଧା ହଠାତ୍ କାହିଁକି ଉଲ୍ଲସିତ ହେଇ ଉଠିଲେ । ଫେରିଆସିଲା କି ତାଙ୍କ ଗଳାମାଳି ? ମା' ମନର ଦୁଃଖ ତାକୁ ଘର ଆଡ଼କୁ ଟାଣି ଆଣିଲା କି ? ପାଗଳୀଙ୍କ ଭଳି ସେ ଧାଇଁ ଦାଣ୍ଡ କବାଟଟା ଖୋଲି ଦେଲେ ।

କାହିଁ ତାଙ୍କ ଅମୁ ? କାହିଁ ??

ବାହାରେ ବ୍ୟାଗ୍‌ଟିଏ ଝୁଲେଇ ଠିଆ ହେଇଥିଲା ପୋଷ୍ଟ ପିଅନ୍ ।

ଧସିଯାଇଥିବା ସ୍ୱରରେ ଶ୍ରଦ୍ଧା ପଚାରି ଉଠିଲେ, ''କ'ଣ ?''

ତାଙ୍କ ହାତକୁ ମନିଅର୍ଡ଼ରଟାଏ ବଢ଼ାଇ ଦେଇ କହିଲା, ''କଲିକତାରୁ ପାଞ୍ଚ ଟଙ୍କା ଆସିଛି ।''

କଲିକତାରୁ ?? ସାନ ଭାଇକୁ ଏତେ କରି ମନା କରିଥିଲେ, ତଥାପି ଶୁଣିଲା ନାହିଁ ସେ ? ପୋଷ୍ଟ ପିଅନ୍ ହାତରୁ କାଗଜ ଖଣ୍ଡିଏ ନେଇ ପ୍ରେରକ ନାଁ ଉପରୁ ଆଖି ବୁଲେଇ ଆଣିଲେ ଶ୍ରଦ୍ଧା ।

ଏ କାହା ନାଁ ଲେଖା ହେଇଛି ?? କାହାର ? ଶ୍ରଦ୍ଧାଙ୍କର ବୋଧହୁଏ ଚାଳିଶ ହେଲାଣି । ଅକ୍ଷର ଭଲରେ ପଢ଼ି ପାରୁନାହାନ୍ତି ଦେଖୁନ । ''ଏ ଅର୍ଚ୍ଚନା, ଆସିଲୁ ମା' ଏଠିକି ।'' ଟଣା ସ୍ୱରରେ ସେ ବଡ଼ ଝିଅକୁ ଡାକିଲେ । ''ଦେଖିଲୁ ଲୋ

କୋଉଠୁ ଆସିଛି ଏ ମନିଅର୍ଡ଼ର।''

''ମା' ...'' ଅର୍ଚ୍ଚନା ଆଖିରେ, ସ୍ୱରରେ ବିହ୍ୱଳତା। ''ମା', ଛୋଟ ଦା' ପଠେଇଛି ମନିଅର୍ଡ଼ର।''

ଶ୍ରଦ୍ଧାଙ୍କର ତା'ହେଲେ ନାଁ ପଢ଼ିବାରେ ଭୁଲ ହେଇ ନ ଥିଲା।

''କ'ଣ ଲେଖିଛି ଅମୁ?'' ସେ କାନ୍ଦିବେନି। ଆଦୌ କାନ୍ଦିବେନି।

''ଛୋଟ ଦା' ଲେଖିଛି ଯେ ସେ କାମଟେ ପାଇଯାଇଛି। ପ୍ରଥମ ମାସର ଦରମା ପାଇ ଘର ପାଇଁ ଟଙ୍କା ପଠଉଛି। ଏ ଟଙ୍କାରୁ ଦି'ଟା ଟଙ୍କା ଖୋକନ୍ ଦା'କୁ ଦେଇଦେବ। ବାକୀ ଟଙ୍କା ଦାଦା ହାତରେ ଦେବ।''

''ଖାଲି ଏତିକି? ଆଉ କିଛି ଲେଖିନି ଅମୁ? କୋଉଠି ଅଛି, କେମିତି ଅଛି, କ'ଣ ଖାଉଛି ..'' ଆଉ ସହି ପାରିଲେ ନାହିଁ ଶ୍ରଦ୍ଧା। ଶାଢ଼ି କାନି ଆଖିରେ ମାଡ଼ି ଦେଇ ଜୋରରେ କାନ୍ଦି ପକେଇଲେ ସେ।

''ବ୍ୟସ୍ତ କାହିଁକି ହେଉଛ ମା'?'' ଭିଜା ଭିଜା ସ୍ୱରରେ ଅର୍ଚ୍ଚନା ସାନ୍ତ୍ୱନା ଦେଲା, ''ଆଜି ଯଦି ଛୋଟ ଦା'ର ମଡ଼ିଅର୍ଡ଼ର ଆସିଲା, ତାହେଲେ ଖୁବ୍ ଶୀଘ୍ର ତା' ଚିଠି ଆସିବ।''

କାହାକୁ କିଛି ନ କହିଲେ ମଧ ଚୁପ୍‌ଚାପ୍ ସାନ ପୁଅର ଚିଠି ପାଇଁ ଅପେକ୍ଷା କରିବାଟା ଶ୍ରଦ୍ଧାଙ୍କର ଗୋଟାଏ କାମ ହେଇଗଲା। ସବୁ କାମ ଭିତରେ ସେ କାନେଇ ରହୁଥିଲେ ପୋଷ୍ଟମ୍ୟାନ୍‌ର ସାଇକେଲ୍ ଘଣ୍ଟି ଶବ୍ଦକୁ ଏବଂ ତାଙ୍କ ଘର ଟପି ଶବ୍ଦଟି ଚାଲିଯିବା ପରେ କାନିରେ ଆଖି ଲୁହ ପୋଛି ଦେଇ ଘରର ଅନ୍ୟ କାମରେ ହାତ ଦେଉଥିଲେ।

ଦିନେ କିନ୍ତୁ ବ୍ୟତିକ୍ରମ ଘଟିଲା। ତାଙ୍କରି ଘର ସାମ୍ନାରେ ସାଇକେଲ୍ ଘଣ୍ଟି ଟିଣି ଟିଣି ହେଇ ଦି'ଥର ବାଜି ଉଠିଲା। ଆଉ ବଡ଼ ପାଟିଟେ ଭାସି ଆସିଲା, ''ଚିଠି।''

ବାହାରକୁ ଧାଇଁ ଆସିଲେ ଶ୍ରଦ୍ଧା। ଅଭିମାନୀ ପୁଅ ତାଙ୍କର ଚିଠି ଲେଖିଲା ଶେଷରେ। ଭୋଳାନାଥଙ୍କର ଘର କଥା ମନେ ପଡ଼ିଲା ତା'ହେଲେ?

କାଗଜ ଖଣ୍ଡିକ ଉପରେ ଆଖି ବୁଲେଇ ଆଣି କାନ୍ଥକୁ ଆଉଜି ବସିଗଲେ ଶ୍ରଦ୍ଧା। ନା, ଅମୁର ଚିଠି ନୁହଁ। ତେବେ ଅମୁର ଖବର ଦେଇ ସାନ ଭାଇ ବୁନୁର ଚିଠି।

ବିନୟ ଚିଠି ଲେଖିଥିଲା କଲିକତାରୁ।

ଅମରେଶ ମିଳିଛି।

ଷୋହଳ ବର୍ଷର ପିଲାଟି ପରୀକ୍ଷା ଫିସ୍ ନେଇ ଘରେ ଅଶାନ୍ତି କରି ସାରିବା ପରେ ସ୍କୁଲ୍ ବାହାରି ଯାଇଥିଲା। କିନ୍ତୁ ଅଧା ରାସ୍ତାରେ ତା'ର ନିଜ ଉପରେ ଏଭଳି ରାଗ ହେଲା ଯେ ସେ ଆଉ ସ୍କୁଲକୁ ନ ଯାଇ ଏକମୁହାଁ ହେଇ ଚାଲି ଯାଇଥିଲା ଇଚ୍ଛାମତୀ ନଦୀ କୂଳକୁ। ସାରା ଦିନ ସେଇଠି ବସିବା ପରେ ଚାରିଟା ବେଳେ ଗୋଟାଏ ହୋସ୍‌ରେ ତା' ସାଙ୍ଗ ଖୋକନ୍‌ଠୁଁ ଦିଇଟା ଟଙ୍କା ଧାର ନେଇ ସେ 'ଈଶ୍ୱରଦୀ' ଚାଲିଯାଇଥିଲା। ତା'ପରେ ଟିକେଟ୍, ବିନା ଟିକେଟ୍‌ରେ ବସ୍ ଟ୍ରେନ୍ କରି କୌଣସିମତେ ଆସି ପହଞ୍ଚିଗଲା କଲିକତାରେ।

ମହାନଗରୀରେ ଏଠି ସେଠି କାମ ଖୋଜୁ ଖୋଜୁ ଗୋଟିଏ ହୋଟେଲରେ ପଶି ଯାଇଥିଲା ସେ। ସେମିତି କିଛି ବଡ଼ ହୋଟେଲ ନୁହଁ। ତେବେ ଅଫିସ୍ ବଜାରର ମଝିଆ ମଝି ବୋଲି ବ୍ୟବସାୟ ମୋଟାମୋଟି ଭଲ ଚାଲେ। ଭଲ ମନ୍ଦ ସବୁ ରକମର ଲୋକ ଆସି ଚାହା ପିଇବାକୁ, ସିଙ୍ଗଡ଼ା, ଚପ୍ ଖାଇବାକୁ ଭିଡ଼ ଜମାନ୍ତି। ସେଇମାନଙ୍କ ଭିତରେ ପାଖ ପୋଲିସ୍ ଷ୍ଟେସନ୍‌ର କନେଷ୍ଟବଲମାନେ, ପୁଣି କେତେବେଳେ କେମିତି ସବ୍ ଇନ୍‌ସପେକ୍ଟରମାନେ ବେଳେ ବେଳେ ଦେଖାଯାଆନ୍ତି।

ଦିନେ ସକାଳୁ ସକାଳୁ ଚାହା ପିଇବାକୁ ଆସି ଜଣେ ଏସ୍.ଆଇ.ଙ୍କର ନଜରରେ ପଡ଼ିଯାଇଥିଲା ଅମରେଶ। ଭଦ୍ର ଘରର ପିଲା ଭଳି ଦିଶୁଥିବା ପିଲାଟି ଯେ କାହିଁକି ଅଇଁଠା ବାସନ ଉଠାଉଠି କରୁଛି, ତା' ନେଇ ତାଙ୍କର କୌତୂହଳ ହେଇଥିଲା। ସେ ଜବରଦସ୍ତ ଜେରା ଆରମ୍ଭ କରି ଦେଇଥିଲେ। ଅମରେଶ ପ୍ରଥମେ କିଛି ମିଛ, କିଛି ସତ ମିଶାଇ କାହାଣୀ ଫାନ୍ଦିଥିଲା। କିନ୍ତୁ ସେଇଟା କାମ ଦେଲାନି। ପୋଲିସ୍ ଲୋକ, ସତ ମିଛ ଠଉର କରିବାକୁ କ'ଣ ବେଳ ଲାଗେ? ଶେଷରେ ଧମକେଇଥିଲେ ସବ୍ ଇନ୍‌ସପେକ୍ଟର୍ ଜଣଙ୍କ। ପୋଲିସ୍ ଆଗରେ ଆଉ ବେଶୀ ସମୟ ମିଛ କହି ପାରି ନ ଥିଲା ଅମରେଶ। ବାଧ ହେଇ ଘରୁ ଲୁଚି ଚାଲି ଆସିଥିବା କଥା ସେ କହିଥିଲା।

"ହୁଁ।" ଭାବିବା ଭଳି ହେଇ ସବ୍ ଇନ୍‌ସପେକ୍ଟର୍ ସପନ ଦାସଗୁପ୍ତ କହିଥିଲେ, "ଏଇଟା ତ ଭଲ କଥା ନୁହଁ। ବ୍ରାହ୍ମଣ ଘର ପିଲା ହେଇ ଅଇଁଠା ବାସନ ଘାଣ୍ଟୁଛ! ତୁମ ଘର ଠିକଣା ଦିଅ, ମୁଁ ଘର ସାଙ୍ଗରେ ଯୋଗାଯୋଗ କରିବି।

ସେମାନେ ଆସି ତୁମକୁ ନେଇଯିବେ।''

ପୁଣି ସେଇ ପାଗଳାମି ! ପୁଣି ସେଇ ଦାଦା ପାଖରେ ହାତପତା ! ତରବର ହେଇ ଅମରେଶ କହି ପକାଇଥିଲା, ''ମୋ ମାମୁ ଏଠି ଥାଆନ୍ତି ଯେ। ତାଙ୍କ ପାଖକୁ ନହେଲେ ମୁଁ ଚାଲିଯିବି।''

ସପନ ଦାସଗୁପ୍ତ ଅମରେଶ କଥାରେ ବିଶ୍ୱାସ ନ କରି ନିଜେ ତା' ମାମୁଙ୍କ ସାଙ୍ଗରେ ଯୋଗାଯୋଗ କରିଥିଲେ।

ଏବଂ ତା'ପରେ ଏଇ ଚିଠି।

''...ତୁମେମାନେ କେହି ବ୍ୟସ୍ତ ହେବନି। ଅମୁ ଭଲ ଅଛି। ସେ ମୋ ପାଖରେ ରହିବାକୁ ରାଜି ହେଲାନାହିଁ। ତେବେ ମୁଁ କଥାବାର୍ତ୍ତା କରି ମୋର ଜଣେ ସାଙ୍ଗର ଫ୍ୟାକ୍ଟ୍ରିରେ ତାକୁ ରଖେଇ ଦେଇଛି। ସେ ଗୋଟାଏ ମେସ୍‌ରେ ଅଛି। ମେସ୍ ମାଲିକ ସାଙ୍ଗରେ ମୋର ଜଣାଶୁଣା। ସବୁ ଖବର ମୁଁ ଠିକ୍ ଠିକ୍ ପାଉଛି। ଛୋଟ ଦି', ତୁ ଜମା କନ୍ଦାକଟା କରିବୁନି। ଇତି...''

ଚିଠି ପଢ଼ା ଶେଷ କରି ହସି ପକେଇଲା ଅନିରୁଦ୍ଧ। କହିଲା, ''ଦେଖୁଛ ମା', ଆମ ଅମୁର କାଣ୍ଡ କାରଖାନା। ଯେ ଶେଷରେ ଯାଇ ପହଞ୍ଚିଗଲା କଲିକତାରେ ? ତାକୁ ଆଉ ପାରି ହେବନି। ... ଭଲ ହେଲା, ମାମୁ ମୋ ଦାୟିତ୍ୱ ନେବାକୁ ଚାହୁଁଥିଲେ। ଏବେ ଅମୁ ଦାୟିତ୍ୱ ନିଅନ୍ତୁ।''

ଶ୍ରଦ୍ଧା କିଛି କହିଲେ ନାହିଁ। ଆଖିର ଲୁହ ଲୁଚାଇବାକୁ ବୁଲିଗଲେ ଯାହା। କିନ୍ତୁ ପୁଅ ପାଖରୁ ମନୋଭାବକୁ ଲୁଚେଇ ହେଲାନି। ''ତୁମେ ମନ ଖରାପ କରୁଛ କାହିଁକି ମା' ? ଅମୁ ଏବେ କଲିକତାରେ ରହିଲା। ମାମୁଙ୍କ ଘରେ ନ ରହିଲେ ବି ପାଖରେ ପାଖରେ ତ ରହିଲା। ତୁମର ଖୁସୀ ହେବା କଥା।''

''ଖୁସୀ !'' କାନିରେ ଆଖି ପୋଛିଲେ ଶ୍ରଦ୍ଧା। ''ତୋ ବାବାଙ୍କର ଗୋଟି ଗୋଟି ସ୍ୱପ୍ନ କେମିତି ପାଣିରେ ମିଳେଇ ଯାଉଛି ସେଇ କଥା ଦେଖିଲେ ଖୁସୀ କେମିତି ହେବି ? ତୋ ବାବା ଚାହୁଁଥିଲେ ତାଙ୍କର ସବୁ ପିଲା ପାଠ ପଢ଼ିବେ। ନିଜ ଗୋଡ଼ରେ ଠିଆ ହେବେ। କାହିଁ, ସେମିତି ତ କିଛି ହେଉ ନାହିଁ। ତୁ ପଢ଼ା ଛାଡ଼ି ଦେଲୁ। ଅମୁ ବି ଶେଷରେ ପଢ଼ା ଛାଡ଼ିଦେଲା।''

ଅନିରୁଦ୍ଧ ଗମ୍ଭୀର ହୋଇଗଲା। କହିଲା, ''ତୁମେ ସେମିତି କାହିଁକି କହୁଛ ମା' ? ମୁଁ କ'ଣ ମୋ ଖୁସିରେ ପଢ଼ା ଛାଡ଼ିଛି ? ଅମୁ କଥା ଅଲଗା। ତା'

ଛଡ଼ା ବାବା ବଞ୍ଚିଥିଲେ କ'ଣ ସେ ଏମିତି ଗୋଟିଏ କାମ କରିଥାଆନ୍ତା ? ତା' ମୁଣ୍ଡ ଉପରୁ ସୁରକ୍ଷାର ଛାତଟା ଉଠିଗଲା ବୋଲି ସିନା ତା'ର ଏଠିକା ଜୀବନର ମାୟା ଛାଡ଼ିଗଲା !''

ଆଉ କୌଣସି ଉତ୍ତର ନ ଦେଇ ଶ୍ରଦ୍ଧା ନିଜ କାମରେ ଲାଗି ଯାଇଥିଲେ। ଉତ୍ତର ଦେବା ଭଳି କ'ଣ କଥା ଥିଲା ଯେ !

ଅମରେଶର ଖବର ଆସିବାର ବେଶ୍ କିଛି ଦିନ ହୋଇଗଲାଣି। ଘର ଭିତରେ ଆଗରୁ ଯେଉଁ ଭୟର ଭଉଁରୀ ଖେଳି ବୁଲୁଥିଲା, ସେଇଟା ମିଳେଇଗଲାଣି। ଶ୍ରଦ୍ଧା ମଧ୍ୟ କିଛିଟା ସହଜ ହୋଇ ସାରିଲେଣି।

ସେଦିନ ରାତିରେ ଖିଆପିଆ ସାରିବା ପରେ ରୋଷେଇ ଘର ଧୁଆ ପୋଛା କରି, ଚୁଲି ଲିପିନେଇ ଗାଧୋଇବାକୁ ଚାଲିଗଲେ ଶ୍ରଦ୍ଧା। କି ଗରମ, କି ବର୍ଷା, କି ଶୀତ - ସବୁଦିନ ରାତିରେ କାମ ସାରି ଶୋଇବା ଆଗରୁ ଭଲ କରି ଗାଧୋଇବାଟା ତାଙ୍କର ପୁରୁଣା ଅଭ୍ୟାସ। ସେକଥା ଜାଣେ ଅନିରୁଦ୍ଧ। ସେଥିପାଇଁ ଶୋଇବା ଆଗରୁ ମା'ଙ୍କ ପାଇଁ ଦି' ବାଲ୍‌ଟି ପାଣି କୂଅରୁ କାଢ଼ି ରଖି ଦେଇ ଶୋଇବାକୁ ଚାଲିଯାଇଛି। ପିଲାଟାର ସବୁ ଆଡ଼କୁ ନିଘା।

କେତେ ଦିନ ଏମିତି ଏକା ଏକା କରିଚାଲିବ ସେ ? ଥକି ଯିବନି ତ ? ବିରକ୍ତ ହୋଇ ଯିବନି ତ ? ଅମୁ ଭଳି ମୁହଁ ବୁଲାଇ ଦେବନି ତ ?

ଛି, ଛି। ଏସବୁ କି ବାଜେ କଥା ମୁଣ୍ଡରେ ପୂରାଇଛନ୍ତି ସେ। ତାଙ୍କ ଅନିରୁଦ୍ଧ ହୀରା ଖଣ୍ଡେ। ତା' ବିଷୟରେ ପୁଣି ଆଜେବାଜେ କଥା ଭାବୁଛନ୍ତି ସେ ! ଛି, ଛି। ସେଇ ଯାହା କହନ୍ତି ନା ସବୁ ପାପ ମନରେ, ଠିକ୍ ସେୟା। ନ ହେଲେ ପୁଣି ଅନିରୁଦ୍ଧ ସାଙ୍ଗରେ ଆଉ କାହାର ତୁଳନା ହୁଏ ?

ଦେହରେ ପାଣି ଢାଳି ହେଉ ହେଉ ଶ୍ରଦ୍ଧାଙ୍କ ମନ ଭିତରେ ବଡ଼ ପୁଅ ପାଇଁ ସ୍ନେହର ଧାରାଟିଏ ବହିଗଲା। ଭଲକରି ଗାଧୋଇ ଲୁଗା ପାଲଟି ନେଇ ସେ ଅଗଣାରେ ଓଦା ଲୁଗାଟାକୁ ମେଲାଇ ଦେଲେ ଏବଂ ସତର୍କତାର ସହ ଶେଷ ଥର ପାଇଁ ଘର ଚାରିପଟେ ଆଖି ବୁଲେଇ ନେଇ ସେ ଶୋଇବାକୁ ଘର ଭିତରକୁ ଚାଲିଗଲେ। ଦିନ ଯାକର ଖଟଣୀ ପରେ ଆଖି ଲାଗିଗଲା ଚାହୁଁ ଚାହୁଁ। କିନ୍ତୁ ମନ, କାନ ସଜାଗ ହୋଇ ରହିଥିଲା ସବୁ ଦିନ ଭଳି।

ଏଇ ମାତ୍ର ବୈଶାଖ ମାସ ଆରମ୍ଭ ହୋଇଛି, ଅଥଚ ଏତିକି ଗରମ !

ଗରମରେ କି ଚିନ୍ତାରେ କେଜାଣି, ହଠାତ୍ ଗଭୀର ରାତିରେ ଅନିରୁଦ୍ଧର ନିଦ ଭାଙ୍ଗିଗଲା । ଦେହ ହାତ ଝାଳରେ ବୁଡ଼ିଯାଇଛି । ହେବ ତ । ସହଜେ ଏଇ ନିବୁଜ କୋଠରି । ତା' ଉପରେ ପୁଣି ସବୁତକ ଗରମ ଯେମିତି ବାଦ ସାଧିବା ଭଳି ପଡ଼ିଛି । ଉଃ ! ବିଛଣାରେ ଉଠି ବସି ତକିଆ ଉପରେ ପଡ଼ିଥିବା ଗାମୁଛାରେ ସେ ମୁହଁ ହାତ ପୋଛି ନେଲା ।

ନାରଣ କାକାଙ୍କ ଘରେ ଭଡ଼ା ଥିବା ବେଳେ ଅନିରୁଦ୍ଧ ପାଇଁ ଗୋଟାଏ ସ୍ୱତନ୍ତ୍ର କୋଠରୀର ବ୍ୟବସ୍ଥା କରିଥିଲେ ସତ୍ୟପ୍ରିୟ ମୁଖୋପାଧ୍ୟାୟ । ରାତି ଡେରି ଯାଏଁ ପୁଅ ଲଣ୍ଠଣ ଜାଳି ପଢ଼େ ତ, ସେଇଥିପାଇଁ । ହଷ୍ଟେଲ ଯିବା ପରେ ଅବଶ୍ୟ ସେ ସୁଖ ରହିଲା ନାହିଁ । ତାକୁ ଆଉ ତିନି ଜଣଙ୍କ ସାଙ୍ଗରେ ଗୋଟାଏ କୋଠରିରେ ରହିବାକୁ ହେଲା । କିନ୍ତୁ ସେ ଯେଉଁ ବିରାଟ ହଲ୍ ଭଳି କୋଠରୀ, ସେଠି କେବେ ଅଣନିଶ୍ୱାସୀ ଲାଗିନି ତାକୁ ।

ହେଲେ ବାବା ଚାଲିଯିବା ପରେ ସବୁ କେମିତି ବଦଳିଗଲା ।

ନାରଣ କାକାଙ୍କ ଘର ଛାଡ଼ି ଏଇ ଘରକୁ ଆସିବାକୁ ହେଲା । ମାତ୍ର ଦି' ବଖରା ଘର । ଭିତର ଘରଟା ତ ମା' ଓ ଭଉଣୀ ଦି'ଜଣଙ୍କୁ ଦେବାକୁ ହେବ । ବାକି ରହିଲା ଏଇ ବାହାରର କୋଠରିଟା । ନିର୍ବିବାଦରେ ସେଇ ପ୍ରଥମ ଦିନ ହିଁ ଏଇଠି ନିଜର ଓ ଅମରେଶର ଶୋଇବା ବ୍ୟବସ୍ଥା ଅନିରୁଦ୍ଧ କରେଇ ନେଇଥିଲା ।

''ମୁଣ୍ଡ ଖରାପ ନା କ'ଣ ? ଏଇମିତିଆ କୋଠରି ଭିତରେ ମଣିଷ ରୁହନ୍ତି !'' ମୁହଁ ଉପରେ ଠୋ କରି ମନା କରି ଦେଇଥିଲା ଅମରେଶ ।

''ନହେଲେ ଶୋଇବୁ କୋଉଠି ? ଆଉ କୋଠରି ଭିତରେ କ'ଣ ଚାରି ଜଣଙ୍କର ବିଛଣା ହୋଇ ପାରିବ ?''

''ଆଉ ଘର ଭିତରେ ଶୋଇବା କ'ଣ ଦରକାର ? ଅଗଣା ନାହିଁ କି ? ଛେ, ମୁଁ ଶୋଇପାରିବିନି ଏତେ ହୀନସ୍ତାରେ ।''

"ଅଗଣାରେ ଶୋଇବୁ?? ବର୍ଷା ହେଲେ କ'ଣ କରିବୁ?" ବିରକ୍ତିରେ ଅନିରୁଦ୍ଧ ପଚାରିଥିଲା।

"ଆସୁ ଆଗ ବର୍ଷା ଦିନ। ତା'ପରେ ସେକଥା ଭାବିବି।" କେମିତି ଗୋଟାଏ ଭାବରେ କହି ଦେଇ ଅମରେଶ ସେଦିନ ଚାଲି ଯାଇଥିଲା। ସେ ବୋଧହୁଏ ମନେ ମନେ ଜାଣିଥିଲା ଯେ ବର୍ଷା ଆସିବା ବେଳର ଅସୁବିଧା ଭୋଗିବାକୁ ସେ ଏଠି ନ ଥିବ। ନିଜ ଭାଗ୍ୟ ନେଇ ଚାଲି ଯାଇଥିବ ବହୁତ ଦୂରକୁ।

ଜୋରରେ ନିଶ୍ୱାସ ନେଇ ଅନିରୁଦ୍ଧ ଛାପା ଛାପା ଅନ୍ଧାର ଘର ଭିତରେ ଆଖି ବୁଲେଇ ଆଣିଲା।

କୋଠରିଟା ନିହାତି ଛୋଟ। ସନ୍ଦେହ ନାହିଁ। ଗୋଟେ ପଟ କାନ୍ଥକୁ ପିଠି ଦେଇ ଠିଆ ହୋଇ ହାତ ବଢ଼େଇଦେଲେ ଆର ପଟ କାନ୍ଥରେ ହାତ ବାଜିବ। ସେଥିରେ ପୁଣି ବହୁ ରକମର ଜିନିଷ ଗଦା ହେଇଛି। ଗୃହସ୍ଥ ଘରେ ଯେଉଁ ସବୁ ଜିନିଷ ନିତିଦିନିଆ କାମରେ ନ ଲାଗିଲେ ବି ଯାହାକୁ ଫୋପାଡ଼ି ଦେଇ ହୁଏନାହିଁ, ସେଇ ଭଳି କେତେ କାଳର ଜିନିଷ ସବୁ। ଗୋଟାଏ ବୋଲି ଝରକା ଯେ ସେଇଟା ପଶ୍ଚିମମୁଖୀ। ପବନ ଚଳାଚଳର ତ ନାଁ ନାହିଁ, ଉପରନ୍ତୁ ଦିନଯାକର ଗରମ ଆସି ବସା ବାନ୍ଧି ବସିଯାଏ କେଡ଼େ ଆରାମରେ। ସେଇଥିପାଇଁ କେତେ ସହଜରେ ଅମରେଶ କହି ଦେଇଥିଲା, "ଛି। ଏମିତି ଗୋଟାଏ ଘର ଭିତରେ ପୁଣି ମଣିଷ ଶୋଇବ! ତୁମର ଯଦି ଇଚ୍ଛା ତୁମେ ଏଠି ଶୁଅ, ଦାଦା। ମୁଁ ପାରିବି ନାହିଁ।" ନିଜର ଶୋଇବା ବ୍ୟବସ୍ଥା ଅଗଣାରେ କରି ନେଇଥିଲା ଅମରେଶ।

ଅନିରୁଦ୍ଧ କିନ୍ତୁ ଜମା ଲୋଭେଇ ନ ଥିଲା ନିଜର ଆରାମ ପାଇଁ। ଭିତରୁ ଛିଟିକିଣି ଲଗେଇ ଦି' ଦିଟା ଭଉଣୀ, ମା' ଏକା ଶୋଇବେ। ଆଉ ସେ କ'ଣ ନା ସେମାନଙ୍କୁ ଏକା ଏକା ଛାଡ଼ି ଦେଇ ନିଜ ସୁଖ ପାଇଁ ଅଗଣାକୁ ଚାଲିଯିବ! ହଉ ଏବେ ଏକା ଘରର ଅଗଣା। କିନ୍ତୁ ଦରକାର ଅଦରକାରରେ ଚଟ୍ କରି ତ ଭିତର ଘରକୁ ଚାଲି ଯାଇ ହେବନି। ଆଉ ଦାଣ୍ଡପଟ କବାଟରେ ଯଦି କେହି ରାତିରେ ଠେଲା ମାରେ? ଦିନ କାଳ ଅବସ୍ଥା ତ ଏବେ ଆଉ ଖୁବ ଗୋଟାଏ ଭଲ ନୁହଁ।

ନା। ସେ ପାରିବ ନାହିଁ। ନିଜ ଶୋଇବା ବ୍ୟବସ୍ଥା ସେଇ ବାହାର ଘରେ କରେଇ ନେଇଥିଲା ଅନିରୁଦ୍ଧ। ତଥାପି ମନ ତଳେ ତା'ର ଭୟ ଥିଲା ଯେ

ବନ୍ଦ ଘର ଭିତରେ ନିଦ ହେବନାହିଁ ଆଦୌ। କିନ୍ତୁ ସବୁଦିନେ ଖାଇସାରି ମଶାରି ଟଙ୍ଗେଇ ବିଛଣାରେ ପଡ଼ିବା ମାତ୍ରକେ କୁମ୍ଭକର୍ଣ୍ଣର ନିଦ କୋଉଠୁ କେଜାଣି ଘୋଟି ଆସୁଥିଲା। ଦିନଯାକର ଯେଉଁ ଗଧ ଖଟଣୀ, ତା'ପରେ ଶରୀର କ'ଣ ଆଉ ବାହ୍ୟିକ ଆରାମ ଖୋଜିପାରେ ?

ହେଲେ ସେଦିନ କାହିଁକି ଯେ ବ୍ୟତିକ୍ରମ ହେଲା ବୁଝି ପାରିଲା ନାହିଁ ଅନିରୁଦ୍ଧ।

ଆଉ ଥରେ ପତଳା ତଉଲିଆରେ ବେକ ମୁଣ୍ଡରୁ ସେ ଝାଳ ପୋଛି ନେଲା। ଖଟ ପାଖରେ ରହିଥିବା ବଡ଼ କଂସା ଗିଲାସରୁ ଘୋଡ଼ଣୀ କାଢ଼ି ଢକ ଢକ କରି ପାଣିତକ ପିଇବା ପରେ ଯାଇ ତାକୁ ଟିକିଏ ଭଲ ଲାଗିଲା। କିନ୍ତୁ ବାମ୍ଫ ଉଠୁଥିବା ବିଛଣାରେ ପୁଣି ଥରେ ଶୋଇ ପଡ଼ିବାକୁ ଜମା ଇଚ୍ଛା ହେଲାନାହିଁ।

ଭିତର ଘରୁ ଶବ୍ଦ ନାହିଁ। ଅର୍ଚ୍ଚନା ଆଉ ଅନିକୁ ନେଇ ମା' ନିଶ୍ଚୟ ଶୋଇ ପଡ଼ିଲେଣି କେତେବେଳଠୁଁ। କେତେବେଳ ହୋଇଛି କେଜାଣି ?

ଅନିରୁଦ୍ଧ ଖଟରୁ ଓହ୍ଲେଇ ଦାଣ୍ଡ କବାଟ ଖୋଲି ଅଣଓସାରିଆ ବାରଣ୍ଡା ଉପରକୁ ଆସିଲା। ଅନ୍ୟଦିନେ ବାରଣ୍ଡାର ପାହାଚରେ ବସିଲେ ଇଚ୍ଛାମତୀରୁ ବହି ଆସୁଥିବା ପବନ ଟିକିଏ ଦେହରେ ବାଜେ। ହେଲେ ଆଜି ତ କାହିଁ ଗଛର ପତ୍ର ହଲୁନି। ଏ କି ଗରମ ! କି ଗୁଳୁଗୁଳି !

''କ'ଣ ହେଲାରେ ବାବୁ ? ଏତେ ରାତିରେ ଉଠି ବାରଣ୍ଡାରେ ବସିଲୁ କାହିଁକି ?'' ଶ୍ରଦ୍ଧାଙ୍କ ଆଶଙ୍କାଭରା ନିଦୁଆ ସ୍ୱରରେ ଅନିରୁଦ୍ଧ ବୁଲି ଚାହିଁଲା।

ମା' ? ବାହାର ଦରଜା ଖୋଲାର ସାମାନ୍ୟ ଶବ୍ଦରେ ମା'ଙ୍କ ନିଦ କେମିତି ଭାଙ୍ଗିଗଲା ? ଅନ୍ଧାରରେ ଠିକ୍ ବୁଝି ପାରୁ ନ ଥିଲା ଅନିରୁଦ୍ଧ। ଶ୍ରଦ୍ଧା ଧୀରେ ଧୀରେ ଆଗକୁ ଆଗେଇ ଆସିଲେ। ଜହ୍ନ ଆଲୁଅରେ ଶ୍ରଦ୍ଧାଙ୍କ ମୁହଁ ଟିକିଏ ପରିଷ୍କାର ହେଲା। ହେଲେ.. ହେଲେ ଏ କି ଆତଙ୍କ ମା'ଙ୍କ ମୁହଁରେ !

''କ'ଣ ହେଲା ମା' ? ଉଠି ଆସିଲ କାହିଁକି ?''

''ଦରଜା ଖୋଲା ଶବ୍ଦ ହେଲା ତ.. ମତେ କେମିତି କେମିତି ଲାଗିଲା..''

କେମିତି କେମିତି ଲାଗିଲା ?? ଅନିରୁଦ୍ଧ ଆବାକାବା ହୋଇ ଶ୍ରଦ୍ଧାଙ୍କ ମୁହଁକୁ ଚାହିଁ ରହିଲା କିଛି ସମୟ ପାଇଁ। ସେ ବା କେମିତି ଜାଣିବ, ସବୁଦିନ ରାତିରେ

ଶୋଇ ପଡ଼ିବା ବେଳେ ଏଇମିତି କିଛି ଶବ୍ଦ ଶୁଣିବାର ଆଶଙ୍କାରେ ମା'ଙ୍କ ମନ, କାନ ସଜାଗ ହୋଇ ଥାଏ। ବିଶେଷ କରି ଅମରେଶ ଘର ଛାଡ଼ି ଚାଲିଯିବା ପରଠାରୁ।

"କାହିଁକି ମା'?"

ଶ୍ରଦ୍ଧା ଉତ୍ତର ଦେଲେ ନାହିଁ। ଅମ୍ଭ ଚାଲିଯିବା ପରେ ଯେଉଁ ବିରାଟ ଭୟ ତାଙ୍କ ମନ ତଳେ ବସି ଯାଇଛି, ସେଇଟା କେମିତି ଖୋଲି ଦେଖାଇ ଦେବେ ବଡ଼ ପୁଅ ସାମ୍ନାରେ?

କିନ୍ତୁ କିଛି କହିବା ଆବଶ୍ୟକ ହେଲା ନାହିଁ। ଅନିରୁଦ୍ଧ ମା'ଙ୍କ ଆଶଙ୍କାର କାରଣଟା ବୁଝିଗଲା ଯେମିତି ଗୋଟାଏ ମୁହୂର୍ତ୍ତରେ। ରହି ରହି ସେ କହିଲା, "ମତେ ନେଇ ତୁମର ଭୟ ହୁଏ ମା'?"

"ନା... ମାନେ... ଇଏ..."

"ମା', କାହିଁକି ଭୟ ହୁଏ ତୁମର ମତେ ନେଇ? ମତେ କ'ଣ ଏତେ ଦୁର୍ବଳ ଭାବିଲ?"

"କେତେ ଆଉ କରିବୁ ରେ ବାବୁ?"

"ମୁଁ ଏମିତି କ'ଣ ବେଶି କରି ପକଉଛି ଯେ ମା'? ମୋ ଜାଗାରେ ଯିଏ ଥାଆନ୍ତା, ସେ ନିଶ୍ଚୟ ତା' ମା' ଆଉ ଭଉଣୀମାନଙ୍କ ପାଇଁ ଏତିକି କରିଥାଆନ୍ତା। ...ତୁମେ ନିଶ୍ଚିନ୍ତ ରୁହ ମା', ମୁଁ ଯେଉଁ ଦାୟିତ୍ୱ ନେଇଛି, ସେଇଟା ସାରା ଜୀବନ ତୁଲେଇ ଯିବି।"

ବଡ଼ ପୁଅର କଥାରେ ଶ୍ରଦ୍ଧାଙ୍କ ମନରେ ଦମ୍ଭ ଆସିଲା। ଭୟ ଟିକିଏ କମିଗଲା। କିନ୍ତୁ ସେ ସମ୍ପୂର୍ଣ୍ଣ ଭାବରେ ନିଶ୍ଚିନ୍ତ ହେଇ ପାରିଲେ ନାହିଁ।

"ମା', ଜୀବନରେ ଯେତେ ଝଡ଼ ଝଞ୍ଜା ଆସୁ ମୁଁ ସବୁର ସାମ୍ନା କରିଯିବି। ତମେ ଖାଲି ଠାକୁରଙ୍କୁ ଡାକ, ସେ ମତେ ଶକ୍ତି ଦିଅନ୍ତୁ।" ଅନିରୁଦ୍ଧ ମା'ଙ୍କ ଶେତା ପଡ଼ିଯାଇଥିବା ମୁହଁ ଉପରେ ଆଖି ରଖି ଦୃଢ଼ ଭାବରେ କହିଲା।

ହଠାତ୍ ଭୀଷଣ ଦୁର୍ବଳ ଲାଗିଲା ଶ୍ରଦ୍ଧାଙ୍କୁ। ମାସ ମାସ ଧରି ସାଇତି ରଖିଥିବା ବୋଝଟିଏ ହଠାତ୍ କାନ୍ଧ ଉପରୁ ଉଠିଗଲେ ଯେମିତି ଶୂନ୍ୟ ଶୂନ୍ୟ ଲାଗେ, ଠିକ୍ ସେଇମିତି। କିଛି ନ କହି ସେ ପୁଅ ପାଖରେ ସେଇଠି ବାରଣ୍ଡାରେ ବସିଗଲେ।

ଗଭୀର ରାତିରେ ପାବ୍‌ନା ନିସ୍ତବ୍ଧ। ସେଇ ନିସ୍ତବ୍ଧ ରାତିରେ ଚୁପ୍ ହୋଇ ବସିଛନ୍ତି ଶ୍ରଦ୍ଧା ଓ ଅନିରୁଦ୍ଧ। କିଏ ଜାଣେ କି ଚିନ୍ତା ଖେଳୁଥିଲା ସେମାନଙ୍କର ମନ ଭିତରେ।

ହଠାତ୍ ରାତିର ନିସ୍ତବ୍ଧତାକୁ ଚମକେଇ ଦେଇ ଦୂର ଥାନାରେ ତିନିଟା ଘଣ୍ଟି ବାଜିଲା।

''ରାତି ତିନିଟା ! ଆଉ ତ ଟିକକରେ ଭୋର ହୋଇଯିବ। ତୁ ଯା ବାବୁ, ଚେଷ୍ଟା କରି ଶୋଇପଡ଼ ଟିକିଏ।''

''ନା ମା' ଆଜି ଆଉ ନିଦ ହେବନି।'' ମୁହଁ ପାଖରେ ଉଡୁଥିବା ମଶାକୁ ଘଉଡ଼େଇ ଦେଉ ଦେଉ ଅନିରୁଦ୍ଧ ଉତ୍ତର ଦେଲା।

ପୁଣି କିଛି ସମୟର ନିରବତା।

ଶ୍ରଦ୍ଧା ବୋଧହୁଏ ପୁଅ ମନ ତଳର ଅଶାନ୍ତ ଭାବକୁ କିଛି କିଛି ପଢ଼ି ପାରୁଥିଲେ। ଆଉ ରହି ନ ପାରି ସେ ପଚାରିଦେଲେ, ''କ'ଣ ଏତେ ଭାବୁଛୁ ରେ ?''

ଅନିରୁଦ୍ଧ ମୁହଁ ଘୂରେଇଲା, ''ମା', ଗୋଟାଏ କଥା ମନକୁ ଆସିଛି ମୋର ଆଜି ସନ୍ଧ୍ୟାଠୁ।''

''କି କଥା ?''

''ମା', ଅର୍ଚ୍ଚନା ବଡ଼ ହେଲାଣି। ଆଉ ତାକୁ ସ୍କୁଲ୍‌କୁ ନ ପଠେଇଲେ...''

''ସ୍କୁଲ୍ ଯିବନି ??'' ଶ୍ରଦ୍ଧା ଅବାକ୍। ''କାହିଁକି ?''

''ମା', ଆଜି ଅଫିସ୍‌ରୁ ଫେରିବା ବେଳେ ମୋର ରାସ୍ତାରେ ରାସବିହାରୀ ସାଙ୍ଗରେ ଦେଖା ହୋଇଗଲା। ତୁମର ମନେ ଅଛି ତା' କଥା ? ମୋ ସାଙ୍ଗରେ ସ୍କୁଲ୍‌ରେ ପଢୁଥିଲା।''

''ହଁ.. ମନେ ପଡୁଛି। ଲାଇବ୍ରେରୀ ପାଖରେ ନା କୋଉଠି ତା' ଘର ପରା..''

''ହଁ ମା' ସେଇ। ତା'ରି ସାଙ୍ଗରେ ରାସ୍ତାରେ ଦେଖା ହୋଇଗଲା। ହଠାତ୍ କଥାରେ କଥାରେ ସେ କହି ପକେଇଲା...''

''କ'ଣ ?''

''ପଚାରିଲା, ଆମେ ଅର୍ଚ୍ଚନା ପାଇଁ ପାତ୍ର ଦେଖା ଆରମ୍ଭ କଲୁଣି କି

ନାହିଁ। ମୁଁ ଯେମିତି କହିଲି ଯେ ଆମ ପକ୍ଷରେ ଏବେ ବାହାଘରର ଖର୍ଚ୍ଚ ତୁଲାଇବା ସମ୍ଭବ ନୁହଁ, ସେଇଠୁ କେମିତି ଗୋଟାଏ ହସି ପକେଇ ସେ କହିଲା...''

''କ'ଣ କହିଲା ?'' ଆତଙ୍କିତ ହୋଇ ଶ୍ରଦ୍ଧା ପଚାରି ପକେଇଲେ।

''କହିଲା, 'ଅର୍ଚ୍ଚନା ବାହାଘର ପାଇଁ ପୁଣି ହାତରୁ ଖର୍ଚ୍ଚ କରିବାକୁ ପଡ଼ିବ ନା କ'ଣ ? ତାକୁ ତ ଯିଏ ଦେଖିବ, ସେ ସବୁ ଖର୍ଚ୍ଚ ନିଜେ କାନ୍ଧେଇ ତାକୁ ଘରକୁ ନେଇଯିବ।' ...ମା', ରାସବିହାରୀ କଥା ଶୁଣି ମୋର ତ ଦେହ ଜଳିଗଲା। କୌଣସି ମତେ ନିଜକୁ ସମ୍ଭାଳି ଘରକୁ ଚାଲିଆସିଲି। କିନ୍ତୁ ସେତେବେଳଠୁ ମତେ ଜମା କିଛି ଭଲ ଲାଗୁନି।''

''ରାସବିହାରୀ କିଛି ଖରାପ କରି କଥା କହିଛି ?''

''ନା ମା' ନା। ଖରାପ କରି କହିଥିଲେ ରଖିଥାଆନ୍ତି ତାକୁ ? ମାଡ଼ ଦେଇ ରକ୍ତାକ୍ତ କରି ସେଇଠି ରାସ୍ତା କଡ଼ରେ ଫିଙ୍ଗି ଦେଇ ନ ଥାଆନ୍ତି ? .. ନା ସେକଥା ନୁହଁ। ବାହାରର ଲୋକ ସେ। କାହିଁକି ମୋ ସାନ ଭଉଣୀ ବିଷୟରେ କଥା କହିବ ? କାହିଁକି ଅର୍ଚ୍ଚନାର ନାଁ ତା' ମୁହଁରେ ଶୁଣିବାକୁ ହେବ ?''

''ଏଇଟା ଗୋଟାଏ କି କଥାରେ ବାବୁ ? ରାସବିହାରୀ ତୋ ଭଉଣୀ କଥା ପଚାରିଦେଲା ବୋଲି ତୁ ତାକୁ ଦୋଷ ଦେବୁ ?''

''ନା। ଦୋଷ କେମିତି ଦେବି ? ଅର୍ଚ୍ଚନା ସ୍କୁଲ୍ ଯାଉଛି। ଲୋକେ ତ ପୁଣି ତାକୁ ଦେଖୁଛନ୍ତି। ସେ କୋଉ ବୁର୍ଖା ଚାଦର ପିନ୍ଧି ରହୁଛି ଯେ...''

''ଥାଉ, ଏତେ ଭାବନା ବାବୁ। କ'ଣ ଆଉ କରିବା କହ। କେତେ କାହାର ମୁହଁକୁ ଚାପି ଧରିବା ?''

ଅନିରୁଦ୍ଧ କିଛି ଉତ୍ତର ଦେଲା ନାହିଁ। ଚୁପ୍ ହୋଇ ବସି ରହିଲା କେବଳ। କେତେ ସମୟ ପରେ ହାଇ ମାରୁ ମାରୁ ଉଠିଲେ ଶ୍ରଦ୍ଧା। ''ମୁଁ ଯାଉଛି ଶୋଇବାକୁ। ତୁ ଟିକିଏ ଚେଷ୍ଟା କରି ଶୋଇପଡ଼ନ୍ତୁନି ?''

''ଯାଉଛି ମା'।''

ପୁଣି ସେଇ ଦମ୍‌ବନ୍ଦ ଘର ଭିତରେ ପାଦ ଦେଲା ଅନିରୁଦ୍ଧ। ମଶାରୀ ଭିତରେ ପଶିଯାଇ ସେ ଜବରଦସ୍ତି ଆଖି ବନ୍ଦ କଲା। ଆଖି ବନ୍ଦ କରି ଶୋଇ ରହିଲେ ଯଦି ରାସବିହାରୀର ବଙ୍କା ବଙ୍କା କଥାଗୁଡ଼ାକ ଭୁଲି ଯାଇହୁଏ...। ଶୋଇବାର ବାହାନା କରୁ କରୁ ସତରେ କେତେବେଳେ ନିଦ ହୋଇଗଲା ତା'ର,

ସେ ଜମା ଜାଣି ପାରିଲା ନାହିଁ।

ତା' ପରଦିନ ସ୍କୁଲ୍ ଗଲାବେଳେ ଅର୍ଚ୍ଚନାକୁ ପାଖକୁ ଡାକି ଶ୍ରଦ୍ଧା ଚୁପ୍‌ଚୁପ୍ କ'ଣ ସବୁ କହିଲେ। ମୁଣ୍ଡ ନୁଆଁଇ ସବୁ ଶୁଣିଗଲା ଅର୍ଚ୍ଚନା ଏବଂ ଭାତ ଖାଇ ଦେଇ ସାନ ଭଉଣୀକୁ ନେଇ ସ୍କୁଲ୍ ବାହାରିଗଲା। ସେଦିନ କିନ୍ତୁ ଅନ୍ୟ ଦିନ ଭଳି ବଜାରର ରାସ୍ତା ଦେଇ ସ୍କୁଲ୍ ଗଲାନି ସେ। ଟିକିଏ ବୁଲାଣିଆ ପଡୁ ପଛକେ ସେ ଥାନା ପଟ ହୋଇ ସ୍କୁଲ୍‌କୁ ଗଲା। ଅନୁପମା ମନେ ମନେ ଆଶ୍ଚର୍ଯ୍ୟ ହେଲା ବୋଧହୁଏ, କିନ୍ତୁ କିଛି ପ୍ରଶ୍ନ କଲାନି ତା' ଦିଦିକୁ।

ଧୀରେ ଧୀରେ ସେଇ ଥାନା ପଟେ ଯିବା ଆସିବା କରିବାଟା ସେମାନଙ୍କର ଅଭ୍ୟାସ ହୋଇଗଲା। ଅନିରୁଦ୍ଧ ମଧ୍ୟ ରାସବିହାରୀର କଥା ପ୍ରାୟ ମନରୁ ପୋଛି ଦେଇଥିଲା।

ଏହାରି ଭିତରେ ଚାଲିଗଲା କେତେ ଦିନ।

ସେଦିନ ଅଫିସ୍‌ରୁ ଫେରି ଘରେ ପାଦ ଦେଉ ଦେଉ ଫାଟି ପଡ଼ିଲା ଅନିରୁଦ୍ଧ। ଭାଗ୍ୟ ଭଲ, ଘରେ ଶ୍ରଦ୍ଧା ଏକା ଥିଲେ। ଅର୍ଚ୍ଚନା ଆଉ ଅନୁପମା ଯାଇଥିଲେ କୋଉ ସାଙ୍ଗ ଘରକୁ।

''ମା', ଆଉ ତୁମ କଥା ମୁଁ ଶୁଣି ପାରିବିନି। କାଲିଠୁ ଆଉ ସ୍କୁଲ ଯାଇ ପାରିବନି ଅର୍ଚ୍ଚନା। ଅନି ବି ନୁହଁ।''

''କାହିଁକି? କ'ଣ ହେଇଗଲା ପୁଣି ଆଜି? ସେ ରାସବିହାରୀ ଆଉ ଥରେ ପୁଣି କ'ଣ କହିଲା ନା କ'ଣ?'' ଶ୍ରଦ୍ଧା ରୋଷେଇ ଘରୁ ବାହାରି ଆସୁ ଆସୁ ପଚାରି ଦେଲେ।

''ନା ମା'। ଖାଲି ସେତିକି ହୋଇଥିଲା ବୋଲି ମୁଁ ସେଦିନ ସମ୍ଭାଳି ଯାଇଥିଲି। କିନ୍ତୁ ଆଉ ନୁହଁ। ଆଉ ଜମା ନୁହଁ। ତୁମେ ଯାହା କୁହ ପଛକେ।''

''କ'ଣ ହୋଇଛି? କହୁନୁ।''

''ମା', ଆଜି ଅର୍ଚ୍ଚନା ସ୍କୁଲ୍‌ରୁ ଫେରିଲା ବେଳେ ଦି' ଚାରିଟା କଲେଜ ଟୋକା ଖରାପ କରି କଥା କହିଛନ୍ତି ତାକୁ। କହିଛନ୍ତି... କହିଛନ୍ତି...'' ଅନିରୁଦ୍ଧ ଆଖିକୁ ରାଗ ଅପମାନରେ ପାଣି ଚାଲିଆସିଲା।

''ଥାଉ।'' ଶ୍ରଦ୍ଧା ବସିଗଲେ ଅଗଣାରେ ପଡ଼ିଥିବା ଖଟରେ।

ଅନିରୁଦ୍ଧ ସେଇଠି ତଳେ ବସିଯାଇ ଅଦ୍ଭୁତ ସ୍ୱରରେ କହିଲା, ''ଥାଉ ମାନେ? ... ତୁମେ ତା'ହେଲେ ଜାଣ ଯାହା ହୋଇଛି ଆଜି?''

''ହଁ।'' ଶ୍ରଦ୍ଧାଙ୍କ ମୁହଁରେ ଭାବାନ୍ତର ନ ଥିଲା।

''ଜାଣ??'' ଏଥର ଅନିରୁଦ୍ଧ ସ୍ୱରରେ ଅବାକ୍ ଭାବ ଫୁଟି ଉଠିଲା। ''ଜାଣ, ଅଥଚ..'' ମା' ଯେ କେମିତି ନିଆଁରେ ଘିଅ ପଡ଼ିବା ଭଳି ଜଳି ଉଠୁନାହାନ୍ତି, ସେଇଟା ହିଁ ଅବାକ୍ ଲାଗୁଥିଲା ତାକୁ। କୋଉ ମା' ଏଇମିତି କଥା ଶୁଣି ଦେହ ଧରି ରହିପାରିବ?

''ହଁ, ଅର୍ଚ୍ଚନା ସ୍କୁଲ୍‌ରୁ ଫେରି ମତେ କହିଛି।'' ଶାନ୍ତ ଭାବରେ ଶ୍ରଦ୍ଧା କହିଲେ।

''ତଥାପି... ତଥାପି...''

''ତଥାପି କ'ଣ?''

''ମା', ତୁମକୁ ଖରାପ ଲାଗୁନି ଏକଥା ଶୁଣି? ଅର୍ଚ୍ଚନାକୁ ଛତରା ଟୋକା ରାସ୍ତାରେ ଖରାପ କରି କହିଲେ, ଏକଥା ଶୁଣି ତୁମେ ଏମିତି ଶାନ୍ତ ହୋଇ ରହିଛ କେମିତି?'' ଅନିରୁଦ୍ଧ ବ୍ୟସ୍ତ ହୋଇ ପଡୁଥିଲା।

''କ'ଣ ଆଉ କରାଯିବ? ଝିଅ ସ୍କୁଲ୍ ଗଲାବେଳେ ତାକୁ ଦେଖି ଯଦି କୁକୁରଟିଏ ଭୁକେ, ତେବେ ତ ମୁଁ ଯାଇ କୁକୁର ସାଙ୍ଗରେ କଳି କରି ପାରିବିନି।''

''ବାସ୍!! ଏତିକି ଭାବି ନେଇ ତୁମେ ଚୁପ୍ ହୋଇଗଲ??''

''କ'ଣ ଆଉ କରିଥାଆନ୍ତି? ରାସ୍ତାକୁ ଯାଇ ଖୋଜିଥାଆନ୍ତି ସେ ଟୋକାମାନଙ୍କୁ? ବିଚ୍ ରାସ୍ତାରେ ସେମାନଙ୍କୁ ଗାଳି ଦେଇଥାଆନ୍ତି? ଏଥିରେ ତୋ ଭଉଣୀର ମାନମହତ ରହିଥାଆନ୍ତା?'' ଶ୍ରଦ୍ଧା ତାତି ଉଠୁଥିଲେ।

''ଏମିତିରେ ବା ଆଉ କି ମାନ ମହତ ରହିଯାଉଛି ତା'ର!''

''ତା'ହେଲେ ତୁ କହ ବାବୁ, ମୁଁ କ'ଣ କରିବି?'' ଶ୍ରଦ୍ଧାଙ୍କ ସ୍ୱର ଭାଙ୍ଗି ଭାଙ୍ଗି ଆସୁଥିଲା।

''ମୁଁ ସେଦିନ ବି କହିଥିଲି, ମା'। ତୁମେ କିନ୍ତୁ ରାଜି ହୋଇନ। ଆଜି ଆଉଥରେ କହୁଛି। ଅର୍ଚ୍ଚନା ଓ ଅନିର ସ୍କୁଲ୍ ବନ୍ଦ କରିଦିଅ।''

''ନା।''

''ନା ?? ସବୁ ଜାଣିବା ପରେ ବି ସେମାନଙ୍କୁ ସ୍କୁଲ୍ ପଠେଇବାରେ ତୁମର କୌଣସି ଆପତ୍ତି ନାହିଁ ?''

''ନା ।''

''କାଲି ବି ତୁମେ ଅର୍ଚ୍ଚନାକୁ ପଠେଇବ ସ୍କୁଲ୍‌କୁ ?''

''ହଁ ।''

''କାହିଁକି ମା' ? କାହିଁକି ?''

ଶ୍ରଦ୍ଧା ଅନ୍ୟମନସ୍କ ଭାବରେ ଶାଢ଼ି କାନିକୁ ଆଙ୍ଗୁଠିରେ ଗୁଡ଼ାଉ ଗୁଡ଼ାଉ କହିଲେ, ''ଏତିକି କଥାରେ ଦବିଗଲେ ସାରା ଜୀବନ ଦବି ହୋଇ ରହିଯିବ ଅର୍ଚ୍ଚନା । ବରଂ ଏଇ ଭଲ । ସେ ସାମ୍ନା କରୁ ଦୁନିଆର ।''

''ମା', କେମିତି କହୁଛ ଏ କଥା ? ବାବା ମୁଣ୍ଡ ଉପରେ ନାହାନ୍ତି ଆମର । ସବୁ ଆଡ଼କୁ ଜଗି ରଖି ଚଳିବା କଥା । ...ଅର୍ଚ୍ଚନା ଭଳି ସୁନ୍ଦରୀ ଝିଅ । ...କେତେବେଳେ କେଉଁ କଥା ।''

ଶ୍ରଦ୍ଧା କିଛି କହିଲେ ନାହିଁ ।

ଅନିରୁଦ୍ଧ ଭାବିବା ଭଳି ହୋଇ ପୁଣି କହିଲା, ''ତୁମେ ଯାହା କୁହ ମା', ମୁଁ ଏ ସ୍ତ୍ରୀ ଶିକ୍ଷାର ପକ୍ଷପାତୀ ନୁହଁ । କ'ଣ ଦରକାର ଝିଅଙ୍କୁ ମୁହଁବଢ଼ା କରେଇ ଦେଇ ? ଶେଷରେ ସେଇ ତ ଯାଇ ହାଣ୍ଡି ଚୁଲି ପେଲିବେ ଆଉ କାହା ଘରେ । ବରଂ ପାଠଶାଠ ନ ପଢ଼ିଥିଲେ ସବୁ କିଛି ମାନିନେଇ ଚଳିବେ । ନ ହେଲେ ତ କଥାକଥାକେ ମୁଣ୍ଡ ଉଠାଇବେ ସେମାନେ ।''

ଆଉ ଚୁପ୍ ହୋଇ ରହିବା ଶ୍ରଦ୍ଧାଙ୍କ ପକ୍ଷରେ ସମ୍ଭବ ନ ଥିଲା । ସ୍ୱାମୀ ଯିବା ପରେ, ଅନିରୁଦ୍ଧ ପଢ଼ା ଛାଡ଼ି ଦେଇ ଚାକିରି କରିବା ପରେ ସେ ବଡ଼ ପୁଅର ସବୁ କଥା ଶୁଣୁଥିଲେ । ସବୁ କଥା ପ୍ରାୟ ମାନି ନେଉଥିଲେ । କିନ୍ତୁ ଏଭଳି କଥାଟାଏ ମାନିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା ।

''ନା ଅନିରୁଦ୍ଧ, ମୁଁ ଏକଥା ହେବାକୁ ଦେବିନି । ତତେ କହିଛି ନା ମୁଁ, ତୋ ବାବାଙ୍କର ବହୁତ ଇଚ୍ଛା ଥିଲା, ପୁଅଝିଅ ସମସ୍ତଙ୍କୁ ପଢ଼େଇବାକୁ । ...ଏମିତି ହଠାତ୍ କରି ଏ ଝିଅ ଦିଇଟାଙ୍କର ପାଠ ମୁଁ ବନ୍ଦ କରେଇ ଦେଇ ପାରିବି ନାହିଁ ।''

''ମା', ତୁମେ ବୁଝୁନ କାହିଁକି ? ମୁଣ୍ଡ ଉପରେ ଯେ ବାବା ନାହାନ୍ତି ।''

''ବାବା ନ ଥାଆନ୍ତୁ ସେମାନଙ୍କର। ଦାଦା ତ ଅଛି।''

''ଦାଦାକୁ ଆଜିକାଲି ଖାତିର କରେ କିଏ ମା'? ଅମୁକୁ ତ ଦେଖିଲ।''

''ଅମୁ ସାଙ୍ଗରେ ସମସ୍ତଙ୍କର ତୁଳନା କାହିଁକି କରୁଛୁ?''

''ମା', ଅମୁ ଭଳି ପିଲା ମନରେ ଯଦି ଏତେ ବିଷ ଭରି ଯାଇପାରିଲା, ତା'ହେଲେ ଅର୍ଚ୍ଚନା କି ଅନି ମନରେ ସେଇମିତି କଥା ସବୁ ଆସିବାକୁ କେତେ ଡେରି?''

ଶ୍ରଦ୍ଧା ଚୁପ୍ ରହିଲେ। ଅନିରୁଦ୍ଧ ଯେ ନିହାତି ଭୁଲ କଥା କହୁଛି ତା' ନୁହଁ। ସେମିତି କିଛି ଯେ ଭବିଷ୍ୟତରେ ହେବନି, ତା' କ'ଣ ସେ କେବେହେଲେ ହଲପ କରି କହି ପାରିବେ? ସେ କିଛି ସମୟ ଚୁପ୍ ହୋଇ ବସି କ'ଣ ସବୁ ଚିନ୍ତା କଲେ। ତା'ପରେ କହିଲେ, ''ଅର୍ଚ୍ଚନାକୁ ଚଉଦ ପୂରିଗଲାଣି। ତୁ ଯଦି ଭଲ ବରପାତ୍ର ଦେଖି ତାକୁ ବାହା ଦେଇ ଦେଉ, ତା'ହେଲେ ତା' ପାଠରେ ଡୋରି ବନ୍ଧା ଯାଇପାରେ। ହେଲେ ଅନି...''

''ମା', ଏବେ ବାହା କରେଇବାର ସାମର୍ଥ୍ୟ ଆମର କାହିଁ? ତୁମେ ତ ସବୁ ଜାଣିଛ, କହୁଛ କେମିତି?''

''ସେଇଥିପାଇଁ ତ କହୁଛି ରେ ବାବା। ଏ ଝିଅ ଦିଇଟା ପାଠ ପଢ଼ିବେନି, ବାହା ବି ହେବେନି। ଏଣେ କିଛି ନ କରି ଘରେ ଖାଲି ବସି ରହିବେ, ସେଇଟା ଜମା ଠିକ୍ କଥା ନୁହଁ। ଏଇ ବୟସରେ ଖାଲି ସମୟ ନେଇ ବସି ରହିଲେ, ସବୁ ବାଜେ ଚିନ୍ତା ଆସି ମୁଣ୍ଡରେ ସବାର ହେବ। ବରଂ ଚାଲୁ ଯାହା ଯେମିତି ଚାଲିଛି। ...ମୋର ଇଚ୍ଛା ଅତି କମ୍‌ରେ ମ୍ୟାଟ୍ରିକ୍‌ର ସାର୍ଟିଫିକେଟ୍‌ଟା ଦି' ଝିଅଙ୍କୁ ମୁଁ ଧରେଇ ଦେବି। ସେମାନେ ଯେମିତି ଭବିଷ୍ୟତରେ ଅସୁବିଧାରେ ପଡ଼ିଲେ, ମୋ ଭଳି ଅସହାୟ ହୋଇ ନ ପଡ଼ନ୍ତି।'' ଶ୍ରଦ୍ଧା ନିଜ କଥାରେ ଜୋର୍ ଦେଇ କହିପକେଇଲେ।

ଏକଥା ଉପରେ ଆଉ କଥା ଚଳେ ନାହିଁ।

ଅନିଚ୍ଛା ସତ୍ତ୍ୱେ ଅନିରୁଦ୍ଧକୁ ମା'ଙ୍କର ନିଷ୍ପତ୍ତି ମାନିନେବାକୁ ହେଲା। ଅର୍ଚ୍ଚନା ଓ ଅନୁପମାଙ୍କର ସ୍କୁଲ୍ ଯିବା ବନ୍ଦ ହେଲା ନାହିଁ।

ମୁଖୋପାଧ୍ୟାୟ ପରିବାରର ଜୀବନଯାତ୍ରା ଗଡ଼ି ଚାଲିଲା ଆଗ ଭଳି । ଗତାନୁଗତିକ ଭାବରେ ।

କିନ୍ତୁ ସେ ଗତାନୁଗତିକତାର ଛୁଆଁ ନ ଥିଲା ପାବ୍‌ନାରେ ବା ପୂର୍ବ ବଙ୍ଗରେ ।

ଖାଲି ପୂର୍ବ ବଙ୍ଗ କାହିଁକି, ଭାରତର ପ୍ରତ୍ୟେକଟି ମାଟି କଣା ଭିତରେ ବାରୁଦର ସ୍ତୂପ ହୋଇ ରହିଥିଲା ସେତେବେଳେ । ସେମାନେ ଅପେକ୍ଷା କରି ରହିଥିଲେ ସାମାନ୍ୟତମ ଅଗ୍ନି ସ୍ଫୁଲିଙ୍ଗ ପାଇଁ ।

ଦିନେ ବାରୁଦରେ ଅଗ୍ନି ସଞ୍ଚାର ହେଲା । ଯୁଗ ଯୁଗ ଧରି ମୁଣ୍ଡ ନୁଆଁଇ, ଅତ୍ୟାଚାର ସହି ପଡ଼ି ରହିଥିବା କୃଷକମାନେ ସ୍ୱର ଉତ୍ତୋଳନ କଲେ । ଦେଶ ବ୍ୟାପୀ ଆରମ୍ଭ ହୋଇଗଲା କୃଷକ ଆନ୍ଦୋଳନ ।

ଦେଶର ଭିନ୍ନ ଭିନ୍ନ କୋଣରୁ କୃଷକ ଆନ୍ଦୋଳନର ଖବର ଶୁଣିବାକୁ ମିଳୁଥିଲା । ଉତ୍ତର ପ୍ରଦେଶ, ପଂଜାବ, କେରଳ, ଆନ୍ଧ୍ର ପ୍ରଦେଶ, ବିହାର - କୌଣସି ପ୍ରଦେଶ ବାଦ୍ ପଡ଼ିଲେ ନାହିଁ । ଅପେକ୍ଷାକୃତ ଶାନ୍ତ ପ୍ରଦେଶ ଆସାମ ଓ ଓଡ଼ିଶାରେ ମଧ୍ୟ ଆନ୍ଦୋଳନର ନିଆଁ ଲାଗି ଯାଇ ସାରିଥିଲା ।

ଆଉ ବଙ୍ଗ ଦେଶ ? ବଙ୍ଗ ଦେଶରେ ତ ବଙ୍କିମ ମୁଖୋପାଧ୍ୟାୟଙ୍କ ନେତୃତ୍ୱରେ ବିଦ୍ରୋହର ଅଗ୍ନି ଲେଲିହାନ ଜିହ୍ୱା ଲମ୍ୱେଇ ସାରିଥିଲା । ତାଙ୍କ କଥାନୁଯାୟୀ ବର୍ଦ୍ଧମାନର ଚାଷୀମାନେ ଦାମୋଦର କେନାଲ ଉପରେ ଲାଗୁ ହୋଇଥିବା କେନାଲ ଟିକସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଆରମ୍ଭ କରି ଦେଲେ । ଏହାର କିଛି ଦିନ ପରେ ଚବିଶ ପ୍ରଗଣାର କୃଷକମାନେ ମୁଣ୍ଡ ଟେକି ନିଜ ଦାବୀ ସରକାରଙ୍କ ସାମ୍ନାରେ ରଖିଲେ ।

ଏସବୁ ଆନ୍ଦୋଳନର ଝଲକ କିନ୍ତୁ ମୁଖୋପାଧ୍ୟାୟ ପରିବାରରେ ଦେଖିବାକୁ ମିଳି ନ ଥିଲା । ଯଦି ସେମାନଙ୍କର ନିଜର ଚାଷ ଜମି ଥାଆନ୍ତା, ଇଂରେଜ୍ ସରକାରଙ୍କ ଆଇନ୍ କାନୁନ୍ ଯଦି ସେମାନଙ୍କର ହାତ ପାଦ ବାନ୍ଧି ଦେଇ ଥାଆନ୍ତା, ତେବେ ବୋଧହୁଏ ଅନିରୁଦ୍ଧ ବିବ୍ରତ ହୋଇ ପଡ଼ିଥାଆନ୍ତା । ସରକାର ବିରୋଧୀ ମତାମତ ଦେଇଥାଆନ୍ତା । କିନ୍ତୁ ଘର ଦାୟିତ୍ୱ ନିଜ କାନ୍ଧକୁ ଟେକି

ନେବା ପରେ ସେ ଗୋଟିଏ ସଙ୍କଳ୍ପ କରି ରଖିଛି। ନିଜର ବା ନିଜ ପରିବାର ସହିତ ଜଡ଼ିତ ନ ଥିବା ବିଷୟ ନେଇ ସେ କେବେହେଲେ ଆଗ୍ରହ ଦେଖାଇବ ନାହିଁ। ସେସବୁ ଅପ୍ରୟୋଜନୀୟ ବିଷୟରେ କେବେହେଲେ ମୁଣ୍ଡ ଖେଳାଇବ ନାହିଁ।

ନିଜକୁ ନିଜେ ଦେଇଥିବା କଥା ଅନିରୁଦ୍ଧ ମାନି ଚାଲୁଥିଲା। କିନ୍ତୁ ଅନୁପମା ତା' ଦାଦା ଦେଖାଇଥିବା ମାର୍ଗକୁ ନିର୍ବିବାଦରେ ଗ୍ରହଣ କରି ପାରୁ ନ ଥିଲା। ଏଠୁ ସେଠୁ ବିଭିନ୍ନ ଖବର ଶୁଣି ତା' ରକ୍ତରେ ନିଆଁ ଲାଗି ଯାଉଥିଲା। ହେଲେ ଛୋଟ ଝିଅଟି କଥା ଶୁଣେ କିଏ ?

ଭାଗ୍ୟକୁ ସ୍କୁଲର ଖରା ଛୁଟି ହୋଇ ଯାଇଥିଲା। ଆଉ କେହି ନ ରହିଲେ ବି ଅନୁପମା ପାଖରେ ରହୁଥିଲା ତା' ଦିଦି। ଉତ୍ତେଜିତ ହୋଇ ତାକୁ ଇ ସେ ଲମ୍ବା ଲମ୍ବା ଇଂରେଜ୍ ବିରୋଧୀ ଭାଷଣ ଦେଉଥିଲା।

କିନ୍ତୁ ଅର୍ଚ୍ଚନା ଏସବୁରେ ନ ଥାଏ। ସେ ସାନ ଭଉଣୀର କଥାକୁ ଅଧାରୁ ବନ୍ଦ କରି ଦିଏ ନାହିଁ କି ଅଧିକ ଶୁଣିବାକୁ ଆଗ୍ରହ ପ୍ରକାଶ କରି ପାରେ ନାହିଁ। ଖୁବ୍ ମନଯୋଗ ଦେଇ ନିଜର ସିଲେଇ ନେଇ ବସିଯାଏ କେବଳ। କିଛି ସମୟ ଏକତରଫା ବକବକ କରିବା ପରେ ଅନୁପମା ବି କ୍ଳାନ୍ତ ହୋଇ ପଡ଼େ। ସେ ତା' ଦିଦି ପାଖରେ ବସି ଯାଇ ନିଜ ସିଲେଇ ନିଜ ହାତକୁ ଉଠେଇ ନିଏ। ଆଉ ଅଳ୍ପ ସମୟ ଭିତରେ ରଙ୍ଗୀନ ସୂତା, ଫୁଲ ପତ୍ରର ପୃଥିବୀରେ ବୁଡ଼ିଯାଏ।

ସ୍କୁଲର ଖରା ଛୁଟି ହେଲେ ବହୁ ରକମର ସିଲେଇ ଧରି ବସିଯିବା ଦୁଇ ଭଉଣୀଙ୍କର ପୁରୁଣା ଅଭ୍ୟାସ। ପାଠ ପଢ଼ିବାର ଚାପ ନ ଥାଏ। ଠିକ୍ ଦଶଟାରେ ସ୍କୁଲ୍ ଦୌଡ଼ିବାର ଆବଶ୍ୟକତା ବି ନ ଥାଏ। ତେଣୁ ଦୁଇ ଭଉଣୀ ମା'ଙ୍କୁ ଘର କାମରେ ଟିକିଏ ଟିକିଏ ସାହାଯ୍ୟ କରି ଦେଇ ପୁଣି ନିଜ ନିଜର ସିଲେଇ ଧରି ବସି ଯାଆନ୍ତି। କାର୍ପେଟ୍ ବୁଣିବା, ଏମ୍ବ୍ରୟଡ଼ରି କରିବା, ବ୍ଲାଉଜରେ ଫୁଲ ପକେଇବା - ଏଇମିତି କେତେ ରକମର କାମ।

ଦୁହିଁଙ୍କର ସିଲେଇରେ ବହୁତ ଆଗ୍ରହ ଏବଂ ସିଲେଇ କରନ୍ତି ମଧ ଭଲ। କିନ୍ତୁ ସେମାନଙ୍କର ସିଲେଇ ଘର କଣରେ ପ୍ରାୟ ଲୁଚି ରହିଯାଇଥାଆନ୍ତା, ଯଦି କେଇ ମାସ ତଳେ ଆବିଦ୍ ରହମାନ୍ ସାହାଯ୍ୟରେ ହାତଟି ବଢ଼େଇ ଦେଇ

ନ ଥାଆନ୍ତେ।

ଘଟଣାଟି ଘଟିଥିଲା ଏଇମିତି।

ସେଦିନ ଶ୍ରଦ୍ଧା ଓ ଅନିରୁଦ୍ଧ ସାଙ୍ଗରେ କେଉଁ ଗୋଟାଏ ବିଷୟରେ କଥାବାର୍ତ୍ତା କରିବାକୁ ଆସିଥିବା ବେଳେ ଆବିଦ୍ ରହମାନ୍‌ଙ୍କର ଦୃଷ୍ଟି ଘର କଣରେ ଚଉତା ହେଇ ଥୁଆ ହେଇଥିବା ଦୁଇଟା ଆସନ ଉପରେ ପଡ଼ି ଯାଇଥିଲା। ସାମାନ୍ୟ ଜିନିଷଟିଏ ଆସନ। ଅଥଚ ତା' ଉପରେ କେଡ଼େ ସୁନ୍ଦର କାମ! ତିଆରି ହେଇଛି ଭଲିକି ଭଲି ଫୁଲ ଫୁଟିଥିବା ଗଛ ଏବଂ ସେଇ ଗଛ ଡ଼ାଳ ଉପରେ ବସି ରହିଛନ୍ତି କେତେ ରକମର ଚଢ଼େଇ।

''ବାଃ!'' ଆବିଦ୍ ପ୍ରଶଂସାର ସ୍ୱରରେ କହି ପକେଇଥିଲେ, ''ଭାବୀଜାନ୍, ତୁମେ ଏ ସିଲେଇ ସବୁ କରିଛ?''

''ମୁଁ??'' ଦୀର୍ଘ ନିଶ୍ୱାସ ନେଇ ଶ୍ରଦ୍ଧା କହିଥିଲେ, ''ଆଉ ଏସବୁ କରିବାରେ ମୋର ଆଗ୍ରହ ନାହିଁ ଭାଇ। ଏସବୁ ତ ଅର୍ଚ୍ଚନା ଓ ଅନିର କାମ। ଟିକିଏ ସୁବିଧା ପାଇଲେ ଛୁଞ୍ଚି ସୂତା ଧରି ବସି ଯାଆନ୍ତି ସେ ଦି'ଜଣ।''

''ସତରେ!!'' ଆବିଦ୍ ଛୋଟ ଝିଅ ଦିଇଟାଙ୍କର ହାତ କାମ ଓ ଆଗ୍ରହ ଦେଖି ସତରେ ଭୀଷଣ ଅଭିଭୂତ ହୋଇ ଯାଇଥିଲେ। ଶ୍ରଦ୍ଧାଙ୍କୁ କହିଥିଲେ, ''ଭାବୀଜାନ୍, ତୁମ ଝିଅ ଦୁଇଜଣ ଏତେ ଭଲ ସିଲେଇ କରୁଛନ୍ତି, ତାଙ୍କୁ ଟିକିଏ ସିଲେଇ ଶିଖେଇଲେ ହୁଅନ୍ତା ନାହିଁ? ଆହୁରି ଭଲ ଭାବରେ ସିଲେଇଟା ଆୟତ୍ତ ହୋଇଯାଆନ୍ତା।''

''ସବୁ କଥା ତ ଜାଣ ଆବିଦ୍ ଭାଇ, କାହିଁକି ଆଉ କହୁଛ? ଏମାନଙ୍କ ବାବା ବଞ୍ଚିଥିଲେ ସତେ କ'ଣ ସିଲେଇ ଶିଖା, ଗୀତ ଶିଖା ବାଦ୍ ଯାଇଥାଆନ୍ତା? ହେଲେ ଆଉ କ'ଣ ଏସବୁ ମୋ ପାଇଁ ସମ୍ଭବ? ଏବେ ତ ପଇସାଟିଏ ବରବାଦ କରିବା କଥା ମୁଁ ଭାବି ପାରୁନାହିଁ।''

''ବରବାଦ ବୋଲି କାହିଁକି କହୁଛ ଭାବୀଜାନ୍? ସିଲେଇ ଶିଖିଗଲେ ନିଜ ଲୁଗାପଟା ତ ନିଜେ କରିପାରିବେ। ତା'ଛଡ଼ା ଆମ ବିରାଦରିରେ ଜଣେ ଅଛି - ଇନାୟତ୍ ଚାଚା। ବଡ଼ ଦର୍ଜି ଦୋକାନଟିଏ ଥିଲା ତା'ର। ଏବେ ବୁଢ଼ା ହେଲାରୁ ଆଉ ଦୋକାନ ଚଳେଇ ପାରୁନାହିଁ। ପୁଅମାନଙ୍କ ଉପରେ ଛାଡ଼ିଦେଇ ସବୁବେଳେ ଘରେ ବସୁଛି। ତାକୁ ଇ କହିଲେ ସେ ଆସି ସପ୍ତାହକୁ ଥରେ

ଦି' ଥର କଟାକଟି ଟିକିଏ ଶିଖେଇ ଦିଅନ୍ତା ଝିଅ ଦି'ଜଣଙ୍କୁ। ଅଳ୍ପ କିଛି ନେବ ସେ। ତୁମେ ଭାବିକରି ମତେ କୁହ। ଆଚ୍ଛା..."

ଆବିଦ୍ ଚାଲିଯିବା ପରେ ମଧ୍ୟ ଶ୍ରଦ୍ଧା ମନ ସ୍ଥିର କରି ପାରୁ ନ ଥିଲେ। ତାଙ୍କର ଟାଣଟୁଣ ସଂସାରରେ ପୁଣି ଅଧିକା ଖର୍ଚ୍ଚ! ହେଲେ ଜିଦି ଧରି ବସିଗଲା ଅର୍ଚ୍ଚନା। "ତୁମେ ମନା କରନି ମା'। ଥରେ ଭଲ କରି କଟିଙ୍ଗ୍ ଶିଖିଗଲେ ସାହି ପଡ଼ିଶା ପିଲାଙ୍କର ଲୁଗାପଟା, ଅନ୍ୟମାନଙ୍କର ବ୍ଲାଉଜ୍, ସାୟା - ଏସବୁ ତ କରି କିଛି ପଇସା ଆମେ ଦି' ଭଉଣୀ ହାତକୁ ଆଣି ପାରିବୁ।"

ସତ କଥା। ପ୍ରଥମେ ସିନା କଷ୍ଟ ଟିକିଏ ହେବ, ହେଲେ ଝିଅ ଦିଇଟା ଥରେ ଭଲ ସିଲେଇ ଶିଖିଗଲେ ସୁଧେ ମୂଳେ ସେସବୁ ତାଙ୍କରି ପାଖକୁ ଚାଲି ଆସିବନି କି? ଭଲ ହିଁ ହେବ, ନିଜ ସୌଖୀନିଆ ଖର୍ଚ୍ଚ ସବୁ ନିଜ ରୋଜଗାରରୁ ଚଳେଇ ନେବେ ଝିଅ ଦିଇଟା। କେତେ ଆଉ ସନ୍ୟାସିନୀ ଭଳି ଚଳିବେ? ଆଉ ପାଞ୍ଚଟା ଝିଅଙ୍କୁ ଦେଖି ସେମାନଙ୍କର କ'ଣ ମନ ଚଞ୍ଚଳ ହେଉ ନ ଥିବ? ଦାଦା ଉପରେ ବୋଝ ପକେଇବେନି ବୋଲି ସିନା ତାଙ୍କର ବୁଝିବା ସୁଝିବା ଝିଅ ଦିଇଟା ପାଟି ବନ୍ଦ କରି ଅଛନ୍ତି!

ଶ୍ରଦ୍ଧା ରାଜି ହୋଇଯାଇଥିଲେ। ତା'ପରଠୁ ସବୁ ରବିବାରକୁ ରବିବାର ଇନାୟତ ମିଆଁ ଆସି ଅର୍ଚ୍ଚନା ଓ ଅନୁପମାକୁ ସିଲେଇ ଶିଖେଇ ଦେଇ ଯାଉଥିଲେ।

କିଛି ମାସ ପରେ ଦିନେ ସଲ୍‌ମା ଜବରଦସ୍ତି ଆଣି କେଇଟା ବ୍ଲାଉଜ୍ କନା ଓ ଗୋଟିଏ ମାପର ବ୍ଲାଉଜ୍ ଧରେଇ ଦେଲେ।

"ଏସବୁ କ'ଣ ଚାଚି?" ଆଶ୍ଚର୍ଯ୍ୟରେ ଅର୍ଚ୍ଚନା ପଚାରିଲା।

"ତୁ ଏଥରଠୁ ମୋ ବ୍ଲାଉଜ୍ କରିବୁ ଅର୍ଚ୍ଚନା। ଆର ସାହିର ମଲ୍ଲୀ ଦିଦି ଏତେ ଦିନ ଧରି କରୁଥିଲା। ହେଲେ ଗୋଟିଏ ଗୋଟିଏ ବ୍ଲାଉଜ୍ ପାଇଁ ଚାରି ପାଞ୍ଚ ଥର ଦୌଡ଼ାଇ ଦିଏ ସେ। ମୁଁ ତ ଆଉ ଯାଇ ପାରେନି ଏତେ ଥର। ହୁମାୟୁନ୍, ଜାହାଙ୍ଗୀରଙ୍କୁ ପଠାଇ ଦିଏ। ସେମାନେ ଚିଡ଼ି ଗଲେଣି। ତା'ପରେ ଆଉ ଗୋଟାଏ ବିଷୟ    ଅବଶ୍ୟ କହିବା କଥା ନୁହଁ    ହେଲେ ମଲ୍ଲୀ ଦିଦି ଯାହା କନା ମାରେ ନା, ତା' ଆଉ କାହିଁକି କହୁଛୁ    ତୁ ଏଥରକଠୁ କରିବୁଟି ମୋ ବ୍ଲାଉଜ୍।"

"ଆଉ କିଛି ଦିନ ସିଲେଇ ଶିଖିଯାଏ ଚାଚି, ତା'ପରେ ତୁମ ବ୍ଲାଉଜ୍

କାଟିବି। ମୋର ଏବେ ସାହସ ହେଉନି। ଯଦି ଭୁଲଭାଲ ହୋଇଯାଏ ?'' ଅର୍ଚ୍ଚନା ରହି ରହି କହିଥିଲା।

''ଭୁଲ କାହିଁକି ହେବ ମ ? ତୁ ତ ପୁଣି ତୋ ନିଜ ବ୍ଲାଉଜ୍, ତୋ ମା'ର ବ୍ଲାଉଜ୍ କରୁଛୁ।''

''ସେକଥା ଅଲଗା ଚାଚି। ଠିକ୍ ନ ହେଲେ ମୁଁ ସିଲେଇ ଦୁଇ ତିନି ଥର ଖୋଲିକରି କରେ। ହେଲେ ତୁମର...''

''ଦରକାର ହେଲେ ମୋ ସିଲେଇ ଚାରିଥର ଖୋଲିବୁ। କୋଉ ଏମିତି ଦୂରବାଟ ଯେ ତୁମ ଘର ଆଉ ଆମ ଘର! ଅଗଣା ଏପାଖ ଆଉ ସେପାଖ। ଏତେ ପାଖରେ ଯେତେବେଳେ ମତେ ଦର୍ଜିଟାଏ ମିଳିଛ, ତୁ ଭାବୁଛୁ ମୁଁ ତତେ ଛାଡ଼ିଦେବି ?'' ଜବରଦସ୍ତି ଅର୍ଚ୍ଚନା ହାତରେ କନା ଧରେଇ ଦେଇ ସଲ୍‌ମା ଚାଲିଯାଇଥିଲେ।

ଆଉ ଖୁବ୍ ଭୟରେ ବ୍ଲାଉଜ୍ କାଟିଥିଲା ଅର୍ଚ୍ଚନା। କେଜାଣି କେତେ ଥର ସିଲେଇ ଖୋଲିବାକୁ ହେବ।

ହେଲେ ଆଶ୍ଚର୍ଯ୍ୟ। ଥରଟିଏ ବି ଖୋଲିବାକୁ ହେଲା ନାହିଁ ତାକୁ। ଖାଲି ସେତିକି, ସଲ୍‌ମାଙ୍କର ଛୋଟ ଛୋଟ ଗୋଲାପ ଏମ୍ବ୍ରୟଡରି ହୋଇଥିବା ଧଳା ଅର୍ଗେଣ୍ଡିର ବ୍ଲାଉଜ୍ ଦେଖି ତାଙ୍କ ପଡ଼ାର ଆଉ କେଇ ଜଣ ନିଜ ନିଜ କନା ଆଣି ଅର୍ଚ୍ଚନାକୁ ଦେଇଗଲେ। ଅର୍ଚ୍ଚନା ଲୁଗାପଟା ସିଲେଇ କଲେ କେତେ ସୁବିଧା କହିଲ। ସହଜେ ତ ନୂଆ ନୂଆ ସିଲେଇ ଆରମ୍ଭ କରୁଛି ବୋଲି ଦର୍ଜିମାନଙ୍କଠୁଁ କମ୍ ପଇସା ନିଏ। ତା'ପରେ ତା' ଏମ୍ବ୍ରୟଡରି କି ଚମତ୍କାର! କୋଉ ଦର୍ଜି ବ୍ଲାଉଜ୍‌ରେ ଏମ୍ବ୍ରୟଡ଼ରି କରିବ ଭଲା। ଏସବୁ ଭିତରେ ପଡ଼ାର ଝିଅକୁ ସାହାଯ୍ୟ କରିବା ବି ହୋଇଯାଏ। ଏତେ ଗୁଡ଼ାଏ କାରଣ କ'ଣ ଅର୍ଚ୍ଚନାକୁ ଲୁଗାପଟା ସିଲେଇ କରିବାକୁ ଦେବା ପାଇଁ ଯଥେଷ୍ଟ ନୁହଁ ?

ଅର୍ଚ୍ଚନାକୁ ଲୁଗାପଟା ସିଲେଇ କରିବାକୁ ଦେବାରେ ସବୁଠାରୁ ବେଶୀ ଆଗ୍ରହ ଗୌରୀ ଦିଦିଙ୍କର।

ଗୌରୀ ସେଇମାନଙ୍କର ପଡ଼ାର ଝିଅ। ତେବେ ଚାରି ବର୍ଷ ତଳେ ବାହା ହୋଇ ଫରିଦ୍‌ପୁର ଚାଲିଯାଇଛି। ଫରିଦ୍‌ପୁର୍‌ରେ ରହିଲେ ବି ବର୍ଷରେ ବେଶ୍ କେତେ ଥର ତା'ର ପାବନା ଯିବା ଆସିବା ହୋଇଯାଏ। ତା' ସ୍ୱାମୀର ଆୟୁର୍ବେଦିକ

ଔଷଧର ବ୍ୟବସାୟ ପାଚନାକୁ ଲମ୍ବିଛି। ସେଥିପାଇଁ ଯେତେ ଥର ସ୍ୱାମୀ ପାଚନା ଆସେ, ତା' ସାଙ୍ଗରେ ଗୌରୀ ଚାଲି ଆସି ବାପଘରୁ ବୁଲିଯାଏ। ସ୍ୱାମୀର ବ୍ୟବସାୟ ଚାଲେ ଭଲ ଆଉ ସେ ବେଶ୍ ଦିଲ୍ ଖୋଲା ମଣିଷ। ବେଳ ଅବେଳରେ ସୁନ୍ଦରୀ ସ୍ତ୍ରୀ ପାଇଁ ଶାଢ଼ି, ବ୍ଲାଉଜ୍ କନା ଆଣି ଗଦା କରେ। ଏତେ ଦିନ ସେଇ ସବୁ ଲୁଗାପଟା ମୁଣ୍ଡର ବୋଝ ହୋଇ ରହିଥିଲା ଗୌରୀ ପାଇଁ। ନିଜେ ତ ସିଲେଇର ବିନ୍ଦୁ ବିସର୍ଗ ଜାଣେ ନାହିଁ, କେତେ ଆଉ ଏଠି ସେଠିକୁ ଦୌଡ଼ିବ? ତା'ଛଡ଼ା ଅନ୍ୟମାନଙ୍କର ଯେଉଁ ଅପୂର୍ବ ସିଲେଇ ତ ଛାଡ଼।

ଏବେ ଅର୍ଚ୍ଚନାକୁ ପାଇ ସେ ଯେମିତି ହାତରେ ଚାନ୍ଦ ପାଇଯାଇଛି।

''କ'ଣ କରୁଛୁରେ ଅର୍ଚ୍ଚନା?'' ସେଦିନ ଘର ଭିତରକୁ ପଶି ଆସୁ ଆସୁ ଗୌରୀ ପଚାରି ଉଠିଲା।

''ଆସ, ଗୌରୀ ଦିଦି।'' ଆସନଟିଏ ପକେଇ ଦେଇ ଉଲ୍ଲସିତ ଭାବରେ ଅର୍ଚ୍ଚନା କହି ଉଠିଲା, ''ଦେଖିଲ, ଏଇଟା କେମିତି ହୋଇଛି? ମୁଁ ଗୋଟେ ନୂଆ ରକମର ବ୍ଲାଉଜ୍ କରିଛି ମୋ ପାଇଁ। କୁହନା, ଏମିତିଆ ବେଳ କ'ଣ ଖରାପ ଲାଗୁଛି?''

ଅର୍ଚ୍ଚନା ଦେଖାଉଥିବା ବ୍ଲାଉଜ୍ ନିଜ ହାତକୁ ନେଇ ଘୂରେଇ ଘୂରେଇ ଦେଖିବା ବେଳେ ସତରେ ଅବାକ ହେଇଯାଇଥିଲା ଗୌରୀ। ''ତୁ କରିଛୁ ଏଇଟା? ଜାଣିଛୁ ଏବେ ସେ ଯେଉଁ ନୂଆ ଝିଅଟି ସିନେମାରେ କାମ କରୁଛି, କ'ଣ ଦେବୀକା ରାଣୀ ନା କ'ଣ, ସେ ଏମିତି ଗୋଟାଏ ବ୍ଲାଉଜ୍ ପିନ୍ଧିଥିଲା। ତା'ର ଗୋଟେ ଛବି ଦେଖାଇବାକୁ ତୋ ଦାଦା ମତେ ନେଇ ଯାଇଥିଲେ ଯେ...''

ଓଠରେ ହାତ ଦେଇ ଗୌରୀକୁ ଚୁପ୍ କରେଇ ଦେଲା ଅର୍ଚ୍ଚନା। ''ଆସ୍ତେ, ମା' ଶୁଣିବେ। ... ମୋର ଗୋଟେ ସାଙ୍ଗ ପରା ତା'ରି ଫଟ ଆଣିଥିଲା ସ୍କୁଲ୍‌କୁ। ମତେ ତା' ବ୍ଲାଉଜ୍ କଟିଙ୍ଗ୍ ଏତେ ଭଲ ଲାଗିଲା ଯେ ମୁଁ ଚେଷ୍ଟା କରି ନିଜ ପାଇଁ କରିଲି। ... ତମକୁ ବି ଭଲ ଲାଗୁଛି ତ?''

''ଖୁବ୍ ଭଲ ହେଇଛି ରେ।'' ଗୌରୀର ଅବାକ୍ ଭାବ ତଥାପି କଟି ନ ଥିଲା। ''ଏଥର ମୁଁ ଯେଉଁ କନା ସବୁ ଆଣିଛି, ସେଥିରେ ତୁ ଏଇ ବେଳ କରି ଦେବୁ। ହେଲା?''

ଗୌରୀର କନା ଖୋଲି ଦେଖୁଥିଲା ଅର୍ଚ୍ଚନା। ଭାରି ସୁନ୍ଦର କନା। ଯାହା କୁହ, ତା' ବଗଚିଗ ପସନ୍ଦ ଭଲ। ମନ ବି ଭଲ। କେତେ ଦାମୀ ଦାମୀ କନା! କେତେ ହୋଇଥିବ ଏସବୁର ଦାମ୍? କନା ଦେଖୁ ଦେଖୁ କ'ଣ ଟିକିଏ ସନ୍ଦେହ ହେଲା ଅର୍ଚ୍ଚନାର। ସେ ଟେପ୍ ନେଇ କନା ମାପି ବସିଲା।

''ଏ କ'ଣ ଗୌରୀ ଦିଦି? କେତେ ବେଶୀ କନା ଆଣିଛ ଏଥର! ଏଥିରେ ତ ଦି' ଦିଟା ବ୍ଲାଉଜ୍ ହୋଇଯିବ।''

''ସେଇଥିପାଇଁ ତ ଆଣିଛି।'' ମୁରୁକି ହସି ଗୌରୀ କହିଲା, ''ତୁ ଏସବୁ କନାରେ ଗୋଟେ ଗୋଟେ ବ୍ଲାଉଜ୍ ମୋ ପାଇଁ କରିବୁ। ଆଉ ବାକୀ କନାରେ ହୁଏତ ତୋ ପାଇଁ ନହେଲେ ଅନି ପାଇଁ ବ୍ଲାଉଜ୍ କରିବୁ। ସେ ବି ତ ନୂଆ ନୂଆ ଶାଢ଼ି ପିନ୍ଧିବା ଆରମ୍ଭ କଲାଣି ଦେଖୁଛି।''

ଅର୍ଚ୍ଚନା ତଥାପି ବିଶ୍ୱାସ କରି ପାରୁ ନ ଥିଲା। ''ତୁମେ ତ ସବୁ ଥର ବ୍ଲାଉଜ୍ ସିଲେଇର ପଇସା ଦେଉଛ, ଗୌରୀ ଦିଦି। ପୁଣି ଏସବୁ କାହିଁକି? ... ଏତେ ଦାମୀ କନା!''

''ତୁ ଚୁପ୍ କର ତ। ମୁଁ ବଡ଼, ମୁଁ ଯାହା କହୁଛି ଚୁପ୍‌ଚାପ୍ ଶୁଣ।'' ମିଛ ଗାମ୍ଭୀର୍ଯ୍ୟରେ ଗୌରୀ କହିଉଠିଲା। ''ଯୋଉ ତ ପଇସା ନେଉଛୁ ଛାଡ଼। ଆମ ଫରିଦ୍‌ପୁର ଦର୍ଜି ତା'ର ତିନି ଗୁଣ ପଇସା ନିଏ, ଜାଣିଛୁ? ସେଥିପାଇଁ ଏଥର ମୁଁ ତୋ ଭିଣେଇଙ୍କୁ କହି ଦେଇଥିଲି, ଯାହା କନା ଆଣିବ ଦି' ଦିଟା ବ୍ଲାଉଜ୍ ପାଇଁ ଆଣିବ।''

ଅର୍ଚ୍ଚନା ଆଉ କିଛି କହି ପାରିଲା ନାହିଁ। ଗୌରୀ ଦିଦିର ସ୍ନେହର ଭାରରେ ନଇଁ ପଡୁଥିଲା ସେ ଯେମିତି।

ହଠାତ୍ ଗୌରୀର କ'ଣ ଯେମିତି ମନେ ପଡ଼ିଗଲା। ସେ ଚଟ୍ କରି ପଚାରିଦେଲା, ''ଆଚ୍ଛା ଅର୍ଚ୍ଚନା, ଏ ବର୍ଷ ତୁ ମ୍ୟାଟ୍ରିକ୍ ପରୀକ୍ଷା ଦେବୁନା?''

''ହଁ।''

''ତା'ପରେ କ'ଣ କରିବୁ?''

''କିଏ ଜାଣେ ଗୌରୀ ଦିଦି? କଲେଜରେ ପଢ଼ିବାକୁ ତ ଇଚ୍ଛା। କିନ୍ତୁ ସେ ତ ବିରାଟ ଖର୍ଚ୍ଚ...।''

''ଦାଦା କହୁଥିଲା, ଭଲ ବରପାତ୍ର ପାଇଲେ ଦିଦି ବାହାଘର ହୋଇଯିବ।''

ହଠାତ୍ ବଡ଼ ମଣିଷଙ୍କ ଭଳି ଶୁଣିଥିବା କଥାଟା କହି ପକେଇଲା ଅନୁପମା।

‘‘ଧେତ୍ - ମୁଁ ଏତେ ଶୀଘ୍ର ବାହା ସାହା ହେବିନି।’’ ଚିଡ଼ିଯାଇ ଅର୍ଚ୍ଚନା କହି ପକାଇଲା।

ଗୌରୀ ସମ୍ନାରେ ଦିଇଟା ନଡ଼ିଆ ଲଡୁ ଆଉ ଗିଲାସେ ପାଣି ରଖି ଦେଇ ଶ୍ରଦ୍ଧା ଆସି ସେଇଠି ବସିଗଲେ। କହିଲେ, ‘‘ତୁମେ ଟିକେ ଫରିଦ୍‌ପୁର୍ ଆଡ଼େ ନଜର ରଖିଥିବ ମ ଗୌରୀ। ଆମ ଅର୍ଚ୍ଚନା ପାଇଁ ବ୍ରାହ୍ମଣ ପିଲାଟିଏ ଯଦି ଆଖିରେ ପଡ଼େ, ତାହେଲେ ନିଶ୍ଚେ ଜଣେଇବ। ପଢ଼ାଶୁଣା କରିଥିବ, ଘରବାଡ଼ି କିଛି କିଛି ଥିବ - ଏସବୁ ଦେଖିବା କଥା। ଆମ କଥା ତ ଜାଣିଛ, ଦିଆନିଆ ବେଶୀ କରିପାରିବୁନି।’’

‘‘ଓହୋ ମା’, ଚୁପ୍ କର ତ।’’ ଲାଜରେ ଅର୍ଚ୍ଚନାର ମୁହଁ ଲାଲ ହୋଇ ଯାଉଛି। କ’ଣ ଯେ ହୋଇଛି ମା’ଙ୍କର! ଯାହାକୁ ଦେଖୁଛନ୍ତି ତା’ ସାମ୍ନାରେ ତା’ରି ବାହାଘର କଥା।

‘‘ମୁଁ ଆଖି ରଖିବି ମାସୀମା’। ଆପଣଙ୍କୁ ଆଉ କହିବାକୁ ହେବ ନାହିଁ। ହେଲେ ମୁଁ କ’ଣ କହୁଥିଲି କି, ମ୍ୟାଟ୍ରିକ୍ ପରେ ପରେ ଯଦି ଆମ ଅର୍ଚ୍ଚନାର ବାହାଘର ଠିକ୍ ହୋଇ ନ ଥାଏ, ତେବେ ତାକୁ ଘରେ ନ ବସେଇ ମୋ ପାଖକୁ ପଠେଇଦେବେ। ମୋ ଜକେଇ ଶ୍ୱଶୁର ଝିଅପିଲାଙ୍କ ପାଇଁ ସ୍କୁଲ୍‌ଟିଏ ଖୋଲିଛନ୍ତି। ସେଠି ସେ ସିଲେଇ ଶିଖେଇପାରିବ।’’

ଶ୍ରଦ୍ଧା କିଛି କହିବା ଆଗରୁ ଅର୍ଚ୍ଚନା ହିଁ ଗଦ୍ ଗଦ୍ ହେଇ କହିପକେଇଲା, ‘‘ସତରେ ଗୌରୀ ଦିଦି?? ତାହେଲେ ତ ମୁଁ ନିଶ୍ଚେ ଚାଲିଯିବି ତୁମ ପାଖକୁ। ରହିଥା, ଖାଲି ମ୍ୟାଟ୍ରିକ୍‌ଟା ସରିଯାଉ।’’

‘‘ପର କଥା ପରେ, ଏବେଠୁ କାହିଁକି ଏତେ ନାଚୁଛୁ?’’ ଝିଅ ଚାକିରି କରିବା କଥା ଶ୍ରଦ୍ଧାଙ୍କୁ କାହିଁକି ଭଲ ଲାଗୁ ନ ଥିଲା। ହେଲେ ଗୌରୀର ମୁହଁ ଉପରେ ତ କିଛି କହି ହୁଏ ନାହିଁ। ପୁଣି ଯୁଗର ଆବହାଓ୍ୱା ବି ବଦଳୁଛି। ଆଜିକାଲି ଶୁଣାଯାଉଛି ଯେ ଝିଅମାନେ ପୁଅଙ୍କ ସାଙ୍ଗରେ ତାଳ ଦେଇ ବ୍ରିଟିଶ ସରକାର ବିରୁଦ୍ଧରେ ନାନା ରକମର ନାଟ କରୁଛନ୍ତି। ଆରେ ବାବା, ସେମାନେ ହେଲେ ରାଜା। ଟିକେ ଅବାଗିଆ କାମ କଲେ ତ ସହିବାକୁ ହେବ। ତା’ ନ କରି ଏଠି ପାଟିତୁଣ୍ଡ, ସେଠି ଜଳାପୋଡ଼ା - ଏସବୁ କ’ଣ? ହେଲା

ଏବେ ଟୋକାମାନଙ୍କ ରକ୍ତ ଟଗବଗ୍ ହୋଇ ଫୁଟୁଛି ଯେ ସେମାନେ ଲାଠିମାଡ଼, ଗୁଳିମାଡ଼କୁ ଖାତିର ନ କରି ଇଂରେଜଙ୍କ ସାମ୍ନାକୁ ଡେଇଁ ପଡୁଛନ୍ତି। ହେଲେ ଭଲ ଘର ଝିଅମାନଙ୍କୁ ଏସବୁ ଶୋଭା ଦେଖାଏ? ଛି ଛି। ଭାଗ୍ୟ ଭଲ, ତାଙ୍କ ଝିଅ ଦି'ଟା ଏସବୁରୁ ଦୂରେଇ ରହୁଛନ୍ତି। କିନ୍ତୁ ବେଶୀ ଆଙ୍କଟିଲେ, କେଉଁଥିରୁ କ'ଣ ଯେ ହୋଇଯିବ କିଏ କହିପାରିବ?

ଗୌରୀ ଚାଲିଯିବା ପରେ ମଧ ଅନେକ ବେଳ ସେଇଠି ଅଗଣାରେ ବସି ବସି ଭାବି ହୋଇଥିଲେ ଶ୍ରଦ୍ଧା।

''ମା' ସନ୍ଧ୍ୟା ଦେଇଦେବି?'' ଅନୁପମା ପାଖରେ ଠିଆ ହୋଇ ଆସି ପଚାରିଲା।

ସନ୍ଧ୍ୟା! ଏତେ ବେଳ ହୋଇଗଲାଣି? ସଂବିତ ଫେରି ପାଇଲେ ଶ୍ରଦ୍ଧା। ''ହଁ ହଁ ଦେଇ ଦେ।'' କଥାଟା କହିଦେଇ ଚୁଲି ଜଳେଇବାକୁ ରୋଷେଇ ଘର ଆଡ଼କୁ ଯାଉଯାଉ ଶ୍ରଦ୍ଧାଙ୍କର ପାଦ ଦିଇଟା ଅଟକିଗଲା। ଏତେବେଳକୁ ଘରକୁ ଫେରି ଆସିବା କଥା ଅନିରୁଦ୍ଧର। କାହିଁକି ଏତେ ଡେରି କରୁଛି ଯେ ସେ ଆଜି!

ଏବଂ ଠିକ୍ ସେତିକିବେଳେ ହିଁ ସାଇକେଲଟା ବାରଣ୍ଡାକୁ ଉଠେଇ ଦେଇ ଘର ଭିତରକୁ ପଶି ଆସିଲା ଅନିରୁଦ୍ଧ।

''କିରେ ବାବୁ, ଆଜି ଏତେ ଡେରି?''

''ହେବନି ଡେରି?'' ବିରକ୍ତିରେ ଅନିରୁଦ୍ଧ କହି ଉଠିଲା, ''ବାଟରେ ବିରାଟ ଶୋଭାଯାତ୍ରା। ରାସ୍ତା ଘାଟ ବନ୍ଦ କରି ଦେଇଛନ୍ତି।''

''କିଏ ବା?''

''କିଏ ଆଉ, ଏଇ ସ୍ୱଦେଶୀବାଲାମାନେ।'' ଦେହରୁ ସାର୍ଟଟା ଖୋଲି ଦେଇ ଅଗଣାରେ ବସିଗଲା ଅନିରୁଦ୍ଧ। ବଡ଼ କଂସା ଗିଲାସରେ ଗିଲାସେ ପାଣି ଢକଢକ ହୋଇ ପିଇ ଦେଇ ପୁଣି ଗଜର ଗଜର ହେଲା ସେ।

''ସ୍ୱଦେଶୀ! ସ୍ୱଦେଶୀ! ସ୍ୱଦେଶୀ! ବୁଝିଲ ମା', ଶୁଣି ଶୁଣି କାନ ଟିଟା ଧରିଗଲାଣି। ଏମାନେ କ'ଣ ନା ଇଂରେଜ ସରକାରଙ୍କୁ ଭାରତରୁ ତଡ଼ିଦେବେ! ଯେତେକ ସବୁ ବାହାପିଆ କଥା!''

ଅବାକ ହୋଇ ପୁଅ ମୁହଁକୁ ଚାହିଁ ରହିଲେ ଶ୍ରଦ୍ଧା। ନା, ଅନିରୁଦ୍ଧ ସ୍ୱଦେଶୀ

ବିରୋଧୀ ମତ ଦେଉଛି ବୋଲି ଶ୍ରଦ୍ଧା ବିବ୍ରତ ହୋଇ ପଡ଼ି ନ ଥିଲେ। ପୋଡ଼ାମୁହାଁ ସ୍ୱଦେଶୀବାଲାଙ୍କ ପ୍ରତି ତାଙ୍କର କୌଣସି ସହାନୁଭୂତି ନ ଥିଲା। ହେଲେ, କଥାଟା ବଡ଼ ପୁଅ ମୁହଁରୁ ଶୁଣି କେମିତି ଅବାକ୍ ଲାଗିଲା ତାଙ୍କୁ।

ଏହା ଭିତରେ ଏତେ ବଦଳି ଯାଇଛି ଅନିରୁଦ୍ଧ? କେମିତି ମା' ହେଇ ସେ ଟେର ପାଇଲେ ନାହିଁ! ଆହୁରି ପୁଣି ସ୍ୱାଧୀନତା ସଙ୍ଗ୍ରାମୀଙ୍କ ବିରୁଦ୍ଧରେ ସେ ମତ ଦେବା ଆରମ୍ଭ କଲାଣି। ଏ ସେଇ ଅନିରୁଦ୍ଧଟି? ବଡ଼ ପୁଅକୁ ଅବାକ୍ ଭାବରେ ଦେଖୁ ଦେଖୁ ଶ୍ରଦ୍ଧାଙ୍କର ମନ ଚାଲି ଯାଇଥିଲା କାହିଁ ପଛକୁ। ଅନିରୁଦ୍ଧ ହାଇସ୍କୁଲ୍‌ରେ ପଢ଼ିବା ବେଳକୁ।

ସେତେବେଳେ ଅନିରୁଦ୍ଧର ଆଦର୍ଶ ହୋଇ ରହିଥିଲେ ସୂର୍ଯ୍ୟ ସେନ୍। ଚିଟାଗଙ୍ଗର 'ମାଷ୍ଟର୍ ଦା'। ନିଜ ସହରରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରି ସେତେବେଳେ ସୂର୍ଯ୍ୟ ସେନ୍‌ଙ୍କର ବିରାଟ ନାମ ଡାକ। ସାଧାରଣ ସ୍କୁଲ୍ ଶିକ୍ଷକଟିଏ ସୂର୍ଯ୍ୟ ସେନ୍, ଅଥଚ ଇଂରେଜ୍ ବିରୋଧୀ କାର୍ଯ୍ୟ କଳାପ ଆରମ୍ଭ କରି ଦେଇ ଗୋରା ସରକାରକୁ ଅସ୍ତବ୍ୟସ୍ତ କରେଇ ଦେଇଥିଲେ। ଚେହେରା ଦେଖିଲେ କେହି କହିବ ନାହିଁ ଯେ ମଣିଷଟା ଭିତରେ ଏତିକି ନିଆଁ।

ତାଙ୍କର କଥା ବଡ଼ ନରମ। ଆଖି ଦିଇଟାରେ ଭାସି ରହୁଥିବା ଦୟା ଭାବକୁ ଛାଡ଼ି ଦେଲେ ଚେହେରା ଅତି ସାଧାରଣ। ବଙ୍ଗ ପ୍ରଦେଶର ଲକ୍ଷ ଲକ୍ଷ ଲୋକଙ୍କ ଭଳି ସେ ରବୀନ୍ଦ୍ରନାଥ ଓ ନଜ୍‌ରୁଲ୍‌ଙ୍କ କବିତା ପାଇଁ ପାଗଳ। ଅଥଚ ସାଧାରଣତାର ଆବରଣ ତଳେ ମଣିଷଟି ଏଭଳି ଅସାଧାରଣ!

ଭାରତରୁ ଇଂରେଜ୍ ସରକାରଙ୍କୁ ତଡ଼ିବା ପାଇଁ ସେ ପ୍ରତିଜ୍ଞା କରି ପକେଇଲେ। ତାଙ୍କରି ଭଳି ଆହୁରି କେତେ ଜଣଙ୍କଠୁଁ ପ୍ରତିଜ୍ଞା କରେଇ ନେଲେ। ଦିନା କେତେ ତ କଙ୍ଗ୍ରେସ୍‌ରେ ମିଶି ଅହିଂସା ଅସହଯୋଗ ଚଳେଇଲେ। କିନ୍ତୁ ହଠାତ୍ ଦିନେ ତାଙ୍କର ମନେହେଲା ଯେ ଗୋରା ସରକାରକୁ ଅଥର୍ବ କରି ନ ଦେଲେ, ସେମାନଙ୍କର ଅସ୍ତ୍ର ବଳକୁ ନିୟନ୍ତ୍ରଣ କରି ନ ଦେଲେ, ସେମାନଙ୍କୁ ଦେଶରୁ ତଡ଼ିବା ଅସମ୍ଭବ। ଥରେ ଏଭଳି ଭାବନା ମନକୁ ଆସିବା ପରେ ସେ ତାଙ୍କ ମାର୍ଗ ବଦଳାଇ ଦେଲେ। ଚୁପ୍‌ଚାପ୍ ନିଜର ସହଯୋଗୀମାନଙ୍କୁ ଏକାଠି କରି ସେ କେତେ ସବୁ ଆୟୋଜନ କରି ପକେଇଲେ।

ସେତେବେଳେ ଚିଟାଗଙ୍ଗରେ ଇଂରେଜମାନଙ୍କର ବିରାଟ ଶସ୍ତ୍ର ଭଣ୍ଡାର। ସେଇଠୁ

ହିଁ ବଙ୍ଗ ପ୍ରଦେଶର ବିଭିନ୍ନ ସ୍ଥାନକୁ ଅସ୍ତ୍ରଶସ୍ତ୍ର ପଠେଇ ପ୍ରଦେଶଟିକୁ ନିଜ ମୁଠିରେ ବାନ୍ଧି ରଖିଥାଏ ଇଂରେଜ ସରକାର। ସୂର୍ଯ୍ୟ ସେନ୍ ନିର୍ଣ୍ଣୟ କଲେ ଯେ ସରକାରଙ୍କର ହାତ ଗୋଡ଼ ବାନ୍ଧି ଦେବା ପାଇଁ ବାଟ କେବଳ ଗୋଟିଏ। କଲିକତା ସହିତ ଚିଟାଗଙ୍ଗର ସମ୍ପର୍କ ଭାଙ୍ଗି ଦେବାକୁ ହେବ। ସେଥିପାଇଁ ସେ ଚିଟାଗଙ୍ଗ ସହିତ ରେଳ, ଟେଲିଫୋନ୍ ଓ ଟେଲିଗ୍ରାଫ୍ ଯୋଗାଯୋଗ ନଷ୍ଟ କରି ଦେବାର ଚେଷ୍ଟା ଆରମ୍ଭ କରିଦେଲେ। ଏତେ ବିଶାଳ ଇଂରେଜ୍ ପ୍ରତିପତ୍ତି। ଅଥଚ ମାତ୍ର ପଞ୍ଚଷଠି ଜଣ ବିଦ୍ରୋହୀଙ୍କୁ ନେଇ ସୂର୍ଯ୍ୟ ସେନ୍ ନିଜ ଆକ୍ରମଣ ଆରମ୍ଭ କରିଦେଲେ। ଯେତେବେଳେ ହଜାର ହଜାର ଇଂରେଜ୍ ସେନା ସେମାନଙ୍କୁ ଚାରିପଟୁ ଘେରିଗଲେ, ସେତେବେଳେ ସୂର୍ଯ୍ୟ ସେନ୍ ଭୟ ପାଇ ଯାଇ ନ ଥିଲେ, ବରଂ ନିକଟବର୍ତ୍ତୀ ଏକ ପାହାଡ଼ ଉପରକୁ ଉଠିଯାଇ ନିଜର ଆକ୍ରମଣ ଜାରି ରଖିଥିଲେ।

୧୯୩୦ ମସିହାର ୧୮ ଏପ୍ରିଲ୍‌ରୁ ଆରମ୍ଭ କରି ୨୨ ଏପ୍ରିଲ୍‌ର ଅପରାହ୍ଣ ଯାଏଁ ଏଇ ଆକ୍ରମଣ ଜାରି ରହିଥିଲା। ଏଥିରେ ଅଶୀ ଜଣ ଇଂରେଜ ସୈନିକ ପ୍ରାଣ ହରାଇ ଥିଲେ ଏବଂ ସୂର୍ଯ୍ୟ ସେନ୍ ମଧ୍ୟ ବାର ଜଣ ସହଯୋଗୀଙ୍କୁ ହରାଇଲେ। ଯେତେବେଳେ ସେ ଦେଖିଲେ ଯେ ଆଉ ଅଧିକ ସମୟ ଯୁଦ୍ଧ ଚାଲୁ ରଖିବା ସମ୍ଭବ ନୁହଁ, ସେତେବେଳେ ସେ ନିଜର ସହଯୋଗୀମାନଙ୍କୁ ଛୋଟ ଛୋଟ ଦଳ କରେଇ ଦେଇ ଆଖ ପାଖ ଗାଁକୁ ପଠେଇ ଦେଇଥିଲେ। ଗାଁର ଉଭୟ ହିନ୍ଦୁ ଓ ମୁସଲମାନବାସୀମାନେ ତିନି ବର୍ଷ ଧରି ବିଦ୍ରୋହୀମାନଙ୍କୁ ଲୁଚେଇ ରଖି ପାରିଥିଲେ।

ଦିନେ କିନ୍ତୁ ଧରା ପଡ଼ିଲେ ସୂର୍ଯ୍ୟ ସେନ୍। ୧୯୩୪ ମସିହା ଜାନୁୟାରୀ ବାର ତାରିଖରେ ତାଙ୍କୁ ଫାଶୀ ହୋଇଗଲା।

ସେତେବେଳେ କେତେ ବା ବୟସ ଅନିରୁଦ୍ଧର? ଦେଖିବାକୁ ଗଲେ ନିହାତି ପିଲା। ତଥାପି ସେ କି ଦମ୍ଭରେ ସେଦିନ କହିଥିଲା, ''ଗୋରା ସରକାର ଗୋଟାଏ ସୂର୍ଯ୍ୟ ସେନ୍‌କୁ ସିନା ଫାଶୀ ଦେଇଦେଲା। ହେଲେ ଦେଖିବ ମା', ବଙ୍ଗଳା ମାଟିରେ ଲକ୍ଷ ଲକ୍ଷ ସୂର୍ଯ୍ୟ ସେନ୍‌ଙ୍କର ଆବିର୍ଭାବ ହୋଇଯିବ।''

ଶ୍ରଦ୍ଧା ଡରି ଯାଇଥିଲେ। କହିଥିଲେ, ''ତୁ ବାପ ମା'ଙ୍କର ବଡ଼ ପୁଅ ରେ ବାବୁ। ଏଇ କଥାଟି ମନେ ରଖିଥିବୁ। କିଛି ଓଲଟାପାଲଟା କାମ କରିବୁନି ବାପା।''

କିଭଳି ଏକ ଉଦ୍ଭ୍ରାନ୍ତ ଦୃଷ୍ଟିରେ ତାଙ୍କୁ ଚାହିଁ ଅନିରୁଦ୍ଧ ଉତ୍ତର ଦେଇଥିଲା, "ଭାରତ ମାତାର ଲକ୍ଷ ଲକ୍ଷ ପୁଅ ମାଟିରେ ମିଶି ଯାଉଛନ୍ତି, ଆଉ ତୁମେ ଗୋଟାଏ ପୁଅ ପାଇଁ ବ୍ୟସ୍ତ ହୋଇ ପଡୁଛ ମା'? ମୋ ପାଦରେ ଏବେଠୁ ବେଡ଼ି ବାନ୍ଧି ରଖନି। ଦେଶର ଡାକ ଆସିଲେ ମୁଁ ଯେମିତି ମୁଣ୍ଡ ଉପରକୁ ଟେକି ଆଗେଇ ଯାଇପାରେ, ସେ ଆଶୀର୍ବାଦ କର।"

ଯେଉଁ ଅନିରୁଦ୍ଧ ଦିନେ ଏଇ କଥା କହିଥିଲା, ସେଇ ପୁଣି ଏତେ ବଦଳି ଯାଇ ପାରିଲା ?

ହାତ ବିଞ୍ଚଣାରେ ବିଞ୍ଚି ହେଉ ହେଉ ଅନିରୁଦ୍ଧ ହାଇଟାଏ ମାରିଲା ଏବଂ ଆଗ ଭଳି ଚାପା ବିରକ୍ତି ନେଇ ଆଉ ଥରେ କହିପକେଇଲା, "ଯାହା କୁହ ମା', ଏ ସ୍ୱଦେଶୀବାଲାଙ୍କର ମୁଣ୍ଡ ଖରାପ। ନ ହେଲେ କ'ଣ ଗୋରା ସରକାରକୁ ତଡ଼ିବା କଥା ଭାବୁଥାଆନ୍ତେ ? ...ଯେତେକ ବାହାପିଆ କଥା !"

ବାରଣ୍ଡାରେ ସଞ୍ଜ ବଳିତାଟା ରଖିଦେଇ ଆସି ଭିତରକୁ ଯାଉ ଯାଉ ହଠାତ୍ ଅନୁପମା ଉତ୍ତର ଦେଲା, "ସମସ୍ତେ ଖାଲି ବାହାପିଆ କଥା କହୁଛନ୍ତି, ଆଉ ତୁମେ ଆମର ସିଆଣିଆ ! ନାହିଁ କି ଦାଦା ? ...ଉଃ, ତୁମର ଯେଉଁ କଥା ନା, ଶୁଣିଲେ ଅବାକ ଲାଗେ। ଆଚ୍ଛା କହିଲ, କି ଅଧିକାରରେ ଆମ ଉପରେ ତୋଡ଼ ଦେଖେଇବେ ଇଂରେଜ ସରକାର ? ଆମେ ତାଙ୍କୁ ଡାକିଥିଲୁ କି ଆମ ଦେଶ ଚଳେଇବାକୁ ! ଜବରଦସ୍ତି ଆସି ଦେଶଟାକୁ ମାଡ଼ି ବସିଛନ୍ତି ! ପୁଣି କ'ଣ ନା ହାକିମାତି ଚଳଉଛନ୍ତି ଆମ ଉପରେ !! ...ଏ ସ୍ୱଦେଶୀବାଲା କ'ଣ ଖରାପ କଥାଟା କହୁଛନ୍ତି ଯେ ? ସେମାନେ ଏକାଠି ହୋଇ ନିଜ ଦେଶର ଶାସନ ନିଜ ହାତକୁ ନେବା କଥା କହୁଛନ୍ତି ତ, ଏଇଟା କ'ଣ କିଛି ଭୁଲ ? ଆମ ଦେଶରେ ଆମେ ଏତେ ଲୋକ, ସମସ୍ତେ ଯଦି ଏକାଠି ହୋଇ ମୁଣ୍ଡ ଟେକିବା, ତା'ହେଲେ ଆଉ ରହିପାରିବେ ଏ ଗୋରା ଲୋକମାନେ ?"

ସାନ ଭଉଣୀକୁ ଅବାକ ଭାବରେ ଚାହିଁଲା ଅନିରୁଦ୍ଧ। ଏଡ଼ିକି ବଳଟେ ନାଁକୁ ଛୁଆଟା, ଏହା ଭିତରେ ଏତେ ବଡ଼ ହୋଇ ଗଲାଣି ? ଏତେ ବଡ଼ ବଡ଼ କଥା କହିଶିଖିଲାଣି ? କିଏ ଶିଖେଇଲା ତାକୁ ଏସବୁ କଥା ?

"କିରେ, କିଏ ତତେ ଏସବୁ କହିଛି ? ଏସବୁ ବାଜେ କଥା ତୋ ମୁଣ୍ଡରେ ପୂରେଇଛି କିଏ ?"

''ବାଜେ କଥା କାହିଁକି ହେବ ମ ? ଆମର ଯେଉଁ ନୂଆ ଦିଦି ଆସିଛନ୍ତି, ଯିଏ ଇତିହାସ ପଢ଼ାଉଛନ୍ତି, ସେ ହିଁ ସବୁବେଳେ ଏସବୁ ଭଲ ଭଲ କଥା କହନ୍ତି। ସେ କହନ୍ତି, ଆମେ ଭାରତୀୟ। ଆମେ କାହିଁକି ବିଲାତର ଇତିହାସ ପଢ଼ିବୁ ? ଆମେ କାହିଁକି ତାଙ୍କ ଦେଶର ରାଜାରାଣୀଙ୍କ ନାଁ ମୁଖସ୍ଥ କରିବସିବୁ ?''

''ଏଁ ? ପାଠ ନ ପଢ଼ି ଏଇ ସବୁ ଆଲୋଚନା ଚାଲିଛି ତା'ହେଲେ ସ୍କୁଲରେ ? ...ମା', ମୁଁ ତୁମକୁ କହିଥିଲି ନା ପାଠ ବନ୍ଦ କରାଅ ଏ ଝିଅ ଦିଇଟାଙ୍କର। ସେତେବେଳେ ଶୁଣିଲନି। ଏବେ ଦେଖୁଛ ତ ? କେମିତି ସାଏଁ ସାଏଁ କଥା କହୁଛି ଏ ଅନି ! ... ଏଇ ଅନି, ବହୁତ ହୋଇଗଲା ତୋ ପାଠପଢ଼ା। ପାଠ ପଢ଼ିବାକୁ ଯାଇ ଆଉ ଦେଶ ରାଜନୀତିରେ ମୁଣ୍ଡ ଖେଳାଇବାକୁ ହେବନି। ଏଥରଠୁ ଘରେ ରହି ପଢ଼ାପଢ଼ି କର। ପ୍ରାଇଭେଟ୍ ଭାବରେ ମ୍ୟାଟ୍ରିକ ପରୀକ୍ଷା ଦେବୁ।''

''ବା ରେ, ଏଠି କ'ଣ ଜୋର ଜବରଦସ୍ତି କି ? ମୁଁ କହିଦେଉଛି ଦାଦା, ମୋ ପାଠ କେହି ବନ୍ଦ କରେଇ ପାରିବନି। କେହି ନୁହଁ।'' ଉତପ୍ତ କଣ୍ଠରେ କହିଦେଇ ଘର ଭିତରକୁ ଧପ ଧପ ହୋଇ ଚାଲିଗଲା ଅନୁପମା।

ତା' ଯିବା ବାଟକୁ ଚାହିଁ ସ୍ଥାଣୁ ପାଲଟି ଯାଇଥିଲା ଅନିରୁଦ୍ଧ। ଶ୍ରଦ୍ଧା ବି।

''ଅନି କଥା ଶୁଣିଲ ମା' ?'' କେତେବେଳେ ଚୁପ୍ ଚୁପ୍ ମା'ଙ୍କୁ ଅନିରୁଦ୍ଧ କହିଲା।

''ହୁଁ।'' ଶ୍ରଦ୍ଧା ଜୋରରେ ନିଶ୍ୱାସ ନେଲେ। ''ଏ ଅନିଟା ବଡ଼ ଖର ଭାଷିଣୀ ହୋଇଯାଉଛି।''

''ଖର ଭାଷିଣୀ !! ସେ ତ ଭୁଲଭାଲ ରାସ୍ତାରେ ଚାଲିଯିବ ବୋଲି ମୋର ଭୟ ହେଉଛି।''

''ନା। ମୁଁ ଅନିକୁ ଭଲ ଭାବରେ ଚିହ୍ନିଛି। ତାକୁ ନେଇ ଭୟ ନାହିଁ। ହେଲେ ତାକୁ ବେଶୀ ପ୍ରତିରୋଧ କରିବୁନିଟି ! ବାଧା ଦେଲେ ସେ ସତରେ ଓଲଟପାଲଟ କାମ କରିବାକୁ ବସିଯିବ। ସେ ଜମା ଅର୍ଚ୍ଚନା ଭଳି ଶାନ୍ତ ସୁଧାର ନୁହଁ। .. ବୁଝିଲୁଟିରେ ବାବୁ ?''

''ହଁ ମା'।'' ସଂକ୍ଷେପରେ କହି ଦେଇ କଥା ସାରିଦେଲା ଅନିରୁଦ୍ଧ।

କିନ୍ତୁ ତାକୁ ଜମା କିଛି ଭଲ ଲାଗୁ ନ ଥିଲା। ଏକା ଘରେ ଏକା ଭାବରେ ବଢ଼ି ହୋଇ କେମିତି ଏତେ ଅଲଗା ଅଲଗା ହୋଇଗଲେ ତା'ର ଦୁଇ ସାନ ଭଉଣୀ। ଅର୍ଚ୍ଚନାର ନରମ କଥା। ସବୁ ମାନି ନେବାର ମନୋବୃତ୍ତି। ଆଉ ଏ ଅନି? ସବୁ କଥାର ଓଲଟ ଉତ୍ତର ଦେବ ହିଁ ଦେବ। କିଛି ଗୋଟାଏ କରିବାକୁ କହିଲେ, ପାଞ୍ଚଟା ପ୍ରଶ୍ନ କରିବ। ଖାଲି ସେତିକି, ନିଜେ ସନ୍ତୁଷ୍ଟ ନ ହେବା ପର୍ଯ୍ୟନ୍ତ ସେ କାମଟି ସେ ଆଦୌ କରିବନି। ଯାହା ବି ହୋଇଯାଉ। ଏତେ ଔଦ୍ଧତ୍ୟ କିଏ ଭରି ଦେଲା ତା' ଭିତରେ?

ମା' ଆଶ୍ୱାସନା ଦେଇଯାଇଥିଲେ ବି ଅନିରୁଦ୍ଧର କାହିଁକି ସେଦିନ ମନେ ହୋଇଥିଲା ଯେ ଭବିଷ୍ୟତରେ ଏଇ ଅନିକୁ ନେଇ ତାକୁ ବହୁତ କଷ୍ଟ ପାଇବାକୁ ହେବ। ବହୁ ପ୍ରଶ୍ନର ମୁହାଁମୁହିଁ ହେବାକୁ ହେବ।

ସକାଳୁ ଘରେ ଆରମ୍ଭ ହେଇଯାଇଛି ହଇଚଇ। କେତେ ଦିନ ପରେ ସମସ୍ତେ ଏମିତି ଏକାଠି ହେଇ ଗୋଟାଏ ବାହାଘରକୁ ଯିବାର ସୁଯୋଗ ପାଇଛନ୍ତି। ସତ୍ୟପ୍ରିୟ ମୁଖୋପାଧ୍ୟାୟ ଚାଲିଯିବା ପରେ ତାଙ୍କ ପରିବାରକୁ ବାହାଘର ଭଳି ଶୁଭ କାମରେ ଯୋଗ ଦେବା ପାଇଁ ଡାକିବା କଥା ଅନେକ ଭାବି ପାରୁ ନ ଥିଲେ। ଯେଉଁ କେତେ ଜଣ ଲୌକିକତା ରକ୍ଷା କରି ଡାକୁଥିଲେ, ସେମାନେ ଖୁବ ସୁନ୍ଦର ବାଗେଇ କହି ଯାଉଥିଲେ, ''ପିଲାଙ୍କୁ ନିଶ୍ଚୟ ପଠେଇ ଦେବ।''

ଶ୍ରଦ୍ଧାଙ୍କ ଦେହରେ ଯେମିତି ନିଆଁ ଲାଗି ଯାଉଥିଲା। ଅପମାନରେ ଜଳି ଯାଉଥିଲା ତାଙ୍କର ଦେହ ହାତ। କିନ୍ତୁ ସେ ପିଲାଙ୍କୁ ଯିବା ପାଇଁ ମନା କରୁ ନ ଥିଲେ। ତାଙ୍କ କପାଳ ପୋଡ଼ିଗଲା ବୋଲି ସେ ମା' ହୋଇ ସେମାନଙ୍କ ଆନନ୍ଦରେ ନିଆଁ ଲଗେଇ ଦେଇଥାଆନ୍ତେ ନା କ'ଣ? ହେଲେ ସବୁ ଥର ମନା କରିଦେଉଥିଲା ଅନିରୁଦ୍ଧ। ସେ କହୁଥିଲା, ''ଏମିତି ଲୋକଦେଖାଣିଆ ନିମନ୍ତ୍ରଣରେ ଆମେ କେହି ଯିବୁ ନାହିଁ। ଭଲ ମନ୍ଦ ଖାଇବାକୁ ଆମ ପେଟ ପୋଡ଼ି ଯାଉଛି ନା କ'ଣ?''

ଅନୁପମା ଦାଦାର ରାଗର କାରଣଟା କିଛି କିଛି ବୁଝୁଥିଲା, କିନ୍ତୁ ଭଲ ଜାମାପଟା ପିନ୍ଧି ସଜେଇ ବାଗେଇ ହୋଇ ନିମନ୍ତ୍ରଣ ଖାଇ ଯିବାର ସୁଯୋଗଗୁଡ଼ାକ ଏମିତି ଥରକୁ ଥର ହାତରୁ ଚାଲିଯିବାର ଦେଖିବାକ୍ଷଣି ତା' ମନ ଖରାପ ହୋଇଯାଉଥିଲା। ଓଠକୁ ଚାଲି ଆସୁଥିଲା ହଜାରେ ଯୁକ୍ତି। ଲକ୍ଷେ ପ୍ରତିବାଦ। ସେ କିନ୍ତୁ ସେ ସବୁକୁ ବାହାରକୁ ଆସିବାକୁ ଦେଉ ନ ଥିଲା। ତାକୁ ନିମନ୍ତ୍ରଣ ଖାଇ ନ ଯିବାର ଘଟଣା ଭଲ ନ ଲାଗୁଥିଲେ ବି ସେ ବୁଝିପାରିଥିଲା ଯେ ତା' ଦାଦା ଯେଉଁ ନିଷ୍ପତ୍ତି ନେଉଛି ସେଇଟା ଉଚିତ ନିଷ୍ପତ୍ତି। ସେଇଥିପାଇଁ ବିନା ପ୍ରତିବାଦରେ ଚୁପ୍ ହୋଇ ରହିଯାଉଥିଲା।

ହେଲେ ଆଜି କଥା ଭିନ୍ନ। ଆଜି ସେମାନେ ସମସ୍ତେ ଭୋଜି ଖାଇ ଯିବା ପାଇଁ ବାହାରିଛନ୍ତି। ସେଥିରେ ପୁଣି କାହା ବାହାଘର ଭୋଜି? ତା'ର ସବୁଠାରୁ ଭଲ ସାଙ୍ଗ ଉମାର ବଡ଼ ଭଉଣୀ ଉମାର।

ଅନୁପମା ଭାବିଥିଲା ଦାଦା ସବୁଥର ଭଳି ଏଥର ମଧ୍ୟ ମନା କରିଦେବ। କିନ୍ତୁ ନିଜେ ଉମାର ଠାକୁର୍ଦ୍ଦା ଆସି ଯେମିତି ଅନୁରୋଧ କରିଗଲେ, ତା'ପରେ ଆଉ ନାହିଁ କରିବାକୁ ଦାଦାର ଜୁ ଥିଲା? ଉମାର ଠାକୁର୍ଦ୍ଦା ଶ୍ରଦ୍ଧାଙ୍କୁ ହିଁ କହିଥିଲେ, ''ବୌମା, ତୁମେ ସମସ୍ତେ ଉମାର ବାହାଘର ଭୋଜି ଖାଇ ଆସିବ। ନ ହେଲେ ମୋ ମନ ଊଣା ରହିଯିବ।''

ଶ୍ରଦ୍ଧା ମୁଣ୍ଡର ଓଢ଼ଣାଟା ଭଲ କରି ଟାଣି ନେଇ କହିଥିଲେ, ''ପିଲାଙ୍କୁ ଯିବାକୁ କହିବି, ମେସୋମସାଏ। ମୋତେ ବାଦ୍ ଦିଅନ୍ତୁ।''

''ବାଦ୍ କାହିଁକି ଦେବି? ତୁମ ଭଳି ଉମାର ଶୁଭାକାଂକ୍ଷୀ ଆଉ କେହି ଅଛି?''

ଶ୍ରଦ୍ଧାଙ୍କ ଆଖିକୁ ଲୁହ ଚାଲି ଆସିଥିଲା। ସେ କହିଥିଲେ, ''ମୋ ଆଶୀର୍ବାଦ ସବୁବେଳେ ଉମା ମା'ର ସାଙ୍ଗେ ସାଙ୍ଗେ ରହିବ। କିନ୍ତୁ ମେସୋମସାଏ, ଆପଣ ତ ଜାଣନ୍ତି ମୋତେ ଦେଖିଲେ ସମସ୍ତଙ୍କର କି ପ୍ରତିକ୍ରିୟା ହେବ। ମୋ ଭଳି ବିଧବାର ଛାଇ ପଡ଼ିଲେ ସବୁ ଅଶୁଭ।''

''ଅଶୁଭ? କାହା ଜିଭରେ ହାଡ଼ ଅଛି ଦେଖି, ଶିବାନନ୍ଦ ସାନ୍ୟାଲ ସାମ୍ନାରେ କହୁ ତ ସେକଥା!''

''ଥାଉ ମେସୋମସାଏ, କେତେ କାହା ମୁହଁରେ ବାଡ଼ ବତା ଦେବେ

ଆପଣ ? କାହିଁକି ଉମା ମା'ର ବାହାଘର ବେଳେ ଅଯଥା ଅଶାନ୍ତି ଭିତରେ ଖେଳିବ ? ମୁଁ ଯା ଭିତରେ ଯାଇ ମା'କୁ ମୋର ଆଶୀର୍ବାଦ କରି ଆସିବି ଯେ।''

''ହଉ।'' ବାଧ୍ୟ ହୋଇ ରାଜି ହୋଇଥିଲେ ଉମାର ଠାକୁର୍ଦ୍ଦା। ସତ କଥା, କିଏ କିଏ ଯେ ଅପମାନିତ କରି କଥା କହିବେନି ସତ୍ୟପ୍ରିୟର ବୋହୂକୁ, ତା' ତ ନିୟମ କରି କହିହେବନି। ''ମୁଁ ଆଜି ଆସୁଛି ବୌମା। ପିଲାଙ୍କୁ କିନ୍ତୁ ବେଳାବେଳି ପଠେଇ ଦେବ।''

''ସେକଥା ଆଉ କହିବାକୁ ହେବ ମେସୋମସାଏ ? ଅନି ତ ଖାଲି ଡେଉଁଛି ଏବେଠୁ। ସାଙ୍ଗର ଦିଦି ବାହାଘର, ସାଙ୍ଗର ଦିଦି ବାହାଘର ହୋଇ ମୁଣ୍ଡ ଖାଇ ସାରିଲାଣି ମୋର। ...ତେବେ ଗୋଟିଏ କଥା କହିବି ମେସୋମସାଏ। ଯଦି ଆପଣ କିଛି ମନେ ନ କରନ୍ତି।''

''କ'ଣ ରେ ମା'।''

''ଆପଣମାନଙ୍କ ଭଳି ଶିକ୍ଷିତ ପରିବାର। ଏତେ ଶୀଘ୍ର କେମିତି ନାତୁଣୀର ବାହାଘର କରେଇ ଦେଉଛନ୍ତି ? ଉମାଟି ତ ଏଇ ମାତ୍ର ଚଉଦରେ ପଡ଼ିଲା। ଏଇ ବୟସରେ...''

''ଏଇ ବାହାଘର କଥାରେ ମୁଁ ହାରିଗଲି ଲୋ ମା'। ତୁମେ ବୋଧହୁଏ ଜାଣିନ, ଏବେ ବି ମୋ ମା' ବଞ୍ଚିଛନ୍ତି। ଶକ୍ତ ସାମର୍ଥ। ତାଙ୍କର ଇଚ୍ଛା ଅଣନାତୁଣୀର ବାହାଘର ଦେଖିଯିବେ। କେତେବେଳେ କେଉଁ କଥା। ସେ କେବେଠୁଁ ଗୌରୀ ଦାନ କଥା କହି ଚାଲିଥିଲେ। କିନ୍ତୁ ଆଇନ୍ ତ ପାସ୍ ହୋଇଗଲା ଯେ ଚଉଦ ପୂରିବା ଆଗରୁ କେହି ଝିଅ ବାହା ଦେଇ ପାରିବେନି। ସେଥିପାଇଁ ମା' ଚୁପ୍ ହୋଇ ବସିଥିଲେ। ଏବେ ଉମାର ଚଉଦ ପୂରିବା କ୍ଷଣି ଜିଦି ଧରି ବସିଗଲେ। ବାଧ୍ୟ ହୋଇ ରାଜି ହୋଇଗଲି। ... ତା'ଛଡ଼ା ମୈତ୍ର ଘରର ପୁଅ ସାଙ୍ଗରେ ତ ବାହାଘର ସ୍ଥିର ହୋଇ ରହିଛି କେବେଠୁ। ଭଲ ଘର, ଭଲ ପରିବାର। ମନା କରି ପାରିଲି ନାହିଁ।''

ଚାଲିଯାଇଥିଲେ ଶିବାନନ୍ଦ ସାନ୍ୟାଲ୍।

ଆଉ ସେବେଠାରୁ ଯେ ନାଚ ଆରମ୍ଭ ହୋଇଛି ଅନିର, ଆଜିଯାଏ ଚାଲିଛି। ଏଇ ବାହାଘରରେ ଯେମିତି ଅଧିକ ବାହାଦୁରୀଟା ତା'ର। ସାଙ୍ଗର ଭଉଣୀ

ବାହାଘର ଟି ? କମ୍ କଥା ?

''ଏ ମା', ଦିଦିକୁ ଦେଖିଲ। ମୁଁ ତୁମର ଏଇ ପାନ୍ନା ବସା ହାରଟା ପିନ୍ଧିଯିବି ବୋଲି କେବେଠୁଁ କହିଥିଲି, ଏବେ ଦିଦି କହୁଛି ସେ ସେଇଟା ପିନ୍ଧିବ।'' ପାଟି କରି ଉଠିଲା ଅନୁପମା।

''ଓହୋ।'' ଶ୍ରଦ୍ଧା ହାତର କାମ ଛାଡ଼ି ଘର ଭିତରକୁ ପଶି ଆସିଲେ। ''ଅର୍ଚ୍ଚନା ପିନ୍ଧିବ କହୁଛି ତ ପିନ୍ଧୁ। ସତ କଥା କହିଲେ, ତା' ଗୋରା ମୁହଁକୁ ସେ ଜଡ଼ଉ କଗା ହାର ବେଶୀ ମାନିବ।''

''ସବୁ ଭଲ ଭଲ ଜିନିଷ ଖାଲି ଦିଦି ପାଇଁ। ସେ ଯେମିତି ଜଗତର ଶ୍ରେଷ୍ଠ ସୁନ୍ଦରୀ। ମୁଁ କ'ଣ ବାନ୍ଦରୀ କି ?'' ଅନି ଆଖିରେ ଲୁହ ଭର୍ତ୍ତି ହୋଇଗଲା।

ଶ୍ରଦ୍ଧା ହସି ପକେଇଲେ। ''କାଳୀ ଝିଅମାନେ କ'ଣ ଅସୁନ୍ଦରୀ ?''

''ମୁଁ କଳା ନୁହଁ। ମୁଁ ବି ଗୋରା। ମୁଁ ବି ସୁନ୍ଦର।'' ଦୃଢ଼ ଭାବରେ ଅନୁପମା କହିଲା।

''ହଉ ହେଲା ବାବା। ତୁ ଆମର ସବୁଠାରୁ ସୁନ୍ଦରୀ ଝିଅ। କିନ୍ତୁ ଆଜି ତୋ ଦିଦିକୁ ସବୁ ଭଲ ଭଲ ଗହଣା ପିନ୍ଧିବାକୁ ଦେ।''

''କାହିଁକି ? କାହିଁକି ଦେବି ?'' ବିଦ୍ରୋହର ସ୍ୱରରେ ଅନି କହିଲା।

ତାକୁ ପାଖକୁ ଟାଣି ଆଣିଲେ ଶ୍ରଦ୍ଧା। କହିଲେ, ''ଦେଖ ରେ ମା', ବାହାଘରରେ କେତେ କିଏ ଆସିଥିବେ। ଧର ଯଦି କାହାର ଅର୍ଚ୍ଚନା ପସନ୍ଦ ହୋଇଯାଏ ... ଭାବିଲୁ କେତେ ବଡ଼ ଚିନ୍ତାଟାଏ ଆମ ମୁଣ୍ଡରୁ ଯିବ !''

''ଓ ଦିଦି ବାହାଘର ତାହେଲେ ହେବ, ନା ?'' ଗାଲରେ ଆଙ୍ଗୁଠି ଦେଇ ସବୁ ବୁଝିଲା ଭଳି କହିଲା ଅନି। ବାହାଘରକୁ ଯିବା ଆଗରୁ ଆଉ କୌଣସି ଜିନିଷ ନେଇ ଅର୍ଚ୍ଚନା ସାଙ୍ଗରେ ସେ ଝଗଡ଼ା କଲା ନାହିଁ।

ଶିବାନନ୍ଦ ସାନ୍ୟାଲଙ୍କର ପାବନା ସହରରେ ନାମ ଡାକ ଅଛି। ସହଜେ ତ ବାରେନ୍ଦ୍ର ବ୍ରାହ୍ମଣ। ସେଥିରେ ପୁଣି ଉଚ୍ଚ ଶିକ୍ଷିତ ପରିବାର। ଜମିବାଡ଼ି ବି ଅଛି ପ୍ରଚୁର। ଶିବାନନ୍ଦ ସାନ୍ୟାଲଙ୍କର ଗୋଟିଏ ବୋଲି ପୁଅ ନରେନ୍ଦ୍ର। ଝିଅ ନାହିଁ। ଆଉ ପୁଣି ନରେନ୍ଦ୍ରର ବଡ଼ ଝିଅ ଏଇ ଉମା। ପ୍ରଥମ ସନ୍ତାନ। ତା' ବାହାଘର ଯେ ବିରାଟ ଧୁମ୍‌ଧାମ୍‌ରେ ହେବ, ତା' ତ ଜଣାଶୁଣା କଥା। ଉମା

ଦେହର ଗହଣା ଦେଖି ସମସ୍ତେ ଅବାକ ହୋଇ ଯାଇଥିଲେ। ଝିଅ ସାଙ୍ଗରେ ଯିବ ବୋଲି ଯାହା ଯୌତୁକ ସଜ୍ଜା ହୋଇଥିଲା, ସେସବୁ କଲିକତା, ଢାକାରୁ କିଣା ହୋଇ ଆସିଥିଲା ବୋଲି କିଏ ଜଣେ ଆତ୍ମୀୟ କହିଥିଲେ। ଆଉ ବାକୀ ରହିଲା ଖିଆପିଆ। ଭୋଜି ଖାଇ ସାରି ଆସନରୁ ଉଠିବା ମୁସ୍କିଲ ହୋଇ ପଡ଼ିଥିଲା। ସେତେବେଳେ କେହି କେହି କହିଥିଲେ ଯେ ଜମିଦାର ଘରର ଝିଅ ବାହାଘରରେ ମଧ ଏଭଳି ସୁସ୍ୱାଦୁ ଜିନିଷ ଖାଇବାକୁ ମିଳି ନ ଥିଲା।

"ସତରେ ମ ମା'," ଅନୁପମା ମା' ଆଗରେ ଆସି ଭୋଜିର ବର୍ଣ୍ଣନା କରୁ କରୁ କହିଥିଲା। "କାନିକା, ପଲଉ, ଲୁଚି, ପୋଟଳ ଭଜା, ତିନି ରକମର ମାଛ, ଚଟଣୀ, ପାମ୍ପଡ଼, ପାଞ୍ଚ ରକମର ମିଠା। ବାବା !! ମୁଁ ଯେତିକି ଖାଇଛି ନା, ଆଉ ସାତ ଦିନ କିଛି ଖାଇ ପାରିବିନି।"

"ହଉ, ହଉ।" ଶ୍ରଦ୍ଧା ହସି ଦେଇଥିଲେ। "ସବୁ ଜିନିଷ ଭିତରୁ ତତେ କ'ଣ ବେଶୀ ଭଲ ଲାଗିଲା କହ ତ।"

"ଉଁ..." ଭାବି ହେଲା ଅନୁପମା। "କାନିକା ... ନା ନା, ବଡ଼ ରୋହି ମାଛ ଦେଇ ଯେଉଁ କାଲିଆ ହୋଇଥିଲା, ସେଇଟା ହିଁ ଅପୂର୍ବ। ଆଉ ଡାଙ୍ଗ ମାଛର ଝୋଳଟା ! ଉଃ, ପାଟିକୁ ପାଣି ଚାଲିଆସୁଛି, ଭାବିଦେଲେ। ...ଥରେ ତୁମେ କର ନା ମା'।" ଅଳି କରିବା ସ୍ୱରରେ ଅନୁପମା କହିଲା।

"ହଉ, ହଉ। ଦେଖିବା।"

"ଦେଖିବା ଫେଖିବା ନାହିଁ, ତୁମକୁ କରିବାକୁ ହେବ। ... ଦାଦା, ଦାଦା, ତୁମେ ଦିନେ ଡାଇଁ ମାଛ ଓ କଟା ରୋହି ଆଣି ଦିଅ ନା।" ମା'କୁ ଛାଡ଼ି ଯାଇ ବଡ଼ ଭାଇକୁ ଧରିଲା ଅନୁପମା। ଯେତେ ଯାହା ହେଲେ ବଜାର କରିବା ଦାୟିତ୍ୱ ତ ତା'ର। "କହ, ଆଣିବ ତ ?"

"ହଉ ରହ। ପହିଲା ହେଉ। ଏ ମାସ ଦରମା ପାଇବା ପରେ ମୁଁ ଦିନେ ଆଣି ଦେବି। ଏକା ଥରକରେ ଦି ଦି ରକମର ଦାମୀ ମାଛ କିଣିବା ତ ସମ୍ଭବ ହେବ ନାହିଁ। ତେବେ ଏଥର କଟା ରୋହି ଆଣିଦେବି ନିଶ୍ଚୟ।" ଅନିରୁଦ୍ଧ ହସି ହସି କହିଲା।

"ଠିକ୍ ତ ?   ହେଲେ ମା', ତୁମକୁ କ'ଣ ରୋହି ମାଛର କାଲିଆ ରାନ୍ଧି ଆସେ ?" ଖୁବ୍ ସରଳ ଭାବରେ ପଚାରିଦେଲା ଅନୁପମା।

ଶ୍ରଦ୍ଧାଙ୍କ ଆଖିରେ ଲୁହ ଭରି ହୋଇଗଲା। ମାଛର କାଳିଆ ପୁଣି ସେ ରାନ୍ଧି ଜାଣନ୍ତି ନାହିଁ। ତାଙ୍କ ରାନ୍ଧଣାର ହାତ ଅପୂର୍ବ। କିନ୍ତୁ ସ୍ୱାମୀ ବଞ୍ଚିଥିବା ବେଳେ କହୁଥିଲେ ଯେ ତାଙ୍କ ହାତ ତିଆରି ରୋହି ମାଛ କାଳିଆର ତୁଳନା ହୁଏ ନାହିଁ। ସେ ରନ୍ଧା ଯିଏ ଥରେ ଖାଇଛି, ସେ କେବେ ହେଲେ ଭୁଲି ପାରିବ ନାହିଁ, ଏକଥା ଶ୍ରଦ୍ଧା ଜୋର ଦେଇ କହିପାରିବେ। ଅଥଚ ସ୍ୱାମୀ ଯିବା ପରେ ଥରେ ବି ଘରକୁ କଟା ରୋହି ଆଣି ପାରି ନାହିଁ ଅନିରୁଦ୍ଧ। ଅନି ଶେଷ ଥର ଯେତେବେଳେ ତାଙ୍କ ହାତ ରନ୍ଧା କାଳିଆ ଖାଇଥିବ, ସେତେବେଳେ ତା' ବୟସ ବା କେତେ? ଆଠ କି ନଅ। କେମିତି ତା'ର ମନେ ରହିବ? କିଛି ନ କହି ଶ୍ରଦ୍ଧା ସାନ ଝିଅ ମୁହଁକୁ ଚାହିଁ ହସିଦେଲେ।

ହେଲେ ମାଡ଼ି ବସିଲା ଅନିରୁଦ୍ଧ, ''ତୋ ମୁଣ୍ଡ ଠିକ୍ ଅଛି, ଅନି? ମା'ଙ୍କୁ ପୁଣି ରୋହି ମାଛ ରାନ୍ଧି ଆସେ କି ନାହିଁ ପଚାରୁଛୁ? ବାବା ଥିବାବେଳେ ଆମ ଘରେ ଅଧିକାଂଶ ଦିନ କଟା ମାଛ ହିଁ ଆସୁଥିଲା।''

''ଓ।'' ଅନୁପମା ଚୁପ୍ ହୋଇଗଲା। ବାବା ଥିବାବେଳ କଥା ତା'ର ଆଉ ଠିକ୍ ମନେ ପଡ଼େ ନାହିଁ। କେବେ କେମିତି ସ୍ୱପ୍ନ ଭଳି ଛୋଟ ଛୋଟ କଥା ମନ ଭିତରକୁ ପଶିଆସେ। ସେତିକି ଯାହା।

''ମୁଁ ନେଇ ଆସିବି ଯେ କଟା ରୋହି। ମା' ରନ୍ଧା ଖାଇଲେ ଜାଣିବୁ ଅସଲ ମାଛ କାଳିଆ କାହାକୁ କହନ୍ତି।'' ଆଉ ଥରେ ଆଶ୍ୱାସନା ଦେବା ଭଳି କହିଲା ଅନିରୁଦ୍ଧ।

ସତକୁ ସତ ନିଜ କଥା ରଖି ଦରମା ପାଇବା ପର ଦିନ ହିଁ ସେ ବଜାରରୁ କଟା ରୋହି ନେଇ ଆସିଲା। ବଜାର ସଉଦା ମା'କୁ ଦେଇ ଅଫିସ ପାଇଁ ବାହାରିବାକୁ ଗାଧୋଇ ଚାଲିଗଲା ସେ। ଶ୍ରଦ୍ଧା ମାଛ ଧୋଇ ଲୁଣ ହଳଦୀ ଗୋଳେଇ ଚୁଲିରେ କଡ଼େଇ ବସେଇଲେ। ଆଉ କିଛି ହେଉ ନ ହେଉ ପେଟ ଦି' ଖଣ୍ଡର ଝାଲ୍ କରିଦେଲେ ଏବେ ଭାତ ଖାଇ ଅଫିସ୍କୁ ଯାଇ ପାରିବ ଅନିରୁଦ୍ଧ। ରାତିରେ ଭଲ କରି କାଳିଆ କରିବେ ସେ। ''ଏ ଅର୍ଚ୍ଚନା, ପିଆଜ ଟିକିଏ ଚୂନ୍ ଚୂନ୍ କରି କାଟି ଦେଲୁ। ଅନି, ତୁ ଚାଉଳ ଟିଣରୁ ଦୁଇ ବାଟି ଚାଉଳ ନେଇ ଆ ତ। ମୁଁ ମାଛ ହାତ ହେଇଛି, ଭଣ୍ଡାର ଘରକୁ ଯିବିନି।''

ଅନୁପମା ଭଣ୍ଡାର ଘରୁ ଚାଉଳ ନେଇ ବାହାରି ଆସୁ ଆସୁ କବାଟର ଛିଟିକିଣିଟା କିଏ ଖଡ଼ ଖଡ଼ କରି ଉଠିଲା।

"କିଏ ମ ଏତେ ସକାଳୁ?" ଶ୍ରଦ୍ଧା ଆଶ୍ଚର୍ଯ୍ୟରେ କହି ପକେଇଲେ। "ଦେଖ ତ ଲୋ ଅନି।"

କବାଟ ଖୋଲି ଦେଇ ଅନୁପମା ଅବାକ। "ତୁମେ??"

"କିଏ କିଲୋ ଅନି?" ଶ୍ରଦ୍ଧା ଆଇଁଷ ଚୁଲି ପାଖରୁ କାହାର ଧଳା ଲୁଗାର ଝଲକ ଦେଖିପାରୁଥିଲେ। କିନ୍ତୁ ମଣିଷଟିର ମୁହଁ ଦେଖି ହେଉ ନ ଥିଲା।

ଅନୁପମା କିଛି କହିବା ଆଗରୁ ହାତରେ ଛୋଟ ବ୍ୟାଗ୍‌ଟିଏ ଧରି ଭିତରକୁ ପଶି ଆସିଲେ କବାଟ ସେପାଖରେ ଧଳା ଥାନ ପିନ୍ଧି ଠିଆ ହେଇଥିବା ମଣିଷ ଜଣକ ଏବଂ ସେ ପଥର ପାଲଟିଗଲେ।

ଗରମ ତେଲରେ ମାଛ ପକାଇବାକୁ ଯାଉ ଯାଉ ଶ୍ରଦ୍ଧା ବୁଲି ଚାହିଁଲେ ଏବଂ ଧଳା ଲୁଗା ପିନ୍ଧିଥିବା ଜଣଙ୍କ ଭଳି ସେ ମଧ୍ୟ କାଠ ପାଲଟିଗଲେ ଯେମିତି।

"ମା'!" ଚୁଲିରୁ କରେଇ ଓହ୍ଲେଇ ଦେଇ ଶ୍ରଦ୍ଧା ଉଠି ଆସିଲେ। ଆଇଁଷ ହାତରେ ତ ଆଉ ମା'ଙ୍କ ପାଖକୁ ଯାଇ ପାରି ନ ଥାଆନ୍ତେ। ସେଥିପାଇଁ ଧାଇଁ ଗଲେ ଅଗଣାକୁ। ସେଠି ଅଲଗା କରି ରଖା ହୋଇଥିବା ପାଉଁଶରେ ରଗଡ଼ି ରଗଡ଼ି ସେ ହାତ ଧୋଇନେଲେ। ଆଖି ଲୁହରେ କିଛି ଭଲ କରି ଦେଖି ହେଉନି। ଆଜି ତାଙ୍କର ଏ ଅବସ୍ଥା ଦେଖି କି ଭାବନା ଚାଲିଥିବ ତାଙ୍କ ମା'ଙ୍କ ମନରେ! ଯାହାକୁ ରାଜରାଣୀ ଭଳି ମା' ଦେଖି ଯାଇଥିଲେ, ସେ ଯେ ଏମିତି ଶ୍ରୀହୀନ ହୋଇ ପଡ଼ି ରହିଥିବ, ତା' କ'ଣ ମା'ଙ୍କ ହୃଦୟ ସହି ପାରୁଥିବ!

ସ୍ୱାମୀ ଚାଲିଯିବା ଖବର ଶୁଣି ସେଇ ଯେଉଁ ପଡ଼ିଯାଇଥିଲେ ମା', ଆଉ ବେଶୀ ଚଲାବୁଲା କରି ପାରୁ ନ ଥିଲେ। ଗାଁ ଛାଡ଼ି ପାବନା ଆସିବା କଥା ଜମା ଭାବି ପାରୁ ନ ଥିଲେ ସେ। ମଝିରେ ମଝିରେ କେଇଥର ପିଲାପିଲି ନେଇ ଦିନେ ଦି' ଦିନ ପାଇଁ ଗାଁକୁ ଯାଇ ବୁଲି ଆସିବା କଥା ଶ୍ରଦ୍ଧା ଭାବିଥିଲେ, କିନ୍ତୁ ଅନିରୁଦ୍ଧର ନୂଆ ଚାକରି। ତାକୁ ଛୁଟି ଦେଇଥାଆନ୍ତା କିଏ? ବଡ଼ ପୁଅକୁ

ଏକା ଏକା ରଖି ଯିବା କଥା ସେ ଜମା ଭାବି ପାରି ନ ଥିଲେ। ତା'ପରେ ଘର ଛାଡ଼ି ଚାଲିଗଲା ଅମୁ। ସେଇ ଶୋକ ତାଙ୍କୁ ଏମିତି ଅବଶ କରି ଦେଇଥିଲା ଯେ ସେ ପାଦେ ଘୁଞ୍ଚିବା କଥା ଭାବି ପାରି ନ ଥିଲେ।

ଅମୁର ଖବର ଆସିବା ପରେ, ନିଜେ ଟିକେ ସାଷ୍ଟାମ ହେବା ପରେ ସେ ଯାଇପାରିଥାଆନ୍ତେ ମା'ଙ୍କୁ ଦେଖା କରିବାକୁ। ହେଲେ ଖବର ପାଇଲେ ଯେ ନିଜ ଅଚଳ ଶରୀରକୁ ବେଖାତିର କରି ମା' ତାଙ୍କର ବଡ଼ ଭଉଣୀ ଓ ଭିଣେଇ ସାଙ୍ଗରେ ତୀର୍ଥ କରିବାକୁ ବାହାରି ଯାଇଛନ୍ତି। ଲମ୍ବା ତୀର୍ଥ ଯାତ୍ରା।

ଚାରି ଧାମ ତୀର୍ଥ କରି ତା'ହେଲେ କେବେ ଫେରିଲେ ମା'?

ଫେରି ଯେ ସେ ଏମିତି ହଠାତ୍ କରି ଏତେ ବାଟ ଚାଲି ଆସିବେ, ସେକଥା କ'ଣ ଶ୍ରଦ୍ଧା ଜାଣିଥିଲେ? ଚିଠିଟିଏ ଯଦି ମା' ପକେଇ ଦେଇଥାଆନ୍ତେ ବା ତାର ଖଣ୍ଡିଏ କରି ଦେଇଥାଆନ୍ତେ, ତା'ହେଲେ ଅନିରୁଦ୍ଧ ଯାଇ ତାଙ୍କୁ ନେଇ ଆସିଥାଆନ୍ତା ବସ୍ ଷ୍ଟାଣ୍ଡରୁ। ଏବେ କେତେ ସରି ହୋଇ ଏ ଘର ଖୋଜି ଆସିଛନ୍ତି କିଏ ଜାଣେ?

ହାତ ଭଲ କରି ପୋଛି ନେଇ ମା'ଙ୍କ ପାଦ ଛୁଇଁ ପ୍ରଣାମ କରିବାକୁ ଗଲା ବେଳେ ଯେମିତି ଚେତନା ଫେରି ପାଇଲେ ବୁଢ଼ୀ। ହଠାତ୍ ଗର୍ଜି ଉଠିଲେ, ''ଥାଉ। ସେ ଅସନା ହାତରେ ମୋ ପାଦ ଛୁଇଁବାକୁ ହେବନି।''

ଅସନା! ଏମିତି କ'ଣ କହୁଛନ୍ତି ମା'? ଏ ତାଙ୍କରି ଗର୍ଭଧାରିଣୀ ମା' ଟି?

''ମୁଁ ହାତ ଭଲ କରି ସଫା କରି ଆସିଲି ମା'।'' ଶ୍ରଦ୍ଧାଙ୍କ ସ୍ୱରରେ ଆଘାତ ଗୋଳେଇ ହୋଇ ଯାଇଥିଲା।

''ହାତ ସଫା କରି ଦେଲେ କ'ଣ ହେବ, ତୋ ମନଟା ହିଁ ତ ଅସନା। ... ଆଲୋ ବ୍ରାହ୍ମଣ ଘର ବିଧବା, ତୁ ମାଛ ଘାଣ୍ଟୁଛୁ?''

''କ'ଣ କରିବି ମା'? ପିଲାଛୁଆ ଘର। ସେମାନଙ୍କୁ କ'ଣ ହବିଷ ଖୁଆଇ ରଖିବି?''

''ମୁଁ ଜାଣିନି ଲୋ କିଛି। ହେଲେ ଏଠି ମୁଁ ଆଉ ଦଣ୍ଡେ ରହି ପାରିବିନି। ଏଇଟା ତ ଆଉ ବ୍ରାହ୍ମଣ ଘର ହୋଇ ରହି ନାହିଁ, ବିଧର୍ମୀ ଘର ହୋଇସାରିଲାଣି।''

''ଏମିତି କ'ଣ କହୁଛ ମ?'' ଶ୍ରଦ୍ଧା ନୁହଁ, ବେଶ୍ କଡ଼ା ସ୍ୱରରେ ଅନୁପମା

କହିପକେଇଲା ।

''ତୁ କିଏ ବା ?''

''ମୁଁ ? ମୁଁ ଅନି ।''

''ଓ..., ଭାରି କଥା କହି ଶିଖିଗଲୁଣି ଦେଖୁଛି !'' ଚିଗୁଲାଇ କହି ପକେଇଲେ ବୁଢ଼ୀ ।

''ତମମାନଙ୍କ ଭଳି ଲୋକ ଯେଉଁଠି ଥିବେ, ସେଠି କଥା କହି ଶିଖିବାକୁ ବେଳ ଲାଗେନି । ବୁଝିଲ ଦିଦିମା' ।''

''ଚୁପ୍ କର ଅନି । କ'ଣ ଏମିତି କହିଚାଲିଛୁ ଦିଦିମା'ଙ୍କୁ ?'' ଶ୍ରଦ୍ଧା ସାନ ଝିଅକୁ ଆକଟିଲେ ।

''ମୁଁ କ'ଣ ଖରାପ କଥାଟା କହିଲି ମ ? ? ତୁମକୁ ସିଏ ଯାହା ଇଚ୍ଛା ତାହା ଖରାପ କରି କହିଦେବେ, ଯେତେକ ମନଗଢ଼ା କଥା କହିଦେବେ, ଆଉ ତୁମେ ଭାବୁଛ ମୁଁ ଚୁପ୍ ହୋଇ ଶୁଣିଯିବି !''

''ଚୁପ୍ କର ଅନି ।'' ଏଥର ସତକୁ ସତ ରାଗିଗଲେ ଶ୍ରଦ୍ଧା, ''ତୋ ମୁହଁରେ ବାଡ଼ବତା କିଛି ନାହିଁ ଦେଖୁଛି । ବଡ଼ମାନଙ୍କୁ ଏମିତି କହିବାକୁ ହୁଏ ?? ... ତୁମେ ଭିତରକୁ ଆସ ତ ମା' । ଅନି କଥା ଛମା ଧରନି ମନରେ । ଆସିବଟି ।''

''ନା ।'' ଗମ୍ଭୀର ଭାବରେ ସେଇ ଏକା ଜାଗାରେ ଠିଆ ହେଇ ଶ୍ରଦ୍ଧା ମା' କହିଉଠିଲେ, ''ମୁଁ ତୋ ଘର ଦୁଆର ମାଡ଼ି ପାପ କରି ସାରିଛି । ଚାରି ଧାମ ତୀର୍ଥର ସବୁ ପୁଣ୍ୟ ତକ ନଷ୍ଟ କରି ସାରିଛି । ଆଉ ବେଶୀ ସମୟ ଏଠି ଠିଆ ହୋଇ ରହି ମୁଁ ମୋ ପରଜନ୍ମକୁ ନଷ୍ଟ କରି ପାରିବିନି । ଶ୍ରଦ୍ଧା ଲୋ, କେମିତି ତୁ ସବୁ ଧର୍ମ ପୋଡ଼ି ଖାଇଦେଲୁ ! ନା, ଆଉ କେବେହେଲେ ପାଦ ରଖିପାରିବିନି ଏଠି ମୁଁ । ନାରାୟଣ ହେ, ଶେଷରେ ଏଇ ଦିନ ଦେଖିବା ବାକୀ ଥିଲା ! ମୋରି ପେଟରୁ ବାହାରିଥିବା ପିଲା ଏମିତି ଅଧର୍ମ କରି ପାରିଲା !!'' ବୁଲି ପଡ଼ି ସତକୁ ସତ ଚାଲିଗଲେ ଶ୍ରଦ୍ଧାଙ୍କ ମା' ।

''ଯାଅ ମ ଯାଅ । ବେଶୀ ଢ଼ଙ୍ଗ !!'' ଅନୁପମା ବାକୀ ପଡ଼ିଥିବା କାମ କରିବାକୁ ଚାଲିଗଲା ।

ହେଲେ ମା'ଙ୍କର ଯିବା ବାଟକୁ ଅବାକ ଭାବରେ କେବଳ ଚାହିଁ ରହିଥିଲେ

ଶ୍ରଦ୍ଧା। ସବୁ ଯେମିତି ସ୍ୱପ୍ନ ଭଳି ଘଟିଗଲା ତାଙ୍କ ସାମ୍ନାରେ। ପ୍ରାୟ ତିନି ବର୍ଷ ପରେ ସାନ ଝିଅ ପାଖକୁ ଆସିଲେ ମା'। ଅଥଚ ଏଇ ସାମାନ୍ୟ କାରଣରୁ ଦାଣରୁ ଦାଣରୁ ଫେରି ଚାଲିଗଲେ! ଶ୍ରଦ୍ଧାଙ୍କର ବୋଧହୁଏ ଧାଇଁ ଯାଇ ମା'ଙ୍କୁ ଅଟକାଇ ରଖିବା ଉଚିତ ଥିଲା। ସେଇ ରାସ୍ତା ଉପରେ ତାଙ୍କ ପାଦ ତଳେ ପଡ଼ି ଯାଇ କ୍ଷମା ମାଗିବା ଉଚିତ ଥିଲା। କିନ୍ତୁ କି ଯେ ବିରାଟ ଅଭିମାନ ତାଙ୍କୁ ମାଡ଼ି ବସିଲା, ସେ ନିଜ ସ୍ଥାନରୁ ହଲଚଲ ହୋଇ ପାରିଲେ ନାହିଁ।

ଏତେ ସହଜରେ ସବୁ ସମ୍ପର୍କ କାଟି ଦେଇ ପାରିଲେ ମା'! କିଛି ନ ବୁଝି, ଝିଅର ଦୁର୍ଦ୍ଦଶା ନିଜ ଆଖିରେ ଦେଖି ମଧ ସେ ଫେରି ଯାଇ ପାରିଲେ! ଶ୍ରଦ୍ଧାଙ୍କର କି ବା ଦୋଷ? ସେ ତାଙ୍କରି ପିଲାଙ୍କ ପାଇଁ ଆଇଁଷ ହାତ ହେଲେ ବୋଲି କ'ଣ ବିଧର୍ମୀ ହୋଇଗଲେ? ଏତେ ଭିତରେ ବି ନିଜର ସବୁ ଓପାସ, ବ୍ରତ, ନିର୍ଜଳା ଏକାଦଶୀ - ଠିକ୍ ରଖିଛନ୍ତି ସେ। ନିଜ ଚୁଲି ଅଲଗା, ନିଜ ବାସନ କୁସନ ଅଲଗା। ଆଇଁଷ ରାନ୍ଧିବା ପାଇଁ ଲୁଗା ବି ଅଲଗା। ତଥାପି ମା' କିଛି ନ ବୁଝି ଚାଲିଗଲେ!

ଯାଆନ୍ତୁ। ଅଭିମାନରେ ଭିତରକୁ ଚାଲିଯାଇ ଶାଢ଼ି ବଦଳାଇ ଶ୍ରଦ୍ଧା ପୁଣି ମାଛ ଭାଜି ବସିଲେ। ଯେମିତି କିଛି ବେଳ ଆଗର ଘଟଣାଟା ଜମା ଘଟି ନାହିଁ।

ହେଲେ, ବୁଝୁଥିଲେ ସେ ଯେ ତାଙ୍କର ମାନସିକ ସାହାରା ସବୁ ଦିନ ପାଇଁ ଚାଲିଗଲା।

ସ୍ୱାମୀ ଯିବା ପରେ ଶ୍ରଦ୍ଧା ମା'ଙ୍କ ଠାରୁ ସେମିତି ବିଶେଷ କିଛି ଆର୍ଥିକ ସାହାଯ୍ୟ ପାଇ ନାହାନ୍ତି। ମା'ଙ୍କର ଯାହା ଅବସ୍ଥା, ସେ କ'ଣ ବା ସାହାଯ୍ୟ କରି ଥାଆନ୍ତେ? କିନ୍ତୁ ମାନସିକ ଭାବରେ ସେ ବିରାଟ ଏକ ଅବଲମ୍ବନ ଥିଲେ ତାଙ୍କ ପାଇଁ। ଶ୍ରଦ୍ଧା ଜାଣିଥିଲେ, ସେ ଯେତେବେଳେ ଚାହିଁବେ, ସେତେବେଳେ ଯାଇ ମା'ଙ୍କ କୋଳରେ ମୁଣ୍ଡ ରଖି ମନ ଭରି କାନ୍ଦି ପାରିବେ। ନିଜର ଶୋକ ବାଣ୍ଟି ନେଇ ପାରିବେ। ଅଥଚ ସେଇ ମା' ସାମାନ୍ୟ ଏକ ବିଷୟରେ ଏତେ ଦୂର ଅସନ୍ତୁଷ୍ଟ ହୋଇଗଲେ ଯେ ବାହାରୁ ବାହାରୁ ଚାଲିଗଲେ?

ଯାଆନ୍ତୁ। ଶ୍ରଦ୍ଧା ଆଉ ଥରେ ମନକୁ ମନ କହିଲେ। ମା' ଅସନ୍ତୁଷ୍ଟ

ହେଲେ ବୋଲି ସେ ତ ଆଉ ପିଲାଙ୍କୁ ଭସେଇ ଦେଇ ନ ଥାଆନ୍ତେ। ସେମାନଙ୍କ ପାଇଁ ରନ୍ଧାରନ୍ଧି ବନ୍ଦ କରି ଦେଇ ନ ଥାଆନ୍ତେ। ସ୍ୱାମୀ ଚାଲିଯିବା ପରେ ଏମିତି କେତେ କଥା ତାଙ୍କୁ ଜୀବନରେ ଶୁଣିବାକୁ ହୋଇଛି। ଆହୁରି କେତେ କ'ଣ ଶୁଣିବାକୁ ହେବ। ସେଇଥିରେ ସେ ଭାଙ୍ଗି ପଡ଼ିବେ? ଜମା ନୁହଁ। ସେ ଜୀବନର ଭୁଲ କ'ଣ, ଠିକ୍ କ'ଣ ବେଶ୍ ଜାଣିଛନ୍ତି। ଆଉ କାହାକୁ ଡରି, ସମାଜର ଲାଲ ଆଖିକୁ ଡରି ସେ ଚଳି ପାରିବେନି।

ସେ ଗରମ ତେଲ କରେଇରେ କଟା ମାଛ ଛାଡ଼ିଲେ।

ବର୍ଷା ଯେ ବର୍ଷା ଆକାଶ ଭାଙ୍ଗି ଯାଉଛି ଯେମିତି। ଏକାଦଶୀ ଦିନ ସନ୍ଧ୍ୟାଠୁଁ ଆରମ୍ଭ ହୋଇଛି। ଆଜି ଚତୁର୍ଦ୍ଦଶୀ ହେଲାଣି ଆସି, ତଥାପି ଛାଡ଼ିବାର କୌଣସି ଚିହ୍ନ ନାହିଁ। ଶୁଭ୍ରା ବେଳେବେଳେ ଘର ଭିତରୁ ବାରଣ୍ଡାକୁ ବାହାରି ଆସି କାଦୁଅ ପଚପଚ ରାସ୍ତା ଦେଖୁଛନ୍ତି, ପୁଣି ବିରକ୍ତିରେ ବେକ ବଙ୍କେଇ ଦେଖୁଛନ୍ତି ଘନ କଳା ବାଦଲ ଘେରା ଆକାଶକୁ। ସତେ ଯେମିତି ତାଙ୍କ ବିରକ୍ତିର ଦୃଷ୍ଟିକୁ ଖାତିର କରିଛି ଇନ୍ଦ୍ର ରାଜା! ଭୟ ପାଇ ସେ ଯେମିତି ମୁହଁ ଲୁଚେଇ ପଶିଯିବ ଘର ଭିତରେ ଆଉ ଏତେ ଦିନ ଧରି ବନ୍ଦୀ କରି ରଖିଥିବା ସୂର୍ଯ୍ୟ ଦେବଙ୍କୁ ମୁକ୍ତି ଦେଇ ଦେବ!

ଅନୁପମା ହସି ପକେଇଲା। ନିରବଚ୍ଛିନ୍ନ ବର୍ଷାରେ ଚିଡ଼ି ତ ଲାଗୁଛି, କିନ୍ତୁ ମା'ଙ୍କର ବିରକ୍ତି ଦେଖି ଭାରି ମଜା ଲାଗୁଛି ତାକୁ। ପାବ୍‌ନାରେ ଏଇ କ'ଣ ପ୍ରଥମ ବର୍ଷା ହେଉଛି? ନା ଏଇ ପ୍ରଥମ ଥର ପାଇଁ ଜନ ଜୀବନ ଅସ୍ତବ୍ୟସ୍ତ ହୋଇଛି ତାଙ୍କ ବଙ୍ଗଳା ଦେଶରେ?

ଅନୁପମାର ବୁଦ୍ଧି ହେବା ଦିନଠୁଁ ଦେଖି ଆସୁଛି। ଆଉ ଯାହା କିଛି ହେଉ ନା କାହିଁକି, ପାବ୍‌ନାରେ ବର୍ଷାର ଅଭାବ କୌଣସି ବର୍ଷ ହୁଏ ନାହିଁ। ପାବ୍‌ନାରେ କାହିଁକି, ସାରା ବଙ୍ଗଳା ଦେଶର ସେଇ ଏକା ଅବସ୍ଥା। ପ୍ରତି ବର୍ଷ କେଉଁଠି ନା କେଉଁଠି ବନ୍ୟା ହୁଏ, କେତେ ଗାଁ ଗଣ୍ଡା ଭାସି ଯାଏ, କେତେ କେତେ ଫସଲ ନଷ୍ଟ ହୁଏ। ଆଉ ପୁଣି ନଦୀମାନଙ୍କରେ କେତେ ଦୁର୍ଘଟଣା ହୁଏ।

ଦିନାକେତେ ସେଇ ସବୁ ଘଟଣା ନେଇ ଆଲୋଚନା ଚାଲେ। ଗାଲରେ, ମୁଣ୍ଡରେ ହାତ ଦେଇ ବସନ୍ତି କେତେ କିଏ। ପୁଣି ଦିନେ ଝାଡ଼ିଝୁଡ଼ି ହୋଇ ଉଠି ଏଠିକାର କୃଷକ ଭାଇ ଉର୍ବର ବଙ୍ଗଳା ମାଟିରେ ହଳ ଚଳାଏ। ଅଣ୍ଟାରେ ଗାମୁଛା ଭିଡ଼ି ଦେଇ କେଉଟମାନେ ନିଜ ନିଜର ଡଙ୍ଗା ନେଇ ବାହାରି ପଡ଼ନ୍ତି। ଆଗାମୀ ବର୍ଷ ପାଇଁ କେତେ ପୁଣି ସ୍ୱପ୍ନ ଆଙ୍କି ହୋଇଯାଏ ଲୋକମାନଙ୍କ ମନରେ।

ହୁଏତ, ପର ବର୍ଷ ବର୍ଷା ହୁଏ ପରିମିତ ମାତ୍ରାରେ। ସୁନାର ବଙ୍ଗଳା ଶସ୍ୟ ଭାରରେ ହସି ଉଠେ। ଆନନ୍ଦର ମହୋତ୍ସବ ଖେଳାଇ ହୋଇଯାଏ ଦେଶ ବ୍ୟାପୀ।

କିନ୍ତୁ ପୁଣି ଦିନେ ଅମାବାସ୍ୟାର ଅନ୍ଧାର ନଇଁ ଆସେ ଦେଶର ଆକାଶରେ। ପୁଣି ସେଇ ବର୍ଷାର ତାଣ୍ଡବ ଲୀଳା ଆରମ୍ଭ ହୋଇଯାଏ।

ଗାଲରେ ହାତ ଦେଇ ଅନୁପମା ଏକା ଦୃଷ୍ଟିରେ ଚାହିଁ ରହିଥିଲା ବାହାରକୁ। ନିଃଶବ୍ଦରେ ଝରି ଯାଉଥିବା ବର୍ଷା ଦେଖୁ ଦେଖୁ ଭାବି ଯାଉଥିଲା କେତେ କ'ଣ।

ଏଠି ବଙ୍ଗଳା ଦେଶରେ ଅତିବୃଷ୍ଟି ନେଇ ସମସ୍ତେ ବ୍ୟସ୍ତ ବିବ୍ରତ ହୋଇ ପଡ଼ୁଛନ୍ତି। ଆଉ ପୁଣି ଅଛି ଭାରତର ପଶ୍ଚିମରେ ରାଜସ୍ଥାନ, ଯେଉଁଠି କି ଅନାବୃଷ୍ଟିରେ ଜୀବନ ଦୁର୍ବିସହ ହୋଇ ପଡ଼େ। ଭୂଗୋଳ ପଢ଼େଇବା ବେଳେ ଦିଦିମଣି ମାନଚିତ୍ର ଦେଖାଇ ଥର୍ ମରୁଭୂମିର ଦୂରବସ୍ଥା ସେମାନଙ୍କୁ କହିଛନ୍ତି। କହିଛନ୍ତି, କେମିତି ପାଣି ଟିକିଏ ପାଇଁ ମାଇଲ୍ ମାଇଲ୍ ରାସ୍ତା ଚାଲିବାକୁ ହୁଏ ସେଠାକାର ଗାଁବାସୀଙ୍କୁ। ପାଦ ତଳର ଶୁଖିଲା ସୁନେଲି ବାଲି ଓ ନୀଳ ଆକାଶର ତୁଳା ଭଳି ଧଳା ଶୁଖିଲା ମେଘ - ଏହାରି ଭିତରେ ଦିନ କଟିଯାଏ ସେଠିକା ଲୋକମାନଙ୍କର।

ଏମିତି କାହିଁକି ହୁଏ ?

ଠାକୁର ପରା ସବୁ ବୁଝନ୍ତି, ସବୁ ଜାଣନ୍ତି। ତା'ହେଲେ କାହିଁକି ସେ ଏ ସମସ୍ୟାର ଗୋଟାଏ ସ୍ଥାୟୀ ସମାଧାନ କରି ପାରୁନାହାନ୍ତି? ଯଦି ସେ ଏଠିକାର ଅତିବୃଷ୍ଟି ଓ ରାଜସ୍ଥାନର ଅନାବୃଷ୍ଟିକୁ ମିଶେଇ ଦୁଇରେ ଭାଗ କରି ଦିଅନ୍ତେ ଏବଂ ସମାନ କରି ବାଣ୍ଟି ଦିଅନ୍ତେ ଦୁଇ ଜାଗାରେ, ତା'ହେଲେ ତ ଏଠିକାର ସମସ୍ୟା ରହନ୍ତା ନାହିଁ। ଆଉ ମରୁଭୂମିବାସୀ ସ୍ୱସ୍ତିର ନିଶ୍ୱାସ ନିଅନ୍ତେ।

ଥରେ ଦେଖା ହୁଅନ୍ତା କି ଠାକୁରଙ୍କ ସାଙ୍ଗରେ। ତା'ହେଲେ ଅନୁପମା ଅଙ୍କ କଷି ତାଙ୍କୁ ସମାଧାନର ରାସ୍ତା ଦେଖାଇ ଦିଅନ୍ତା।

ତା'ପରେ ? ତା'ପରେ କ'ଣ ହୁଅନ୍ତା ?

ତା'ପରେ ବୋଧହୁଏ ଏଭଳି ବୁଦ୍ଧି ବାହାର କରିଥିବାରୁ ଦେଶର ସବୁ ଲୋକ ଅନୁପମାକୁ ବାହାବା ଦିଅନ୍ତେ। କେତେ ପ୍ରଶଂସା କରନ୍ତେ ଏବଂ ବଡ଼ କଥା, ମା'ଙ୍କୁ ଆଉ ଇନ୍ଦ୍ର ଦେବତା ଉପରେ ଅଗ୍ନି ବୃଷ୍ଟି କରିବାକୁ ପଡ଼ନ୍ତା ନାହିଁ।

ମନକୁ ମନ ହସି ପକେଇଲା ଅନୁପମା। ସେ ନିହାତି ସାନ ନୁହଁ। ଏଭଳି ଅବାନ୍ତର କଥା ଚିନ୍ତା କରିବାର ବୟସ ବୋଧହୁଏ ତା'ର ଆଉ ନାହିଁ। କିନ୍ତୁ କ'ଣ ସେ କରିବ ? ସାମ୍ନାରେ ଲମ୍ବା ଖରା ଛୁଟି। କରିବାକୁ ଚାଣ କିଛି କାମ ନାହିଁ। ଏଭଳି ପରିସ୍ଥିତିରେ ମନ ତ ଘୂରି ବୁଲିବ ଅଜବ ଚିନ୍ତାର ରାଇଜରେ। ହାତରେ ଅବଶ୍ୟ ସିଲେଇ ଅଛି, ହେଲେ ମଣିଷ କେତେ ସିଲେଇ କରିବ ? ଛୁଟି ଦିନରେ ଘରେ ରନ୍ଧାବଢ଼ା ଟିକିଏ ବେଶୀ ହୁଏ। କିନ୍ତୁ କାଦୁଅ ପାଣି ପଚ ପଚ ଅଗଣା ଡେଇଁ ରୋଷେଇ ଘରେ ପଶିବାକୁ ଆଗ୍ରହ ନାହିଁ କାହାର। ତା'ଛଡ଼ା ଏଇ ବର୍ଷାରେ ପ୍ରତିଦିନ ବଜାର ଯିବା ମଧ୍ୟ ଅନିରୁଦ୍ଧ ପକ୍ଷରେ ସମ୍ଭବ ହେଉନି। ବଜାରରେ ବା ମିଳୁଛି କ'ଣ ? ଗାଁ ଗଣ୍ଡାରୁ ପନିପରିବା ଠିକ୍ ଭାବରେ ଆସି ପାରୁନି କି କେଉଟମାନେ ମାଛ ବିକ୍ରି କରିପାରୁନାହାନ୍ତି।

ଏବେ ତାଙ୍କ ଘରେ ଦୁଇ ବେଳା ରନ୍ଧା ହେଉଛି ଗୁଆ ଘିଅ ଦେଇ ଖେଚୁଡ଼ି। ସାଙ୍ଗରେ ବଡ଼ିଭଜା ନ ହେଲେ ହଂସ ଅଣ୍ଡାର ମାମ୍‌ଲେଟ୍। କଟାକଟିର ଝାମେଲା ନାହିଁ। ବଟାବଟିର ଆବଶ୍ୟକତା ନାହିଁ। ଫଳରେ ହାତରେ ଅଜସ୍ର ସମୟ।

ଅନୁପମା ତା' ଦିଦି ସାଙ୍ଗରେ ଖୁସି ଗପ କରି କିଛି ସମୟ କଟେଇ ଦେଇ ପାରନ୍ତା। କିନ୍ତୁ ଅର୍ଚ୍ଚନା ଆଜିକାଲି ଅନ୍ୟ ଭାବନାର ରାଜ୍ୟରେ। ମ୍ୟାଟ୍ରିକ୍ ପରୀକ୍ଷାର ଫଳ ବାହାରିବାର ସମୟ ଯେତେ ଯେତେ ପାଖେଇ ଆସୁଛି, ସେତେ ବେଶୀ ଦୁଶ୍ଚିନ୍ତାରେ ମ୍ରିୟମାଣ ହୋଇ ପଡୁଛି ସେ। ସବୁବେଳେ କେମିତି ଏକ ଭୟ ଭୟର ଭଉଁରୀ ଭିତରେ ବୁଡ଼ି ରହୁଛି ସେ।

ଅନୁପମା ଦିଦିର ଏତେ ଭୟଭୀତ ହେବାର କାରଣ ବୁଝି ପାରେନି।

ବେଳେ ବେଳେ ଚିଡ଼ି ଉଠି ପଚାରେ, ‘‘ତୁ ଏତେ ଡରୁଛୁ କାହିଁକି ଦିଦି? ତୁ ତ କହୁଥିଲୁ ଯେ ତୋର ପରୀକ୍ଷାରେ ଭଲ ହୋଇଛି ବୋଲି।’’

‘‘କେଜାଣି। ସେତେବେଳେ ଲାଗୁଥିଲା ତ ଭଲ ହୋଇଛି ବୋଲି। ହେଲେ ... ଏବେ ମନେ ହେଉଛି ସେତେ ବେଶୀ ଭଲ ହୋଇନି। ଚେଷ୍ଟା କରିଥିଲେ ଆଉ ଟିକିଏ ଭଲ ବୋଧହୁଏ କରି ପାରିଥାଆନ୍ତି।’’

‘‘ଧେତ୍, ଯେତେକ ବାଜେ କଥା।’’

‘‘ନାଇଁ ଲୋ ଅନି, ସତ କହୁଛି। ଇତିହାସରେ ତାରିଖ ଗୁଡ଼ାକ ଠିକ୍‌ଠାକ୍ ଲେଖିଛି କି ନାହିଁ କିଏ ଜାଣେ! ଆଉ ଅଙ୍କରେ ଯଦି କେଉଁଠି ଭୁଲ ହୋଇ ଯାଇଥିବ ନା...। ମୁଁ ଯଦି ଫେଲ୍ ହୋଇଯାଏ, ତା’ହେଲେ କ’ଣ ହେବ କହିଲୁ ଅନି। ମୁଁ ତ କାହାକୁ ମୁହଁ ଦେଖାଇ ପାରିବିନି।’’ ଅଯଥା ଶୋକରେ ଆଖି ଲୁହ ଶାଢ଼ି କାନିରେ ପୋଛେ ଅର୍ଚ୍ଚନା।

ଅନୁପମା ଚିଡ଼ି ଯାଇ ସେଠୁ ଉଠି ଚାଲିଯାଏ। ଜଣେ ଯଦି ଜାଣିଶୁଣି ହା’ ହୁତାଶକୁ ମୁଣ୍ଡେଇ ଧରିବ, ତାକୁ ସେ କ’ଣ କହିପାରିବ?

ଝର୍କା ଦେଇ ବାହାରକୁ ହାତ ବଢ଼େଇଲା ଅନୁପମା। ବର୍ଷାର ଛିଟାରେ ଶାଢ଼ି ଅଳ୍ପ ଅଳ୍ପ ଓଦା ହୋଇ ଯାଉଛି। କାହିଁକି କେଜାଣି, ଆହ୍ଲାଦିତ ହୋଇ ଯାଉଛି ତା’ ମନ।

ହଠାତ୍ ଅବାକ ହୋଇ ରାସ୍ତା ଉପରକୁ ଚାହିଁଲା ସେ। ଦାଦା! ଏମିତି ଗୋଟାଏ ସମୟରେ ଘରକୁ କାହିଁକି ଚାଲି ଆସୁଛି ଦାଦା?

‘‘ମା’... ମା’ ଗୋ...’’ ଖୁସି ଖୁସି ସ୍ୱରରେ ବାରଣ୍ଡାରୁ ପାଟି କରି ଉଠିଲା ଅନିରୁଦ୍ଧ।

‘‘କ’ଣ ହେଲା? ଏଁ?’’ ଭିତରୁ ଧାଇଁ ଆସିଲେ ଶ୍ରଦ୍ଧା। ଆଖିରେ ଆତଙ୍କ। ଛାତି ଭିତରେ ଉଦ୍‌ବେଳନ। ନିତିଦିନିଆ ରୁଟିନ୍‌ରେ ଟିକିଏ ଏପାଖ ସେପାଖ ହେଲେ ଏଇମିତି ହୁଏ ତାଙ୍କର। ତାଙ୍କ ମନରେ ଛନକା ପଶେ।

‘‘ମା’, ଅର୍ଚ୍ଚନାର ମ୍ୟାଟ୍ରିକ୍ ଫଳ ବାହାରିଛି। ଏଇ ଶୁଣି କରି ଆସୁଛି।’’

‘‘ସତେ? ପାଶ୍ କରି ଯାଇଛି ତାହେଲେ। ନହେଲେ ତୁ ଏମିତି ଖୁସୀ ହେଉ ନ ଥାଆନ୍ତୁ।’’ ହସି ପକେଇ ଶ୍ରଦ୍ଧା କହି ପକେଇଲା।

‘‘ପାସ୍!! ପାସ୍ ଆଉ କରି ନ ଥାଆନ୍ତା କି? ଯାହା କଥା ନା ତୁମର

ମା' ...। ଆମ ଅର୍ଚ୍ଚନାର ସେକେଣ୍ଡ ଡିଭିଜନ୍ ହୋଇଛି ପରା। ଆଠଟା ନମ୍ବର ପାଇଁ ଫାଷ୍ଟ ଡିଭିଜନ୍ ହେଲାନି।'' ଅର୍ଚ୍ଚନା ମୁଣ୍ଡକୁ ଆଉଁଶି ଦେଇ ଅନିରୁଦ୍ଧ ବଡ଼ ପାଟିରେ କହି ଉଠିଲା। ସାନ ଭଉଣୀର ଗୌରବରେ ତା'ର ହିଁ ସବୁଠାରୁ ବେଶୀ ଆନନ୍ଦ।

କେବଳ ଅନିରୁଦ୍ଧ ନୁହଁ, ଘର ଯାକ ସମସ୍ତେ ଭାରି ଖୁସୀ।

ସେଦିନ ରାତିରେ ସମସ୍ତେ ଖିଆପିଆ କରି ସାରିବା ପରେ ମା'ଙ୍କର ପାନବଟା ପାଖରେ ଯାଇ ବସିଲା ଅନିରୁଦ୍ଧ। ''ମା', ଏଥର ଅର୍ଚ୍ଚନାର କ'ଣ କରିବା କୁହ ତ।''

''କ'ଣ କରିବା ଆଉ। ... ତୋ ଆଖିରେ ଯଦି କେହି ଭଲ ପାତ୍ର ଅଛନ୍ତି, ତା'ହେଲେ ତା' ବାହାଘର ଖୋଜା ଆରମ୍ଭ କରିଦେଲେ ହୁଅନ୍ତା।''

''ମୁଁ ସେଇ କଥା ଭାବୁଛି ଯେ ହେଲେ ବାହାଘର ଖର୍ଚ୍ଚ କ'ଣ ଏବେ ଆମେ ତୁଲେଇ ପାରିବା ?''

''ଦେଖ୍ ଯଦି ବିନା ଯୌତୁକରେ କିଏ ରାଜିହୁଏ। ଅର୍ଚ୍ଚନାଟା ଆମର ଏତେ ସୁନ୍ଦର...''

''ଯୌତୁକ କଥା କାହିଁକି ପଡ଼ିଛି ମା'? ବାହାଘରର ଆନୁସଙ୍ଗିକ ଖର୍ଚ୍ଚ ଉଠେଇବାଟା ତ ଆମ ପକ୍ଷରେ କାଠିକର। ଗହଣାଗାଣ୍ଠି ସିନା ତୁମ ପାଖରେ କିଛି କିଛି ଅଛି। ଆଉ ବାକୀ ସବୁ ବ୍ୟବସ୍ଥା...'' ଭାବିବା ଭଳି ହୋଇ ଅନିରୁଦ୍ଧ କହିଲା, ''... ଅବଶ୍ୟ ଚେଷ୍ଟା କଲେ ଅଫିସ୍‌ରୁ କିଛି ଲୋନ୍ ମିଳିପାରେ। ସେଇଟା ହିଁ ଭଲ ହେବ। ନା କ'ଣ କହୁଛ ? ମାସକୁ ମାସ ଅଳ୍ପ ଅଳ୍ପ କରି ଦରମା କଟିଯିବ, ଜଣା ପଡ଼ିବନି। ମୁଁ ଏହା ଭିତରେ ଆମ ବଡ଼ବାବୁଙ୍କ ସାଙ୍ଗରେ କଥା କହି ଦେଖେ। ...ତୁମେ ଦେଖାଦେଖି ଆରମ୍ଭ କରିଦିଅ ମା'।''

ଅର୍ଚ୍ଚନା ଯେ କେତେବେଳୁ ଆସି କବାଟ ପାଖରେ ଠିଆ ହୋଇ ମା' ଓ ଦାଦାଙ୍କ କଥା ଶୁଣୁଥିଲା ତା' କେହି ଜାଣନ୍ତି ନାହିଁ। ଆଉ ରହି ନ ପାରି ସେ କହି ପକେଇଲା, ''ଧେତ୍, ମୁଁ ଏବେ ବାହାଫାହା ହେବିନି। ...ମା' ଗୋ, ଗୌରୀ ଦିଦି କହୁଥିଲେ ସେଇ ଯେଉଁ ଚାକିରି କଥା...''

''କ'ଣ କ'ଣ କହିଲୁ ... ଚାକିରି ??'' ଶ୍ରଦ୍ଧା କିଛି କହିବା ଆଗରୁ ଅବାକ ଭାବରେ ଅନିରୁଦ୍ଧ ପଚାରିଲା।

''ସ୍କୁଲ୍‌ର ଚାକିରି ଦାଦା।''

ଯେଉଁ ଆନନ୍ଦଟା ଏତେ ସମୟ ଧରି ଅନିରୁଦ୍ଧର ଆଖିରେ ବସା ବାନ୍ଧି ରହିଥିଲା, ମୁହୂର୍ତ୍ତକ ଭିତରେ ସେଇଟା ଉଭାନ ହେଇଗଲା। ''ତୋ ମୁଣ୍ଡ ଖରାପ ହେଲାଣି କି ଅର୍ଚ୍ଚନା? ତୁ ଚାକିରି କରି ଯିବୁ?'' ଗମ୍ଭୀର ଭାବରେ ସେ କହି ଉଠିଲା।

''ଅଜଣା ଅଶୁଣା ସ୍କୁଲ୍ ନୁହଁ ଦାଦା, ଗୌରୀ ଦିଦିଙ୍କ କକେଇ ଶ୍ୱଶୁରଙ୍କ ସ୍କୁଲ୍।''

''ସେ ଯାହା ସ୍କୁଲ୍ ହେଉ ... ଏଠି ସେସବୁ ଚଳିବନି।''

''ମନା କାହିଁକି କରୁଛ ଦାଦା। କେତେ ଭଲ ହେବ କହିଲ।''

''ଭଲ!! ମୋତେ ଯାହା ଲାଗୁଛି, ତୋ ମୁଣ୍ଡ ଖରାପ ହୋଇସାରିଲାଣି ଅର୍ଚ୍ଚନା। ସତର ବର୍ଷର ଝିଅ। ପର୍ଦ୍ଦା ସେପାଖେ ନ ରଖେଇ ତତେ ଯେ ପାଠ ପଢ଼ା ହେଲା, ସେତକ ଯଥେଷ୍ଟ ହେଲାନି? ଏବେ କହୁଛି କ'ଣ ନା ଚାକିରି କରି ଯିବ। ...କ'ଣ କହିବେ ଏଠି ସମସ୍ତେ ଆମକୁ?'' ଅନିରୁଦ୍ଧ ଚିଡ଼ି ଉଠିଲା।

''ତୁମେ ନହେଲେ ଡରିଛ ସମସ୍ତଙ୍କୁ।'' ଅର୍ଚ୍ଚନା ନୁହଁ, ଦିଦି ପଟିଆ ହୋଇ ଅନୁପମା ଯୁକ୍ତି କରି ଉଠିଲା। ''ସ୍କୁଲ୍‌ରେ ଚାକିରି କରିବାଟା କ'ଣ ପାପ କାମ କି?''

''ତତେ କିଏ ପଚାରୁଛି, ଅନି?'' ଗର୍ଜି ଉଠିଲା ଅନିରୁଦ୍ଧ, ''ମୁଁ ସଫା ସଫା କହି ଦେଉଛି, ଏ ଘରେ ଏମିତିଆ କାମ ମୁଁ ବଞ୍ଚିଥିବା ଯାକେ ହୋଇ ପାରିବନି। ଘର ଝିଅ ଘରେ ରୁହ। ମୁଁ ଠିକ୍ ଦେଖି ଚାହିଁ ଯେତେବେଳେ ବାହା କରେଇ ଦେବି, ସେତେବେଳେ ମୁଣ୍ଡ ନୁଆଁଇ ଶାଶୂଘରକୁ ଯିବ। ଯେମିତି ଆଉ ପାଞ୍ଚଟା ଭଦ୍ର ଘରର ଝିଅ ଯାଆନ୍ତି।'' ଟମ ଟମ ହେଇ ସେ ଜାଗାରୁ ଉଠି ଅଗଣାକୁ ଚାଲିଗଲା ଅନିରୁଦ୍ଧ। ସାହସ ଦେଖୁଛ ଝିଅ ଦିଇଟାଙ୍କର। ପଢ଼ାଅ ପାଠ। ଆହୁରି ବେଶୀ ବେଶୀ ପଢ଼ାଅ!! ଆହୁରି ସ୍ୱାଧୀନତା ଦିଅ!!

ଆଗରେ।

ଆଜି କହୁଛନ୍ତି ଚାକିରି କରିଯିବୁ। କାଲିକି କହିବେ ସ୍ୱଦେଶୀଙ୍କ ସାଙ୍ଗରେ ନାଚିବୁ। ବିଲାତୀ ଲୁଗା ପୋଡ଼ିବୁ। ଆଉ ପୁଣି ରାସ୍ତା ଘାଟରେ ନିର୍ଲଜ୍ଜଙ୍କ

ଭଳି ଇଂରେଜ୍ ପୋଲିସ୍‌ର ମାଡ଼ ଖାଇ ସହିଦ୍ ହୋଇ ଯିବୁ।

ଏ ଦିଇଟା ମୁଖୋପାଧ୍ୟାୟ ବଂଶର ଝିଅଟି! ନ ଜାଣିଥିବା ଲୋକର ତ ସଂଦେହ ହେବ!

ଅଂଗଣାର ଦଉଡ଼ିଆ ଖଟ ଉପରେ ବସି ଦାନ୍ତ କଡ଼ମଡ଼ କଲା ଅନିରୁଦ୍ଧ।

ଅର୍ଚ୍ଚନା ଥରି ଉଠିଥିଲା ଏସବୁ ପାଟିତୁଣ୍ଡ ଦେଖି। ତାକୁ ନେଇ କୌଣସି ଅଶାନ୍ତି ହେଉ, ଏକଥା ସେ ଜମା ସହିପାରେନି। କିଏ କହୁଥିଲା ଅନିକୁ ତା' ପାଇଁ ଓକିଲାତି କରିବାକୁ? ଭଲରେ ଭଲରେ ଯଦି ଦାଦା ରାଜି ହେଇଥାଆନ୍ତା, ତାହେଲେ ଅଲଗା କଥା। ଅଯଥାଟାରେ ତାକୁ ରଗେଇ ଦେବା କ'ଣ ଦରକାର ଥିଲା। ସତ କଥା, ଆଜିକାଲି ଯୁଗ ସିନା ବଦଳିଛି, ଝିଅମାନେ ପୁଅଙ୍କ ସାଙ୍ଗରେ ତାଳ ଦେଇ ସିନା ପାଠ ପଢ଼ା ଆରମ୍ଭ କଲେଣି, କିନ୍ତୁ ଚାକିରି କରିବାକୁ କେଇ ଜଣ ସାହସ କରି ପାଦ ବଢ଼ାଉଛନ୍ତି?

କ୍ଷଣିକ ଉତ୍ତେଜନାରେ ଏତେ ବଡ଼ ସାହସଟିଏ କରି ପକେଇଥିଲା ଅର୍ଚ୍ଚନା, ହେଲେ ତାଙ୍କ ଭଳି ବଂଶର ଝିଅ ଆଉ ଚାକିରି!! ସାନ ଭଉଣୀର ଏଭଳି ସୃଷ୍ଟିଛଡ଼ା କଥା ଶୁଣି ଦାଦା ଯେ ରାଗିଯିବ, ତା' ତ ଜଣାଶୁଣା କଥା।

''ତୁ ଦାଦାକୁ ଏମିତି କାହିଁକି କହିଲୁ ଅନି?'' ଶ୍ରଦ୍ଧା ସାନ ଝିଅ ଉପରେ ସାମାନ୍ୟ ରାଗିଗଲେ।

''କ'ଣ କହିଲି?''

''ଅର୍ଚ୍ଚନାର ଚାକିରି କରି ଯିବା ବିଷୟ...''

''ତୁମେ କୁହ ମା', ମୁଁ କିଛି ଭୁଲ କହିଲି? ଆଜି ବାବା ବଞ୍ଚିଥିଲେ କ'ଣ ଦିଦିକୁ ଛାଡ଼ି ନ ଥାଆନ୍ତେ? ତମେ ଇ ତ ସବୁବେଳେ କୁହ ଯେ ବାବାଙ୍କର ସମସ୍ତଙ୍କୁ ନେଇ ବହୁତ ଉଚ୍ଚାକାଂକ୍ଷା ଥିଲା। ଝିଅମାନଙ୍କୁ ଘର କଣରେ ବସେଇ ରଖିବାର ପକ୍ଷପାତୀ ନ ଥିଲେ ସେ।''

ଦୀର୍ଘ ନିଶ୍ୱାସ ନେଇ ଶ୍ରଦ୍ଧା କହିଲେ, ''ତୋ ବାବାଙ୍କ କଥା ଥାଉ। ଯେଉଁ ମଣିଷଟି କେଉଁ ଯୁଗ ତଳୁ ସଂସାର ଛାଡ଼ି ସାରିଲାଣି, ତା'ର ଇଚ୍ଛା ଅନିଚ୍ଛା ନେଇ କଥା ଆଉ କାହିଁକି? ଏବେ ତୋ ଦାଦା ଯାହା କହିବ, ସେଇ କଥା ହିଁ ତୁମମାନଙ୍କୁ ଶୁଣିବାକୁ ହେବ।''

''ମା', ଦିଦି ଯଦି ଝିଅଙ୍କ ସ୍କୁଲ୍‌ରେ ସିଲେଇ ଶିଖେଇବ, ସେଥିରେ ଖରାପଟା

କ'ଣ ହେବ? ସେଠି ପୁଣି ଗୌରୀ ଦିଦି ଅଛନ୍ତି। ତାଙ୍କ ଘରେ ଦିଦିର ରହିବା ବ୍ୟବସ୍ଥା ହୋଇଯିବ। ତୁମେ କୁହ, ଏଥିରେ କ୍ଷତି କ'ଣ ଅଛି?''

ଶ୍ରଦ୍ଧା ବି କଥାଟା ଖରାପ ବୋଲି ଜମା ଭାବୁ ନ ଥିଲେ। କିନ୍ତୁ ଏବେ ଯେ ଘରର ମୁରବି ହୋଇଛି ଅନିରୁଦ୍ଧ। ତା'ର ଇଚ୍ଛା ଅନିଚ୍ଛାକୁ ତ ଏଡ଼ାଇ ଦେଲେ ଚଳିବନି।

''ଦେଖ୍ ମା' ...'' ସ୍ୱରକୁ କୋମଳ କରି ଆଉ କ'ଣ କହି ଆସୁଥିଲେ ଶ୍ରଦ୍ଧା, ହଠାତ୍ ପଡ଼ିଶା ଘରୁ ବିରାଟ ଗୋଟାଏ କାନ୍ଦଣା ଲହରୀ ଘର ଭିତରକୁ ପଶିଆସି ଥରାଇ ଦେଲା ସମସ୍ତଙ୍କୁ।

''ଏ ତ ସଲମା, କ'ଣ ହେଲା କାହାର?'' ଚମକି ଉଠିଲେ ଶ୍ରଦ୍ଧା। ବସିବା ଜାଗାରୁ ଉଠି ପାଖ ଘରକୁ ଚାଲିଯିବା କଥା ତାଙ୍କର। କିନ୍ତୁ ଦେହ ହାତ ଯେମିତି ପଥର ହୋଇ ଯାଇଥିଲା। ପାଦ ବଢ଼େଇ ପାରୁ ନ ଥିଲେ ସେ। କ'ଣ ହେଲା? ଆବିଦ୍ ସ୍ତ୍ରୀ ଉପରେ ହାତ ଉଠେଇଲେ ନା କ'ଣ?

ତାଙ୍କ ପଡ଼ାରେ ଘଟଣାଟି ଅସ୍ୱାଭାବିକ ଆଦୌ ନୁହଁ। ଯେଉଁ ନିମ୍ନ ମଧ୍ୟବିତ୍ତ ପଡ଼ାରେ ଆସି ଶ୍ରଦ୍ଧାଙ୍କୁ ରହିବାକୁ ହୋଇଛି, ସେଠି ଜୀବନ ଯାତ୍ରାର ଯନ୍ତ୍ରଣା ଏତେ ଅଧିକ ଯେ କଥାକଥାକେ ମଣିଷମାନେ ନିଜ ଉପରୁ ନିୟନ୍ତ୍ରଣ ହରାଇ ବସନ୍ତି। ହାତ ଗୋଡ଼ ଉଠିବା ତ ସାମାନ୍ୟ କଥା। ବେଳେ ବେଳେ ଲାଠି, ପନିକି, କଟୁରୀ ବି ଉଠିଆସେ। ରକ୍ତରେ ଲାଲ ହୋଇଯାଏ ସେମାନଙ୍କର ପୃଥିବୀ।

କିନ୍ତୁ ସେଇ ଭୟାବହ ରଙ୍ଗ ସେମାନଙ୍କର ଆଖିରୁ ଉଦ୍‌ଭ୍ରାନ୍ତ ଭାବକୁ ପୋଛି ଦିଏ। ଦାଆ କଟୁରୀ ଉଠେଇଥିବା ମଣିଷଟି ପୁଣି ଆଖିରୁ ଲୁହ ଝରାଏ। ନିଜ ମଣିଷର ସେବା କରିବାକୁ ବସିଯାଏ। କିଛି ଦିନ ପରେ ପୁଣି ସାଧାରଣ ଭାବରେ ଜୀବନ ଗଡ଼ି ଚାଲେ ସେମାନଙ୍କର।

ଏ ତ ଗରିବ ସଂସାରର ନିତ୍ୟ ନୈମିତ୍ତିକ ଘଟଣା।

କିନ୍ତୁ ଶ୍ରଦ୍ଧା ତାଙ୍କ ଜୀବନ କାଳରେ ବ୍ୟତିକ୍ରମ ଦେଖିଥିଲେ ଗୋଟିଏ।

ସେଇଟି ହେଲା ସଲ୍ମା ଓ ଆବିଦ୍ ରହମାନ୍ଙ୍କ ସଂସାର। ସେ ସଂସାରରେ ଦାରିଦ୍ର୍ୟ ଥିଲା, ଦୁଶ୍ଚିନ୍ତା ଥିଲା, ହେଲେ ସ୍ନେହ ପ୍ରେମର ଅଭାବ କେବେହେଲେ ନ ଥିଲା। ଏତେ ବର୍ଷ ଧରି ନିକଟରୁ ସେମାନଙ୍କୁ ଦେଖି ଆସୁଛନ୍ତି ଶ୍ରଦ୍ଧା, କିନ୍ତୁ ଦୁଇ ଜଣଙ୍କ ଭିତରେ ପାଟିତୁଣ୍ଡ, ଝଗଡ଼ା ହେବା ଦୂରେ ଥାଉ, ମୁହଁ ଫୁଲା ଫୁଲି ସେ କେବେ ଦେଖି ନାହାନ୍ତି।

ତାଙ୍କରି ଘରୁ ଏଭଳି କାନ୍ଦଣାର ଲହରୀ ?

ନିଶ୍ଚୟ କିଛି ହୋଇଛି। କିଛି ଗୁରୁତର ନିଶ୍ଚୟ ହୋଇଛି। ଶ୍ରଦ୍ଧା ଟଳଟଳ ପାଦରେ ଉଠି ଠିଆ ହେଲେ। ଗୋଡ଼ ବଢ଼େଇଲେ ଆବିଦ୍, ସଲ୍ମାଙ୍କ ଘରକୁ ଯିବାକୁ। ସେତେବେଳକୁ ଧାଇଁ ଯାଇ ପଡ଼ିଶା ଘରକୁ ଚାଲି ଯାଇ ସାରିଥିଲା ଅନିରୁଦ୍ଧ। ତା' ପଛେ ପଛେ କେତେବେଳେ ଯେ ଅର୍ଚ୍ଚନା ଓ ଅନୁପମା ଚାଲି ଯାଇଛନ୍ତି, ତା'ର ଟେର୍ ପାଇ ନାହାନ୍ତି ଶ୍ରଦ୍ଧା।

ଦାଣ୍ଡ କବାଟଟା ଆଉଜାଇ ନେଇ ସେ ପଡ଼ିଶା ଘରେ ପାଦ ଦେଲେ।

ବିରାଟ ଝଡ଼ଟାଏ ଯେମିତି ବହି ଯାଇଛି ସେଇ ଘର ଉପରେ। ସବୁ ଅସ୍ତବ୍ୟସ୍ତ। ମାଟିରେ ପାଗଳୀଙ୍କ ଭଳି ଲୋଟୁଛନ୍ତି ସଲ୍ମା। ତାଙ୍କ ପାଖରେ ଆଣ୍ଠୁମାଡ଼ି ବସି ଯାଇଛନ୍ତି ଅନୁପମା ଓ ଅର୍ଚ୍ଚନା। କିଛି ପଚାରିବାକୁ ସାହସ ହେଉନି ସେମାନଙ୍କର।

ଅନିରୁଦ୍ଧ ଆବିଦ୍‌ଙ୍କ ହାତ ଧରି ବାରମ୍ବାର କେବଳ ସେଇ ଏକା କଥା ପଚାରି ଯାଉଛି। "କ'ଣ ହୋଇଛି ? ଆବିଦ୍ ଚାଚା, ଚାଚୀ ଏମିତି କାନ୍ଦୁଛନ୍ତି କାହିଁକି ? କ'ଣ ହେଲା ?"

ତାକୁ କୌଣସି ଉତ୍ତର ମିଳୁ ନ ଥିଲା।

ଆବିଦ୍ ରହମାନ୍ଙ୍କ ପାଟିରୁ କଥା ହଜି ଯାଇଥିଲା ଯେମିତି। ଆକାଶକୁ ଅନେଇ ରହିଥିଲେ ବଡ଼ ବଡ଼ ଶୁଖିଲା ଆଖି ନେଇ। ଅନିରୁଦ୍ଧର କଥା ଶୁଣି ବି ସେ ଶୁଣି ପାରୁ ନ ଥିଲେ।

ହଠାତ୍ ଅନିରୁଦ୍ଧ ଉଠିଗଲା ଆବିଦ୍‌ଙ୍କ ଦୁଇ ପୁଅଙ୍କ ପାଖକୁ। ଆଗ ଭଳି ଉଦ୍‌ବିଗ୍ନ ସ୍ୱରରେ ପଚାରିଲା, "ହାଏଦର୍ ଜାହାଙ୍ଗୀର କ'ଣ ହୋଇଛି ଭାଇ ?"

ହାଏଦର୍‌ଟା ସବୁଦିନେ କମ୍ କଥା କହେ। ଆଉ ଆଜି ତ ପୁଣି ଏତେ

ବଡ଼ ଖବରଟା ମିଳିଛି ତାକୁ। ପାଟି ଖୋଲିବ କେମିତି ? ଛାତିର କୋହ ଲୁଚେଇବାକୁ ସେ ଆଣ୍ଠୁରେ ମୁହଁ ମାଡ଼ି ବସିଗଲା।

"କଥା କହ, ଜାହାଙ୍ଗୀର।"

ଥର ଥର ସ୍ୱରରେ ଜାହାଙ୍ଗୀର କହିଲା, "ଆମର ସବୁ ସରିଗଲା ଅନିରୁଦ୍ଧ ଦାଦା। ସବୁ ସରିଗଲା।"

ସବୁ ସରିଗଲା ??

ଘର ଭିତରକୁ ପଶି ଯାଉ ଯାଉ କବାଟ ପାଖରେ ଶ୍ରଦ୍ଧା ପଥର ଭଳି ଠିଆ ହୋଇଗଲେ। ଗାଁରୁ କିଛି ଖରାପ ଖବର ଆସିଲା କି ? ପ୍ରଭୁ ହେ !

ଧୀର ପାଦରେ ସଲ୍‌ମାଙ୍କ ପାଖକୁ ଆଗେଇ ଆସିଲେ ଶ୍ରଦ୍ଧା। ଦୁଇ ହାତରେ ଜାବୁଡ଼ି ଧରିଲେ ନିଜର ଭଉଣୀଠୁଁ ଅଧିକ ସ୍ନେହ କରୁଥିବା ପଡ଼ୋଶିନୀକୁ। ମନକୁ ଶକ୍ତ କରି କହିଲେ, "ସଲ୍‌ମା .. ଶାନ୍ତ ହୁଅ ସଲ୍‌ମା।"

"ଦିଦି ଗୋ ..." ସଲ୍‌ମାଙ୍କ କୋହ ଦୁଇଗୁଣ ବଢ଼ିଗଲା।

"ନା .. ନା .. ଏତେ କାନ୍ଦନ୍ତିନି। ସବୁ ଠିକ୍ ହୋଇ ଯିବ।"

"ଆଉ କିଛି ଠିକ୍ ହେବନି ଗୋ ଦିଦି। ସରିଗଲା। ଆମର ସବୁ ସରିଗଲା।" ଚିରଚିରେଇ କାନ୍ଦି ଉଠିଲେ ସଲ୍‌ମା।

"କ'ଣ ହୋଇଛି ଆବିଦ୍ ଭାଇ ?" ଆଉ ରହି ନ ପାରି ଏଥର ଶ୍ରଦ୍ଧା ପଚାରି ଉଠିଲେ।

ଦୀର୍ଘ ନିଶ୍ୱାସ ନେଲେ ଆବିଦ୍। ଦୁଇ ହାତ ପାପୁଲି ଉପରକୁ କରି କହିଲେ, "ଖୋଦାଙ୍କ ଖେଳ ବୁଝିବ କିଏ ଭାବୀଜାନ୍ ?"

"କ'ଣ ହୋଇଛି କୁହ, ଆବିଦ୍ ଚାଚା।"

"... ଆଉ କ'ଣ କହିବି ରେ ବାବା ଅନିରୁଦ୍ଧ ! ସବୁ ସରିଗଲା !! ଏଇ ଏବେ ଏବେ ଖବର ଆସିଛି ଯେ ସଲ୍‌ମାର ତଳ ଭଉଣୀ ରେଶମା, ତା' ସ୍ୱାମୀ ପିଲାଙ୍କୁ ନେଇ ପଦ୍ମାରେ ଷ୍ଟିମର୍‌ରେ ଯାଉଥିଲା ବାପଘର ଗାଁକୁ। ଷ୍ଟିମର୍ ବୁଡ଼ି ଯାଇ..." ଆଉ କିଛି କହି ପାରିଲେ ନାହିଁ ଆବିଦ୍। ଗଳା ଧରିଗଲା ତାଙ୍କର।

"ଷ୍ଟିମର୍ ବୁଡ଼ିଗଲା !!"

"ବୁଡ଼ିଗଲା। ଦଶ ବାର ଜଣ କୌଣସି ମତେ ପହଁରି ବର୍ତ୍ତିଗଲେ। ହେଲେ

ବାକୀ ସମସ୍ତଙ୍କର ସଳୀଳ ସମାଧି ହୋଇଗଲା ରେ।'' ଆଖି ତଳକୁ କରି ହାତ ପାପୁଲିରେ ଲୁହ ପୋଛିଲେ ଆବିଦ୍। ପୁଣି ରହି ରହି କହିଲେ, ''ତିନି ପିଲାଙ୍କୁ ନେଇ ବର ସାଙ୍ଗରେ ଯାଉଥିଲା ରେଶ୍‌ମା। ଆଉ ଦେଖ କି ଦୁର୍ଯୋଗ!''

ସଲ୍‌ମା କାନ୍ଥକୁ ଆଉଜି ବସି ସେଇମିତି ବାହୁନି ଯାଉଛନ୍ତି। ''ରେଶ୍‌ମା .. ମୋ ରେଶ୍‌ମାରେ...''

ଶ୍ରଦ୍ଧା ରେଶ୍‌ମା କଥା ବହୁତ ଥର ଶୁଣିଛନ୍ତି। ସଲ୍‌ମା କହନ୍ତି ଯେ ପାଞ୍ଚ ଝିଅ ହେବା ପରେ ଯେତେବେଳେ ପୁଅର ଆଶା ନେଇ ସମସ୍ତେ ବସିଥିଲେ, ସେତିକିବେଳେ ଜନ୍ମ ହେଲା ରେଶ୍‌ମା। ଝିଅ ହେଇଛି ଶୁଣି ତାକୁ ଗେହ୍ଲା କରିବା ଦୂରେ ଥାଉ, ଶୋକ କରିଥିଲେ ସମସ୍ତେ। ଅଥଚ କି ବିଶାଳ ଭାଗ୍ୟ ନେଇ ଜନ୍ମିଥିଲା ସେ! ପୁଣି ରୂପ ଯେ ପାଇଥିଲା ସଂସାର ଉଜ୍ଜ୍ୱଳ କରି ଦେବା ଭଳି।

ପାଠଶାଠ ସିନା ପଢ଼ି ନ ଥିଲା, କିନ୍ତୁ ବହୁତ ବଡ଼ ଘରେ ସେ ବାହା ହୋଇଥିଲା। ବରଟି ବି ଅତି ଭଲ ମଣିଷ। ସ୍ତ୍ରୀକୁ ମୁଣ୍ଡରେ ବସେଇ ରଖିଥାଏ ସବୁବେଳେ। ସୁବିଧା ଅସୁବିଧାରେ ରେଶ୍‌ମା ତା' ବାପଘରର ଲୋକଙ୍କୁ ସାହାଯ୍ୟ କଲେ ବିରକ୍ତ ନ ହୋଇ ଖୁସୀ ହୁଏ। ଅଥଚ ସେଇ ରେଶ୍‌ମାର ଭାଗ୍ୟରେ ଏଇଆ ହେବାକୁ ଥିଲା। ଛୋଟ ଛୋଟ ତିନି ପିଲା, ସ୍ୱାମୀ, ସେ ନିଜେ - ସମସ୍ତେ ହଜିଗଲେ ପଦ୍ମାର କଳା ଭଉଁରୀରେ!

ଆହା!! ଶ୍ରଦ୍ଧାଙ୍କ ଭିତର ଘାଣ୍ଟି ଚକଟି ହୋଇଯାଉଥିଲା। ହଠାତ୍ କ'ଣ ଯେମିତି ମନେ ପଡ଼ିଗଲା ତାଙ୍କର। ରେଶ୍‌ମାର ଚାରିଟା ପିଲା ନା? ଏଠି ତ ତିନି ପିଲା କଥା କହୁଛନ୍ତି ଆବିଦ୍।

''ଆବିଦ୍ ଭାଇ, ରେଶ୍‌ମାର ଚାରିପିଲା ନା...''

''ହଁ, ଭାବୀଜାନ୍। ହେଲେ ବଡ଼ ପୁଅ ସେମାନଙ୍କ ସାଙ୍ଗରେ ନ ଥିଲା।''

''ଓ।'' ଶ୍ରଦ୍ଧା ଚୁପ୍ କରି ଗଲେ। ଠାକୁରଙ୍କ ଦୟା ଯେ ଜଣେ ବଞ୍ଚିଗଲା। କିନ୍ତୁ କେମିତି ଅଛି? କେଉଁଠି ଅଛି ପିଲାଟି? ସେ ସଲ୍‌ମାଙ୍କଠୁଁ ଶୁଣିଥିଲେ ଯେ ପିଲାଟି ଭଲ ଭାବରେ ମ୍ୟାଟ୍ରିକ୍ ପାସ୍ କରି କଲେଜ୍‌ରେ ନାଁ ଲେଖାଇଥିଲା। ଏବେ ସେ କ'ଣ କେମିତି କରୁଥିବ? ଆହା!

ରହି ନ ପାରି ଶ୍ରଦ୍ଧା ପଚାରି ଦେଲେ, ''ରେଶ୍‌ମାର ବଡ଼ ପୁଅ ଏବେ...''

ତାଙ୍କ କଥା ଶେଷ ହେବା ଆଗରୁ ଆବିଦ୍ ଭଙ୍ଗା ସ୍ୱରରେ କହି ଉଠିଲେ, "ସଫିକ୍? ସଫିକ୍ କଥା ପଚାରୁଛ? ବିଚରା! ... ସଫିକ୍ କଲେଜ୍ ବନ୍ଦ କରିବନି ବୋଲି ତା' ଅମ୍ମୀ ଆବ୍ବା ସାଙ୍ଗରେ ଯାଇ ନ ଥିଲା। ବଞ୍ଚିଗଲା ସେଥିପାଇଁ। ହେଲେ ପିଲାଟାର ମନର ଅବସ୍ଥା କ'ଣ ଥିବ ଏବେ? ଅତି ନରମ ମନର ପିଲାଟା। ସବୁବେଳେ ତା' ଅମ୍ମୀ ପାଖେ ପାଖେ ରହୁଥିଲା। ସବୁବେଳେ ତା' ସାନ ଭାଇ ଭଉଣୀଙ୍କୁ ମୁଣ୍ଡରେ ମୁଣ୍ଡାଇ ରଖୁଥିଲା। ଅଥଚ ... ଅଥଚ ଏବେ ତା'ର ପୂରା ପରିବାର ଯେ ହଜିଗଲା ସବୁ ଦିନପାଇଁ। ଓଃ, କାହିଁକି ଆଲ୍ଲାଙ୍କର ଏ ଅବିଚାର!"

ଏ ଶୋକର କୌଣସି ଉପଚାର ନାହିଁ। କାନ୍ଦି କାନ୍ଦି ଶୋକ ଭାରକୁ କେବଳ କମ୍ କରିବାକୁ ହେବ। ଶ୍ରଦ୍ଧା ସଲ୍‌ମାଙ୍କ ମୁଣ୍ଡକୁ ଆଉଁଶୁ ଆଉଁଶୁ ଦୁଇ ଝିଅଙ୍କ ପାଖରେ ସେଇଠି ବସିଗଲେ।

ସେ ରାତିଟା ଦୁଇ ପରିବାରର କେହି ଶୋଇ ପାରିଲେ ନାହିଁ। ଅନୁପମା ମଝିରେ ମଝିରେ ଝିମେଇ ପଡୁଥିଲା। କିନ୍ତୁ ଚାଚୀଙ୍କ ପାଖରୁ ଉଠିଯିବା କଥା ଜମା ଭାବି ପାରି ନ ଥିଲା ସେ।

ପାବ୍‌ନାରେ ପରଦିନ ସକାଳ ଆସିଲା ଭିନ୍ନ ରୂପରେ। ଚାରିଦିନ ଧରି ଲାଗି ରହିଥିବା ବର୍ଷାର କୌଣସି ଚିହ୍ନ ନ ଥିଲା। ପ୍ରବଳ ଉତ୍ସାହରେ ରାସ୍ତା ଘାଟରେ ଲୋକଙ୍କ ଯିବା ଆସିବା ଆରମ୍ଭ ହୋଇଗଲା। ପଙ୍ଗୁ ପ୍ରାୟ ହୋଇ ଯାଇଥିବା ସହରଟି ଝାଡ଼ିଝୁଡ଼ି ହୋଇ ଉଠିଲା।

କିନ୍ତୁ ଏସବୁର କୌଣସି ଚିହ୍ନ ନ ଥିଲା ଆବିଦ୍ ରହମାନ୍‌ଙ୍କ ଘରେ। ଜୀବନୀ ଶକ୍ତି ହଜିଯାଇଥିବା ଭଳି ବସି ରହିଥିଲେ ସମସ୍ତେ।

ଅର୍ଚ୍ଚନା ଘରୁ ଚାହା କରି ଆଣିଲା ସମସ୍ତଙ୍କ ପାଇଁ। ସେଇ ଚାହା ଟିକକ ପାଟିରେ ଦେବା କ୍ଷଣି ସଲ୍‌ମାଙ୍କ ଭିତରେ କ'ଣ ଯେମିତି ହୋଇଗଲା। ଭୂତ ଲାଗିବା ଭଳି ସେ ଉଠି ବସିଲେ। "ସଫିକ୍! ମୋ ସଫିକ୍ ଏକା ଏକା ପଡ଼ିଛି ନା ସେଠି? ନା, ମୁଁ ତାକୁ ମୋ ପାଖକୁ ନେଇ ଆସିବି।"

କେହି କିଛି କହିଲେ ନାହିଁ।

ସଲ୍‌ମା ଏଥର ଆଖି ବୁଲେଇ ବୁଲେଇ ସମସ୍ତଙ୍କୁ ଦେଖିଲେ। ତା'ପରେ ନିଜ ଦୃଷ୍ଟି ସ୍ଥିର ଭାବରେ ସ୍ୱାମୀ ଉପରେ ଥାପି ଦେଇ ବିକଳ ଭାବରେ କହିଲେ, ''ତୁମେ କିଛି କହୁନ କାହିଁକି? ସଫିକ୍‌କୁ ମୋ ପାଖକୁ ଆସିବାକୁ ଦେବନି?''

''ଏମିତି କାହିଁକି କହୁଛ, ସଲ୍‌ମା। ... ମନେରଖ, ଏବେଠୁଁ ସଫିକ୍ ଆମ ପୁଅ।'' ଆବିଦ୍ ରୁଦ୍ଧ ସ୍ୱରରେ ଉତ୍ତରଦେଲେ।

''ଆମ ପୁଅ??''

''ହଁ। ଆମ ପୁଅ।''

''ତାହେଲେ ... ତାହେଲେ ଆମ ପୁଅକୁ ଆମେ ନେଇ ଆସିବା। ଆମ ପାଖକୁ ନେଇ ଆସିବା। ତାକୁ ଏକା ରହିବାକୁ ଦେବାନି। ଜମା ଦେବାନି।'' ସଲ୍‌ମାଙ୍କ ଆଖିରେ ବ୍ୟାକୁଳତା।

''ହଁ, ସେଇଟା ହିଁ ଠିକ୍ ହେବ।'' ଆବିଦ୍ କହିଲେ।

''ଚାଲ ତୁମେ। ମୋତେ ବି' ଦିନ ପାଇଁ ହେଉ ପଛକେ ନେଇ ଯାଅ।...'' ସ୍ୱାମୀଙ୍କୁ ଭଙ୍ଗା ଭଙ୍ଗା ସ୍ୱରରେ କହିପକେଇଲେ ସଲ୍‌ମା।

''ଯିବ?''

''ହଁ। ମତେ ନେଇ ଯାଅ ମୋ ପୁଅ ପାଖକୁ।''

ଦଉଡ଼ିଆ ଖଟରୁ ଉଠି ଠିଆହେଲେ ଆବିଦ୍। ଗାମୁଛାରେ ମୁହଁଟା ପୋଛି ନେଇ କହିଲେ, ''ଯିବ ଯଦି ଚାଲ। ସାଙ୍ଗେ ସାଙ୍ଗେ ବାହାରି ପଡ଼। ଆଉ ଅଳ୍ପ ସମୟ ଭିତରେ ବସ୍‌ଟାଏ ଅଛି। ସକାଳ ବସ୍‌ରେ ଚାଲିଯିବା।''

ଟଳି ଟଳି ଉଠି ଠିଆ ହେଲେ ସଲ୍‌ମା। ନିଜକୁ ନିଜେ କହିବା ଭଳି ବିଡ଼ବିଡ଼ଉଥିଲେ, ''ମୁଁ ସଫିକ୍‌କୁ ଏଇଠିକି ନେଇ ଆସିବି। ଏଇଠି ପଢ଼େଇବି। ମୋର ବି' ପୁଅ ଥିଲେ। ଆଜିଠୁଁ ଜାଣିବି ମୋର ତିନି ପୁଅ।''

ଅଗଣାରୁ ଘର ଭିତରକୁ ଯାଉ ଯାଉ ଚମକି ରହିଗଲେ ସଲ୍‌ମା। ଚେତନା ଫେରି ଆସିଲା ବୋଧହୁଏ। ତାଙ୍କ ଚାରିପଟେ ଥିବା ସମସ୍ତଙ୍କର ମୁହଁକୁ ବିକଳ ଭାବରେ ଚାହିଁ ନେଇ ସେ ହଠାତ୍ କହି ଉଠିଲେ, ''ଯିବି କେମିତି? ଘରୁ ବାହାରି ଚାଲିଯିବି କେମିତି? ହାଏଦର୍‌ର ପରୀକ୍ଷା। ଜାହାଙ୍ଗୀର୍‌ର କଲେଜ। ... ୟା ଆଲ୍ଲା!'' ପୁଣି ଥରେ ଚଟାଣରେ ବସିଗଲେ ସେ।

''ତୁମେ ଯାଅ ଅମ୍ମା। ଆମେ କ'ଣ ଆଉ ଛୋଟ ପିଲା ହୋଇଛୁ? ଭାତ ଟିକିଏ ନିଜେ ନିଜେ କରି ପାରିବୁନି?''

ଶ୍ରଦ୍ଧା ମୁହଁ ଖୋଲିଲେ, ''ମୁଁ ତରକାରୀ ପତ୍ର ଦେଇ ଦେବି, ସଲ୍‌ମା। ସେମାନେ ଖାଲି ଭାତଟା କରି ନେଲେ ହେଲା। ତୁମେ ଆଉ ଚିନ୍ତା କରନି।''

''ତୁମ ଘରୁ ଆସିବ ତରକାରି?'' ସଲ୍‌ମା ଆଶ୍ଚର୍ଯ୍ୟରେ କହିଲେ। ''ତୁମେ ଦେବ? ହେଲେ...''

''ତୁମେ ଆଉ ଚିନ୍ତା କରନି ଚାଚୀ। ଯାଅ, ବସ୍ ଟାଇମ୍ ହୋଇଗଲାଣି। ଏବେ ଏଇ ବସ୍‌ରେ ନ ଗଲେ ସନ୍ଧ୍ୟା ପର୍ଯ୍ୟନ୍ତ ଆଉ ବସ୍ ନାହିଁ। ଯାଅ, ତୁମେ ସଫିକ୍‌କୁ ନେଇ ଆସ।'' ଅନିରୁଦ୍ଧ କହିଲା।

ସଲ୍‌ମା ଓ ଆବିଦ୍ ଚାଲିଗଲେ। କହିକରି ଗଲେ ଯେ ଦି' ଦିନ ଭିତରେ ଫେରି ଆସିବେ। କିନ୍ତୁ ଏତେ ବାଟ ଯାଇ କ'ଣ ଦୁଇ ଦିନ ଭିତରେ ଫେରି ହୁଏ? ଶ୍ରଦ୍ଧା ଜାଣିଥିଲେ ଯେ ସେମାନେ ଯାଇ ଫେରୁ ଫେରୁ ଚାରି ପାଞ୍ଚ ଦିନ ତ ହୋଇଯିବ। ଏଇ କେଇଟା ଦିନ ପିଲାଙ୍କ ଖାଇବା ଉପରେ ଟିକିଏ ଆଖି ରଖିବା କଥା। କ'ଣ ଏମିତି ବଡ଼ କଥା?

ଦୁଇ ପହରର ରୋଷେଇ ସାରି ଶ୍ରଦ୍ଧା ପତ୍ରଠୋଲାରେ ଡାଲି, ତରକାରୀ ବାଢ଼ି ରଖିଦେଲେ। ଅନୁପମା ସେସବୁ ନେଇଗଲା ହାଏଦର୍ ଓ ଜାହାଙ୍ଗୀର ପାଇଁ ଏବଂ ପର ମୁହୂର୍ତ୍ତରେ ହିଁ ଧଇଁ ସଇଁ ହୋଇ ଫେରି ଆସିଲା। ''ମା', ଓ ମା', ଜାହାଙ୍ଗୀର ଦାଦା କି ଅବସ୍ଥା କରିଛି ଦେଖିଲଣି?''

''କ'ଣ ହେଲା? କ'ଣ କରିଛି?'' ବ୍ୟସ୍ତ ଭାବରେ ପଚାରିଲେ ଶ୍ରଦ୍ଧା।

''ଭାତ ଗାଳିବାକୁ ଯାଇ ପାଦ ଉପରେ ଗରମ ପେଜ ପକେଇଛି। ପାଦରେ ଏତେ ବଡ଼ ଫୋଟକା। ... ରାନ୍ଧିବାର ତ ଅଭ୍ୟାସ ନାହିଁ ...''

ଶ୍ରଦ୍ଧା ଉଠି ଠିଆ ହେଲେ। ''ଚାଲିଲୁ। ମୁଁ ଟିକେ ଦେଖିଆସେ।''

ସତରେ ବେଶ୍ ବଡ଼ ଫୋଟକାଟାଏ ହୋଇଯାଇଥିଲା ଜାହାଙ୍ଗୀରର ପାଦରେ। ତେବେ ଘଟଣା ନିଶ୍ଚୟ ଆହୁରି ଗୁରୁତର ହୋଇଯାଇଥାଆନ୍ତା। ଠିକ୍ ସମୟରେ ପାଦଟା ଘୁଞ୍ଚେଇ ନେଇଥିଲା ବୋଲି ଗୋଟିଏ ଫୋଟକାରେ ବର୍ତ୍ତି ଯାଇଥିଲା ଜାହାଙ୍ଗୀର।

"ତୁମେ ବ୍ୟସ୍ତ ହୁଅନି, ବଡ଼ ମା'। କାଲିକୁ ଏଇଟା ଠିକ୍ ହୋଇଯିବ ଯେ।" ଜାହାଙ୍ଗୀର ମୁହଁରେ ଶୁଖିଲା ହସ ଫୁଟେଇ କହିଲା।

ଶ୍ରଦ୍ଧା ଚୁପ୍ ହେଇ କ'ଣ ଜାଣ ଭାବୁଥିଲେ। କିଛି ସମୟ ପରେ କହିଲେ, "ବହୁତ ହେଇଗଲା ତୁମର ଭାତ ରନ୍ଧା। ସଲ୍‌ମା ଆସିବା ଯାଏଁ ତୁମେ ଦି' ଭାଇ ଆସି ଦି' ବେଳା ଆମ ଘରେ ଖାଇ ଯିବ।"

"ମା' ?" ଅନୁପମା ଅବାକ।

"ବଡ଼ ମା' !" ଜାହାଙ୍ଗୀର ମଧ୍ୟ ଆଶ୍ଚର୍ଯ୍ୟ। "ଆମେ ଭାତ କେମିତି ଖାଇବୁ ତୁମ ଘରେ ?"

"କାହିଁକି, କ'ଣ ହୋଇ ଯିବ ଖାଇଲେ ? ଜାତି ଚାଲିଯିବ ? ଦି'ଟା ପିଲା ଗରମ ପେଟରେ ପୋଡ଼ି ହୋଇଯିବା ଅପେକ୍ଷା ବରଂ ମୋ ଜାତି ହିଁ ଯାଉ।" ବୁଲିପଡ଼ି ନିଜ ଘରକୁ ଫେରି ଯାଉ ଯାଉ ଶ୍ରଦ୍ଧା କହିଲେ, "ଆସ, ଖାଇଦେଇ ଯାଅ।"

ଅଳ୍ପ ସମୟ ପରେ ଜାହାଙ୍ଗୀର ଓ ହାଏଦର୍ ଆସିଲେ। କିନ୍ତୁ ସେମାନଙ୍କ ହାତରେ ଥିଲା ଗୋଟିଏ ଗୋଟିଏ ଥାଳି।

"ଯେ କ'ଣ ?" ଶ୍ରଦ୍ଧା ଆଶ୍ଚର୍ଯ୍ୟରେ ପଚାରିଲେ।

ମୁଣ୍ଡ ତଳକୁ ପୋତି ନେଲା ଜାହାଙ୍ଗୀର। "ବଡ଼ ମା', ଆମକୁ ଏଇଠି ବାହାର ବାରଣ୍ଡାରେ ନହେଲେ ଅଗଣାରେ ଖାଇବାକୁ ଦିଅ। ଆମେ ଆମ ଥାଳିରେ ଖାଇ ନେଇ ଚାଲିଯିବୁ। ତୁମେ ତା'ପରେ ଗୋବରପାଣିରେ ଜାଗାଟା ଧୋଇ ଦେବ।"

"ତୋ ମୁଣ୍ଡ ଖରାପ ହେଲାଣି କିରେ ଜାହାଙ୍ଗୀର ?" ଶ୍ରଦ୍ଧା ଚିଡ଼ି ଉଠିଲେ।

"ମନା କରନି, ବଡ଼ ମା'।" ଆଖି ଛଳ ଛଳ କରି ଜାହାଙ୍ଗୀର କହିଲା, "ତୁମେ ଯାହା କରୁଛ, ସେତକ କେତେ ବଡ଼ କଥା। ତା' ଉପରେ ପୁଣି ..."

ଶ୍ରଦ୍ଧା ଆଉ ଅଧିକ ବାଧ କଲେନି। ଏମିତି ଏକଘରିକିଆ ଭଳି ପିଲା ଦିଇଟାକୁ ଖାଇବାକୁ ଦେବାକୁ ତାଙ୍କୁ ଖରାପ ଲାଗୁଥିଲା। କିନ୍ତୁ କରିବେ କ'ଣ ? ସମାଜ ଭିତରେ ରହିଛନ୍ତି ଯେତେବେଳେ ଜାତି ଧର୍ମ ତ ମାନି ଚଳିବାକୁ ହେବ।

ପାଞ୍ଚ ଦିନ ପରେ ଆବିଦ୍ ଓ ସଲ୍‌ମା ଫେରି ଆସିଲେ। ଏକା ନୁହଁ,

ସେମାନଙ୍କ ସାଙ୍ଗରେ ଥିଲା ରେଣୁମାର ବଡ଼ପୁଅ ସଫିକ୍। ହାତରେ ଛୋଟ ବାକ୍ସଟିଏ ଧରି ତଳକୁ ମୁହଁ ପୋତି ପୋତି ଚାଲୁଥିଲା ପିଲାଟି।

"ସଫିକ୍ ଭାଇ!!" ଘର ଭିତରୁ ଧାଇଁ ଆସି ତାକୁ ଜାବୁଡ଼ି ଧରିଲା ଜାହାଙ୍ଗୀର। ସଫିକ୍ ନୂଆ ସ୍ୱରଟିଏ ଶୁଣିବା ଭଳି ସାମାନ୍ୟ ଆଶ୍ଚର୍ଯ୍ୟରେ ମୁହଁ ଉପରକୁ ଉଠାଇଲା ଏବଂ ପର ମୁହୂର୍ତ୍ତରେ ଯେମିତି ବିଗତ ସବୁ ଘଟଣା ମାଡ଼ି ବସିଲା ତାକୁ। ବାକ୍ସଟିକୁ ସେଇଠି ରାସ୍ତା ଉପରେ ରଖିଦେଇ ଜାହାଙ୍ଗୀର କାନ୍ଧରେ ମୁଣ୍ଡ ରଖି ବିକଳ ହୋଇ କାନ୍ଦି ଉଠିଲା ସଫିକ୍।

ଆହାରେ! ନିଜ ଘର ବାରଣ୍ଡାରୁ ଦୃଶ୍ୟଟି ଦେଖୁ ଦେଖୁ ଶ୍ରଦ୍ଧା, ଅନିରୁଦ୍ଧ, ଅର୍ଚ୍ଚନା, ଅନୁପମା - କେହି ନିଜକୁ ସମ୍ଭାଳି ପାରିଲେ ନାହିଁ। ଏମିତି ଦୁଃଖ ଭୋଗିବା ପୁଣି ମଣିଷ ଭାଗ୍ୟରେ ଥାଏ!

"ଚାଲ୍ ବାବା, ଘର ଭିତରକୁ ଚାଲ୍।" ଆବିଦ୍ ପୁତୁରା ପିଠିରେ ହାତ ଦେଇ ତାକୁ ଘର ଭିତରକୁ ନେଇଗଲେ।

ଅନ୍ୟ ସମସ୍ତେ ବି ଘର ଭିତରକୁ ଯାଇସାରିଲେଣି। କିନ୍ତୁ ଶ୍ରଦ୍ଧାଙ୍କର ପାଦ ଚଳୁନି। ସେ ସେଇଠି ବାରଣ୍ଡା ଉପରେ ବସିଗଲେ କିଛି ସମୟ ପାଇଁ। ରେଣୁମାର ପୁଅଟି ପାଇଁ ମନ ଖାଲି ଗୋଳେଇ ହୋଇଯାଉଛି ତାଙ୍କର। ଆଗରୁ କେବେ ଦେଖି ନ ଥିଲେ ତାକୁ। ଅଥଚ ମନେ ହେଉଛି ଯୁଗ ଯୁଗର ଆପଣାର। ବାତ୍ସଲ୍ୟର ଧାରାଟିଏ ଦ୍ରବୀଭୂତ କରି ଦେଉଛି ମନ ଭିତରକୁ।

ସଫିକ୍‌ର ବୟସ ଊଣେଇଶ। ସଲ୍‌ମାଠୁଁ ସେ ଶୁଣିଥିଲେ ଯେ ତାଙ୍କ ଅମରେଶଠୁଁ ସଫିକ୍ ମାତ୍ର ତିନି ମାସ ବଡ଼। ଅମରେଶ ଯଦି ଘର ଛାଡ଼ି ଯାଇ ନ ଥାଆନ୍ତା, ତେବେ ବୋଧହୁଏ ଏକା କ୍ଲାସ୍‌ରେ ପଢ଼ିଥାଆନ୍ତେ ସେ ଦୁହେଁ। ଏକା ବର୍ଷେ ମ୍ୟାଟ୍ରିକ୍ ପାସ୍ କରି ଥାଆନ୍ତେ। କିନ୍ତୁ ଅମୁ ଭାଗ୍ୟରେ ତ ସେସବୁ ନାହିଁ, କରିବ କ'ଣ ସେ?

ଏବେ ସଫିକ୍ ବି.ଏ. ପଢ଼େ। ବଙ୍ଗଳା ସାହିତ୍ୟ ନେଇ। ପଢ଼ାପଢ଼ି ଭଲ କରେ ବୋଲି ଶୁଣିଥିଲେ ସେ। ହେଲେ ଏତେ ବଡ଼ ଆଘାତ ପାଇବା ପରେ ସେ କ'ଣ ନିଜ ମନକୁ ନିୟନ୍ତ୍ରଣରେ ରଖି ପାଠରେ ମନ ଲଗାଇ ପାରିବ? ଅମରେଶ ଯେମିତି ବାପା ଚାଲିଯିବାର ଶୋକ ସହି ନ ପାରି ଘର ଛାଡ଼ି ପଳେଇଲା, ସେଇମିତି କିଛି କରି ବସିବନି ତ ସେ?

ନା, ନା। ଅଯଥା କାହିଁକି ଶ୍ରଦ୍ଧା ବାଙ୍କେ କଥା ଭାବୁଛନ୍ତି। ତାଙ୍କ ଅମ୍ମୁ ଏମିତି କଲା ବୋଲି ଜଗତଟା ଯାକ ସେଇମିତି କରିବେ ନା କ'ଣ। ପିଲାଟାକୁ ଭଲ ବାଟ ଦେଖାନ୍ତୁ ଠାକୁର। ଭଲରେ ଭଲରେ ବି.ଏ. ପାସ୍ କରି ଚାକିରି ବାକିରିରେ ଲାଗିଯାଉ ସେ। ତା' ଜୀବନ ପୁଣି ଥରେ ସଜାଡ଼ି ହୋଇଯାଉ।

ମନେ ମନେ ଆଶୀର୍ବାଦ କରିଲେ ସେ ସଫିକ୍‌କୁ।

କଚେରିରୁ ଫେରି କ୍ଳାନ୍ତ ଭାବରେ ବିଛଣାରେ ଗଡ଼ି ପଡ଼ିଲେ ଆବିଦ୍। ଆଃ, କି ଆରାମ! କାହିଁ କେତେ ଯୁଗ ପରେ ଏଭଳି ସୁଖର ମୁହଁ ଦେଖିବାକୁ ପାଇଛନ୍ତି ସେ। ନହେଲେ ସେ ଆଉ ବିଶ୍ରାମ!

ଦୁଇ ହାତ ମୁଣ୍ଡ ଉପରକୁ ଟେକି ସେ ଆଉଥରେ ଭିଡ଼ିମୋଡ଼ି ହେଲେ। ବାଁ କଡ଼ ମାଡ଼ି ଟିକିଏ ଶୋଇ ପଡ଼ିଲେ ହୁଅନ୍ତା। ସଲ୍‌ମା ଚାହା ଆଣୁ ଆଣୁ ଦେହଟାକୁ ଟିକିଏ ବିଶ୍ରାମ ଦେଲେ କ୍ଷତି କ'ଣ? ଆଖି ବନ୍ଦ କଲେ ସେ। ଆହାହା! ଆଉ ଥରେ ଏକ ଅଦ୍ଭୁତ ପ୍ରଶାନ୍ତି ଖେଳିଗଲା ତାଙ୍କ ଦେହ ମନରେ। ପଚାଶ ବର୍ଷ ବୟସରେ ଯାଇ ଏଇଭଳି ଆରାମ କରିବାର ସୁଯୋଗ ମିଳିଲା। ସବୁ ସେଇ ସଫିକ୍ ପାଇଁ। ନହେଲେ ସେ ଆଉ ଏଭଳି ସ୍ୱାଚ୍ଛନ୍ଦ୍ୟ!

ନିହାତି ଗରିବ ଘରର ପିଲା ଆବିଦ୍। ଜ୍ଞାନ ହେବା ଦିନଠାରୁ କେବଳ ଅଭାବ ହିଁ ଦେଖି ଆସିଥିଲେ ସେ। ବିରାଟ ପରିବାର। ଗୁଡ଼ାଏ ଭାଇ ଭଉଣୀ। ଆଉ ରୋଜଗାର କରିବାକୁ ଏକା ତାଙ୍କର ଆବ୍ବା। ଘରେ ଗାଈ ଦିଇଟା ଥିଲେ। ଭଲ କ୍ଷୀର ଦେଉଥିଲେ। ସେଇ କ୍ଷୀରରୁ ସର କାଢ଼ି ଶୀତ ଦିନେ ସେ ଗୁଆଘିଅ ବିକ୍ରି କରୁଥିଲେ ସହରରେ। ଆଉ ସେଇ କ୍ଷୀରରେ ଦହି ପକେଇ ଚହ୍ଲା ବିକ୍ରି କରୁଥିଲେ ଖରାଦିନେ। ଏହାଛଡ଼ା ଲାଗୁଆ କ୍ଷୀର ନେଉଥିଲେ କେଇ ଜଣ। ଏଇଥିରୁ କେତେ ବା ଆୟ। କୌଣସି ମତେ ଅଧା ପେଟ ଖାଇ ଅଧା ଦିନ ପେଟରେ ଓଦା କନା ପକେଇ ଚଳି ଯାଉଥିଲେ ସେମାନେ।

ବଡ଼ ହେବା ପରେ ଆବିଦ୍ ଦିନା କେତେ ସ୍କୁଲ୍ ଯିବା ଆରମ୍ଭ କରିଥିଲେ। ଘରର ବଡ଼ ପୁଅ। ତେଣୁ ଆବ୍ବା ବହୁତ ସଉକରେ ପୁଅକୁ ସ୍କୁଲ୍‌କୁ ପଠେଇ ଦେଇଥିଲେ। ଅଧିକାଂଶ ବାପଙ୍କ ଭଳି ତାଙ୍କର ମଧ୍ୟ କିଛି କିଛି ସ୍ୱପ୍ନ ଥିଲା। ପୁଅ ପାଠ ପଢ଼ିବ। ହାକିମ ହେବ। ଘରର ଦୁଃଖ ଘୁଞ୍ଚିବ। କିନ୍ତୁ ଥରେ ଅଭାବର ଭଉଁରୀ ଭିତରେ ପଡ଼ିଗଲେ ସହଜେ କି ସେଠୁ ଉଠି ଆସି ହୁଏ ? ଖୁବ୍ ଶୀଘ୍ର ଆବିଦ୍‌ଙ୍କ ଆବ୍ବା ଜାଣିଯାଇଥିଲେ ଯେ ପୁଅକୁ ପାଠ ପଢ଼ାଇବାର ସ୍ୱପ୍ନ ଦେଖିବା ତାଙ୍କ ଭଳି ଲୋକକୁ ଶୋଭା ପାଏ ନାହିଁ। ସେ ପୁଅକୁ ସ୍କୁଲ୍‌ରୁ ଉଠେଇ ଆଣିବା କଥା ଭାବିବାକୁ ଆରମ୍ଭ କରିଦେଲେ।

କିନ୍ତୁ ସ୍କୁଲ୍‌ରେ କଟେଇଥିବା କେଇଟା ମାସ ଭିତରେ ଯେ ଆବିଦ୍‌ଙ୍କର ସତ୍ୟପ୍ରିୟ ସାଙ୍ଗରେ ଘନିଷ୍ଠ ବନ୍ଧୁତ୍ୱ ହେଇ ଯାଇ ସାରିଥିଲା, ତା' ଆଉ ଜାଣି ନ ଥିଲେ ଆବିଦ୍‌ଙ୍କ ଆବ୍ବା।

ଆବିଦ୍‌ଙ୍କର ସ୍କୁଲ୍‌ରୁ ନାଁ କଟା ସରିବା ପରେ ମଧ୍ୟ ତାଙ୍କୁ ବେଳେବେଳେ ବହି ଧରି ବସିବାର ଦେଖାଯାଉଥିଲା। ପଚାରିଲେ ସେ କହୁଥିଲେ ଯେ ଏସବୁ ସତ୍ୟପ୍ରିୟର ବହି। ସେ ପଢ଼ିବା ପାଇଁ ଧାର ଆଣିଛନ୍ତି। ଏଣେ ସତ୍ୟପ୍ରିୟ ସେସବୁ ବହି ଫେରାଇ ନେବାର ନାଁ ହିଁ ଧରୁ ନ ଥିଲେ। ଆବିଦ୍ ପଚାରିଲେ ଉତ୍ତର ଦେଉଥିଲେ, ''ଥାଉ ସେ ବହିଗୁଡ଼ାକ ତୋ ପାଖରେ। ମୁଁ ଆଉ ଗୋଟିଏ ଗୋଟିଏ କିଣି ସାରିଲିଣି।''

ସତ୍ୟପ୍ରିୟ ଯେଉଁ ବର୍ଷ ସ୍କୁଲ୍‌ରୁ ମ୍ୟାଟ୍ରିକ୍ ପରୀକ୍ଷା ଦେଲେ, ସେଇ ବର୍ଷ ଘରୋଇ ଭାବରେ ମ୍ୟାଟ୍ରିକ୍ ପରୀକ୍ଷା ଦେଲେ ଆବିଦ୍। ପରୀକ୍ଷାର ଫିସ୍‌ଟା ମଧ୍ୟ ଲୁଚେଇ କରି ଦେଇ ଦେଇଥିଲେ ସତ୍ୟପ୍ରିୟ।

ଅତି ଭଲ ନମ୍ବର ରଖି ମ୍ୟାଟ୍ରିକ୍ ପାସ କରିବା ପରେ ସତ୍ୟପ୍ରିୟ କଲେଜରେ ପଢ଼ିବାକୁ ସହରକୁ ଚାଲିଗଲେ। କିନ୍ତୁ ଆବିଦ୍ ଆଉ ଅଧିକ ପଢ଼ିବାର ଆଶା ରଖିପାରିଲେ ନାହିଁ। କଲେଜ ପଢ଼ିବା କ'ଣ ଖେଳଘର କଥା ନା କ'ଣ! ସେ ତାଙ୍କ ଆବ୍ବାଙ୍କ ଘିଅ, ଦହି ବ୍ୟବସାୟରେ ନିଜକୁ ଲଗେଇ ଦେଲେ। କିନ୍ତୁ ତାଙ୍କୁ ଭୁଲି ଯାଇ ନ ଥିଲେ ସତ୍ୟପ୍ରିୟ। ପାବନା ଆସି ଓକିଲାତି ଆରମ୍ଭ କରିବା ବେଳେ ସେ ପିଲା ଦିନର ବନ୍ଧୁ ଆବିଦ୍‌କୁ ପାଖକୁ ନେଇ ଆସିଥିଲେ ଏବଂ ନିଜେ ଚେଷ୍ଟା କରି ମୋହରିର କରେଇ ଦେଇଥିଲେ।

କେତେ ବା ଆୟ ମୋହରିରଟିଏର। କିନ୍ତୁ ଗାଁରେ ରହି ଅଧା ପେଟିଆ ଭାବରେ ଦିନ କଟେଇବା ଅପେକ୍ଷା ତ ଢେର ଭଲ। ଅନ୍ତତଃ ପେଟରେ ଓଦା କନା ପକେଇ ଶୋଇବାକୁ ହୁଏ ନାହିଁ। କିଛି ନ ହେଲେ ଦୁଇ ବେଳା ମାଛ ଝୋଳ, ଭାତ ମିଳିଯାଏ ଖାଇବାକୁ। ତାଙ୍କ ଭଳି ଲୋକ ପାଇଁ ସେତିକି କମ୍ କ'ଣ ହେଲା? ତା'ଛଡ଼ା ଦୁଇ ପିଲାଙ୍କ ପଢ଼ା ଖର୍ଚ୍ଚଟା ମଧ୍ୟ ଉଠିଯାଏ। ଅବଶ୍ୟ ସେଥିପାଇଁ ଟିକିଏ ଅଧିକା ପରିଶ୍ରମ କରିବାକୁ ପଡ଼େ।

ଉହୁଁ। ସାଙ୍ଗେ ସାଙ୍ଗେ ନିଜ ଭାବନାକୁ ସଂଶୋଧିତ କରି ଦେଲେ ଆବିଦ୍। ପରିଶ୍ରମ କରିବାକୁ ପଡ଼େ ନୁହଁ, ପରିଶ୍ରମ ହିଁ କରିବାକୁ ପଡୁଥିଲା। ସଫିକ୍ ଆସିବା ପରଠାରୁ ବିଶ୍ରାମ ନେବା ତାଙ୍କ ପାଇଁ ଯେ ସ୍ୱପ୍ନ ହୋଇ ସାରିଛି।

ସଫିକ୍ ଏବେ ବି କଲେଜରେ ପଢ଼େ। ତାକୁ ଯେତେବେଳେ ପାଖକୁ ଆଣିଲେ ଆବିଦ୍, ସେତେବେଳେ ସେ ପ୍ରସ୍ତୁତ ହୋଇ ଯାଇଥିଲେ ଆଉ ଟିକିଏ ଅଧିକ ପରିଶ୍ରମ କରିବାକୁ। ଘର ଭିତରେ ଜଣେ ସଦସ୍ୟ ଅଧିକା ହେଲା। ପୁଣି ଯେଉଁଠି ତାଙ୍କରି ପିଲା ଦିଇଟା ପାଠ ପଢ଼ୁଛନ୍ତି, ସେଠି ସଫିକ୍ କ'ଣ ପଢ଼ା ଛାଡ଼ି ଦେଇ ଘରେ ବସିଯିବ ନା କ'ଣ। ପୁଣି ତା' ଭଳି ବୁଦ୍ଧିଆ ପିଲା। ଏଭଳି ପରିସ୍ଥିତିରେ ତାଙ୍କ ଜାଗାରେ ଯିଏ ବା ଥାଆନ୍ତା, ସେ ସଫିକ୍‌କୁ ପାଖକୁ ଆଣି ନିଜର ବୋଝ ବଢ଼ାଇବାକୁ ଚାହିଁ ନ ଥାଆନ୍ତା। କିନ୍ତୁ ଆବିଦ୍‌ଙ୍କ ମନରେ ସାମାନ୍ୟତମ କୁଣ୍ଠା ନ ଥିଲା। ସେ ମନେ ମନେ ଭାବି ନେଇ ଥିଲେ ଯେ ସଫିକ୍‌କୁ ପାଖକୁ ଆଣିବା ପରେ ତା'ର ପଢ଼ା ସେ ଆଦୌ ବନ୍ଦ କରିବେ ନାହିଁ। ଯେତେ କଷ୍ଟ ହେଉ ପଛକେ। ଯେମିତି ତାଙ୍କର ପୁଅ ଦି'ଜଣ ବଢ଼ୁଛନ୍ତି, ଠିକ୍ ସେଇମିତି ବଢ଼ିବ ସଫିକ୍।

କିନ୍ତୁ ତାଙ୍କର ଜୀବନ ବଦଳେଇ ଦେଲା ସଫିକ୍। କଲେଜ୍ ଯିବା ଆଗରୁ ଆଉ କଲେଜରୁ ଫେରିବା ପରେ ସେ କେତେଟା ଟିଉସନ୍ ଧରି ନେଲା। ସେଥିରୁ ରୋଜଗାର ମନ୍ଦ ହେଉ ନ ଥିଲା। କିନ୍ତୁ ଶତ କହିବା ସତ୍ତ୍ୱେ ସେସବୁ ଟଙ୍କା ନିଜ ଖର୍ଚ୍ଚରେ ଲଗାଉ ନ ଥିଲା ସେ। ସବୁତକ ଆଣି ଧରେଇ ଦେଉଥିଲା ତା' ମାଉସୀ ହାତରେ। ବେଶୀ ବାଧବାଧକତା କଲେ କହୁଥିଲା, ''ଥାଉ ଏବେ ଏଗୁଡ଼ାକ ତୁମ ପାଖରେ। ଦରକାର ପଡ଼ିଲେ ମାଗି ନେବିନି?'' କିନ୍ତୁ ସେଭଳି ଦରକାର ତା'ର କେବେ ପଡୁ ନ ଥିଲା।

ଖାଲି ସେତିକି ନୁହଁ, ସଫିକ୍ ମଝିରେ ଥରେ ତା' ଗାଁକୁ ଯାଇ ସେଠି ତା' ବାପାଙ୍କର ଯାହା ଜମିଜମା ଥିଲା, ସେସବୁ ଭାଗରେ ଲଗେଇ ଦେଇ ଆୟତକ ଆବିଦ୍‌ଙ୍କ ପାଖକୁ ଆସିବାର ବ୍ୟବସ୍ଥା କରି ଦେଲା। ଆବିଦ୍ ବା ସଲ୍‌ମା ଏତେ ଦୂର ଭାବିପାରି ନ ଥିଲେ। ସେମାନେ ଯେଉଁ ପିଲାଟି ପାଇଁ ଅଧିକା କଷ୍ଟ କରିବାକୁ ପ୍ରସ୍ତୁତ ହୋଇ ଯାଇଥିଲେ, ସେଇ ପିଲା ହିଁ ସେମାନଙ୍କର ଅଭାବୀ ଜୀବନରେ ସୁଖର ମୁହଁ ଦେଖାଇ ଦେଲା।

ଅଦ୍ଭୁତ ଏକ ସ୍ନେହ ଆସି ଆବିଦ୍‌ଙ୍କ ଦେହ ହାତକୁ ପୁଲକିତ କରିଦେଲା। ଆଲ୍ଲା ସୁଖରେ ରଖନ୍ତୁ ସଫିକ୍‌କୁ। ତା' ମନରୁ ସବୁ ଯନ୍ତ୍ରଣା, ସବୁ ଶୋକ ପୋଛି ଦିଅନ୍ତୁ।

ମନ ଭରି ଆଶୀର୍ବାଦ କରିଗଲେ ସେ ରେଶମାର ବଡ଼ ପୁଅକୁ।

ଦିନ ଗଡ଼ି ଯାଉଥିଲା। ସପ୍ତାହ, ମାସ ହୋଇ ସଫିକ୍ ଆସିବାର ବର୍ଷଟିଏ କଟି ଯାଇ ସାରିଲାଣି ଏହା ଭିତରେ।

ରେଶ୍‌ମାର ବଡ଼ ପୁଅଟିକୁ ବେଳେ ବେଳେ ବିଭିନ୍ନ ସମୟରେ ଚୁପ୍ ହୋଇ ଲକ୍ଷ୍ୟ କରନ୍ତି ଶ୍ରଦ୍ଧା ଏବଂ ଛାତି ଭରି ଆସେ ତାଙ୍କର। ସଫିକ୍ ପିଲାଟି ହିଁ ସେଇମିତି। କି ଯାଦୁ ଅଛି କେଜାଣି ତା' ଆଖିରେ, ଦେଖିଦେଲେ ଟିକିଏ ଗେହ୍ଲା କରିଦେବାକୁ ଇଚ୍ଛା ହୁଏ। ତା' ରଙ୍ଗ ମଇଳା। ଲମ୍ବା ଛୋଟ। ତାଙ୍କ ଅମରେଶ ଭଳି ଗୋରା ତକତକ ଡେଙ୍ଗା ଚେହେରା ନୁହଁ।

ସେମିତି ଦେଖିଲେ, ବୟସ୍‌କୁ ଛାଡ଼ି ଦେଲେ ଦୁହିଙ୍କ ଭିତରେ ଆଉ କିଛିର ସାମଞ୍ଜସ୍ୟ ନ ଥିଲା। ସଫିକ୍‌କୁ ଯେତେ ବେଶୀ ଦେଖୁଥିଲେ ଶ୍ରଦ୍ଧା, ଏ ବିଷୟରେ ସେତେ ବେଶୀ ଜାଣି ପାରୁଥିଲେ। ଗୋଟିଏ ପଟେ ତାଙ୍କ ପେଟରୁ ବାହାରିଥିବା ଅମରେଶ, ଯିଏ କି ବାପାଙ୍କ ମୃତ୍ୟୁର ଶୋକ ସହି ନ ପାରି ପୂରାପୂରି ଭୁଲ ରାସ୍ତାରେ ଯିବା ପାଇଁ ପ୍ରସ୍ତୁତ ହୋଇ ଯାଇଥିଲା। ଭାଗ୍ୟ ଭଲ ଯେ ତା' ମାମୁ ତାକୁ କୌଣସିମତେ ବାଟରେ ପକାଇ ଦେଲା। ହେଲେ ସେଇଟା ପୁଣି କି ଜୀବନ!

ଅନ୍ୟ ପଟେ ଏଇ ସଫିକ୍। ହଠାତ୍ କରି ପୂରା ପରିବାରକୁ ହରେଇଲା ସେ। ସବୁ ଚାଲିଗଲା ତା'ର। ତା' ଜୀବନଟା ହିଁ ବଦଳିଗଲା। ପ୍ରାସାଦରୁ

ଓହ୍ଲେଇ ଆସିବାକୁ ହେଲା ପଡ୍ର କୁଡ଼ିଆକୁ। ଅଥଚ କେତେ ସହଜରେ ସେ ବିଧିର ବିଧାନକୁ ଗ୍ରହଣ କରିନେଲା ! କେତେ ସହଜରେ ତା' ମଉସା ମାଉସୀଙ୍କ ଦୁଃଖୀ ପରିବାରରେ ମିଶିଗଲା ! ଶ୍ରଦ୍ଧା ଦୀର୍ଘ ନିଶ୍ୱାସ ନିଅନ୍ତି।

ଶ୍ରଦ୍ଧାଙ୍କ ଭଳି ପାଡ୍‌ନାରେ ଆହୁରି ଅନେକ ସଫିକ୍ କଥା ଭାବି ମନ ଖରାପ କରନ୍ତି। ଆଖି ଛଳଛଳ କରନ୍ତି। ହେଲେ ସେମାନଙ୍କର 'ଆହା ଭାବ'ର ଦୀର୍ଘଶ୍ୱାସ ସଫିକ୍ ନିକଟରେ ପହଞ୍ଚୁଥିଲା କି ନାହିଁ କିଏ ଜାଣେ।

ଆବିଦ୍ ବେଳେବେଳେ ଏକଥା ଭାବି ଦୁଅନ୍ତି। ମନେ ମନେ ବ୍ୟସ୍ତ ହୁଅନ୍ତି। କିନ୍ତୁ ପୁଣି ପର ମୁହୂର୍ତ୍ତରେ ସେ ନିଜକୁ ନିଜେ ବୁଝେଇ ଦିଅନ୍ତି। ସଫିକ୍ ଦୁର୍ବଳ ନୁହଁ। ସତ୍ୟର ସାମ୍ନା କରିବାର ଶକ୍ତି ଆଲ୍ଲା ତାକୁ ଦେଇଛନ୍ତି। ସେ କେବେହେଲେ ଭାଙ୍ଗି ପଡ଼ିବ ନାହିଁ। କେବେ ହେଲେ ନୁହଁ।

ସେଦିନ କଚେରିରୁ ଫେରି ଖଟ ଉପରେ ଗଡ଼ୁ ଗଡ଼ୁ ଏଇମିତି କେତେ କଥା ଭାବି ହେଉଥିଲେ ଆବିଦ୍। ଭାବନା ରାଜ୍ୟରେ ଘୂରୁ ଘୂରୁ ଆଖି ଦିଇଟା ଲାଗି ଆସିଥିଲା ବୋଧହୁଏ।

''ଚାହା ନିଅ।'' ସଲମା ବାମ ଉଠା ଚାହା ଗିଲାସେ ଧରି ଡାକିଦେଲେ ଆବିଦ୍‌ଙ୍କୁ।

ଏବଂ ଠିକ୍ ସେତିକି ବେଳେ ଧଇଁସଇଁ ଭାବ୍ୱରେ ଘର ଭିତରକୁ ପଶି ଆସିଲା ଅନୁପମା। ହାତରେ ବଡ଼ ବାଟିଟାଏ। ''ଏଇଟା ଧରିଲ ଚାଚୀ। ମୋର ତେଣେ ହଜାରେ କାମ ପଡ଼ିଛି।'' ଜଣେ ବଡ଼ ଗୃହିଣୀ ଭଳି ସେ କହି ପକେଇଲା।

ଚଉଦ ବର୍ଷର ଝିଅଟିର କଥା ଶୁଣି ହସି ପକେଇଲେ ସଲମା। ତା' ହାତରୁ ବାଟିଟା ନେଉ ନେଉ ପଚାରିଲେ, ''କିରେ, କ'ଣ ଏଇଟା ?''

''ଆଜି ଦିଦିର ଜନ୍ମଦିନ ତ। ମା' ପାଏସ୍ କରିଥିଲେ।''

''ଓ, ଅର୍ଚ୍ଚନାର ଜନ୍ମଦିନ ଆଜି! ବାଃ, ବେଶ୍ ଭଲ କଥା। ମା'ଙ୍କୁ କହିଦେବୁ ମୁଁ ଆସିବି ଆଉ ଟିକିଏ ପରେ।''

''ଆଚ୍ଛା, ମୁଁ ଯାଉଛି।'' ଯେଉଁ ଭଳି ଭାବରେ ଛୁଟି ଆସିଥିଲା ଅନୁପମା, ସେଇଭଳି ଭାବରେ ଧାଇଁ ବାହାରି ଗଲା। ବାହାରି ଯାଉ ଯାଉ କ'ଣ ଯେମିତି ମନେ ପଡ଼ିଗଲା ତା'ର। ଫେରି ଆସି ପଚାରିଲା, ''ସଫିକ୍ ଦାଦା ନାହାନ୍ତି କି ଚାଚୀ ?''

''ନା, ନାହିଁ। ବାହାରକୁ ଯାଇଛି। କାହିଁକି, କ'ଣ ହେଲା ?''

''ଦେଖ ନା ସଫିକ୍ ଦାଦାଙ୍କୁ !'' ନାଲିସ୍‌ର ସ୍ୱରରେ ଅନୁପମା କହି ପକେଇଲା, ''ମୋତେ ତିନି ଦିନ ହେଲାଣି ଶରତ ଚନ୍ଦ୍ରଙ୍କ 'ଦତ୍ତା' ବହିଟା ଦେବେ ବୋଲି କହିଛନ୍ତି, ଅଥଚ ଦେଉ ନାହାନ୍ତି। ଆଉ ମୁଁ ଯେତେବେଳେ ଆସୁଛି, ସେ ବାହାରେ।''

''ଓ, ଏଇ କଥା। ଆଚ୍ଛା, ସେ ଆସୁ ମୁଁ ତାକୁ କହିବି ବହିଟା ଯାଇ ତତେ ଦେଇ ଆସିବ।''

''ଠିକ୍ ତ ?''

''ହଁ ରେ ବାବା, କେତେ ଆଉ ପଚାରିବୁ ?''

''ଦେଖ, ତୁମେ ଯଦି ଅଗଣାର ପାଚିରି ଯେଉଁ ଭାଙ୍ଗି ଯାଇଥିଲା, ସେଇଟା ସଜାଡ଼ି ଦେଇ ନ ଥାଆନ୍ତ, ତା'ହେଲେ ଏତେ ସରି ହେବାକୁ ହେଉ ନ ଥାଆନ୍ତା। କେତେ ସୁନ୍ଦର ପାଏସ୍ ସେଇ ବାଟେ ଆସି ପାରନ୍ତା। ବହି ବି ଏ ପାଖରୁ ଆରାମରେ ଯାଇ ପାରନ୍ତା।'' ଦୌଡ଼ି ଦୌଡ଼ି ଚାଲିଗଲା ସେ।

କିଛି ନ କହି ସ୍ୱାମୀଙ୍କ ମୁହଁକୁ ଚାହିଁ ସଲ୍‌ମା ଟିକିଏ ହସି ଦେଲେ। ବଡ଼ ହସଖୁସିଆ ଝିଅଟି। ଦେଖି ଦେଲେ ମନ ଖୁସୀ ହେଇଯାଏ। ''ଅନିର କଥା ଶୁଣିଲ !''

''ହଁ, ବଡ଼ ସରଳ ଝିଅଟା। ମନରେ କିଛି ନାହିଁ।''

''ଶ୍ରଦ୍ଧା ଦିଦିଙ୍କର ଦିଇଟା ଯାକ ଝିଅ ଏକା ଭଳି। ଯାହା ଘରକୁ ଯିବେ, ଉଜ୍ଜ୍ୱଳ କରିଦେବେ ତା' ଘର।'' ଚାହା କପ୍‌ଟି ନେଇ ରୋଷେଇ ଘରକୁ ଯାଉ ଯାଉ ସଲ୍‌ମା କହିଲେ।

ସଫିକ୍ ଘରକୁ ଆସୁ ଆସୁ ଛଅଟା ବାଜି ଯାଇଥିଲା।

''ଆସିଲୁଣି କିରେ ବାବା ସଫିକ୍? ଅନି ଆସିଥିଲା ଆଉ ଟିକିଏ ଆଗରୁ। କ'ଣ ବହି ନେବା ପାଇଁ।''

''ଓହୋ, ମୁଁ ତ ଏକଦମ୍ ଭୁଲି ଯାଇଥିଲି ସେ ବହି କଥା। ମାଉସୀ, ତୁମେ ଏବେ ଯିବକି ତାଙ୍କ ଘରକୁ ? ତାହେଲେ ଦେଇ ଦିଅନ୍ତ।''

''ମୁଁ ତ ଏଇମାତ୍ର ଫେରିଲି ରେ। ଅର୍ଚ୍ଚନାଟାର ଜନ୍ମଦିନ ଯେ ତାକୁ

ଟିକିଏ ଆଶୀର୍ବାଦ କରିଦେଇ ଆସିଲି। ଏବେ ତ ରୋଷେଇ ଆରମ୍ଭ କରିଛି, ଯିବି କେମିତି ? ତୁ ଯାଉନୁ ଦେଇ ଆସିବୁ।''

''ମୁଁ ?...'' ସାମାନ୍ୟ ଇତସ୍ତତଃ ଭାବରେ ସଫିକ୍ କହିଲା, ''ମୁଁ କେବେ ଯାଇନି ତ ଘର ଭିତରକୁ। ସେଥିପାଇଁ...''

''ଆରେ ସେମାନେ ତ ଆମର ଅତି ନିଜର। ଆଗରୁ କେବେ ଯାଇନୁ ତ କ'ଣ ହେଲା ?''

''ଆଚ୍ଛା।'' ବହି ଥାକରୁ ବହିଟା କାଢ଼ି ନେଇ ସଫିକ୍ ବାହାରିଗଲା।

ବାହାରେ ଛାଇ ଆଲୁଅର ଖେଳ ଚାଲିଛି। ଦୂରରୁ କେଉଁଠୁ ଭାସି ଆସୁଛି କୋଉ ଗାଇଆଳର ମିଠା ବଂଶୀତାନ। ସଫିକ୍‌ର ମନ କେଜାଣି କାହିଁକି ପ୍ରଫୁଲ୍ଲିତ ହୋଇଗଲା। ନିଜ ଘର ବାରଣ୍ଡାରୁ ଓହ୍ଲେଇ ଶ୍ରଦ୍ଧାଙ୍କ ଘର ଆଡ଼କୁ ମୁହେଁଇବା ବେଳେ ତା'ର କାହିଁକି ମନେ ହେଉଥିଲା ଯେ ଦିନଟି ଅନନ୍ୟ। କାହିଁକି କେଜାଣି ?

ଶ୍ରଦ୍ଧାଙ୍କ ଘର ବାରଣ୍ଡାରେ ପାଦ ଦେଉ ଦେଉ କବାଟଟା ଖୋଲିଗଲା। ହାତରେ ସଞ୍ଜ ଦୀପଟି ଧରି ଠିକ୍ ସେତିକିବେଳେ ଘର ଭିତରୁ ବାହାରି ଆସୁଥିଲା ଅର୍ଚ୍ଚନା।

କିଏ ସେ ? ଦାଣ୍ଡ ବାରଣ୍ଡାରେ ଠିଆ ହୋଇଥିବା ଜଣଙ୍କୁ ଦେଖି ପାଦ ଅଟକିଗଲା ତା'ର। ସନ୍ଧ୍ୟାର ସେଇ ଛାପିଛାପିକିଆ ଆଲୁଅରେ ଦୁଇ ଯୋଡ଼ା ଆଖି ଚମକି ପରସ୍ପର ଉପରେ ଲାଖିଗଲା।

ଅର୍ଚ୍ଚନା ଆଗରୁ ଯେ ସଫିକ୍‌କୁ ବେଶୀ ଦେଖିନି, ତା' ନୁହଁ। ପାଖାପାଖି ଘର। ବିଭିନ୍ନ ସମୟରେ ସାମ୍ନାସାମ୍ନି ହୋଇ ଯାଆନ୍ତି ସେମାନେ। ସଫିକ୍ ମୁଣ୍ଡ ତଳକୁ ପୋତି ତା' ରାସ୍ତାରେ ଚାଲିଯାଏ। ଆଉ ଅର୍ଚ୍ଚନା ନିଜ କାମ କରିଯାଏ ଅବିଚଳିତ ଭାବରେ।

କିନ୍ତୁ ଆଜି କ'ଣ ହୋଇଗଲା !

ଆଖି ଫେରାଇ ଆଣି ବାରଣ୍ଡାରେ ସଂଜବତୀଟି ରଖି ଦେବା ପାଇଁ ଅର୍ଚ୍ଚନା ଥରଥର ପାଦ ବଢ଼େଇଲା। କିନ୍ତୁ ଗୋଡ଼ ଦିଇଟା ତା'ର ଯେମିତି ପଥର। ସେ ଆଗେଇ ଆସି ପାରୁ ନାହିଁ କି ପଛେଇ ଯାଇ ପାରୁ ନାହିଁ। କ'ଣ ହୋଇଗଲା ତା'ର ?

ସମ୍ବିତ ପାଇ ନିଜକୁ ସମ୍ଭାଳି ନେଲାଣି ସଫିକ୍। ହେଲେ ଆଖି ଫେରାଇ

ନେଇ ପାରୁନି ସେ। ସଂଜବତୀର ନରମ ଆଲୁଅରେ ଚମକି ଉଠୁଥିବା ମୁହଁ ଉପରୁ ଆଖି ଆଦୌ ଫେରାଇ ନେଇ ପାରୁନି। ଯେଉଁଥିପାଇଁ ସେ ଆସିଥିଲା, ସେ କାରଣଟା ମୁହଁ ଖୋଲି କହି ପାରୁନି ସେ। ସଫିକ୍ କେବଳ ବିହ୍ୱଳ ହୋଇ ଚାହିଁ ରହିଥିଲା।

ଅର୍ଚ୍ଚନା କ'ଣ ପଚାରିବ ପଚାରିବ ହୋଇ ଆଖି ଧୀରେ ଧୀରେ ଉପରକୁ ଉଠାଇଲା। ହେଲେ ପର ମୁହୂର୍ତ୍ତରେ ହିଁ ଆଉଥରେ ମୁହଁ ତଳକୁ ପୋତି ଦେଲା ସେ।

କେହି କାହାକୁ କିଛି କହି ପାରୁ ନାହାନ୍ତି। ଗାଈଆଳର ବଂଶୀ ତଥାପି ବାଜି ଚାଲିଛି ଆକାଶ ବତାସରେ ସୁମଧୁର ମୂର୍ଚ୍ଛନା ତୋଳି।

କ'ଣ ହୋଇଗଲା ଆଜି? କେମିତି ଏମିତି ହୋଇଗଲା।

ଭଲ ଲାଗିବାର ଗୋଟାଏ ଅଦମ୍ୟ ଜୁଆର ଆସି ଦୁଇଟି ମନ ପ୍ରାଣକୁ କେମିତି ଯେ ଭିଜେଇ ଦେଇ ଚାଲିଗଲା, ସେକଥା କେହି ଜାଣି ପାରିଲେ ନାହିଁ। ବିରାଟ ଗୋଟାଏ ପରିବର୍ତ୍ତନ ହୋଇଗଲା ସେଇ ମୁହୂର୍ତ୍ତକ ମଧ୍ୟରେ।

"କିଏ ସଫିକ୍ କି?" ଦାଣ୍ଡ କବାଟ ପାଖରୁ ଅସନ୍ତୁଷ୍ଟ ସ୍ୱରଟିଏ ଗମ୍ଭୀର ଭାବରେ କହି ପକେଇଲା।

ଆଖି ଫେରାଇଲା ସଫିକ୍।

କବାଟ ପାଖରେ ଅନିରୁଦ୍ଧ। ମୁହଁ କଠିନ ହୋଇ ଯାଇଛି। "କ'ଣ ହେଲା ସଫିକ୍? ଆଜି ହଠାତ୍ ଏଠି ଯେ?" ଅନିରୁଦ୍ଧ ସ୍ୱରରେ ଚାପା ବିରକ୍ତି।

ଅପ୍ରସ୍ତୁତ ଭାବରେ ହାତର ବହିଟା ବଢ଼େଇ ଦେଲା ସଫିକ୍। କହିଲା, "ଅନି ବହିଟା ମାଗିଥିଲା। ସେଇଟା ଦେବାକୁ ଆସିଥିଲି।"

ଅନିରୁଦ୍ଧ କିଛି କହିବା ଆଗରୁ ଭିତରୁ ଚିଲ ଭଳି ଧାଇଁ ଆସିଲା ଅନୁପମା। "ଏ ମା। ସତରେ ତମେ ବହିଟା ଆଣିଛ ସଫିକ୍ ଦାଦା? ଇସ୍।" ସଫିକ୍ ହାତରୁ ବହିଟା ଟାଣି ନେଇ ଯେମିତି ଭିତରୁ ଧାଇଁ ଆସିଥିଲା ଅନୁପମା, ସେଇମିତି ଧାଇଁ ଚାଲିଗଲା ଭିତରକୁ।

"ଏ କ'ଣ ଅନି? ଅଯଥା ଏଇମିତି ପାଟିତୁଣ୍ଡ କରୁଛୁ କାହିଁକି?" ଅନିରୁଦ୍ଧର ବିରକ୍ତିଟା ସାନ ଭଉଣୀ ପ୍ରତି ନା ଅନ୍ୟ କାହା ପ୍ରତି ପ୍ରଯୁଜ୍ୟ ଥିଲା କିଏ ଜାଣେ।

"ମୁଁ ଆସୁଛି ଅନିରୁଦ୍ଧ ଦାଦା।" ସଫିକ୍ ଫେରି ଯିବାକୁ ପାଦ ବଢ଼ାଇଲା।

"ଆଚ୍ଛା।" କିଛି ସମୟ ଆଗର ବିରକ୍ତି ତଥାପି ଝଲମଲ କରୁଥିଲା ଅନିରୁଦ୍ଧର ସ୍ୱରରେ। ସେ ସଫିକ୍ ଉପରୁ ଆଖି ଫେରାଇ କେବଳ ତୀକ୍ଷ୍ଣ ଦୃଷ୍ଟିରେ ଦେଖିଲା ଅର୍ଚ୍ଚନାକୁ।

ସଞ୍ଜ ବତୀଟାକୁ କୌଣସି ମତେ ବାରଣ୍ଡାର ଗୋଟିଏ କଡ଼ରେ ଥୋଇ ଦେଇ ଥର ଥର ଛାତିରେ ମୁହଁ ତଳକୁ ପୋତି ଘର ଭିତରକୁ ଅର୍ଚ୍ଚନା ଚାଲିଗଲା।

କିଛି ସମୟ ସେଇଠି ବାରଣ୍ଡାରେ ସ୍ତବ୍ଧ ଭାବରେ ଠିଆ ହେବା ପରେ ଦୁମୁଦୁମୁ ହେଇ ଘର ଭିତରକୁ ପଶି ଆସିଲା ଅନିରୁଦ୍ଧ। "ଅନି, ଏ ଅନି।" ତା ଚିତ୍କାରରେ ରୋଷେଇ ଘରୁ ମଧ୍ୟ ବାହାରି ଆସିଲେ ଶ୍ରଦ୍ଧା।

"କ'ଣ ହେଲାରେ ବାବୁ?"

"ଅନି କାହିଁ ମା'। ଅନି .. ଏଇ ଅନି।"

"ଓହୋ, କାହିଁକି ଏତେ ପାଟି କରୁଛ? କ'ଣ ଦରକାର ଦାଦା?" ଗପ ବହି ପଢ଼ାରୁ ଉଠି ଆସିବାକୁ ହୋଇଥିବାରୁ ମନେ ମନେ ରାଗିଯାଇଥିଲା ଅନୁପମା।

"କି ବହି ଦେଇଗଲା ସଫିକ୍? ଏଁ?"

"ଏଇଟା। ଶରତଚନ୍ଦ୍ରଙ୍କ ବହି - ଦତ୍ତା।" ବହିଟା ଦାଦା ଆଡ଼କୁ ବଢ଼େଇ ଦେଲା ଅନୁପମା।

"ପାଠ ବହି ପଢ଼ା ଗଲା କୁଆଡ଼େ, ଏବେ ଏଇ ସବୁ ଆଜେବାଜେ ନଭେଲ୍ ପଢ଼ା ହେଉଛି??"

"ଶରତଚନ୍ଦ୍ରଙ୍କ ନଭେଲ୍ ପୁଣି ଆଜେବାଜେ ହେଲା କେବେଠୁ ମ?" ଦାଦା ଭଳି ବିରକ୍ତି ଅନୁପମାର ସ୍ୱରରେ।

"ସେ ଯାହା ହେଉ, ମୁଁ କହି ଦେଉଛି। ଆଉ ଏ ଘରେ ନାଟକ ନଭେଲ ଯେମିତି ନ ପଶେ।"

"କାହିଁକି? ...ଶୁଣୁଛ, ଶୁଣୁଛ ମା', ଦାଦା କେମିତି ସବୁ କଥା କହୁଛି। କ'ଣ ହୋଇଗଲା ଭଲ ଭଲ ଗପ ବହି ପଢ଼ିଲେ?" କ୍ଷୋଭରେ ଅନୁପମାର କଣ୍ଠ ସ୍ୱର ରୁଦ୍ଧ ହୋଇ ଆସୁଛି।

ତା'ର ସେଇ ବିବ୍ରତ ମୁହଁକୁ ଦେଖି ଶ୍ରଦ୍ଧାଙ୍କର ଛାତି ଭିତର କେମିତି

କରତି କରତି ହେଇଗଲା। ଗପବହି ପଢ଼ାଟା ଯେ ଖୁବ୍ ଗୋଟାଏ ଅନ୍ୟାୟ କାମ, ତା' ସେ ଜମା ଭାବି ପାରୁ ନ ଥିଲେ। ନିଜେ ବେଶୀ ପଢ଼ାଶୁଣା କରିନାହାନ୍ତି। ଅଳ୍ପ ଅଳ୍ପ ଅକ୍ଷର ଚିହ୍ନି ଶିଖିଥିଲେ ଯାହା। କିନ୍ତୁ ବାହାଘର ପରେ କେତେ ଭଲ ଭଲ ବହି ଆଣି ଗଦାଉଥିଲେ ସ୍ୱାମୀ ! କହୁଥିଲେ, ବହି ନ ପଢ଼ିଲେ ଜ୍ଞାନ-ଚକ୍ଷୁ ଖୋଲିବ କେମିତି ? ତାଙ୍କରି ପୁଅ ହୋଇ ବହି ପଢ଼ିବାକୁ ମନା କାହିଁକି କରୁଛି ଅନିରୁଦ୍ଧ ? ଶରତଚନ୍ଦ୍ରଙ୍କର ଲେଖା ଯୁଗାନ୍ତକାରୀ ଲେଖା ବୋଲି ? ସେସବୁ ପଢ଼ି ନୂଆ ଭାବରେ ଅନି ଚିନ୍ତା କରିବାକୁ ଶିଖିଯିବ ବୋଲି ସେ କ'ଣ ଭୟ ପାଉଛି ? ବୋଧହୁଏ ସେୟା।

ଶ୍ରଦ୍ଧା ସାନ ଝିଅର ତରଫଦାରୀ କରି ପାରିଲେ ନାହିଁ। ନିରବ ରହିଗଲେ।

''ମା'ଙ୍କ ପାଖରେ ନାଲିସ କରିଲେ କ'ଣ ହେବ ? ମୁଁ ଯାହା କହିଦେଲି ସେଇଟା ଶେଷ କଥା।'' ପୁଣି ଥରେ ଭୀଷଣ ଚିଡ଼ି ଉଠିଲା ଅନିରୁଦ୍ଧ। କାହିଁକି ଯେ ଆଜି ଏତେ ବିରକ୍ତ ଲାଗୁଛି, ସେ ସେଇ କଥା ବୁଝି ପାରୁ ନ ଥିଲା। ଆଗରୁ ବି ତ ଏମିତି କେତେ ରକମର ବହି ଆଣି ଅନି ପଢ଼ିଛି। ଅର୍ଚ୍ଚନା ପଢ଼ିଛି। କେବେ ତ ତାକୁ ଖରାପ ଲାଗିନି। ଆଜି ତା'ହେଲେ କାହିଁକି ଏମିତି ଗୋଳେଇ ହୋଇ ଯାଉଛି ତା' ଦେହ ଭିତରଟା। ବହିଟା ସଫିକ୍ ଆଣି ଦେଇଗଲା ବୋଲି ?

କେବଳ ସେତିକି ? ସଫିକ୍‌ର ସେ ଯେଉଁ ବିହ୍ୱଳ ଦୃଷ୍ଟି !! ଇସ୍ !

''ଏଇଟା ମୋର ଶେଷ କଥା।'' ପୁଣି ଥରେ ଚିତ୍କାର କରି ଉଠିଲା ସେ।

''କାହିଁକି ? ଭଲ ବହି କାହିଁକି ପଢ଼ି ପାରିବିନି ?''

''ବାଜେ ଯୁକ୍ତି କରନା, ଅନି। ଭାରି ମୁହଁ ବଢ଼ି ଗଲାଣି ଦେଖୁଛି। ଦେ ମତେ ବହିଟା। କାଲି ଯାଇ ମୁଁ ବହିଟା ଚାଚାଙ୍କ ଘରେ ଫେରାଇ ଦେବି। ଆଉ ମନେ ରଖିଥା, ଦିନେ ଯେମିତି ତୋ ହାତରେ ଗପ ବହିଟିଏ ନ ଦେଖେ ମୁଁ।'' ଅନିରୁଦ୍ଧ ସାନ ଭଉଣୀର ହାତରୁ ବହିଟା ପ୍ରାୟ ଛଡ଼େଇ ନେଇ ଚାଲିଗଲା।

ଅନୁପମା ଆଖିରେ ଲୁହ ଭର୍ତ୍ତି ହୋଇଗଲା। କିନ୍ତୁ ସେ ଆଉ ଯୁକ୍ତି କରିଲା ନାହିଁ। ଯେଉଁ ଦାଦା ସେମାନଙ୍କ ପାଇଁ ଏତେ କରୁଛି, ତା' ସାଙ୍ଗରେ କି ଯୁକ୍ତି କରିବ ସେ ? ଚୁପ୍‌ଚାପ୍ ଘର ଭିତରକୁ ଯାଇ ବିଛଣା ଉପରେ ଗଡ଼ି

ପଡ଼ିଲା ଅନୁପମା, ଯେଉଁଠି ପଥରର ମୂର୍ତ୍ତି ଭଳି ପଡ଼ି ରହିଥିଲା ଅର୍ଚ୍ଚନା।

ଅଗଣା ପାଖ ବାରଣ୍ଡାରେ ଯେ ଏତେ ନାଟକ ହେଇଗଲା, ସେସବୁ ଅର୍ଚ୍ଚନା କାନରେ ପଡ଼ିଥିଲା ଠିକ୍। କିନ୍ତୁ ସେ ଶୁଣି ମଧ୍ୟ ସେସବୁ ଶୁଣି ପାରି ନ ଥିଲା। ବାହାର ବାରଣ୍ଡାରୁ ଭିତରକୁ ଚାଲି ଆସିବା ପରଠାରୁ ତା' ନିଜ ଛାତି ଭିତରେ ପ୍ରବଳ ଆବେଗର ଯେଉଁ ଜୁଆର ଉଠି ତାକୁ ଉବୁଟୁବୁ କରେଇ ଦେଉଥିଲା, ସେ କେମିତି ଶୁଣି ପାରିଥାନ୍ତା ଅନ୍ୟମାନଙ୍କର କଥାବାର୍ତ୍ତା? ତା'ର ଯେ ଦେହ ହାତ ମସ୍ତିଷ୍କ ସବୁ କିଛି ଅବଶ ହୋଇ ଯାଇଛି।

ଛାତର କଡ଼ିକାଠରେ ଅସ୍ପଷ୍ଟ ଭାବରେ ଦେଖାଯାଉଥିବା କିଛି ଗୋଟାଏ ଚିହ୍ନକୁ ଅର୍ଚ୍ଚନା ନିବିଷ୍ଟ ଭାବରେ ଚାହିଁ ରହିଥିଲା। ଆଖିରେ ତା'ର ପଲକ ପଡୁ ନ ଥିଲା। ଅଥଚ କିଛି ସେ ଦେଖି ପାରୁ ନ ଥିଲା। କିଛି ବି ନୁହଁ।

ଆଜି ତା' ଜନ୍ମ ଦିନ ନା? ଏଇମିତି ଗୋଟାଏ ଦିନରେ କ'ଣ ହୋଇଗଲା! କ'ଣ ସବୁ ହୋଇଗଲା ଗୋଟାଏ ମୁହୂର୍ତ୍ତରେ!!

ଏମିତି ଗୋଟାଏ ଦିନରେ, ଏଇମିତି ଭାବରେ ଦୁଇ ଜଣ ମଣିଷ ସାମ୍ନାସାମ୍ନି ହେଇଯିବାଟା କ'ଣ ଅଦୃଷ୍ଟର ଖେଳ ନା ଆଉ କିଛି?

ଅର୍ଚ୍ଚନା ଆଖି ବନ୍ଦ କଲା। ଅଦୃଷ୍ଟର ଖେଳ କି ସେଇ ସମୟର ମାଦକତା - ତା' ବୁଝିବା କଷ୍ଟକର। କିନ୍ତୁ ସବୁ କିଛି ଯେ ବଦଳିଗଲା ତା' ପୃଥିବୀରେ! କାହାକୁ କହିବ ସେ ଏକଥା? କେମିତି ବା କହିବ? ବଜ୍ରପାତ ହୋଇଯିବନି ଧରା ବୁକୁରେ? ତା' ପାଦତଳର ପୃଥିବୀ ଦୁଇ ଭାଗ ହୋଇଯିବନି? ଗୋଟାଏ ସର୍ବଗ୍ରାସୀ ବନ୍ୟା ଆସି ସବୁ କିଛି ଉସେଇ ନେଇ ଧ୍ୱଂସର ଛବି ଆଙ୍କି ଚାଲିଯିବନି? ଆଃ! କ'ଣ କରିବ ଅର୍ଚ୍ଚନା? କ'ଣ ସେ କରିବ?

ଏତେ ଦିନ ଧରି ମଣିଷଟିକୁ ଦେଖି ଆସୁଥିଲା ସେ, କାହିଁ କୋଉଦିନ ତ ଏମିତି ହୋଇନି! ମନ ଭିତରେ ଦରଦ ଅବଶ୍ୟ ଥିଲା ସେଇ ପ୍ରଥମ ଦିନରୁ। କିନ୍ତୁ ତା' ତ କେବଳ ଅର୍ଚ୍ଚନାର ନୁହଁ, ସାଇପଡ଼ିଶା ସମସ୍ତଙ୍କର।

ମାଉସୀ ଘରେ ଆସି ପହଞ୍ଚିବା ଦିନ ଯେତେବେଳେ ସଫିକ୍ ତା' ମାଉସୀ ପୁଅ ଭାଇ ଜାହାଙ୍ଗୀରର କାନ୍ଧରେ ମୁଣ୍ଡ ରଖି ସକ ସକ ହୋଇ କାନ୍ଦି ପକେଇଥିଲା, ସେତେବେଳେ ଅର୍ଚ୍ଚନା ଆଖିରୁ ନିରବରେ ଦୁଇ ଧାର ଲୁହ ବହି ଯାଇଥିଲା।

କିନ୍ତୁ ସେଦିନ ସେଇ ଲୁହ ଦେଖି କେହି ତୀର୍ଯ୍ୟକ ଦୃଷ୍ଟିରେ ତାକୁ ଚାହିଁ ନ ଥିଲେ, କେହି ବିରକ୍ତ ହୋଇ ନ ଥିଲେ। କାରଣ ରାସ୍ତା ଧାରରେ, ଘର ବାରଣ୍ଡାମାନଙ୍କରେ ଠିଆ ହୋଇ ରହିଥିବା ଲୋକମାନଙ୍କ ଭିତରୁ ସେଦିନ ପ୍ରାୟ କେହି ନିଜ ଆଖି ଶୁଖିଲା ରଖି ପାରି ନ ଥିଲେ। ମା' ଓ ଅନିଙ୍କ କଥା ତ ଛାଡ଼, ନିଜେ ଦାଦା ହିଁ ଦୁଇ ହାତରେ ମୁହଁ ଘୋଡ଼ାଇ ଦେଇ ପିଲାଙ୍କ ଭଳି କାନ୍ଦି ପକେଇଥିଲା।

ସେଦିନ ପରେ ବିଭିନ୍ନ ସମୟରେ ଅର୍ଚ୍ଚନାର ସଫିକ୍ ସାଙ୍ଗରେ ଦେଖା ହୋଇ ଯାଇଛି। ଏକା ଗଳିରେ କାନ୍ଥକୁ କାନ୍ଥ ଲାଗି ଦୁଇଟା ଘର, ଏଥିରେ ଅସ୍ୱାଭାବିକ ବା କ'ଣ ଥିଲା! କିନ୍ତୁ ମୁହଁ ଖୋଲି କେହି କୌଣସି ଦିନ କିଛି କଥା କହି ନାହାନ୍ତି। କହିବାର ଆବଶ୍ୟକତା ପଡ଼ିନାହିଁ। ତଥାପି ପ୍ରତ୍ୟେକ ଥର ଦେଖା ହୋଇଯିବା କ୍ଷଣି ଅର୍ଚ୍ଚନାର ଛାତି ଭିତରଟା କେମିତି ଚାଉଁ କରି ହୋଇ ଯାଉଥିଲା। ମୁଣ୍ଡ ଭିତରେ କ'ଣ ଯେମିତି ସୂକ୍ଷ୍ମ ପରିବର୍ତ୍ତନ ହୋଇଯାଉଥିଲା। ମାତ୍ର ସେ କେବେହେଲେ ଏସବୁର କାରଣ ଖୋଜିନି। ଯେଉଁଭଳି ସମାଜ, ସଂସ୍କାରର ପରିବେଶରେ ସେ ବଢ଼ିଥିଲା, ସେଠି ଏସବୁକୁ କେହି ପ୍ରାଧାନ୍ୟ ଦିଅନ୍ତି ନାହିଁ। ସବୁବେଳେ ଅସ୍ୱୀକାର କରିଯାଆନ୍ତି। ଅର୍ଚ୍ଚନା ବା ଗୋଠରୁ ବାହର ହେବା ପାଇଁ ଚାହିଁବ କେମିତି ?

ହେଲେ.. ହେଲେ.. ଆଜି ଏ କ'ଣ ହୋଇଗଲା ତା'ର! ସବୁ କିଛି ନିଜ ସାମ୍ନାରେ କାହିଁକି ପରିଷ୍କାର ହେଇଗଲା ? ଏହାପରେ କେମିତି ନିଜକୁ ନିୟନ୍ତ୍ରଣରେ ରଖିବ ସେ ? କାହିଁକି ତା' ମନଟା ନିଜ ଅଜାଣତରେ ଗୋଟାଏ ଲାଜକୁଳା ସ୍ୱଭାବର ମଣିଷ ସାଙ୍ଗରେ ବାନ୍ଧି ହେଇଗଲା ? କାହିଁକି ?

ଏଇଟା ଉଚିତ ନୁହଁ। ଜମା ଉଚିତ୍ ନୁହଁ। ଆଜନ୍ମରୁ ଦେଖି ଶୁଣି ଆସିଥିବା ସଂସ୍କାର ମାଡ଼ି ବସିଲା ଅର୍ଚ୍ଚନାକୁ। କିନ୍ତୁ କେମିତି ସେ ସେଇକଥା ନିଜ ମନକୁ ବୁଝେଇବ ? ମନ ଉପରେ କ'ଣ ଜୋର ଚଳେ ? ନା ନା ନା।

ତା'ହେଲେ କ'ଣ କରିବ ଅର୍ଚ୍ଚନା ? ସେ କରିବ କ'ଣ ? ନିଜକୁ, ନିଜ ଆବେଗକୁ ଯେ ସେ ଆଦୌ ଫାଙ୍କି ଦେଇ ପାରୁନି ଏବଂ ଫାଙ୍କି ଦେଇ ପାରୁନି ବୋଲି ତା'ର ଦେହ ହାତ କାଠ ହୋଇ ଯାଉଛି।

ଖାଲି ତା'ର ? ପଥରର କାନ୍ଥ ସେପାଖରେ ଠିକ୍ ଏକାଭଳି ଅବସ୍ଥା ଆଉଜଣଙ୍କର। ଆଉ ଗୋଟାଏ ପ୍ରାଣ ବି ଏଇମିତି ଉଦ୍‌ବେଳିତ ହୋଇଯାଇଛି। ଆବେଗର ମୁଖାମୁଖୀ ହୋଇ ସ୍ତବ୍ଧ ହୋଇଯାଇଛି।

ସଫିକ୍ ପଢ଼ା ଟେବୁଲ ପାଖରେ ଚୁପ୍ ହୋଇ ବସି ରହିଥିଲା କେବଳ।

ଅନିରୁଦ୍ଧର କଥାରେ, ଆଚରଣରେ ତା'ର ଅପମାନିତ ହେବା କଥା। ତାକୁ ଖରାପ ଲାଗିବା କଥା। କିନ୍ତୁ କିଛି ଛୁଇଁ ପାରୁ ନ ଥିଲା ସଫିକ୍‌କୁ। କିଛି ବି ନୁହଁ। ଦୁଇଟି ଢଳ ଢଳ ଆଖି ଛଡ଼ା ସେ ଯେମିତି କିଛି ମନେ ପକାଇ ପାରୁ ନ ଥିଲା। ସଞ୍ଜବତୀର ଆଲୁଅରେ ଉଦ୍‌ଭାସିତ ହୋଇ ଯାଇଥିବା ମୁହଁଟିଏ ବାରମ୍ବାର ତା' ଚେତନା ଭିତରକୁ ପଶି ଆସୁଥିଲା। ଆଃ, କି ଅପୂର୍ବ !! ସଫିକ୍ ଆଖି ବନ୍ଦ କରି ନେଲା। ଅନୁଚ୍ଚାରିତ ଭାବରେ ତା' ଓଠରୁ ବାହାରି ଆସିଲା ଶବ୍ଦଟିଏ। ଅର୍ଚ୍ଚନା !

ଅର୍ଚ୍ଚନା !

ଆଜି ଏତେ ନିଜର କାହିଁକି ଲାଗୁଛି ଏଇ ନାଁଟା ? କାହିଁକି ନାଁଟି ନିରବ ଭାବରେ ତା' କାନରେ ଗୁଞ୍ଜରି ଉଠିବା କ୍ଷଣି ନିଜକୁ ପବିତ୍ର ଲାଗୁଛି ? ପୃଥିବୀର ସର୍ବଶ୍ରେଷ୍ଠ ରତ୍ନ ପାଇଯିବା ଭଳି ମନେ ହେଉଛି ? କାହିଁକି ??

ନା, ନା, ନିଜକୁ ତାଗିଦ୍ କଲା ସଫିକ୍, ଏଇଟା ଠିକ୍ ନୁହଁ। ଏଇଟା ଉଚିତ୍ ନୁହଁ। ଏମିତି ହୋଇ ପାରିବନି। ବିବ୍ରତ ଭାବରେ ସେ ଝରକା ପାଖକୁ ଉଠି ଆସିଲା। ବାହାରେ କଳା କିଟି ମିଟି ରାତି। କିନ୍ତୁ ତା'ରି ଭିତରେ ଯେମିତି ଚନ୍ଦ୍ର ଆଲୁଅରେ ଝଲମଲ କରୁଥିବା ମୁହଁଟିଏ ସଫିକ୍ ମୁହଁକୁ ଚାହିଁ ମିଟି ମିଟି କରି ହସୁଥିଲା।

ନା, ନା। ଅସମ୍ଭବ। ସେଇ ମୁହଁଟିକୁ ନିଜର ବୋଲି କୌଣସି ଦିନ କହି ପାରିବନି ସଫିକ୍। କୌଣସି ଦିନ ନିଜର କରି ପାରିବନି। ଏଇଟା ଯେ ସମ୍ପୂର୍ଣ୍ଣ ଭାବରେ ଅନୁଚିତ। ଏମିତି ଘଟଣାଟିଏ ଲୋକଲୋଚନକୁ ଆସିଗଲେ କେହି ସହିବେ ନାହିଁ। କେହି ସହାନୁଭୂତି ଦେଖାଇବେ ନାହିଁ। ବରଂ ମାରି ଗୋଡ଼େଇବେ। ଛି ଛାକର କରିବେ।

ଏସବୁ ଅତିକ୍ରମି ଅର୍ଚ୍ଚନାକୁ ନିଜର କରିବା ଭଳି ସାହସ ତା'ର ଅଛି ? ପ୍ରେମରେ ପ୍ରାଣପାତ କରିବା ଭଳି ହୃଦୟ କ'ଣ ତା'ର ଅଛି ? ବା ଅର୍ଚ୍ଚନାର

କ'ଣ ଅଛି ?

ବଙ୍ଗଳା ଦେଶର ପୂର୍ବାଞ୍ଚଳରେ ମୁସଲମାନଙ୍କ ସଂଖ୍ୟା ହିନ୍ଦୁଙ୍କଠୁଁ ବେଶୀ। କିନ୍ତୁ ଅଧିକାଂଶ ଭୀଷଣ ଦରିଦ୍ର। ସେଥିପାଇଁ ସମାଜରେ ସେମାନଙ୍କର ସ୍ଥାନ ବହୁ ନିମ୍ନରେ। ସେମାନଙ୍କୁ ହିନ୍ଦୁମାନେ ସହିଯାଆନ୍ତି। କେତେ ଜଣ ନିଜର ଭଳି କରି କଥା କହନ୍ତି। କିନ୍ତୁ ସମ୍ପୂର୍ଣ୍ଣ ଭାବରେ ନିଜର କରନ୍ତି ନାହିଁ। କରି ପାରନ୍ତି ନାହିଁ।

ସେଇ ହିନ୍ଦୁମାନେ ଯଦି ଜାଣିବେ ଯେ ଜଣେ ମୁସଲମାନ ଘରର ପୁଅ ଉଚ୍ଚ ବଂଶର ବ୍ରାହ୍ମଣ ଝିଅଟିଏକୁ ପାଇବାର ଆଶା ପ୍ରକାଶ କରିଛି, ଆସ୍ପର୍ଦ୍ଧା କରିଛି, ତାହେଲେ ରଖିବେ ସେମାନେ ? ରକ୍ତ ରଞ୍ଜିତ କରି ଦେବେ ନାହିଁ ପାବ୍‌ନାର ମାଟିକୁ ?

ଅଜାଣତରେ ଛାତି ଥରି ଉଠିଲା ସଫିକ୍‌ର। ନା ନା। ସେ ପାରିବନି। ଖାଲି ନିଜ କଥା ହୋଇଥାଆନ୍ତା କି ସଫିକ୍ ପରବାୟ କରି ନ ଥାଆନ୍ତା। କିନ୍ତୁ ମାଉସୀ, ମଉସା, ଜାହାଙ୍ଗୀର, ହାଇଦର୍ - ସମସ୍ତେ ଯେ ଜଳି ପୋଡ଼ିଯିବେ ସେ ଅଗ୍ନିବୃଷ୍ଟିରେ। ଆଉ ପୁଣି ଅଛି ଅର୍ଚ୍ଚନା। ବିଚାରୀକୁ ବୋଧହୁଏ ଶେଷରେ ଇଛାମତୀ ନଦୀର ଗର୍ଭରେ ଆଶ୍ରୟ ନେବାକୁ ହେବ।

ଶିହରି ଉଠିଲା ସଫିକ୍। ନା ନା, ସେ ଏଇମିତି ପ୍ରଳୟ ହେବାକୁ ଦେଇ ପାରିବନି। ଆଦୌ ନୁହଁ।

ହେଲେ ହେଲେ ନିଜକୁ ବୁଝାଇ ଦେଲେ କ'ଣ ଅବାଧ ହୃଦୟ ଗ୍ରହଣ କରି ନିଏ ସବୁ କିଛି ? ଧମକେଇ ଦେଲେ ମନଟା କ'ଣ ବୁଝିଯାଏ ? ମାନିନିଏ ବିବେକର ଉପଦେଶ ?

ଦୁଇ ହାତରେ ମୁଣ୍ଡଟାକୁ ସଫିକ୍ ଚାପି ଧରିଲା।

ସେ କ'ଣ କରିବ ? ଏବେ ସେ କ'ଣ କରିବ ??

ଅଫିସ୍ ଟେବୁଲରେ ଫାଇଲ୍ ମେଲାଇ ଅନିରୁଦ୍ଧ ବସି ରହିଥିଲା। କିନ୍ତୁ କାମ ଜମା ଆଗେଇ ପାରୁ ନ ଥିଲା ତା'ର। ମନ ଭିତରେ ଯେଉଁ ଭଳି

ଅବସ୍ଥା ଚାଲିଛି ଏଇ କିଛି ଦିନ ଧରି, ସେଥିରେ କି କାମ ସେ କରିବ? ଅର୍ଚ୍ଚନା ଜନ୍ମଦିନର ସେ ସନ୍ଧ୍ୟା କଥା ମନେ ପଡ଼ିଗଲେ ତା'ର ସମଗ୍ର ଶରୀରରେ ଯେମିତି ନିଆଁ ଚରି ଯାଉଥିଲା। ରକ୍ତ ଶୁଖି ଯାଉଥିଲା। କଠିନ ହୋଇଯାଉଥିଲା ଶିରାପ୍ରଶିରା।

ଏଡ଼େ ସାହସ? ଏଡ଼େ ସାହସ କରିପାରିଲା ସଫିକ୍? ଏମିତି ଗୋଟାଏ ଦୃଷ୍ଟିରେ ଅନିରୁଦ୍ଧର ଭଉଣୀକୁ ସେ ଚାହିଁ ପାରିଲା?

ଆଉ ଅର୍ଚ୍ଚନା? ନା ନା। ତା' ଅର୍ଚ୍ଚନା ଏବେ ବି ନିହାତି ସରଳ। ଏମିତି ସବୁ ବାଜେ ଚିନ୍ତା ତା'ର ମନକୁ ଆସିବା ଅସମ୍ଭବ। ଯେଉଁ ଝିଅ ରାସ୍ତାରେ ଚାଲିବା ବେଳେ ମୁଣ୍ଡ ଉପରକୁ କେବେହେଲେ କରେ ନାହିଁ, ଯିଏ ବଡ଼ମାନଙ୍କର ସବୁ କଥା ବିନା ପ୍ରତିବାଦରେ ମାନିନିଏ, ସେ ପୁଣି ଏଇ ଭଳି କିଛି ସୃଷ୍ଟିଛଡ଼ା କଥା ମନ ଭିତରେ ସ୍ଥାନ ଦେଇ ପାରିବ?

ନା, ଅସମ୍ଭବ।

ସତରେ ଅସମ୍ଭବ? ଅନିରୁଦ୍ଧ ଭିତରୁ କିଏ ଜଣେ ଛିଗୁଲେଇବା ଭଳି ପଚାରି ଉଠିଲା। ସେ ପ୍ରଶ୍ନ, ସେ ସ୍ୱରକୁ ଅସ୍ୱୀକାର କରିବା ଶକ୍ତି ତା'ର ନାହିଁ। ଆଦୌ ନାହିଁ। ସେଇଟା ତା' ଆତ୍ମାର ପ୍ରଶ୍ନ।

ପ୍ରଶ୍ନଟିର ଉତ୍ତର ଏତେ ବେଶୀ ପରିଷ୍କାର ଯେ ଅନିରୁଦ୍ଧ ତାକୁ ଆଡ଼େଇ ଯାଇ ପାରିଲା ନାହିଁ। ଚାପା ଯନ୍ତ୍ରଣାରେ ଆଖି ବନ୍ଦ କରିଦେଲା ସେ।

କାହିଁକି ନିଜକୁ ଭୁଲାଉଛୁ ରେ! କେମିତି ହତାଶିଆ ଗଳାରେ ସେ ନିଜକୁ ନିଜେ କହିପକେଇଲା। ସଫିକ୍ ଆଖିର ଚାହାଣି କ'ଣ ପ୍ରତିଫଳିତ ହୋଇ ନ ଥିଲା ଅର୍ଚ୍ଚନାର ଆଖିରେ? ତା'ହେଲେ ତୁ କାହିଁକି ନିଜକୁ ଭୁଲାଇବାକୁ ଚେଷ୍ଟା କରୁଛୁ ଗତ ଦୁଇ ମାସ ଧରି।

ଅନିରୁଦ୍ଧ ଟେବୁଲ ଉପରେ ଥିବା ଗିଲାସରୁ ପାଣିତକ ପିଇଦେଲା। କମିଜ ପକେଟରୁ ରୁମାଲ କାଢ଼ି ମୁହଁ ପୋଛିବା ବେଳେ ତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦିଶୁଥିଲା।

ବିଭ୍ରାଟ ହୋଇଯିବ। ସବୁକିଛି ଜଣାଜଣି ହୋଇଗଲେ ଘୋର ବିଭ୍ରାଟ ହେଇଯିବ।

ସେଦିନର ସନ୍ଧ୍ୟା ପରେ ସାବଧାନ ହୋଇଯାଇଥିଲା ଅନିରୁଦ୍ଧ। ଚୁପ୍‌ଚାପ୍ ଭାବରେ ନିଜର ସବୁ କାମ ଭିତରେ ସେ ସମୟ କାଢ଼ି ନେଇ ଗୋଇନ୍ଦାଙ୍କ

ଭଳି ଆଖି ରଖୁଥିଲା ଦୁଇଜଣ ମଣିଷଙ୍କ ଉପରେ। କିନ୍ତୁ ଅଦ୍ଭୁତ, ନିତିଦିନିଆ ଜୀବନରେ କେବେ କିଛି ବ୍ୟତିକ୍ରମ ତା' ଆଖିରେ ପଡୁ ନ ଥିଲା। କାମର ବାହାନା କରି ସଲ୍ମା ଚାଚୀଙ୍କ ଘରକୁ ଧାଇଁ ଯାଉ ନ ଥିଲା ଅର୍ଚ୍ଚନା। ବରଂ ସତରେ ଯିବାର ଆବଶ୍ୟକତା ପଡ଼ିଲେ ଅନିକୁ ପଠେଇ ଦେଉଥିଲା ସେ। ସେପାଖ ଘରୁ ମଧ୍ୟ ସଫିକ୍ କେବେ କୌଣସି ବହି ବା ଅନ୍ୟ କିଛି ସମ୍ବାଦ ନେଇ ସେମାନଙ୍କର ବାରଣ୍ଡାରେ ପାଦ ରଖୁ ନ ଥିଲା। ମୁଣ୍ଡ ପୋତି ପୋତି ସେମାନଙ୍କ ଘର ସାମ୍ନା ଦେଇ ଚାଲିଯାଉଥିଲା କଲେଜ ଏବଂ ଠିକ୍ ସେଇ ଏକା ଭଳି ମୁଣ୍ଡ ପୋତି ପୋତି ଫେରି ଆସୁଥିଲା ଘରକୁ।

ହେଲେ ଏଇ ଗତାନୁଗତିକତା ଭିତରେ ଯେ ଘୋର ପରିବର୍ତ୍ତନଟିଏ ଘଟି ଯାଉଥିଲା, ଦୁଇଟି ହୃଦୟ ଭିତରେ ଯେ ଏକ ଅଦୃଶ୍ୟ ସେତୁଟିଏ ସୃଷ୍ଟି ହୋଇଯାଉଥିଲା, ତା' ପରିଷ୍କାର ଭାବରେ ବୁଝି ପାରୁଥିଲା ଅନିରୁଦ୍ଧ।

ବୁଝିଲେ ମଧ୍ୟ ସେ ପାଟି ଖୋଲି ପାରିନି। ମା'ଙ୍କୁ କିଛି କହି ପାରିନି। କାରଣ ତା' ପାଖରେ ସାକ୍ଷୀ, ପ୍ରମାଣ କିଛି ନ ଥିଲା। କେବଳ ଭାବନାର ଜୋରରେ କେମିତି ଏଇଭଳି ଏକ ଦୋଷାରୋପ ସେ କରିଥାଆନ୍ତା!

ତା'ହେଲେ କରିବ କ'ଣ ଅନିରୁଦ୍ଧ?

ଏହା ଭିତରେ ଆଉ କେଇଟା ମାସ ଗଡ଼ିଯାଇଛି। ଅନିରୁଦ୍ଧ କିଛି କିଛି ସହଜ ହୋଇ ସାରିଲାଣି। ଅବଶ୍ୟ ଅର୍ଚ୍ଚନାର ଚାଲିଚଳଣରେ ଅନ୍ୟମନସ୍କତା ମଝିରେ ମଝିରେ ସେ ଦେଖିବାକୁ ପାଉଥିଲା। କିନ୍ତୁ କୌଣସି ଅନୁଚିତ ପଥରେ ସେ ପାଦ ଦେଉଛି ବୋଲି ତା'ର ଆଉ ମନେ ହେଉ ନ ଥିଲା। ଏତିକି ଯଥେଷ୍ଟ। ଅନ୍ତତଃ ଅନିରୁଦ୍ଧ ପାଇଁ ଏଇତକ ଯଥେଷ୍ଟ।

ଦିନେ ସେମାନଙ୍କର ନିହାତି ଗତାନୁଗତିକ ଜୀବନରେ ପରିବର୍ତ୍ତନ ଦେଖା ଦେଲା। ଏକ ଅଦ୍ଭୁତ ତତ୍ପରତା ଘର ଭିତରେ ସୃଷ୍ଟି ହୋଇଯାଇଥିଲା। ଅର୍ଚ୍ଚନା ଆଖିରେ ଠିକ୍ ଧରା ପଡ଼ିଥିଲା ଏ ବିଷୟ। କିନ୍ତୁ ଅଧିକ ଖୋଳତାଡ଼ କରିବାର ସ୍ପୃହା ନ ଥିଲା ତା'ର। ଆଜିକାଲି ଦାଦା ଅଫିସ୍‌ରୁ ଫେରିବା କ୍ଷଣି ମା' ସବୁ କାମ ଛାଡ଼ି ତା' ପାଖରେ ବସି ଯାଉଥିଲେ। କେହି ନ ଶୁଣି ପାରିବା ଭଳି ସ୍ୱରରେ ବହୁତ ସମୟ ଧରି ସେମାନଙ୍କର କଥାବାର୍ତ୍ତା ଚାଲୁଥିଲା। ମଝିରେ

ମଝିରେ ମା' ଦାଦା ସାଙ୍ଗରେ କୁଆଡ଼େ କୁଆଡ଼େ ବାହାରି ଯାଉଥିଲେ। ସବୁ ଲକ୍ଷ୍ୟ କରୁଥିଲେ ମଧ ଅର୍ଚ୍ଚନାର ସେସବୁ ନେଇ ବିଶେଷ କୌତୂହଳ ନ ଥିଲା। ତା'ରି ଭିତରେ ମା'ଙ୍କ ସାଙ୍ଗରେ ସେ ଯାଇ ଦି' ଦି' ଥର ମନ୍ଦିରରୁ ଘୁରି ଆସିଲା। ହଠାତ୍ ଯେ ଏତେ ସବୁ ତତ୍ପରତା କାହିଁକି, ସେ ପ୍ରଶ୍ନ ଅର୍ଚ୍ଚନା ପଚାରି ନ ଥିଲା।

କିଛି ପଚାରିବାର ଇଚ୍ଛା ବି ତା'ର ନ ଥିଲା।

ଏଭଳି ପ୍ରଶ୍ନ ପଚାରିଥିଲା ଅନୁପମା। କିନ୍ତୁ ନବମ ଶ୍ରେଣୀରେ ପଢୁଥିବା ଚଉଦ ବର୍ଷର ଝିଅଟିକୁ ଭୁଲେଇ ଭାଲେଇ ଦେବା କଠିନ ନୁହଁ। ତେଣୁ ଚୁପ୍ ହୋଇ ରହିଯାଉଥିଲା ସେ।

ହେଲେ ସେଦିନ ଆଉ ସେ ପାରିଲା ନାହିଁ। ଏତେ ଏତେ ଜିନିଷ କ'ଣ ସବୁ କିଣା ହୋଇ ଆସୁଛି! ହଜାର ରକମର ଲୋକ କ'ଣ ସବୁ ମୁହଁ ଦେଖାଇ ଯାଉଛନ୍ତି! କଥା କ'ଣ ଯେ? ସେଦିନ ସ୍କୁଲ୍‌ରୁ ଫେରିବା କ୍ଷଣି ହାତ ମୁହଁ ଧୋଉ ଧୋଉ ମା'ଙ୍କୁ ପଚାରି ବସିଲା ଅନୁପମା।

ଶ୍ରଦ୍ଧା ତାକୁ ଆଉ ଭୁଲେଇବାର ଚେଷ୍ଟା କଲେ ନାହିଁ। ଭୁଲେଇବାର ଆବଶ୍ୟକତା ବି ନ ଥିଲା।

''ଆଲୋ ମା', ତୋ ଦିଦିର ବାହାଘର ସ୍ଥିର ହୋଇଗଲା।'' ଦୁଇ ପାଟି ହସ ଓଠରୁ ଝରାଇ ନେଇ ଶ୍ରଦ୍ଧା କହି ପକେଇଲେ। ''ଆସନ୍ତା ମାସ ଦଶ ତାରିଖରେ ଆଶୀର୍ବାଦ।''

''କ'ଣ? ଦିଦିର ବାହାଘର ଠିକ୍ ହୋଇଗଲା??... ଇସ୍, କି ମଜା!'' ଅନୁପମା ଖୁସିରେ ନାଚି ପକେଇଲା ଦି' ଘେରା।

ଠିକ୍ ସେତିକି ବେଳେ ହାତରେ କ'ଣଟାଏ ଧରି ଘର ଭିତରକୁ ପଶି ଆସୁଥିଲେ ସଲ୍‌ମା। କଥାଟା ତାଙ୍କ କାନରେ ପଡ଼ିଗଲା। ଖୁସିରେ ଗଦଗଦ ହୋଇ ଗଲେ ସେ। ''ସତେ ଦିଦି? କେଡ଼େ ବଡ଼ ଖବରଟାଏ ଶୁଣାଇଲ ମ।''

ସେଇଠି ଅଗଣା ପାଖରେ ପଡ଼ିଥିବା ପିଢ଼ାଟାକୁ ଟାଣି ଆଣି ବସିଗଲେ ସେ। ପଚାରିଲେ, ''ପାତ୍ରଟି କିଏ? କୋଉଆଡ଼ର?''

ଶ୍ରଦ୍ଧା ଆଉ ଖଣ୍ଡିଏ ପିଢ଼ା ଟାଣି ଆଣି ସଲ୍‌ମାଙ୍କ ପାଖରେ ବସିଗଲେ।

ତାଙ୍କ ପାଇଁ ପାନ ଖଣ୍ଡିଏ ଭାଙ୍ଗୁ ଭାଙ୍ଗୁ ଆଗ ଭଳି ହସ ଝରାଇ ନେଇ କହିଲେ, ''ତମକୁ କ'ଣ ଆଉ କହିବି ସଲମା, ସବୁ ସେଇ ଠାକୁରଙ୍କ ଦୟା। ନହେଲେ ଆମେ, ଆଉ ଏଇମିତି ପାତ୍ର! ପିଲାଟିର କାର୍ତ୍ତିକ ଭଳି ଚେହେରା। ସେଥିରେ ପୁଣି ବହୁତ ପଢ଼ାଶୁଣା କରିଛି। ପାଟ୍‌ନାରେ ଚାକିରି କରୁଥିଲା। ହେଲେ ମନ ବଦଳିଗଲା ଯେ ଚାକିରି ଛାଡ଼ି ତା' ଗାଁକୁ ଚାଲି ଆସିଲା। ଗାଁରେ ନାହିଁ ନ ଥିବା ଜମି, ଧନ ସମ୍ପତ୍ତି। ବାପା ମା'ଙ୍କର ଏକମାତ୍ର ପୁଅ। ବଡ଼ ଭଉଣୀଟିର ବାହାଘର ହୋଇ ଯାଇଛି। ସାନ ଭଉଣୀଟିଏ ଅବଶ୍ୟ ଘରେ ଅଛି।''

''ପିଲାଟି ତା'ହେଲେ ଜମିଜମା ଖବର ବୁଝୁଛି ?''

''ନାଇଁ ଗୋ। ତା' ବାପ ତ ଏପର୍ଯ୍ୟନ୍ତ ସମର୍ଥ ଅଛନ୍ତି। ସେ ହିଁ ସବୁ ଜମି ଜମା ଖବର ବୁଝନ୍ତି। ପାତ୍ରଟି ଗାଁରେ ସ୍କୁଲଟିଏ ଖୋଲି ସେଠିକାର ହେଡ୍‌ମାଷ୍ଟ୍ର ହୋଇଛି। ତା'ର ଇଚ୍ଛା ଶିକ୍ଷିତ ଝିଅଟିଏ ବାହା ହେବାକୁ। ପରେ ଯେମିତି ସେ ତାକୁ ସ୍କୁଲରେ ସାହାଯ୍ୟ କରି ପାରିବ।''

''ସତେ ?''

''ହଁ ପରା। ସେଥିପାଇଁ ପାତ୍ରର ବାପା ତାଙ୍କ ଶଳୁକୁ ଏ ବିଷୟରେ ବୁଝାବୁଝି କରିବାକୁ କହିଥିଲେ। ଶଳୁ ପୁଣି କିଏ ଜାଣ, ସେ ଆମ ଅନିରୁଦ୍ଧ ଅଫିସ୍‌ର ବଡ଼ବାବୁ। ସେ ତ ଜାଣିଥିଲେ ଯେ ଆମେ ଅର୍ଚ୍ଚନା ବାହାଘର ପାଇଁ ଏଠି ସେଠି ଖୋଜାଖୋଜି କରୁଛୁ। ନିଜେ ଆଗତୁରା ପ୍ରସ୍ତାବ ଆଣି ଦେଲେ। ...ଦେଖ, ବାପ ନ ଥିବା ଝିଅ ପାଇଁ କେମିତି ଠାକୁରେ ସବୁ ବ୍ୟବସ୍ଥା କରି ଦେଲେ!'' ବସା ବସା ଗଳାରେ ଶ୍ରଦ୍ଧା କହିପକେଇଲେ।

''ପୁଅ ଘର ଆସି ଝିଅକୁ ଦେଖିଲେ ନାହିଁ?''

''ଦେଖିବେ ନାହିଁ ପୁଣି ? ତେବେ ପୁଅଟି ତା' ଘରେ କହିଦେଲା ଯେ ସେ ଏମିତି ଯାଇ କାହା ଘରେ ମିଠା ଖାଇ ଝିଅ ଦେଖି ପାରିବନି। ସେଥିପାଇଁ ଅର୍ଚ୍ଚନାକୁ କିଛି ନ କହି ଚୁପ୍‌ଚାପ୍ ମନ୍ଦିରକୁ ନେଇଗଲୁ ଦିନେ। ସେଇଠି ସେମାନେ ଦେଖିନେଲେ ଝିଅକୁ।''

''ହେଲେ ଦିଦି, ସେମାନଙ୍କର କିଛି ଯୌତୁକ ଦାବୀ ନାହିଁ ତ ?''

''ନାଇଁ ସଲମା। ଅନିରୁଦ୍ଧର ବଡ଼ବାବୁଙ୍କୁ ତ ଆଉ ଆମ ଘର ଅବସ୍ଥା ଅଜଣା ନାହିଁ। ସେ ହିଁ ପ୍ରଥମରୁ ଆମକୁ କହି ଦେଇଥିଲେ ଯେ ପୁଅ ଘରର

ଖାଲି ଭଲ ପରିବାରର ସୁନ୍ଦରୀ ଶିକ୍ଷିତା ଝିଅଟିଏ ଦରକାର। ବାସ୍ - ଆଉ କିଛି ନାହିଁ।'' କଥା କହୁ କହୁ ଶ୍ରଦ୍ଧାଙ୍କର ଆଖି ଛଳ ଛଳ ହୋଇ ଉଠିଲା। ''ତମେ ତ ଆମ ଅବସ୍ଥା ଜାଣିଛ ଭଉଣୀ। ଆମର କ'ଣ ଦିଆ ନିଆ କରି ବାହାଘର କରେଇବାର ଶକ୍ତି ଅଛି?''

ଅଗଣାରେ ଖରା ଖାଉଥିବା ବିଛଣା, ତକିଆକୁ ଘର ଭିତରକୁ ନେବା ପାଇଁ ଠିକ୍ ସେତିକି ବେଳେ ଶୋଇବା ଘରୁ ବାହାରି ଆସୁଥିଲା ଅର୍ଚ୍ଚନା। ଶ୍ରଦ୍ଧାଙ୍କ କଥାରେ ତା' ପାଦ ଅଟକିଗଲା। ''କାହା ବାହାଘର?''

''କଥା ଶୁଣ ସଲ୍‌ମା, ଆମ ଝିଅର।'' ଶ୍ରଦ୍ଧା କାନିରେ ଆଖି ଲୁହ ପୋଛି ନେଇ ହସିବାକୁ ଲାଗିଲେ। ''କେମିତି ଯାଇ ଏ ଶାଶୂଘରେ ଚଳିବ ଠାକୁରେ ଜାଣନ୍ତି।''

''କାହା ବାହାଘର, ମା'?'' ଏଥର ସାମାନ୍ୟ ଜୋର ଗଳାରେ ଅର୍ଚ୍ଚନା ପଚାରି ଉଠିଲା।

ଶ୍ରଦ୍ଧା କିଛି କହିବା ଆଗରୁ ଧାଇଁ ଆସିଲା ଅନୁପମା। ଅଗଣାରେ ଖରା ଦିଆ ହୋଇଥିବା ବିଛଣା, ତକିଆଟକ ଦିଦି ହାତରେ ତୋଳି ଦେଇ ସପଟାକୁ ଗୁଡ଼େଇ ପକାଉ ପକାଉ ସେ କହିଲା, ''ତୋ ବାହାଘର ପରା ଦିଦି। ... ଇସ୍, ତା' ମୁହଁ ଦେଖୁଛ ଚାଟୀ? ମନେ ମନେ ପଛେ ଖୁସୀ ହୋଇ ଯାଉଛି, କିନ୍ତୁ ଉପରେ ଉପରେ ସତେ ଯେମିତି ମତେ ଜାଳି ପୋଡ଼ି ଦେବ!'' ଅନୁପମା ବଡ଼ ଭଉଣୀକୁ ଚିଡ଼େଇଲା।

''ବାଜେ କଥା ବନ୍ଦ କର, ଅନି।'' ଅର୍ଚ୍ଚନା ଗର୍ଜି ଉଠିଲା।

''ଏ ମା'। ବାଜେ କଥା କ'ଣ? ମା', ମୁଁ କ'ଣ ମିଛ କହୁଛି? ସତରେ କ'ଣ ଦିଦି ବାହାଘର ଠିକ୍ ହୋଇଯାଇନି?''

ପଚାରିବା ପଚାରିବା ଆଖିରେ ଏଥର ମା'ଙ୍କ ଆଡ଼କୁ ଚାହିଁଲା ଅର୍ଚ୍ଚନା।

''ହଁ ରେ ମା'। ଚକ୍ରବର୍ତ୍ତୀ ବାବୁଙ୍କର ଶାଳୀର ପୁଅ ସାଙ୍ଗରେ ପରା ସ୍ଥିର ହୋଇଗଲା। ଏଇ ମ, ସେଦିନ ଯେଉଁମାନେ ମନ୍ଦିରକୁ ଆସିଥିଲେ...।''

ମନ୍ଦିରକୁ ଆସିଥିଲେ!! କିଏ?

ଝାପ୍‌ସା ଝାପ୍‌ସା କଥା ମନ ଭିତରକୁ ପଶି ଆସୁଛି ତା'ର। ହଁ, ସେଦିନ ସୋମବାର ଥିଲା ନା କ'ଣ। ମା' ବାଧ କରେଇ ତାକୁ ମନ୍ଦିରକୁ ନେଇ

ଯାଉଥିଲେ। ପୁଣି ମନ୍ଦିର ଗଲାବେଳେ ଭଲ ଶାଢ଼ି, କିଛି ଗହଣା ପିନ୍ଧିବାକୁ ବାଧ କରିଥିଲେ ମା'। ପ୍ରଥମେ ରାଜି ହୋଇ ନ ଥିଲେ ବି ଅଯଥା ଗଣ୍ଡଗୋଳ ସେ କରି ନ ଥିଲା। ସେଇଠି ମନ୍ଦିରରେ ଦାଦା ଅଫିସ୍‌ର ବଡ଼ବାବୁ ଓ ତାଙ୍କ ପରିବାରର କେଇଜଣଙ୍କ ସାଙ୍ଗରେ ଦେଖା ହୋଇଯାଇଥିଲା। ଅର୍ଚ୍ଚନା ଭାବିନେଇଥିଲା ଯେ ସେ ଦେଖା ଆକସ୍ମିକ। କିନ୍ତୁ ତା' ପଛରେ ଯେ ଝିଅ ଦେଖା ଭଳି ଘଟଣା ଲୁଚି ରହିଥିଲା, କାହିଁ ସେକଥା ତ ସେ ଆଦୌ ଭାବି ପାରିନି।

ଏସବୁ କ'ଣ ହୋଇଗଲା! ଏତେ ବଡ଼ ଗୋଟାଏ ବିପର୍ଯ୍ୟୟର କେମିତି ସାମ୍ନା କରିବ ସେ? ଅର୍ଚ୍ଚନା କିଛି ଚିନ୍ତା କରି ପାରୁ ନ ଥିଲା। କିଛି ବୁଝି ପାରୁ ନ ଥିଲା।

''ମୋ ବାହାଘର?? ନା! ନା!!'' ବିଛଣାତକ ସେଇଠି ତଳେ ପକେଇ ଦେଇ ଭିତରକୁ ଧାଇଁ ଚାଲିଗଲା ଅର୍ଚ୍ଚନା।

''ଆରେ ଆରେ। ଏଗୁଡ଼ାକ ଏମିତି ପକେଇ ଦେଲୁ କାହିଁକି? ଏ ଅର୍ଚ୍ଚନା ଦେଖୁଛ, ଦେଖୁଛ ସଲ୍‌ମା, ଲାଜ ଲାଗିଗଲା ଆମ ଅର୍ଚ୍ଚନାକୁ।'' ହଠାତ୍ ଆଖିରେ ଶାଢ଼ି ମାଡ଼ିଦେଲେ ଶ୍ରଦ୍ଧା, ''ଆମ ଘର ଉଜ୍ଜ୍ୱଳ କରି ରଖିଛି ଏ ଝିଅ। ତାକୁ ପରଘରକୁ ବିଦା କରିଦେଇ ମୁଁ ବଞ୍ଚିବି କେମିତି ଗୋ ସଲ୍‌ମା?''

''ଏବେଠୁ ଏମିତି ମନ ଖରାପ କଲେ ହୁଏ ଦିଦି? ଏବେ ତୁମକୁ ଅଣ୍ଟା ଭିଡ଼ି କାମରେ ଲାଗିଯିବାକୁ ହେବ।... ଝିଅ ଜନ୍ମ ତ ପରଘରକୁ। କ'ଣ ଆଉ କରିବା।''

ସଲ୍‌ମା ପାନ ଖଣ୍ଡିଏ କଳରେ ଯାକି ଉଠିଲେ।

ସଲ୍‌ମା ଘରୁ ବାହାରିଯିବା କ୍ଷଣି ଝଡ଼ ଭଳି ଭିତର କୋଠରୀରୁ ବାହାରି ଆସିଲା ଅର୍ଚ୍ଚନା। ବିଭ୍ରାନ୍ତ ଦୃଷ୍ଟି। ବିଧ୍ୱସ୍ତ ଚେହେରା। ''ନା ମା' ନା। ତୁମେ ବାହାଘର ଭାଙ୍ଗିଦିଅ। ମୁଁ ପାରିବିନି।'' ଶ୍ରଦ୍ଧାଙ୍କ କୋଳରେ ମୁହଁ ମାଡ଼ି ଦେଇ ଜୋରରେ କାନ୍ଦି ଉଠିଲା ଅର୍ଚ୍ଚନା।

''ଛି ରେ ମା'। ଏମିତି କଥା କହନ୍ତି?'' ଝିଅର ମୁଣ୍ଡ ସାଉଁଳେଇ ନେଉ ନେଉ ଶ୍ରଦ୍ଧା ଧୀରେ ଧୀରେ କହିଲେ।

''ନାଇଁ ମା'। ମୁଁ ଜମା ପାରିବିନି।''

ଶ୍ରଦ୍ଧା ମନେ ମନେ ହସିଲେ। ସବୁ ଝିଅ ଏଇମିତି ଭାବନ୍ତି। ନିଜ ଲୋକଙ୍କୁ

ଛାଡ଼ି ଆଉ ଗୋଟାଏ ନୂଆ ପରିବାରକୁ ଯିବା କଥା ଭାବିଦେଲେ ଗୋଟାଏ କୋକୁଆ ଭୟ ଛାତି ଉପରେ ଜମାଟ ବାନ୍ଧିଯାଏ ସେମାନଙ୍କର। ତାଙ୍କର ନିଜର କ'ଣ ସେଇମିତି ହୋଇ ନ ଥିଲା ? ହୋଇଥିଲା ତ। ସେ ପୁଣି ଭାବି ନେଇଥିଲେ ଯେ ସବୁଠାରୁ ସାନ ଝିଅ ବୋଲି ଠେଲି ଦେଉଛନ୍ତି ସମସ୍ତେ। ପାଖରେ ଆଉ ରଖିବାକୁ ଚାହୁଁ ନାହାନ୍ତି କେହି। ହେଲେ...

ସବୁ ଝିଅଙ୍କ ମନରେ ଏଇମିତି ଭାବନା ଆସେ। କିନ୍ତୁ ବାହାଘର ପରେ ସବୁ ବଦଳିଯାଏ। ଖୁବ୍ ଶୀଘ୍ର ବାପଘରକୁ ଭୁଲିଯାଆନ୍ତି ସେମାନେ। ସେଇ ନୂଆ ସ୍ଥାନଟି ସେମାନଙ୍କର ଅତି ନିଜର ହୋଇଯାଏ। ନୂଆ ଲୋକମାନେ ଆପଣାର ହୋଇ ଯାଆନ୍ତି। ତା'ପରେ ବାପଘରକୁ କେବଳ ଅତିଥି ଭଳି ବୁଲି ଆସନ୍ତି ସେମାନେ।

ଏଇ ଦେଖ, ଅର୍ଚ୍ଚନାକୁ। ଏବେ ଏମିତି ବିବ୍ରତ ହେଉଛି, କିନ୍ତୁ ପରେ ପରେ ସବୁ ଠିକ୍ ହୋଇ ଯିବନି କି ? ସେଇ ପୁଣି ଦିନେ କହିବ, 'ନା ମା', ପାଟ୍ନାରେ ବେଶୀ ଦିନ ରହିପାରିବିନି। ମୁଁ ଏଠି ରହିଗଲେ, ସେମାନେ ସମସ୍ତେ ବହୁତ ହଇରାଣ ହେବେ।'

ଭବିଷ୍ୟତର ସ୍ୱପ୍ନରେ ମଜ୍ଜି ଯାଇଥିଲେ ଶ୍ରଦ୍ଧା। ଅର୍ଚ୍ଚନା ଆଖିର ଲୁହ ଦେଖି ମଧ୍ୟ ପ୍ରଭାବିତ ହୋଇପାରୁ ନ ଥିଲେ।

''କ'ଣ ହେଲା ? ଏଁ ? ଏ ଅର୍ଚ୍ଚନା, କ'ଣ ହେଲାରେ ?'' ଅଫିସ୍‌ରୁ ଫେରି ଘରେ ପାଦ ଦେଉ ଦେଉ ବ୍ୟସ୍ତ ହୋଇ ପଚାରି ପକେଇଲା ଅନିରୁଦ୍ଧ।

''କ'ଣ ଆଉ ହେବ ?'' ହସନ୍ତ ସ୍ୱରରେ ଶ୍ରଦ୍ଧା କହିଲେ, ''ବାହାଘର କଥା ଶୁଣି ସବୁ ବନ୍ଧ ଭାଙ୍ଗି ଯାଇଛି। ତୁ ମୁହଁ ହାତ ଧୋଇବୁଟି। ମୁଁ ଅନିକୁ କହୁଛି ତତେ ଚାହା କପେ ଦେବ।''

ହଠାତ୍ ମା'ଙ୍କ କୋଳରୁ ମୁହଁ ଉଠେଇ ନେଇ ଲୁହ ବଟୁରା ଆଖିରେ ଦାଦାକୁ ବିକଳ ହୋଇ ଚାହିଁଲା ଅର୍ଚ୍ଚନା। ''ଦାଦା, ତୁମେ ଏ ବାହାଘର ଭାଙ୍ଗି ଦିଅ। ସେମାନଙ୍କୁ ତୁମେ ମନା କରିଦିଅ ଦାଦା। ତୁମ ପାଦ ତଳେ ପଡୁଛି।''

ଅନିରୁଦ୍ଧର ମୁହଁରୁ ସବୁତକ ରଙ୍ଗ ଏକା ସାଙ୍ଗରେ ଉଡ଼ିଗଲା ଯେମିତି। ଶ୍ରଦ୍ଧାଙ୍କ ଭଳି ସେ ଆଦୌ ଭାବି ପାରିଲା ନାହିଁ ଯେ ବାହାଘର ସ୍ଥିର ହୋଇଯାଉଥିବା ଖବର ଶୁଣି ଅର୍ଚ୍ଚନା ଆଉ ପାଞ୍ଚଟା ଝିଅଙ୍କ ଭଳି ଶୋକରେ ଭାସିଯାଉଛି।

ଏ ଶୋକ ଯେ ଆହୁରି ଗଭୀର, ଏହାର କାରଣ ଯେ ଅନ୍ୟ କିଛି, ଏକଥା କ'ଣ ଅନିରୁଦ୍ଧ ବୁଝିନି ? ଯେଉଁ ଭୟ ତାକୁ ଏତେ ଦିନ ଭିତରେ ଭିତରେ ନଖ, ଦାନ୍ତ ଦେଖାଉଥିଲା, ସେଇ ଦୈତ୍ୟ ଆସି ସାମ୍ନାରେ ଠିଆ ହୋଇଯାଇଛି ତା'ର । ଅନିରୁଦ୍ଧର ପାଦ ତଳୁ ମାଟି ଖସି ଖସି ଯାଉଥିଲା ।

ଅଗଣାରେ ପଡ଼ିଥିବା ଖଟରେ ଚଟ୍ କରି ବସିଯାଇ ସେ କହିଲା, ''କଥା ଦେଇ କ'ଣ ଏମିତି କଥା ଭାଙ୍ଗି ଦିଆଯାଏ ? ଏତେ ଭଲ ଘର, ଭଲ ବର...''

ଅର୍ଚ୍ଚନା କିଛି ଶୁଣିବାକୁ ପ୍ରସ୍ତୁତ ନ ଥିଲା । ''ମୁଁ ମରିଯିବି, ଦାଦା । ତୁମେମାନେ ମତେ ବାଧ କରନି । ମୁଁ ଜମା ପାରିବିନି ।''

ଶ୍ରଦ୍ଧା ଏଥର ଟିକିଏ ଆଶ୍ଚର୍ଯ୍ୟ ହେଲେ । ଅର୍ଚ୍ଚନାଠୁ ବୋଧହୁଏ ଏତେଟା ସେ ଆଶା କରି ନ ଥିଲେ ।

''କ'ଣ ହେଉଛି ଅର୍ଚ୍ଚନା ମା' ? ଆମେ କ'ଣ ତତେ ଠେଲି ଦେଉଛୁ ବୋଲି ଭାବିଛୁ ? କେତେ ଦେଖି ଚାହିଁ ବୁଝି ବିଚାରି ଏଇଠି ବାହାଘର ସ୍ଥିର କରିଛୁ । ଆଉ ତୁ...''

''ମତେ କ୍ଷମା କର ମା' । ମୁଁ ଜମା ପାରିବିନି ।'' ଭିତରକୁ ଧାଇଁ ଚାଲିଗଲା ଅର୍ଚ୍ଚନା ।

''କ'ଣ ହେଲା ରେ ଅନିରୁଦ୍ଧ ? ଏ ଏମିତିଆ କ'ଣ ହେଉଛି ?'' ଶ୍ରଦ୍ଧା ଅବାକ ।

''ନାଇଁ ମ ମା', ହଠାତ୍ କରି ଖବରଟା ଶୁଣିଛି ତ ସେଥିପାଇଁ ସେଇମିତି ହେଉଛି ।'' ମୁହଁରେ ମିଛ ହସ ଫୁଟେଇ ଅନିରୁଦ୍ଧ କହିପକେଇଲା ।

''ଓ ।'' ପୁଣି ଆଗ ଭଳି ନିଶ୍ଚିନ୍ତ ହୋଇଗଲେ ଶ୍ରଦ୍ଧା ।

ଅର୍ଚ୍ଚନା ଆଖିରୁ କିନ୍ତୁ ଲୁହ ଧାର ଶୁଖିଲା ନାହିଁ ।

ଆଶୀର୍ବାଦର କେଇଟା ଦିନ ଆଗର ଘଟଣା । ଅଗଣାରେ ବସି ଶ୍ରଦ୍ଧା ପୁଅ ସାଙ୍ଗରେ ବାହାଘର ନେଇ କ'ଣ ସବୁ ଆଲୋଚନା କରୁଥିଲେ । ହଠାତ୍ ସେଇଠି ଆସି ପହଞ୍ଚିଗଲା ଅନୁପମା । ଶ୍ରଦ୍ଧା ଟିକିଏ ବିରକ୍ତ ହେଲେ । ''କ'ଣ ହେଲା ? ରାତିରେ ରୋଷେଇ ସରିଗଲା ଏତେ ଶୀଘ୍ର ?''

''ରୋଷେଇ ତ ହେବ ମା'। ଏବେ ଆଉ କେତେ ବେଳ ହେଇଛି ଯେ।''

''ତୁ ଭିତରକୁ ଯା। ମୋର ତୋ ଦାଦା ସାଙ୍ଗରେ ବହୁତ କଥା ଅଛି।'' ଚିଡ଼ା ସ୍ୱରରେ ସେ ସାନଝିଅକୁ କହିଲେ।

''ମା', ଦିଦିର ଏଇଠି ବାହାଘର ନ ହେଲେ...?''

''ଏଠି ବାହାଘର ହେବନି? କାହିଁକି? ଏଁ?''

''ନା ମାନେ ଦିଦିର ଯେତେବେଳେ ଏଠି ଜମା ଇଚ୍ଛା ନାହିଁ, ସେତେବେଳେ ଏତେ ଜୋର ଜବରଦସ୍ତି କରି...''

''ଏଠି ଇଚ୍ଛା ନାହିଁ? ତା'ହେଲେ କୋଉଠି ଇଚ୍ଛା ଅଛି ଶୁଣେ?'' ଗର୍ଜି ଉଠିଲେ ଶ୍ରଦ୍ଧା। ''ବାହାଘର କ'ଣ ପିଲା ଖେଳ ନା କ'ଣ?''

''ସେଇଥିପାଇଁ ତ କହୁଛି ମା'। ତୁମେ ରାଗୁଛ କାହିଁକି?'' ଖୁବ୍ ଶାନ୍ତ ଭାବରେ ଅନୁପମା କହିଲା। ଚଉଦ ବର୍ଷର ଝିଅଟି ଏଇମିତି କଥା କହିପାରେ? ସାନ ଭଉଣୀକୁ ଆଶ୍ଚର୍ଯ୍ୟରେ କେବଳ ଦେଖୁଥିଲା ଅନିରୁଦ୍ଧ।

ଅନୁପମା ମାଟିକୁ ଚାହିଁ କହିଲା, ''ଦିଦି ସବୁବେଳେ ଖାଲି କାନ୍ଦୁଛି। କହୁଛି ଯେ ସେଠି ବାହାଘର ହେଲେ ସେ ମରିଯିବ।''

''ତା'ହେଲେ କୋଉଠି ବାହାଘର ହେବ ଶୁଣେ।'' ଶ୍ରଦ୍ଧାଙ୍କ ସ୍ୱରରୁ ଯେମିତି ନିଆଁହୁଳା ଝରୁଛି।

''ମା' ସେସବୁ ଯେବେ ହେବା କଥା ହେବ। ହେଲେ ଏବେ ଯେତେବେଳେ ତା'ର ଜମା ଇଚ୍ଛା ନାହିଁ ... ମା', କାହିଁକି ଏତେ ବାଧ କରୁଛ ଦିଦିକୁ?''

''ବାଧବାଧକତାର ପ୍ରଶ୍ନ କାହିଁ ଏଠି?'' ହଠାତ୍ ଶ୍ରଦ୍ଧାଙ୍କର ହେତୁ ହେଲା ଯେ ଏତେ ସମୟ କେବଳ ଚୁପ୍‌ଚାପ୍ ଅନୁପମାର କଥା ଶୁଣିଯାଉଛି ଅନିରୁଦ୍ଧ। ମୁହଁ ଖୋଲୁନି। ପ୍ରତିବାଦ କରୁନି।

ପ୍ରତିବାଦ କରୁନି? ପାଟିଟାଏ କରି ସାନ ଭଉଣୀକୁ ଚୁପ୍ କରେଇ ଦେଇ ପାରୁନି?

''ଶୁଣୁଛୁଟି ରେ ବାବୁ ଏ ଅନି କଥା? ତୁ ଠିକ୍ କହୁଥିଲୁ, ଅତି ବେଶୀ ମୁହଁ ବଢ଼ା ହୋଇଯାଉଛି ସେ ଦିନକୁ ଦିନ। ନାଟକ ନଭେଲ ପଢ଼ି ଏଇସବୁ ବାହାରୁଛି ଏବେ। ...ତୁ ଅର୍ଚ୍ଚନାକୁ ଡାକି ମୁହେଁ ମୁହେଁ ଏକଥାଟା ଆଜି ପଚାର।''

"ଥାଉ ମା'। ଆଉ ପଚାରିବାର କିଛି ପ୍ରୟୋଜନ ନାହିଁ।" ଶାନ୍ତ ଭାବରେ ଉଠିଗଲା ଖଟରୁ ଅନିରୁଦ୍ଧ। "କାଲି ମୁଁ ଚକ୍ରବର୍ତ୍ତୀ ବାବୁଙ୍କୁ କହିଦେବି। ଏ ବାହାଘର ହୋଇ ପାରିବ ନାହିଁ।"

"ବାହାଘର ହେବନି!! ଭାଙ୍ଗିଦେବୁ ବାହାଘର?? ଗୋଟାଏ ପାଗଳୀ ଝିଅ କଥାରେ ତୁ ଏତେ ଭଲ ପ୍ରସ୍ତାବ ଭାଙ୍ଗିଦେବୁ?"

"ଉପାୟ ନାହିଁ ମା'।" ଧୋତି ଉପରେ ସାର୍ଟ ଖଣ୍ଡିଏ ଗଳେଇ ନେଇ ଘରୁ ବାହାରି ଚାଲିଗଲା ଅନିରୁଦ୍ଧ।

ସନ୍ଧ୍ୟାବେଳେ ପାବ୍‌ନାର ବେଶ୍ କେତେ ଜଣ ଭାବୁକ ମଣିଷ ଇଛାମତୀ ନଦୀ କୂଳରେ ଯାଇ ବସନ୍ତି। କେହି କେହି ଏକା। ଆଉ ପୁଣି କେତେ ଜଣ ଦଳ ବାନ୍ଧି। ଅନିରୁଦ୍ଧ କିନ୍ତୁ କେବେ ଏଇଠି ଆସି ବସିଛି ବୋଲି ତା'ର ମନେ ନାହିଁ। ବାବା ଥିବା ବେଳେ ସେମାନଙ୍କ ଘରଟା ନଦୀଠୁ ବେଶ୍ ଦୂରରେ ଥିଲା। ତେଣୁ ସେତେବେଳେ ଏପଟକୁ ଆସିବା ପ୍ରଶ୍ନ ଉଠୁ ନ ଥିଲା। ତା'ପରେ ବାବା ଚାଲିଯିବା ପରେ ଚାକିରି, ଦୋକାନ ନେଇ ଅନିରୁଦ୍ଧର ସମୟତକ କେମିତି ଯେ କଟିଯାଉଥିଲା, ତା' ଭଗବାନ ଜାଣନ୍ତି। ସେସବୁ ପରେ ଇଛାମତୀ ନଦୀ କୂଳରେ ଆସି ବସିବାର ଆଗ୍ରହ କେଉଁଠୁ ଆସିବ ତା'ର?

ହେଲେ ଆଜି କଥା ଭିନ୍ନ। ଅନିରୁଦ୍ଧ ଆଜି ଏତେ ବେଶୀ ବିବ୍ରତ ଯେ ସେ ଚାଲି ଚାଲି ଆସି ସେଇ କେତେବେଳଠୁ ନଈ କୂଳରେ ବସି ରହିଛି ପଥର ଭଳି।

ଭାବି ହେଉଛି କେବଳ ଅର୍ଚ୍ଚନା କଥା।

ମନା କରିଦେଲା ସେ! ବାହା ହେବା ପାଇଁ ଶେଷରେ ମନା କରିଦେଲା ଅର୍ଚ୍ଚନା! ତା'ମାନେ ତା'ର ସନ୍ଦେହ ଅମୂଳକ ନ ଥିଲା। ଏବେ ତା'ହେଲେ କ'ଣ ହେବ?

ଅନିରୁଦ୍ଧ ଜମା ଭାବୁ ନ ଥିଲା ତା' ବଡ଼ବାବୁଙ୍କ କଥା। ସେ ନିଶ୍ଚୟ ବିରକ୍ତ ହେବେ। ତା' ଉପରେ ଖରାପ ଧାରଣା କରିନେବେ। କିନ୍ତୁ କ'ଣ ଆଉ କରାଯିବ?

ଅନିରୁଦ୍ଧର ପ୍ରଧାନ ଚିନ୍ତା ଥିଲା ଅର୍ଚ୍ଚନାକୁ ନେଇ। ତା'ର ଏବେ କ'ଣ

ହେବ ? ସେ କ'ଣ କରିବ ?

ଅନିରୁଦ୍ଧ ଘରକୁ ଫେରୁ ଫେରୁ ବେଶ୍ ଡେରି ହୋଇଯାଇଥିଲା। କିନ୍ତୁ ନ ଖାଇ ସମସ୍ତେ ଅପେକ୍ଷା କରି ରହିଥିଲେ ତା' ପାଇଁ।

''କୁଆଡ଼େ ଏମିତି ଚାଲିଗଲୁରେ ବାବୁ ? ସେତେବେଳଠୁ ଆଙ୍କେବାଙ୍କେ ଚିନ୍ତାରେ ମୁଁ ଏଠି ମରୁଛି।'' ଶ୍ରଦ୍ଧା ବ୍ୟସ୍ତ ଭାବରେ କହିପକେଇଲେ।

ମା'ଙ୍କ ପ୍ରଶ୍ନର କୌଣସି ଉତ୍ତର ନ ଦେଇ କେମିତି ଏକ ଘୋଷା ସ୍ୱରରେ ଅନିରୁଦ୍ଧ ପଚାରିଲା, ''ଅର୍ଚ୍ଚନା କାହିଁ ମା' ? ତାକୁ ଟିକିଏ ଡାକିଦିଅ ତ।''

ଚୁପ୍‌ଚାପ୍ ପାଖରେ ଆସି ଠିଆ ହେଲା ଅର୍ଚ୍ଚନା। ତା' ମୁହଁ ଉପରେ ଆଖି ରଖି ଅନିରୁଦ୍ଧ କହିଲା, ''ତୁ ସେ ଗୌରୀ ଦିଦିର କକେଇ ଶ୍ୱଶୁରଙ୍କ ସ୍କୁଲ କଥା କ'ଣ କହୁଥିଲୁ ?''

''ଏଁ ?'' କ'ଣ ଏସବୁ ପଚାରୁଛି ଦାଦା ? ଗୌରୀ ଦିଦିର କକେଇ ଶ୍ୱଶୁରଙ୍କ ସ୍କୁଲ୍ ? ଅର୍ଚ୍ଚନା ଆଶ୍ଚର୍ଯ୍ୟରେ ଆଖି ଉଠେଇ ତା' ବଡ଼ ଭାଇକୁ ଦେଖିଲା। ସେ ତ ହେଲାଣି କାହିଁ କେଉଁ ଯୁଗ କଥା। ସେତେବେଳେ ଯେମିତି ଭାବରେ ଦାଦା ରାଗରେ ଫାଟି ପଡ଼ିଥିଲା, ତା' କ'ଣ ଏତେ ଦିନ ଭିତରେ ଭୁଲିଛି ଅର୍ଚ୍ଚନା ? ହଠାତ୍ ପୁଣି ସେସବୁ କଥା କାହିଁକି ?

''ହଁ, ତୁ କହୁଥିଲୁ ନା ସେଠି ଚାକିରି କରିବୁ ବୋଲି ?''

''ହଁ।'' ସରୁ ସ୍ୱରରେ ଅର୍ଚ୍ଚନା କହିଲା। ''ଗୌରୀ ଦିଦି କହୁଥିଲେ, ଝିଅଙ୍କ ସ୍କୁଲ୍। ଯିଏ ପାଠ ବି ପଢ଼େଇପାରିବ, ଆଉ ସିଲେଇ ବି ଜାଣିଥିବ, ସେଇଭଳି ଜଣକୁ...''

ପୂରା କଥା ନ ଶୁଣି ଅନିରୁଦ୍ଧ କହିଲା, ''ଠିକ୍ ଅଛି। ଚାଲିଯା।''

''କ'ଣ ???'' କେବଳ ଅର୍ଚ୍ଚନା ନୁହଁ, ଶ୍ରଦ୍ଧା ଓ ଅନୁପମା ମଧ୍ୟ ଅନିରୁଦ୍ଧର ଏ ନିଷ୍ପତ୍ତି ଶୁଣି ଅବାକ।

''କହିଲି ତ। କାଲି ଗୌରୀ ଦିଦିକୁ ଚିଠି ଦେ।''

''କିନ୍ତୁ ଏତେ ଦିନ ପରେ  ହୁଏତ ଆଉ କାହାକୁ ସେମାନେ ଚାକିରି ଦେଇ ସାରିବେଣି...'' ଅର୍ଚ୍ଚନାର କଥା ଜଡ଼େଇ ହୋଇଯାଉଛି। ମନଟା ସଂଶୟମୁକ୍ତ ହେଇପାରୁନି। ଦାଦାର ମନ ହଠାତ୍ କାହିଁକି ବଦଳିଗଲା ?

‘‘ତୁ ଆଗ ଚିଠି ଦେଇ ଦେଖ୍। ହୁଏତ ଏବେ ବି ସେ ଚାକିରି ସେଇମିତି ଖାଲି ରହିଛି। ଗୌରୀ ଦିଦିଠୁ ଉତ୍ତର ଆସିଲେ, ମୁଁ ନେଇ ତତେ ସେଠି ଛାଡ଼ି ଦେଇ ଆସିବି।’’

ଉତ୍ତର ଦେଲାନି ଅର୍ଚ୍ଚନା। ସେ କେମିତି ତା’ ଦାଦାକୁ କହିଥାଆନ୍ତା ଯେ ଦିନେ ଯେଉଁ ଚାକିରି କରିବା ପାଇଁ ତା’ ଭିତରେ ପ୍ରବଳ ଆଗ୍ରହ ଓ ଉତ୍କଣ୍ଠା ଥିଲା, ଆଜି ସେଇ ଚାକିରିଟା ତା’ ପାଇଁ ମୂଲ୍ୟହୀନ ହୋଇ ପଡ଼ିଛି। ସମାନ୍ତରାଳ ଭାବରେ ହେଉ ପଛକେ, ଜଣକ ପୃଥିବୀର ଆଖପାଖରେ, ପଥର କାନ୍ଥର ଅନ୍ୟପଟେ ରହିବା ଏବେ ତା’ ଜୀବନର ସବୁ କିଛି ହୋଇ ସାରିଛି।

ନା, ଦାଦାକୁ ସେ କିଛି କହିପାରିବନି।

‘‘କ’ଣ ହେଲା ?’’

ଅର୍ଚ୍ଚନା ପାଟିରୁ ତଥାପି ଶବ୍ଦ ବାହାରୁନି। ନିରବ ଭାବରେ ସେ କେବଳ ମୁଣ୍ଡ ଟୁଙ୍ଗାରି ଦେଲା।

‘‘ଠିକ୍। କାଲି ଚିଠି ପକେଇଦେ। ...ଖାଇବାକୁ ବାଢ଼ ମା’, ବଡ଼ ଭୋକ।’’ ଯେମିତି କିଛି ହୋଇନି, ସେଇଭଳି ସ୍ୱରରେ କହିଲା ଅନିରୁଦ୍ଧ।

ହେଲେ ତା’ ଭିତରେ ଭିତରେ ଯେ କ’ଣ ସବୁ କଥା ଅପ୍ରକଟ ରହିଗଲା, ସେସବୁ ବା କିଏ ଜାଣି ପାରିଲା ?

ସାହିତ୍ୟ ବହିଟାକୁ ହାତରେ ଧରି ପଢୁଥିଲା ଅନୁପମା। ପଢୁଥିଲା ବୋଲି ଠିକ୍ କହି ହେବନି। କାରଣ ଯଦିଓ ଆଖି ଠିକ୍ ଭାବରେ ଅକ୍ଷର, ଶବ୍ଦ, ଧାଡ଼ି ଉପରେ ଘୁରି ବୁଲୁଥିଲା, ସେସବୁ କିଛି ତା’ ମୁଣ୍ଡ ଭିତରେ ପଶୁ ନ ଥିଲା।

ଉଃ ! ବହିଟା ତଳେ କଚି ଦେଲା ସେ। ଜମା ମନ ଲାଗୁନି। ପରୀକ୍ଷା ଆଗରେ। ପଢ଼ିବାକୁ ହେବ। ଏ କଥା ବୁଝୁଥିଲେ ବି ମନକୁ ସେ ଜମା ବହି ଭିତରେ ବାନ୍ଧି ରଖି ପାରୁ ନ ଥିଲା। ଖଟ କଡ଼କୁ ରଖା ହୋଇଥିବା ସିଲେଇ ବ୍ୟାଗଟା ଟାଣି ଆଣିଲା ସେ। ତିନିଟା ଫ୍ରକ୍ କଟା ହୋଇ ରହିଛି।

ତାଙ୍କ ସାହିର ଜଣେ ଦେଇ ଯାଇଥିଲେ ଦଶ ଦିନ ତଳେ। ଜନାଟା ପାଇବା ଦିନ ଅନୁପମା କାଟିକୁଟି ରଖି ଦେଇଥିଲା। କେବଳ ସମୟ କରି ମେସିନ୍ ପାଖରେ ବସିବାକୁ ହେବ। ଆଉ କଲର୍ ଉପରେ ସାମାନ୍ୟ ଏମ୍ବ୍ରଏଡରି କରିବାକୁ ହେବ। ଏତିକ ତା' ପାଇଁ ମାତ୍ର ଦି' ଦିନର କାମ, ଅଥଚ ସେ ସେଦିନଠୁଁ ପକେଇ ରଖିଛି।

ନା, ଆଉ ସିଲେଇ କାମ ନେବ ନାହିଁ ସେ। ମ୍ୟାଟ୍ରିକ୍ ପରୀକ୍ଷା ସରୁ, ତା'ପରେ ଯାଇ। ଏବେ ପାଠ ଛଡ଼ା ସେ ଆଉ କୋଉଥିରେ ମନ ଦେଇ ପାରିବନି। ତଳେ ଜଚି ଦେଇଥିବା ବହିଟିକୁ ଚାହିଁଲା ଅନୁପମା ନିହାତି ଅନାଗ୍ରହରେ।

ବହି ଆଡ଼େ ଚାହିଁବାକୁ ଇଚ୍ଛା ହେଉନି ଜମା। ଚୁପ୍‌ଚାପ୍ ଖଟ ତଳେ ଲୁଚେଇ ରଖିଥିବା ନିଜ କବିତା ଖାତା ଟାଣି ଆଣିଲା ସେ। ଅନୁପମା ଯେ ଲୁଚେଇ ଲୁଚେଇ କବିତା ଲେଖେ, କବିତା ଲେଖିବାକୁ ଭଲ ପାଏ, ସେକଥା ତା' ଦିଦି ଛଡ଼ା ଆଉ କେହି ଜାଣନ୍ତି ନାହିଁ। ଲୁଚେଇ ଲୁଚେଇ ଅର୍ଚ୍ଚନାକୁ ସେସବୁ କବିତା ଶୁଣାଏ ସେ। ଆଉ ସେସବୁ ଶୁଣି ଅର୍ଚ୍ଚନା ଆଖି ବଡ଼ ବଡ଼ କରି କହେ, ''ତୁ ଏସବୁ ଲେଖୁଛୁ କେମିତି, ଅନି? କେମିତି ତୋ ମନରେ ଏସବୁ କଥା ପଶୁଛି?''

''ଧେତ୍, ଯୋଉ ତ ଲେଖା!''

''ନା ରେ, ସତରେ ବହୁତ ଭଲ ହୋଇଛି। ପଠେଇ ଦେଉନୁ କୋଉ ପତ୍ରିକାକୁ। ଦେଖିବୁ ନିଶ୍ଚୟ ଛପା ହୋଇଯିବ।''

''ଇସ୍, ତୋର ଯେଉଁ କଥା ନା, ଦିଦି। ପତ୍ରିକାବାଲାମାନେ ଯାକୁ ପଢ଼ି ହସିବେ। ଥାଉ ସେସବୁ ସେଇମିତି।''

''ଆଉ କାହାକୁ ଦେଖେଇନୁ?''

''କାହାକୁ ଦେଖେଇବି? ଅନ୍ୟ କାହାକୁ ଦେଖେଇବି ମାନେ ଦାଦା ଜାଣିବେ। ତା'ପରେ କ'ଣ ହେବ ଜାଣିନୁ? କଣ୍ଠା ଚୋବେଇ ଯିବେ ଦାଦା ମତେ। ଉପନ୍ୟାସ ପଢ଼ିଲେ ସେ କି ରାଗ ଦେଖାନ୍ତି। ଏବେ ଯଦି ଜାଣିବେ ଯେ ମୁଁ କବିତା ବି ଲେଖୁଛି, ତା'ହେଲେ ସରିଯିବ କଥା। ...ଥାଉ ବାବା ଥାଉ। ସେଇମିତି ଖାତାରେ ଥାଉ ସେସବୁ ଲେଖା।''

ଆଉ ଥରେ କବିତା ଖାତାକୁ ଚାହିଁଲା ଅନୁପମା। ନା, ଜମା ମନ ହେଉନି ଲେଖିବାକୁ। ଦିଦିକୁ ନ ଦେଖାଇ ପାରିଲେ କି ମୂଲ୍ୟ ସେ କବିତା ଲେଖାରେ ?

ଥାଉ ସେସବୁ କବିତା ଫବିତା। ମ୍ୟାଟ୍ରିକ୍ ବେଳେ ସେସବୁରେ ମନ ନ ଦେଲେ ଭଲ। ଏବେ ସେ ଖାଲି ପାଠ ପଢ଼ିବ। ପାଠ ଛଡ଼ା ଆଉ କିଛି କଥା ଭାବିବ ନାହିଁ। ତଳୁ ବହିଟାକୁ ଉଠେଇ ଆଣି ସାମ୍ନାରେ ଖୋଲି ଧରିଲା ଅନୁପମା।

ଧେତ୍! କାହିଁକି ନିଜକୁ ନିଜେ ଠକୁଛି ସେ? କାହିଁ ପାଠରେ ତ ସେ ଜମା ମନ ଦେଇ ପାରୁନି। ଏତେ ବର୍ଷ ଧରି ଭଲ ଛାତ୍ରୀ ରୂପେ ସୁନାମ ରହି ଆସିଛି ତା'ର, ମ୍ୟାଟ୍ରିକ୍ ପରୀକ୍ଷା ବେଳକୁ ସବୁ ସୁନାମ ହଜିଯିବ!

ବିନା କାରଣରେ ଅନୁପମାର ମନ ଖରାପ ହେଇଗଲା। ବହିଟାକୁ କଡ଼େଇ ରଖି ତକିଆରେ ମୁହଁ ମାଡ଼ି ପଡ଼ିଗଲା ସେ।

କିଏ କହୁଥିଲା ଦିଦିକୁ ଏମିତି ଚାକିରି ନେଇ ପଳେଇ ଯିବାକୁ? ସେ ନାହିଁ ବୋଲି ସିନା ଘରଟା ଏମିତି ଖାଁ ଖାଁ ଗୋଡ଼ାଉଛି। ଅନୁପମାକୁ ସବୁ ବିରକ୍ତ ଲାଗୁଛି। ଦିଦି ଥିଲେ କ'ଣ ଏମିତି ହେଉଥାଆନ୍ତା ?

ଏଇମିତି ଦିନେ ଘରୁ ଚାଲିଯାଇଥିଲା ଛୋଟ ଦା'। ସେତେବେଳେ ବି ବହୁତ ଖରାପ ଲାଗିଥିଲା। କିନ୍ତୁ ଖୁବ୍ ଶୀଘ୍ର ମନଟା ମାନିଯାଇ ଥିଲା। ବୁନୁ ମାମୁଙ୍କଠୁଁ ଛୋଟ ଦା'ର ଖବର ଆସିବା ପରେ କେମିତି ନିଶ୍ଚିନ୍ତ ଲାଗିଯାଇଥିଲା। ସେଇ ଯେଉଁ ଯାଇଥିଲା ଛୋଟ ଦା', ତା'ପରେ ଆଉ ଘରକୁ କେବେ ଆସିନି। ପୋଷ୍ଟକାର୍ଡ଼, ଇନ୍‌ଲ୍ୟାଣ୍ଡ ବା ଲଫାପାରେ ଚିଠି କେବେ ଦେଇନି। କେତେବେଳେ କେମିତି ମନିଅର୍ଡର କରି କିଛି ଟଙ୍କା ପଠେଇ ଦିଏ ସେ ଏବଂ ସେଇ ମନିଅର୍ଡ଼ର ଫର୍ମରେ ଦି' ଧାଡ଼ି ଗାରେଇ ଦିଏ - 'ମୁଁ ଭଲ ଅଛି। ତୁମେମାନେ ଭଲ ଥିବ।' - ଏଇଭଳି କିଛି।

ମା' ସେତିକ ପଢ଼ି ବ୍ୟସ୍ତ ହୁଅନ୍ତି। କେମିତି ଯେ ପିଲାଟାର ଭଲ କରି ଚିଠି ଖଣ୍ଡିଏ ଦେବାକୁ ମନ ହେଉନି, ତା' ନେଇ କନ୍ଦାକଟା କରନ୍ତି। ମନିଅର୍ଡ଼ର ଫର୍ମରୁ ପ୍ରେରକର ଠିକଣା ଟିପି ନେଇ ଲମ୍ବା ଲମ୍ବା ଚିଠି ଲେଖନ୍ତି। କିନ୍ତୁ ସେ ଚିଠିର ଉତ୍ତର ଆସେନି।

ଶ୍ରଦ୍ଧାଙ୍କ ଆଖି ଲୁହ ଦେଖି ବିରକ୍ତ ହୋଇ ଯାଉଥିଲା ଅନୁପମା। ଏତେ

ଇମିତି କାହିଁକି? ଛୋଟ ଦା' ତ ତା'ର ଭଲରେ ଅଛି। ସେ ଯଦି ପରିବାରର ଲୋକଙ୍କୁ ନ ପଚାରିଲା, ତା' ପାଇଁ ଏତେ ବାହୁନିବାର କ'ଣ ଅଛି? ସେ ଯେତେବେଳେ ପାଟ୍ନାରେ ଥିଲା, ସେତେବେଳେ ବି ତ ଦିନର ଅଧିକାଂଶ ସମୟ ତା'ର କଟି ଯାଉଥିଲା ବାହାରେ ବାହାରେ। ସେ କ'ଣ ଦିଦି ଭଳି ଘରେ ରହୁଥିଲା କି ସବୁବେଳେ?

ଅର୍ଚ୍ଚନା କଥା ଭିନ୍ନ। ସେ ଯେତେବେଳେ ସ୍କୁଲ୍‌ରେ ପଢୁଥିଲା, ସେତେବେଳେ ବି ବେଶୀ କୁଆଡ଼େ ବାହାରକୁ ଯାଉ ନ ଥିଲା। ସବୁବେଳେ ଘର ଭିତରେ ହଜାର କାମରେ ହାତ ଲଗାଉଥିଲା। ମ୍ୟାଟ୍ରିକ୍ ପାସ୍ ପରେ ତ ଢାଣ ପୂରା ଘର ଦାୟିତ୍ୱ ସେ ନିଜ କାନ୍ଧକୁ ନେଇ ଯାଇଥିଲା। ତାକୁ ସବୁବେଳେ ଘରେ ଦେଖିବାଟା, ସବୁ କାମ ପାଇଁ ତା' ଉପରେ ନିର୍ଭର କରିବାଟା ଅନୁପମାର ଅଭ୍ୟାସରେ ପଡ଼ିଯାଇଥିଲା। ଦିଦି ନହେଲେ ତା'ର ନ ଚଳେ। ଦୁଇ ଭଉଣୀଙ୍କର ସବୁତକ ଗପ, କଳିକଜିଆ ଏକାଠି। ଖିଆପିଆ, ସିନେଇପତ୍ର - ସବୁ ଏକାଠି। ରାତିରେ ଶୋଇବା ବେଳେ ବି ଗୁଡ଼ାଏ ସମୟ ବିଭିନ୍ନ କଥା ପକେଇ ହସାହସି ନ ହେଲେ, ମା'ଙ୍କ ଠୁଁ ଦି' ଚାରିଥର ଗାଳି ନ ଶୁଣିଲେ, ଆଖିକୁ ନିଦ ଆସୁ ନ ଥିଲା ସେମାନଙ୍କର। ଆଉ ଏବେ? କେମିତି ନିସ୍ତବ୍ଧ ହୋଇଯାଇଛି ସବୁ କିଛି!

ମା' ସବୁବେଳେ ନିଜ କାମ ନେଇ ବ୍ୟସ୍ତ। କାମ ସାଙ୍ଗରେ ଆଉ ଗୋଟାଏ ନୂଆ ଜିନିଷ ଆରମ୍ଭ ହେଇଛି। ସେଇଟା ହେଲା ଠାକୁର ପୂଜା। ପୂଜା ସବୁଦିନେ କରୁଥିଲେ ମା'। କିନ୍ତୁ ଏତେ ବେଶୀ ନୁହଁ। ହେଲେ ଦିଦି ଚାଲିଗଲା ପରେ ତାଙ୍କର ଘଣ୍ଟା ଘଣ୍ଟା କଟିଯାଉଛି ଠାକୁରଙ୍କ ପୂଜା ଅର୍ଚ୍ଚନାରେ। ଓପାସ ବ୍ରତର ସଂଖ୍ୟା ବି ବଢ଼ିଗଲା ଭଳି ଲାଗୁଛି।

ବାକୀ ରହିଲା ଦାଦା। ସେ କି ଭୀଷଣ ବଦ୍‌ରାଗୀ ହୋଇ ଯାଇଛି ଏହା ଭିତରେ! ଅବଶ୍ୟ ବାବା ଚାଲିଯିବା ପରେ ସେ ଗମ୍ଭୀର ହୋଇ ଯାଇଥିଲା। ତା' କଥାରେ ରକ୍ଷଣଶୀଳତାର ଛାପ ଦେଖିବାକୁ ମିଳୁଥିଲା। ହେଲେ ସେଇଟା ଥିଲା ସ୍ୱାଭାବିକ। ଯେତେ ଯାହା ହେଲେ ସବୁ ଦାୟିତ୍ୱ ଆସି ପଡ଼ିଥିଲା ତା' ମୁଣ୍ଡରେ। ତା'ପରେ ଛୋଟ ଦା' ଘରୁ ଚାଲି ଯିବା ପରେ ମୁହଁର ଭାବ ମୁଦ୍ରା ଆଉ ଟିକିଏ କଠିନ ହେଇଗଲା। କିନ୍ତୁ ଦିଦିକୁ ଫରିଦ୍‌ପୁରରେ ଛାଡ଼ି

ଆସିବା ପରେ ଦାଦାଟା ପୂରାପୂରି ବଦଳିଯାଇ ଯେମିତି ଅନ୍ୟ ମଣିଷଟିଏ ହୋଇ ଯାଇଛି ।

ସେଇ ବଦ୍‌ମିଜାଜୀ, ଗମ୍ଭୀର ଚେହେରା ତଳୁ ଅନୁପମା ବେଳେବେଳେ ତା' ପିଲା ଦିନର ଦାଦାକୁ ଖୋଜେ । ଯେଉଁ ଦାଦା ତାକୁ ଇଂରେଜୀ ଶିଖେଇ ଦେଉଥିଲା । ଅଙ୍କ ବତାଇ ଦେଉଥିଲା । ପାଖରେ ବସାଇ କେତେ ଗପ ଶୁଣାଉ ଥିଲା । କବିତା ମୁଖସ୍ଥ କରାଉଥିଲା ।

ସେଇ ଦାଦାକୁ ଖୋଜିହୁଏ ଅନୁପମା ଏବଂ ନିରାଶ ହୁଏ ।

ଏଇ ଦାଦା ଦିନେ ବଙ୍କିମଚନ୍ଦ୍ରଙ୍କର 'ଆନନ୍ଦ ମଠ' ବହିରୁ 'ବନ୍ଦେ ମାତରଂ' କବିତା ପଢ଼ି ଶୁଣେଇ ଥିଲା ଏବଂ ସେଇଟିକୁ ପଢ଼ିବା ବେଳେ ସେ ଉତ୍ତେଜିତ ହୋଇ ଯାଇଥିଲା । ତା'ର ହାତ ମୁଠା ମୁଠା ହୋଇଯାଇଥିଲା । ସେ ଅନୁପମା, ଅମରେଶ ଓ ଅର୍ଚ୍ଚନାକୁ କବିତାଟି ମୁଖସ୍ଥ କରି ନେବାକୁ ବାରମ୍ବାର କହିଥିଲା । ସ୍କୁଲ୍‌ର ଆବୃତ୍ତି ପ୍ରତିଯୋଗିତାରେ ଯେତେବେଳେ ସେଇ କବିତାଟି ଆବୃତ୍ତି କରି ଅନୁପମା ପ୍ରଥମ ପୁରସ୍କାର ପାଇଥିଲା, ସେତେବେଳେ ବାପାଙ୍କଠୁଁ ବେଶୀ ଖୁସି ଏଇ ଦାଦା ହୋଇଥିଲା ।

ଅଥଚ କେତେ ବଦଳିଗଲା ସେ !

ଏବେ ସ୍ୱଦେଶୀଙ୍କ ନାଁ ଶୁଣିଲେ ଗରମ ତେଲରେ ପାଣି ପଡ଼ିବା ଭଳି ତିଡ଼ିବିଡ଼ି କରି ଉଠେ ସେ । କବିତା ତ କବିତା, ସାଧାରଣ ଗପ ବହିଟିଏ ଅନୁପମା ହାତରେ ଦେଖିଲେ ସେ ରାଗି ନିଆଁ ହୋଇଯାଏ । କହେ, 'ଏମିତିରେ ତ ମୁଣ୍ଡଟା ହୁତୁହୁତୁ ହୋଇ ଜଳୁଛି । ଆଉ ଅଧିକା ଘିଅ, ତେଲ ଢାଳିବା କି ଦରକାର ?'

ଆଉ ସେଦିନ ସଫିକ୍ ଦାଦା ଶରତଚନ୍ଦ୍ରଙ୍କ ବହିଟା ଦେଇଗଲେ ବୋଲି ତା'ର ସେ କି ତାଣ୍ଡବ ନୃତ୍ୟ !

ଅନୁପମା କିଛି ବୁଝି ପାରେ ନାହିଁ । କାହିଁକି ବଦଳିଗଲା ତା' ଦାଦା ?

ଆଗରୁ ସାଢ଼େ ସାତଟା ବେଳକୁ ଘରକୁ ଚାଲି ଆସୁଥିଲା ଅନିରୁଦ୍ଧ । କିନ୍ତୁ ଏବେ ଗୋଟିଏ ନୂଆ ଢଙ୍ଗ ତା'ର ଆରମ୍ଭ ହେଇଛି । ସେଇଟା ହେଲା କ୍ଲବ୍‌କୁ ଯିବା । ଅଫିସ୍, ଦୋକାନ ସାରି ଘରକୁ ଫେରିବା ପରେ ସେ ଧୁଆ ଧୋଇ ହୋଇ କ୍ଲବ୍ ଚାଲିଯାଏ । କ୍ଲବ୍ ଘରେ ଯାଇ ତାସ୍, କ୍ୟାରମ୍ ଖେଳି

ଘରକୁ ଫେରୁ ଫେରୁ ରାତି ସାଢ଼େ ଦଶ, ଏଗାର। ଖାଇ ପିଇ ଶୋଉ ଶୋଉ ବାର। ଏତେ ଡେରିରେ ଶୋଇଲେ ଭୋରରୁ ନିଦ କେମିତି ଭାଙ୍ଗିବ? ଫଳରେ ଅନୁପମାର ଦାଦାଟି ସକାଳୁ ଉଠେ ଆଠଟା ପରେ ଏବଂ ସାଙ୍ଗେ ସାଙ୍ଗେ ଗାଧୁଆ ପାଧୁଆ କରି ନେଇ ଭାତ ଖାଇ ଅଫିସ୍ ବାହାରି ଯାଏ।

ମା' ଓ ଦାଦାଙ୍କ ରୁଟୀନ୍ ଭିତରେ ବାନ୍ଧି ହୋଇ ଯାଇ ଅନୁପମା ଯେ କେତେ ବେଶୀ ଏକା ହୋଇଯାଉଛି, ସେ ଖିଆଲ କ'ଣ ଆଉ କାହାର ଅଛି? ଦିନେ ଦିନେ ଅନୁପମାର ରାଗ ହୁଏ। ସେ ଘରେ ପାଟିତୁଣ୍ଡ କରେ।

ମା' ସବୁ ଶୁଣି ଚୁପ୍ ରହିଯାଆନ୍ତି। କିଛି କହନ୍ତି ନାହିଁ। ଆଉ ଦାଦା ଭୀଷଣ ଗମ୍ଭୀର ହୋଇ ଯାଇ କହେ, ''ଏବେ ମ୍ୟାଟ୍ରିକ୍ ପରୀକ୍ଷା ପାଇଁ ତୋର ମନ ଲଗେଇ ପଢ଼ିବା କଥା। ତୁ ତା' ନ କରି ପାଟିତୁଣ୍ଡ କରୁଛୁ କାହିଁକି?''

''ଭାରି ସହଜରେ ତ କହି ଦେଉଛ ମ୍ୟାଟ୍ରିକ୍ ପାଇଁ ପଢ଼ିବା କଥା। କିନ୍ତୁ ଏମିତିଆ ଖାଇ ଗୋଡ଼ାଉଥିବା ଘରେ ବହି ଖୋଲି ହୁଏ? ତୁମେ ଦିଦିକୁ ବାଧ କରି କାହିଁକି ପଠେଇ ଦେଲ, ଦାଦା?''

''ମୁଁ କାହିଁକି ବାଧ କରି ପଠେଇବି? ସେ ତ ନିଜେ ଯିବାକୁ ଚାହୁଁ ଥିଲା।''

''ଜମା ନୁହଁ। ପଛ କଥା ପଛରେ ରହିଲାଣି। ଏଥର ତ ତା'ର ଜମା ଯିବାର ଇଚ୍ଛା ନ ଥିଲା। ସେ ନିଜେ ଯିବା ଆଗ ଦିନ ମତେ କହିଛି।''

ଅନିରୁଦ୍ଧର ମୁହଁ କଠୋର ହୋଇଯାଏ। ଗମ୍ଭୀର ଭାବରେ ସେ ଅନୁପମାକୁ କହେ, ''ଥାଉ ଥାଉ। ଅର୍ଚ୍ଚନା ପାଇଁ ଆଉ ବାଜେ ଚିନ୍ତା କରିବାକୁ ହେବନି।''

ବାଃ ରେ, ଦିଦି ପାଇଁ ମନ ଖରାପ କରିବାଟା ବାଜେ ଚିନ୍ତା! ଅନୁପମା ରାଗିଯାଏ ମନେ ମନେ।

କିନ୍ତୁ କାହିଁକି ଦିଦି ଏମିତି ଚାକିରି ନେଇ ଚାଲିଗଲା?

ଅନୁପମାକୁ ଷୋହଳ ହେବ ଆଉ କେଇଟା ମାସ ପରେ। ସେ ଯେ ନିହାତି ଛୋଟ ପିଲା, ତା' ଅନ୍ତତଃ କୁହା ଯାଇ ପାରିବ ନାହିଁ। ସେ ବୁଝୁଥିଲା ଯେ ଦିଦିର ବାହାଘର ଭାଙ୍ଗି ଦେବା ଏବଂ ଗୌରୀ ଦିଦିର କଳେଇ ଶ୍ୱଶୁରଙ୍କ ସ୍କୁଲ୍‌ରେ ଚାକିରି ନେଇ ଚାଲିଯିବା ପଛରେ ଅନେକ କାରଣ ଅଛି। କିନ୍ତୁ ସେ କାରଣଟି କ'ଣ, କେହି ତା' ଖୋଲି କହି ନ ଥିଲେ। ଏମିତିକି ଦିଦି

ବି ନୁହଁ ।

ଗୌରୀ ଦିଦିଠୁଁ ଚିଠି ଆସିବା ପରେ ଯେତେବେଳେ ନିଜ ବାକ୍ସ ସଜାଡୁଥିଲା ଅର୍ଚ୍ଚନା, ସେତେବେଳେ ପାଖକୁ ଯାଇ ଚୁପି ଚୁପି ଏଇ ପ୍ରଶ୍ନ କରିଥିଲା ଅନୁପମା ।

ତାକୁ କେମିତି ଏକ ଶୁଖିଲା ଦୃଷ୍ଟିରେ ଚାହିଁ ଅର୍ଚ୍ଚନା କହିଥିଲା, "ତୁ ଏବେ ବୁଝିବୁନି, ଅନି ।"

କାହିଁକି ବୁଝିବନି ? ବାହାଘର ଭାଙ୍ଗି ଦେବାକୁ ବାଧ କରିବାରୁ ଦାଦା କ'ଣ ରାଗିଗଲା ?

କିନ୍ତୁ କାହିଁକି ଦିଦି ବାହାଘର ଭାଙ୍ଗି ଦେବାକୁ ବାଧ କଲା ସମସ୍ତଙ୍କୁ ? ତା'ର କ'ଣ ସେଠି ବାହା ହେବାକୁ ଜମା ଇଚ୍ଛା ନ ଥିଲା ? କାହିଁକି ? ତେବେ କ'ଣ ସେ ନିଜେ କେଉଁଠି... । ଇସ୍, ଏସବୁ କ'ଣ ସେ ଭାବୁଛି ! ଦିଦି ଭଳି ଶାନ୍ତ, ବାଧ ଝିଅ ପକ୍ଷରେ ଏତେ ବଡ଼ ନିଷ୍ପତ୍ତି ନେବା ଅସମ୍ଭବ ।

ସତରେ ଅସମ୍ଭବ ? ନିଜ ଭାବନାକୁ କ'ଣ କେହି ଚାପି ରଖିଦେଇ ପାରେ ? ଶରତଚନ୍ଦ୍ରଙ୍କ ନାୟିକାମାନେ ପାରିଥିଲେ ? ପାରିଥିଲା ତାଙ୍କ ପାର୍ବତୀ ? ଦେବଦାସକୁ ଥରଟିଏ ଦେଖିବା ପାଇଁ ସ୍ୱାମୀ, ସନ୍ତାନ, ସମାଜ - ସମସ୍ତଙ୍କୁ ବେଖାତିର କରି ଧାଇଁ ଯାଇ ନ ଥିଲା କି ? ଆଉ ରବୀନ୍ଦ୍ରନାଥଙ୍କ ଉପନ୍ୟାସର ନାୟିକାମାନେ ? ସେମାନଙ୍କ ଭିତରୁ ଅନେକଙ୍କ ହୃଦୟରେ ତ ପୁଣି ଭଲପାଇବାର ସ୍ରୋତ ବହିଥିଲା । ପ୍ରିୟ ନିକଟରେ ନିଜକୁ ସମର୍ପିତ କରି ଦେଇଥିଲେ ସେମାନେ । ଯଦି ସେଯୁଗର ଲେଖକମାନଙ୍କ ଲେଖନୀରୁ ଭଲ ପାଇବାର ଏଭଳି ଛବି ଝରିପାରିଲା, ତା'ହେଲେ ଦିଦିର ମନରେ କାହିଁକି ସେଭଳି କିଛି ଭାବନା ଆସି ନ ଥିବ ? ସେଇଥିପାଇଁ କି ସେ ତାକୁ କହି ଦେଇଥିଲା - 'ତୁ ଏବେ ଏସବୁ ବୁଝିବୁନି, ଅନି ।'

କେଜାଣି ! ଦୂରକୁ ଚାହିଁ ରହିଲା ଅନୁପମା ଅନ୍ୟମନସ୍କ ଭାବରେ । ହଠାତ୍ କଥାଟିଏ ତା' ମନ ଭିତରକୁ ପଶି ଆସିଲା । ଦିଦି ହୃଦୟର କଥା କ'ଣ ଦାଦା ଜାଣିଥିଲା କି ? ନହେଲେ କାହିଁକି ନିଜ ତରଫରୁ ଗୌରୀ ଦିଦି ପାଖକୁ ଚିଠି ଲେଖିବାକୁ ସେ ଦିଦିକୁ ବାଧ କଲା ? ଆଉ ଉତ୍ତର ଆସିବା କ୍ଷଣି ନିଜେ ନେଇ କାହିଁକି ଯଥାଶୀଘ୍ର ତାକୁ ସେଠି ଛାଡ଼ି ଦେଇ ଆସିଲା ? କାହିଁକି ?

ଅନୁପମା ମନ ଭିତରେ ପ୍ରଶ୍ନର ପାହାଡ଼ ଜମା ହୋଇ ଯାଉଥିଲା । ସେ ଉତ୍ତର ଖୋଜି ପାଉ ନ ଥିଲା ।

ହଠାତ୍ ସାଇକେଲ୍‌ର ଟିଣି ଟିଣି ଶବ୍ଦରେ ସେ ବର୍ତ୍ତମାନକୁ ଫେରି ଆସିଗଲା। ପୋଷ୍ଟ ପିଅନ୍ ଆସିଲା କି? ଦିଦିର ଚିଠି ଆସିଲା କି? ଧାଇଁ ଯାଇ ଝର୍କାବାଟେ ମୁହଁ ଗଳେଇ ରାସ୍ତାକୁ ଚାହିଁଲା ସେ।

ତାଙ୍କରି ଝର୍କା ଆଡ଼େ ଚାହିଁ ଚାହିଁ ରାସ୍ତା ଉପରେ ଖୁବ ଧୀରେ ଧୀରେ ଯିଏ ସାଇକେଲ୍ ଚଲେଇ ନେଉଥିଲା, ସେ ପୋଷ୍ଟ ପିଅନ୍ ନୁହଁ। ଦାଦା ଅଫିସ୍‌ର ବଡ଼ବାବୁ ଚକ୍ରବର୍ତ୍ତୀ ବାବୁଙ୍କ ପୁଅ ପୁଲକ। ଦେଖୁଛ, ଦେଖୁଛ, କେମିତି କଣେଇ କଣେଇ ତାଙ୍କ ଘର ଆଡ଼କୁ ଚାହିଁ ଚାହିଁ ସାଇକେଲ୍ ଚଲେଇ ଯାଉଛି! ସତେ ଯେମିତି ରାସ୍ତାର ଏକଛତ୍ରବାଦୀ ସମ୍ରାଟ! ସାମାନ୍ୟ ବିରକ୍ତି ନେଇ ଝରକା ପାଖକୁ ଚାଲି ଆସିଲା ଅନୁପମା।

ଦିଦି ବାହାଘର କଥା ଚାଲିଥିବା ବେଳେ ଯେଉଁ ଥରେ ଦି' ଥର ତାଙ୍କ ଘରକୁ ଦାଦାର ବଡ଼ବାବୁ ଆସିଥିଲେ, ସେତେବେଳେ ତାଙ୍କ ସାଙ୍ଗରେ ତାଙ୍କର ବଡ଼ ପୁଅ ଏଇ ପୁଲକ ଆସିଥିଲା। ସେତେବେଳେ ସେମାନଙ୍କୁ ଚାହା ଜଳଖିଆ ଦେବାର ଭାର ପଡ଼ିଥିଲା ଅନୁପମା ଉପରେ। ସେମାନଙ୍କ ସାମ୍ନାରେ ଜଳଖିଆ, ପାଣି ରଖିବା ବେଳେ ସେ ଭଲ କରି ଦେଖି ନେଇଥିଲା ତାଙ୍କ ଘରକୁ ଆସିଥିବା ଅତିଥିମାନଙ୍କୁ। ସେଇମାନଙ୍କ ସାଙ୍ଗରେ ଯେ ଦିଦି ମାଧ୍ୟମରେ ସମ୍ପର୍କଟିଏ ଗଢ଼ି ଉଠିବାକୁ ଯାଉଛି, ତା' କେହି ନ କହିଲେ ବି ସେ ତା'ର ନିଜ ବୁଦ୍ଧିରେ ଅନୁମାନ କରି ସାରିଥିଲା।

ତା'ପରେ ତ ଦିନେ ହଠାତ୍ ସବୁ ବଦଳିଗଲା। ଦିଦିର ବାହାଘର ଭାଙ୍ଗିଗଲା। ଦାଦା ଓ ମା'ଙ୍କ କଥାବାର୍ତ୍ତାରୁ ଅନୁପମା ଜାଣିଥିଲା ଯେ ଏଇ ଘଟଣାରେ ଚକ୍ରବର୍ତ୍ତୀ ବାବୁ ଭୀଷଣ ଅସନ୍ତୁଷ୍ଟ ହୋଇଥିଲେ। କିନ୍ତୁ ଭାଗ୍ୟ ଭଲ, ଅଯଥା ରଗାରଗି କରି ନ ଥିଲେ କି ଦାଦାର ଚାକିରିରେ କୌଣସି ଅସୁବିଧା ସୃଷ୍ଟି କରି ନ ଥିଲେ।

ଏହାରି ଭିତରେ ଦିନେ ଫରିଦ୍‌ପୁର୍ ଚାଲିଗଲା ଅର୍ଚ୍ଚନା।

ଅର୍ଚ୍ଚନା ଚାଲିଯିବା ପରେ ସ୍କୁଲ୍ ଗଲାବେଳେ ବାଟରେ ଏଠି ସେଠି ପୁଲକକୁ ଦେଖୁଥିଲା ଅନୁପମା। ସେ ପ୍ରଥମେ ଭାବି ନେଇଥିଲା ଏ ଦେଖା ବୋଧହୁଏ ଆକସ୍ମିକ। କିନ୍ତୁ ନିୟମିତ ଭାବରେ ଜଣକୁ ରାସ୍ତାରେ ଦେଖିଲେ ତ ଆଉ ଦେଖା ଆକସ୍ମିକ ବୋଲି କହି ହେବନି। ତେବେ ଦାଦାକୁ ଏ ବିଷୟରେ କହି

କିଛି ଅଶାନ୍ତି କରେଇ ନ ଥିଲା ସେ। ଅବଶ୍ୟ ଅଶାନ୍ତି କରେଇବା ଭଳି କିଛି ଘଟଣା ବି ନ ଥିଲା। ପୁଲକ କେବେହେଲେ ତାକୁ ରାସ୍ତାରେ କିଛି କହୁ ନ ଥିଲା କି କଥାବାର୍ତ୍ତା କରିବାକୁ ଆଗେଇ ଆସୁ ନ ଥିଲା। କେବଳ ଦୂରରୁ ଲକ୍ଷ୍ୟ କରୁଥିଲା ଏବଂ ଅନୁପମା ସ୍କୁଲ୍ ଗେଟ୍ ଭିତରକୁ ପଶିଯିବା ପର୍ଯ୍ୟନ୍ତ ସେଇମିତି ଏକା ଦୃଷ୍ଟିରେ ଚାହିଁ ରହୁଥିଲା।

ଅନୁପମା ସେସବୁ ଦେଖି ନ ଦେଖିବା ଭଳି ରହି ଯାଉଥିଲା। ଏଇଭଳି ଘଟଣାଟିଏ ଯଦି ପୁଲକ ନ କରି ଆଉ କେହି କରିଥାଆନ୍ତା, ତେବେ ସେ ତାକୁ ଜମା ଛାଡ଼ି ନ ଥାଆନ୍ତା। ପାଦରୁ ଚଟି କାଢ଼ି ଦେଖାଇ ଦେଇଥାଆନ୍ତା ଟୋକାଟାକୁ। ହେଲେ ଦାଦାର ବଡ଼ବାବୁଙ୍କ ପୁଅ ବୋଲି ଚୁପ୍ ରହି ଯାଉଥିଲା ସେ। ମାତ୍ରାଧିକ ହେଲେ ଦେଣିକି ଦେଖାଯିବ। ଆପାତତଃ ଚୁପ୍ ରହିଯାଇ ମୁହଁ ଘୁରାଇ ନେବା ହିଁ ଭଲ।

ଆଜି ଭଳି।

ଆଜି ସ୍କୁଲ୍ ଛୁଟି। କୌଣସି ପୂଜା ନାହିଁ, ପର୍ବାଣି ନାହିଁ। କିନ୍ତୁ ଛୁଟି। ଗତ କେଇ ଦିନ ଧରି ଯେଉଁ ଭୀଷଣ ବର୍ଷା, ଝଡ଼ ପାବ୍‌ନା ସହରକୁ ପଙ୍ଗୁ କରି ଦେଇଥିଲା, ସେଇଥିରେ ଅନୁପମା ସ୍କୁଲ୍‌ର ଦିଇଟା କାନ୍ଥ ଗଳି ପଡ଼ିଥିଲା। ଭାଗ୍ୟ ଭଲ, ଘଟଣାଟା ଘଟିଥିଲା ରାତି ଅଧରେ। କେହି ନ ଥିଲେ ସ୍କୁଲ୍ ଘର ଭିତରେ। ନ ହେଲେ କ'ଣ ଯେ ହୋଇ ଥାଆନ୍ତା! ଭାବି ଦେଇ ଶିହରି ଉଠିଥିଲେ ସେମାନଙ୍କ ସ୍କୁଲ୍‌ର ବଡ଼ ଦିଦି ଏବଂ ସେ ପର ଦିନ ଘୋଷଣା କରିଥିଲେ ଯେ ଭବିଷ୍ୟତରେ ଏଇଭଳି ଘଟଣା ଯେମିତି ନ ଘଟେ, ସେଥିପାଇଁ ସ୍କୁଲ୍‌ର କାନ୍ଥଗୁଡ଼ିକୁ ଆଉ ଟିକିଏ ଶକ୍ତ କରିବାକୁ ହେବ। ଭଙ୍ଗା କାନ୍ଥ ଦିଇଟାକୁ ସଜାଡ଼ିବାକୁ ହେବ। ଏବେ ନହେଲେ ବନ୍ଦ ରହୁ ସ୍କୁଲ୍ କିଛି ଦିନ ପାଇଁ।

ସେଇ ଛୁଟି ଏବେ ଚାଲିଛି ଅନୁପମାର।

ସ୍କୁଲ୍ ଛୁଟି ହେବା ପରେ ପରେ ପୁଲକକୁ ତାଙ୍କ ଘର ରାସ୍ତାରେ ପ୍ରାୟ ସବୁଦିନ ଦେଖିବାକୁ ପାଉଥିଲା ସେ। କାହିଁକି ସେ ତାଙ୍କ ଘର ସାମ୍ନା ଦେଇ ଏତେ ଚକ୍କର ଲଗାଉଛି? କାମ ଧନ୍ଦା କିଛି ନାହିଁ କି? ବେଳେ ବେଳେ ଅନୁପମାକୁ ଚିଡ଼ି ଲାଗୁଥିଲା। ପୁଣି କେତେ ବେଳେ ମନଟା ତା'ର ନିର୍ବିକାର ହୋଇ ଯାଉଥିଲା। ରାସ୍ତାଟା କ'ଣ ଏକା ତା'ର? ସେଇ ରାସ୍ତା ଦେଇ ଯିଏ

ଇଚ୍ଛା ସିଏ ଯାଇ ପାରିବ। ପୁଲକ ବି ଯାଇ ପାରିବ। ଅନୁପମାକୁ ଭଲ ଲାଗୁ କି ମନ୍ଦ।

କିନ୍ତୁ ସେ ଟୋକା ଏତେ ବେଶୀ ତାଙ୍କ ରାସ୍ତାରେ ଘୁରାଫେରା କରୁଛି କାହିଁକି ଯେ? କି ମତଲବ ତା'ର?

ଅନୁପମା ମନରେ ଉଠିଥିବା ପ୍ରଶ୍ନର ଉତ୍ତର ସେ ସେଇଦିନ ସନ୍ଧ୍ୟା ବେଳେ ପାଇଗଲା। ତା' ଦାଦା ଅଫିସ୍‌ରୁ ଫେରିବା ପରେ।

ଅନିରୁଦ୍ଧ ଘରେ ପାଦ ଦେଉ ଦେଉ ପାଁ ମାରି ବିନା ଉପକ୍ରମଣିକାରେ ଶ୍ରଦ୍ଧାକୁ କହିପକେଇଲା, "ମା' ଗୋ ମା', ମୁଁ ଏବେ ବି ବିଶ୍ୱାସ କରି ପାରୁନି।"

"ଜାଣିଛ, ଚକ୍ରବର୍ତ୍ତୀ ବାବୁ ଆଜି ମତେ କ'ଣ କହିଲେ? ଜାଣିଛ?"

ଅନିରୁଦ୍ଧର ଆବାକାବା ସ୍ୱର, ଅବାକ ଚାହାଣିରୁ କ'ଣ ବୁଝିବେ ଶ୍ରଦ୍ଧା? ସାମାନ୍ୟ ଆଶଙ୍କା ନେଇ ସେ କହିଲେ, "ସେଇ ପୁରୁଣା କଥା ନେଇ ଏବେ ବି ଚକ୍ରବର୍ତ୍ତୀ ବାବୁ..."'

"ନା ମା', ପୁରୁଣା କଥା ନୁହଁ, ନୂଆ କଥା।"

"ନୂଆ କଥା। କି ନୂଆ କଥା?"

"ମା', ତୁମର ମନେ ଅଛି, ଯେଉଁଥର ଚକ୍ରବର୍ତ୍ତୀ ବାବୁ ଆମ ଘରକୁ ଆସିଥିଲେ..."

"ହଁ। ତାଙ୍କ ସ୍ତ୍ରୀ ପିଲାଙ୍କୁ ଧରି ଆସିଥିଲେ। ଆଉ ଥରେ ଅର୍ଚ୍ଚନାକୁ ଦେଖିବା ପାଇଁ। ହେଲେ ସେକଥା ଆଉ କାହିଁକି?" ଦୀର୍ଘ ନିଶ୍ୱାସ ନେଇ ଶ୍ରଦ୍ଧା କହିଲେ।

"ନା ମା' ଅର୍ଚ୍ଚନା କଥା ମୁଁ କହୁନି।" ଆଉ ରହି ନ ପାରି ସିଧାସଳଖ କହି ପକେଇଲା ଅନିରୁଦ୍ଧ, "ସେମାନେ ଅନିକୁ ବୋହୂ କରି ନେବାକୁ ଚାହୁଁଛନ୍ତି।"

"ଅନିକୁ?? ପାଗଳ ହେଲୁ ବାବୁ? ଯାହା ସାଙ୍ଗରେ ବଡ଼ ଭଉଣୀର ବାହାଘର ହେବାର ଥିଲା, ତା' ସାଙ୍ଗରେ ସାନ ଭଉଣୀର ବାହାଘର ହେବ! ନା ନା, ମୁଁ ଏମିତି ହେବାକୁ ଦେବିନି।"

"ଓହୋ ମା', ପୂରା କଥା ନ ଶୁଣି ତୁମେ ଖାଲି କହି ଚାଲିଛ। ଚକ୍ରବର୍ତ୍ତୀ ବାବୁ ତାଙ୍କ ନିଜ ପୁଅ ସାଙ୍ଗରେ ଅନିର ବାହାଘର କଥା ଉଠେଇଛନ୍ତି, ଶଙ୍କୁଙ୍କ

ପୁଅ ସାଙ୍ଗରେ ନୁହଁ। ପିଲାଟି ଆମ ଘରେ ଅନିକୁ ଦେଖିଥିଲା, ତା'ର ବହୁତ ଇଚ୍ଛା...''

ଶ୍ରଦ୍ଧା ଚୁପ୍ ହୋଇ ବସି ରହିଲେ କିଛି ସମୟ। ତା'ପରେ ରହି ରହି କହିଲେ, ''ବଡ଼ ଭଉଣୀ ଥାଉ ଥାଉ ସାନ ଭଉଣୀର ବାହାଘର !''

ଅନିରୁଦ୍ଧର ମୁହଁ କଠିନ ହୋଇଗଲା। ସେ କହିଲା, ''ଆଜିକାଲି ସବୁ ଚଳୁଛି। ତା' ଛଡ଼ା .. ତୁମେ ଭାବୁଛ ଅର୍ଚ୍ଚନା ବାହାଘର ପାଇଁ ରାଜି ହେବ ?''

''ରାଜି ନ ହେବାର କ'ଣ ଅଛି ?'' ବଡ଼ ସରଳ ଭାବରେ ଉତ୍ତର ଦେଲେ ଶ୍ରଦ୍ଧା। ''ସେତେବେଳେ ସିନା କ'ଣ ପାଇଁ ଗୋଟାଏ ବାହା ନ ହେବାର ଜିଦି ଧରି ବସି ଯାଇଥିଲା, ତା' ବୋଲି କ'ଣ ସାରାଟା ଜୀବନ ଏମିତି ଏକା ଏକା ରହିଯିବ ?''

ଅନିରୁଦ୍ଧ କିଛି କହିଲା ନାହିଁ।

''ସ୍କୁଲର ପୂଜା ଛୁଟି ବେଳକୁ ତ ଆସିବ ଆମ ଅର୍ଚ୍ଚନା। ସେତେବେଳେ ଦେଖିବୁ ତାକୁ ଯଦି ମୁଁ ରାଜି ନ କରେଇଛି...''

ଗଳା ଝାଡ଼ିଲା ଅନିରୁଦ୍ଧ। ଅର୍ଚ୍ଚନା ସମ୍ପର୍କରେ ଆଉ ଅଧିକ କଥାବାର୍ତ୍ତା ନ ବଢ଼େଇ ସେ ପଚାରିଲା, ''ମୁଁ ଚକ୍ରବର୍ତ୍ତୀ ବାବୁଙ୍କୁ କ'ଣ କହିବି ମା' ?''

''କ'ଣ ଆଉ କହିବୁ? କହିଦେବୁ, ଅର୍ଚ୍ଚନାର ବାହାଘର ସ୍ଥିର ହେଲେ ଯାଇ ଅନି କଥା।''

''ହେଲେ ମା', ସେ ନିଜେ ଯେତେବେଳେ ପ୍ରସ୍ତାବ ରଖିଛନ୍ତି, ସେକଥାକୁ ସମ୍ମାନ ଦେବା ଆମର ଉଚିତ ନୁହଁ କି ?'' ଅନିରୁଦ୍ଧ ସ୍ୱରରେ ବ୍ୟସ୍ତତା ଫୁଟି ଉଠୁଥିଲା। ''ମୁଁ ଭାବୁଛି, ଅନିର ବାହାଘର ଆମେ ଏବେ ସ୍ଥିର କରି ରଖିଦେବା ଆଉ ସେମାନଙ୍କୁ କହିଦେବା ଯେ ଅର୍ଚ୍ଚନାର ଗୋଟାଏ ଫଇସଲା ହୋଇ ସାରିଲେ ଯାଇ କଥା ଅଧିକ ଆଗେଇବ।''

ପୁଅର ବିବ୍ରତ ଭାବର କାରଣ ବୁଝୁଥିଲେ ଶ୍ରଦ୍ଧା। ବୁଝୁଥିଲେ ଯେ ଥରେ ମାନହାନି ହେଇଛି। ଆଉ ଥରେ ଯଦି ସେଇମିତି କିଛି ହୁଏ, ତେବେ ପୁଅର ଚାକିରି ନେଇ ଟଣାଟଣି ଲାଗିଯିବା ଅସମ୍ଭବ ନୁହଁ। ଯେତେ ଯାହା ହେଲେ ମନମାନୀ ଗୋରା ସାଇବଙ୍କ କମ୍ପାନୀ। ଏଠିକା ଅଫିସ୍‌ର ଏଇ ଚକ୍ରବର୍ତ୍ତୀ ବାବୁ ହିଁ ସର୍ବେସର୍ବା। ହେଲେ...

"ପିଲାଟି କରେ କ'ଣ ?" ସେ ହଠାତ୍ ପଚାରି ଦେଲେ ।

ଏଥର ସାମାନ୍ୟ ଇତସ୍ତତଃ ହୋଇ ଅନିରୁଦ୍ଧ କହିଲା, "ପିଲାଟି ବି.ଏସ୍.ସି ଫେଲ୍ ।"

"ଫେଲ୍ !!"

"ହଁ, ମାନେ... ପିଲାଟି ପଢ଼ାଶୁଣାରେ ମନ୍ଦ ନୁହଁ । ଭଲରେ ମ୍ୟାଟ୍ରିକ୍ ପାସ୍ କରିଥିଲା । ହେଲେ ଚକ୍ରବର୍ତ୍ତୀ ବାବୁ ତାକୁ ଜବରଦସ୍ତି ସାଇନ୍ସରେ ଭର୍ତ୍ତି କରିଦେଲେ । ପିଲାଟି ଗଣିତରେ ଟିକିଏ ଦୁର୍ବଳ । କଲେଜରେ ସମ୍ଭାଳି ପାରିଲାନି । କୌଣସିମତେ ଆଇ.ଏସ୍.ସି.ଟା ସମ୍ଭାଳି ଦେଲା । ହେଲେ ବି.ଏସ୍.ସି.ରେ ପାରିଲାନି । ...ତେବେ ଏଥର ସେ ପ୍ରାଇଭେଟ୍ ଭାବରେ ବି.ଏ. ଦେଉଛି । ନିଶ୍ଚେ ପାସ୍ କରିଯିବ । ଆଉ ପାସ୍ କରିଗଲେ ତ ହୋଇଗଲା । କୁହାକୁହି କରି ଚକ୍ରବର୍ତ୍ତୀବାବୁ ତାକୁ ଯେଉଁଠି ହେଲେ ରଖେଇ ଦେବେ ।"

"ହୁଁ ।" ଶ୍ରଦ୍ଧା ଭାବି ହେଲେ ।

"କ'ଣ ଏତେ ଭାବି ହେଉଛ ମା' ?"

"ନା । ମୋର ଭାବିବାର କିଛି ନାହିଁ । ତେବେ ଅର୍ଚ୍ଚନାର ସେଇ ଘଟଣା ପରେ ଗୋଟାଏ ବଡ଼ ଶିକ୍ଷା ହୋଇଯାଇଛି । ଭୟ ମଧ୍ୟ ହୋଇଯାଇଛି । ...ତୁ ଆଉ କଥା ଦେଇ ଦେଇନୁ ତ ?"

"କ'ଣ ଯେ କୁହ ତୁମେ ମା' ! ତୁମ ସାଙ୍ଗରେ କଥା ନ କହି ପୁଣି ମୁଁ କଥା ଦେଇ ଦେବି ?"

"ମୋ କଥା ଛାଡ଼ । ତୋ ନିଜ ସାନ ଭଉଣୀର ମତ ଆଗ ବୁଝ । ଯେତେ ଯାହା ହେଲେ ପାଠ ଶାଠ ପଢ଼ିଥିବା ଝିଅ..." କେମିତି ଏକ ସ୍ୱରରେ ଶ୍ରଦ୍ଧା କହିଲେ ।

ଅନୁପମାକୁ କିଛି ପଚାରିବା କଥା ଅନିରୁଦ୍ଧ ମୁଣ୍ଡକୁ ଆସି ନ ଥିଲା । କିନ୍ତୁ ମା'ଙ୍କ କଥାର ଯଥାର୍ଥତା ସେ ମଧ୍ୟ ଅନୁଭବ କରୁଥିଲା । ଯେଉଁଠି ଅର୍ଚ୍ଚନା ଭଳି ଶାନ୍ତ ସୁଧାର ଝିଅ ବାହା ନ ହେବାକୁ ଏକା ଜିଦି ଧରି ବସିଯାଇ ପାରିଲା, ସେଠି ଅନି ଭଳି ସ୍ପଷ୍ଟବାଦୀ ଝିଅର ମନ ତଳେ ଯେ କି କଥା ଖେଳୁଛି, ତା' କିଏ ଜାଣେ ? ନା, ମା' ଠିକ୍ କହିଛନ୍ତି । ଅନିକୁ ଏବେଠୁ ପଚାରି ଦେବା ଭଲ । ନହେଲେ ଯେ ବାହାର ଲୋକ ସାମ୍ନାରେ ସେ ନାକ

କାଟି ରଖି ନ ଦେବ, ତା'ର କି ବିଶ୍ୱାସ ?

"ଦାଦା, ଚାହା।"

ମୁଣ୍ଡ ଟେକି ଉପରକୁ ଚାହିଁଲା ଅନିରୁଦ୍ଧ।

"ଓ ଅନି ରଖ ଚାହା ଏଇଠି। ...ତୁ ଟିକିଏ ବସ ଚା। କଥା ଅଛି।"

ମୁଣ୍ଡ ତଳକୁ ପୋତି ଠିଆ ହୋଇ ରହିଲା ଅନୁପମା। କହିଲା, "ମୁଁ ସବୁ ଶୁଣିଛି।"

"ଶୁଣିଛୁ ?" ଅନିରୁଦ୍ଧ ସାନ ଭଉଣୀର ମୁହଁରୁ ତା' ମନ କଥା ପଢ଼ିବାର ଚେଷ୍ଟା କରୁଥିଲା। ରହି ରହି ସେ ପଚାରିଲା, "ତା'ହେଲେ କହ। ତୋ ମତ କ'ଣ ?"

"ମୁଁ କ'ଣ କହିବି, ଦାଦା ? ତୁମେ ଆଉ ମା' ଯାହା ସ୍ଥିର କରିବ, ସେୟା।"

ଅବିଶ୍ୱାସରେ ସାନ ଭଉଣୀ ମୁହଁକୁ କିଛି ସମୟ ପାଇଁ ଚାହିଁ ରହିଲା ଅନିରୁଦ୍ଧ। ତା'ପରେ ଆନନ୍ଦରେ ଗଦଗଦ ହୋଇ ଯାଇ ବଡ଼ ପାଟିରେ କହି ପକେଇଲା, "ଶୁଣୁଛ ମା', ଶୁଣୁଛ ? ଅନିର କୌଣସି ଆପତ୍ତି ନାହିଁ। ମା', ମୁଁ ତା'ହେଲେ କଥା ଦେଇ ଦେବି ଚକ୍ରବର୍ତ୍ତୀ ବାବୁଙ୍କୁ ?"

"ହଉ। କିନ୍ତୁ ଆଶୀର୍ବାଦ, ବାହାଘର - ସେସବୁ ପରେ।"

"ହଁ ମା'। ପିଲାଟି ଆଗ ବି.ଏ. ପାସ୍ କରୁ। ଚାକିରି ବାକିରିରେ ଲାଗିଯାଉ। ତା'ପରେ ଯାଇ ଯାହା।" ଚାହା କପ୍‌ରେ ମୁହଁ ଛୁଆଁଇଲା ଅନିରୁଦ୍ଧ।

ଚୁପ୍‌ଚାପ୍ ଘର ଭିତରକୁ ଚାଲି ଆସି ଗୋଟାଏ ବହିରେ ମୁହଁ ମାଡ଼ି ଦେଲା ଅନୁପମା। ତା' ବାହାଘର ! ଭାବିଦେଲେ କେମିତି ଏକ ଶିହରଣ ଖେଳି ଯାଉଛି ତା' ଭିତରେ। କିନ୍ତୁ ଆନନ୍ଦର ବିରାଟ ଗୋଟାଏ ଲହରୀ ତାକୁ ତ ମାଡ଼ି ବସୁନି ? ଯେମିତି ହୁଏ ବୋଲି ସେ ଉପନ୍ୟାସମାନଙ୍କରେ ପଢ଼ିଛି। 'ପୁଲକ' ନାଁଟି ମନେ ମନେ ଉଚ୍ଚାରଣ କଲେ ବି କାହିଁକି କିଛି ଉଚ୍ଚାଟ ଭାବ ତ ଆସୁନି।

ଇସ୍, କ'ଣ ଯେ ସବୁ ସେ ଭାବୁଛି ! ଅନୁପମା ଚିଡ଼ି ଉଠୁଥିଲା ନିଜ ଉପରେ। ନା, ସେ ଖୁସୀ ହେବ। ବହୁତ ଖୁସୀ ହେବ।

ଆଃ, ଦିଦି ଏତିକି ବେଳେ ଥାଆନ୍ତା କି ତା' ପାଖରେ! ଆଜି ମନ ପ୍ରାଣ କଥା ତାକୁ କହି ପାରି ଥାଆନ୍ତା ଅନୁପମା। ସାରା ରାତି ଧରି ଦି' ଭଉଣୀ ଗପ କରି ଥାଆନ୍ତେ। କେବେ ଆସିବ ଦିଦି ?

ଅର୍ଚ୍ଚନା ଚିଠି ଦେଇଛି। ଲେଖିଛି ଯେ ସେ ଷଷ୍ଠୀ ଦିନ ଆସି ପହଞ୍ଚିବ।

ଦଶହରା ଷଷ୍ଠୀ! ଅନୁପମା ମନେ ମନେ ଚିଡ଼ିଗଲା। କାହିଁକି ଆଗରୁ ଆସି ପାରିବନି ସେ ? ତା' ସ୍କୁଲ୍ ତ ଛୁଟି ହେଉଛି କେତେ ଆଗରୁ। ଲେଖିଛି କ'ଣ ନା ସ୍କୁଲରେ କାମ ଅଛି! ଚୁଲିକୁ ଯାଉ ସେ କାମ! ପୂଜାବେଳେ ବି କରିବାକୁ ହେବ କାମ! ଭାରି ରାଗ ହେଉଥିଲା ତା'ର। ଦିଦି ଆସିଲେ ସିନା ପୂଜାର ଆୟୋଜନ କରିବାରେ ଆନନ୍ଦ। ନ ହେଲେ ଯେମିତି ସବୁ ପ୍ରାଣହୀନ। ଖାଲି ଗତାନୁଗତିକ ସବୁ।

ଅନୁପମା ଭଳି ଶ୍ରଦ୍ଧା ଭାବି ହୁଅନ୍ତି ନାହିଁ। ଅର୍ଚ୍ଚନା ଯେ ଆସୁଛି, ସେ ଖବର ପାଇ ସେ ଖୁସୀ। ତାଙ୍କୁ ପାଖ ପଡ଼ିଶା ଯିଏ ପଚାରୁଥିଲା, ସେ ହସି ହସି ତାକୁ ଉତ୍ତର ଦେଉଥିଲେ, ''ମା' ଦୁର୍ଗା ପୃଥିବୀରେ ପାଦ ରଖିବେ ଷଷ୍ଠୀ ଦିନ। ଆଉ ଅର୍ଚ୍ଚନା ମା' ମୋର ଘରେ ପାଦ ରଖିବ ସେଇ ଏକା ଦିନ।''

ଆସିଗଲା ଦୁର୍ଗା ଷଷ୍ଠୀ।

ସକାଳ ହେବା କ୍ଷଣି କାନ ତାବ୍ଦା କରି ଦେଇ ଶଙ୍ଖ ପୂଜା ମଣ୍ଡପରୁ ଢ଼ାଉଁ ଢ଼ାଉଁ ଢୋଲ ବାଜି ଉଠିଲା। ଉଠରେ ସମସ୍ତେ ଉଠ। ମା' ଆସୁଛି। ସ୍ୱାଗତ କର ତାକୁ।

ଚମକି ଯାଇ ବିଛଣାରୁ ଉଠି ପଡ଼ିଲା ଅନୁପମା। ଦେହ ହାତ ଶିହରି ଉଠୁଛି ଢୋଲର ଶବ୍ଦରେ। ନା, ପୂଜା ପାଇଁ ନୁହଁ। ତା'ଠୁଁ ବି ଅଧିକ ଆନନ୍ଦଦାୟକ ଘଟଣାଟିଏ ଘଟିବ ଆଜି। ତା' ଦିଦି ଆସିବ। ଆଜି ତା' ଦିଦି ଆସିବ!

ରାସ୍ତା ଚାହିଁ ଚାହିଁ ସକାଳଟା ଚାଲିଗଲା। ଅର୍ଚ୍ଚନା ଆସିଲା ନାହିଁ। ତା' ପାଇଁ ଅପେକ୍ଷା କରି କରି ଶେଷରେ ଅନିରୁଦ୍ଧ ବାହାରିଗଲା ଘରୁ। କ୍ଲବ୍ ତରଫରୁ ପୂଜା ହେଉଛି। ସେଠି ତାକୁ ପହଞ୍ଚିବାକୁ ହେବ। ଅଣ୍ଟାରେ ଗାମୁଛା ଭିଡ଼ି ଦେଇ କାମରେ ଲାଗି ଯିବାକୁ ହେବ।

ଅନିରୁଦ୍ଧ ବାହାରିଯିବାର ଅଳ୍ପ ସମୟ ପରେ କବାଟ ଶିକୁଳିଟି ବାଜି ଉଠିଲା।

ଏଇ ଆସିଗଲା! ହାତର କାମ ଫୋପାଡ଼ି ଦେଇ ଶ୍ରଦ୍ଧା ଧାଇଁ ଆସି କବାଟ ଖୋଲି ଦେଲେ। ମାତ୍ର କବାଟ ଖୋଲି ଦେଇ ବଡ଼ ଝିଅକୁ ଦେଖି ଶ୍ରଦ୍ଧା ଆଗ ହତବାକ୍ ହୋଇ ଠିଆ ହୋଇ ରହିଲେ କିଛି ସମୟ। ଇଏ ଅର୍ଚ୍ଚନା? ତାଙ୍କ ଅର୍ଚ୍ଚନା? ଏ କି ସନ୍ୟାସିନୀ ବେଶ ତା'ର?

"ଦିଦି..." ଭିତର ଘରୁ ଧାଇଁ ଆସି ଅର୍ଚ୍ଚନାକୁ କୁଣ୍ଢେଇ ପକେଇଲା ଅନୁପମା ଏବଂ ପରମୁହୂର୍ତ୍ତରେ ହିଁ ଶ୍ରଦ୍ଧାଙ୍କ ଭଳି ସେ ସ୍ତମ୍ଭୀଭୂତ ହୋଇ ରହିଗଲା।

ଦିଦିର ଏ କି ରୂପ? କ'ଣ ହୋଇଛି ତା' ଦିଦିର? ଯିଏ ସାମାନ୍ୟ ମୋଟା ଶାଢ଼ି ଦେଖିଲେ ଛୁଉଁ ନ ଥିଲା, ପାଦରେ ଆଡ଼େଇ ଦେଉଥିଲା, ତା' ଦେହରେ ଏବେ ଖଦଡ଼ର ସାଧାରଣ ଲୁଗା ଖଣ୍ଡେ। ଯିଏ ଚିତ୍ର ତାରକାମାନଙ୍କର ବ୍ଲାଉଜ୍ ଦେଖି ଦେଖି ନିଜ ପାଇଁ ନୂଆ ନୂଆ ଧରଣର ବ୍ଲାଉଜ୍ କରୁଥିଲା, ସେ ଏବେ ପିନ୍ଧିଛି ବେକରୁ ଅଣ୍ଟା ଯାଏଁ ଲମ୍ବା ଢିଲା ଖଦଡ଼ ବ୍ଲାଉଜ୍! ଯିଏ ପୂଜା ବେଳେ ହରେକ ରକମର ଅଳଙ୍କାରରେ ସଜେଇ ହୋଇ ରହୁଥିଲା, ସେଇ ଦିଦିର ହାତ, ବେକ, କାନ ସବୁ ଖାଲି! କାନ୍ଧରେ ତା'ର କେବଳ ଖଦଡ଼ର ଝୁଲାଟାଏ।

ଅନୁପମା ଧୀରେ ଧୀରେ କହିଲା, "ଏ କ'ଣ ଦିଦି? ଏ କି ଚେହେରା କରିଛୁ? କି ଶାଢ଼ି ପିନ୍ଧିଛୁ?"

ଅର୍ଚ୍ଚନା ଓଠରେ ସାମାନ୍ୟ ହସ ଖେଳିଗଲା। "ପସନ୍ଦ ହେଲାନି ଏ ଶାଢ଼ି? ...ଏଇଟା ମୁଁ ସୂତାକାଟି ନିଜେ କରିଛି।"

"ତୁ କରିଛୁ? ତୁ ଚରଖା ଚଲାଉଛୁ ଆଜିକାଲି?"

"ହଁ। ଯେଉଁ ଦିନ ମୁଁ ଗାନ୍ଧୀଜୀଙ୍କ ଭାଷଣ ଶୁଣିବାର ସୁଯୋଗ ପାଇଲି, ସେଇଦିନ ହିଁ ମୁଁ ଫାଇନ୍ ଲୁଗା ପିନ୍ଧିବା ଛାଡ଼ି ଦେଲି।"

"ପୂରାପୂରି ଛାଡ଼ିଦେଲୁ??" ଅନୁପମା ଦିଦି ହାତ ଧରି ଭିତରକୁ ଟାଣି ନେଉ ନେଉ ଆଶ୍ଚର୍ଯ୍ୟରେ କହି ପକେଇଲା। ତା' ନିଜ ଦେହର ଶାଢ଼ିଟା ତାକୁ କାହିଁକି ମାଡ଼ି ମାଡ଼ି ବସୁଥିଲା।

"ହଁ, ପୂରାପୂରି।"

"ଭଲ ଲୁଗା ପାଇଁ ତୋ ମନ କେମିତି ହୁଏନି?"

''ନା। ଥରେ ମନ ଭିତରକୁ ତ୍ୟାଗ ଆସିଲେ ଆଉ ଖରାପ ଲାଗେନି। ... ଆଜିକାଲି ଭାରି ଭଲ ଲାଗେ ସୂତା କାଟିବାକୁ। ମୁଁ ମଝିରେ ମଝିରେ ପାଖ ଆଖ ଗାଁକୁ ଯାଇ ସେଠି ଲୋକଙ୍କୁ ସୂତାକଟା ଶିଖାଏ।''

''ତୁ ବି ସ୍ୱଦେଶୀ ଆନ୍ଦୋଳନରେ ମାତି ସାରିଲୁଣି ନା କ'ଣ?'' ଭୟରେ ଭୟରେ ଶ୍ରଦ୍ଧା ପଚାରି ପକେଇଲେ।

''ନା ମା'। ମୋର ସେ ସୌଭାଗ୍ୟ କାହିଁ?'' ଶୁଖିଲା ସ୍ୱରରେ କହିଲା ଅର୍ଚ୍ଚନା।

ନିଶ୍ଚିନ୍ତ ହୋଇ ଶ୍ରଦ୍ଧା ରୋଷେଇ ଘର ଭିତରକୁ ଚାଲିଗଲେ। ଆଜି ସିନା ତାଙ୍କର ଷଷ୍ଠୀ ଓପାସ, ସେ କିନ୍ତୁ ନିଜ ହାତରେ ରାନ୍ଧି ଝିଅକୁ ଖୁଆଇବେ। କାହିଁ କେତେ ଦିନ ଧରି ମା' ହାତ ରନ୍ଧା ଖାଇନି ସେ। ପରିବା ତାଲାଟା ଟାଣି ଆଣୁ ଆଣୁ ସେ ସାହାଯ୍ୟ କରିବା ପାଇଁ ଅଭ୍ୟାସବଶତଃ ଅନିକୁ ଡାକିବାକୁ ଯାଉଥିଲେ। କିନ୍ତୁ ନିଜକୁ ଚୁପ୍ କରେଇ ଦେଲେ ସେ। ଏତେ ଦିନ ପରେ ସେ ତା' ଦିଦିକୁ ପାଇଛି। କରନ୍ତୁ ବସି ଦି' ଭଉଣୀ ଗପସପ।

ଅନୁପମା କିନ୍ତୁ ଏକଦମ୍ ଚୁପ୍ ହୋଇ ଯାଇଥିଲା। ଏତେ ଦିନ ଧରି ସେ ଭାବି ରଖିଥିଲା, ଦିଦି ଆସିଲେ କ'ଣ ସବୁ ଗପିବ। କି କି କଥା କହିବ। ହେଲେ ଦିଦିକୁ ଏଭଳି ବେଶରେ, ଏଭଳି ଭାବରେ ଦେଖି ତା' ପାଟି ଯେମିତି ବନ୍ଦ ହୋଇ ଯାଇଥିଲା।

ଅର୍ଚ୍ଚନା ଆଗ କଥା ଆରମ୍ଭ ହେଲା। ''କ'ଣରେ ଅନି, ପୁଲକ ତୋର ପସନ୍ଦ ହୋଇଛି?''

''ପୁଲକ? ତତେ କିଏ କହିଲା ପୁଲକ କଥା?''

''ମା' ଚିଠି ଦେଇଥିଲେ। ତୁ ବି କୁଆଡ଼େ ରାଜି ହୋଇ ଯାଇଛୁ।''

''ରାଜି କାହିଁକି ହୋଇ ନ ଥାଆନ୍ତି, କହିଲୁ ଦିଦି। ବାହା ତ ହେବାକୁ ହିଁ ହେବ। ମା' ଦାଦା ଯେଉଁଠି ଠିକ୍ କରୁଛନ୍ତି, ସେଇଠି ରାଜି ହୋଇଗଲେ ଭଲ। ଅଶାନ୍ତି ନାହିଁ ଅଯଥା।'' ନିରୁତ୍ସାହଭରା ସ୍ୱରରେ ଅନୁପମା କହିଲା।

''ଏମିତି କାହିଁକି କହୁଛୁ? ତୋର ଇଚ୍ଛା ନାହିଁ?''

''ମୋର ଇଚ୍ଛା ଅନିଚ୍ଛା କ'ଣ, ତା' ମୁଁ ବୁଝି ପାରୁନି।'' ଅନୁପମା କେମିତି ତା' ଦିଦିକୁ କହିବ ଯେ ବାହାଘର କଥା ଶୁଣି ତା' ଛାତି ଭିତରେ

ବିଦ୍ୟୁତ୍ ଚମକୁନି। ପୁଲକ ନାଁ ଶୁଣି ତା' ମନ ଭିତରେ ଆନ୍ଦୋଳନ ସୃଷ୍ଟି ହେଉନି। ନା, ଆଦୌ କିଛି ହେଉନି ତା' ଭିତରେ। ସେସବୁ ବୋଧେ ଗଳ୍ପ ଉପନ୍ୟାସର କଥା, ଅନୁପମା ନିଜକୁ ନିଜେ ବୁଝେଇବା ଭଳି କହିଲା। ବାସ୍ତବ ଜୀବନରେ ବୋଧେ ସେମିତି କିଛି ହୁଏ ନାହିଁ।

''ନିଜ ଇଚ୍ଛା କ'ଣ ବୁଝି ପାରୁନୁ ? ନିଜ ମନକୁ ପଚାର। ହଁ କିମ୍ବା ନାହିଁରେ ଉତ୍ତର ଜାଣିବାକୁ ଚେଷ୍ଟା କର।'' ଅର୍ଚ୍ଚନା ସାନ ଭଉଣୀକୁ ଜୋର ଦେଇ କହିଲା।

''ଛାଡ଼ ତ ଦିଦି, ମୋ ଜୀବନଟା କ'ଣ କାହା କଲମରୁ ଝରି ପଡ଼ିଥିବା ଉପନ୍ୟାସ ନା କ'ଣ ? ସତ ଜୀବନରେ ସେମିତି କିଛି ହୁଏ ନାହିଁ।''

''ହୁଏ ନାହିଁ ବୋଲି ତତେ କିଏ କହିଲା...'' ଆବେଗରେ କହି ଆସୁ ଆସୁ ଅର୍ଚ୍ଚନା ହଠାତ୍ ଚୁପ୍ ହେଇଗଲା।

''ହୁଏ ? ତୁ କେମିତି ଜାଣିଲୁ ?''

ସାନ ଭଉଣୀ ପ୍ରଶ୍ନର କୌଣସି ଉତ୍ତର ନ ଦେଇ କଥା ଆଡ଼େଇବା ପାଇଁ ଅର୍ଚ୍ଚନା ତରବର ହୋଇ କହି ପକେଇଲା, ''ତୁ କ'ଣ ସବୁ କବିତା ଲେଖିଛୁ ଏହା ଭିତରେ ? ଦେଖା ତ।''

''କବିତା ! ଚୋପା କବିତା ଲେଖିଛି !''

''କାହିଁକି ଲେଖିନୁ ? ଏତେ ବଡ଼ ପ୍ରତିଭାଟା ପାଇଛୁ, ଏମିତି ନଷ୍ଟ କରି ଦେଉଛୁ ?''

''ପ୍ରତିଭା ନା ଚୋପା ! ଖୁସିରେ ଗାରେଇ ଦେଉଥିଲି। ତୁ ପଢ଼ି ବେଶୀ ଖୁସୀ ହେଉଥିଲୁ ବୋଲି ଆହୁରି ଆହୁରି ଲେଖିବାକୁ ଇଚ୍ଛା ହେଉଥିଲା। ଏବେ ତୁ ତ ଏଠି ନାହୁଁ, ଲେଖିବାକୁ ଇଚ୍ଛା ହେବ କେମିତି ? ସବୁବେଳେ ଖାଲି ମନ ଖରାପ ହେଲେ, ମୋ ଭିତରୁ କବିତା ବାହାରିବ କେମିତି ?''

ଅର୍ଚ୍ଚନା ଦୂରକୁ ଚାହିଁଲା ଶୂନ୍ୟ ଦୃଷ୍ଟିରେ। ଧୀରେ ଧୀରେ କହିଲା, ''କେବେ ତ ଲେଖିନି, ଜାଣିବି କେମିତି ? ହେଲେ ଅନି, ସମସ୍ତେ କହନ୍ତି କବିତା ଲେଖିଲେ ମନ ଭିତରେ ଥିବା ଦୁଃଖ, ହାହାକାର କଲମ ଦେଇ ନିଗିଡ଼ି ଯାଏ। ମନ ଟିକିଏ ହାଲୁକା ହୁଏ।'' ଦୀର୍ଘ ନିଶ୍ୱାସ ନେଇ ସେ ପୁଣି ଯୋଡ଼ିଲା, ''ମୁଁ ହେଲେ କବିତା ଲେଖି ପାରୁଥାଆନ୍ତି ! ମନକୁ ଟିକିଏ ହାଲୁକା କରି ପାରୁଥାନ୍ତି

ତା'ହେଲେ।''

''କାହିଁକି? ତୋର ମନ ହାଲୁକା କରିବାର କି ପ୍ରୟୋଜନ ଅଛି? ତୁ ତ ମଜାରେ ଅଛୁ। ଆରାମରେ ଅଛୁ। ନିଜେ ଚାକିରି କରୁଛୁ। ନିଜେ ରୋଜଗାର କରୁଛୁ। ଦାଦାର ଲାଲ୍ ଆଖିର ସାମ୍ନା କରିବାକୁ ହେଉନି। ...ତୋର ପୁଣି କି ଦୁଃଖ?''

ଏ କଥାର କୌଣସି ଉତ୍ତର ଦେଲାନି ଅର୍ଚ୍ଚନା। ଗଳାରେ କ'ଣ ଯେମିତି ଅଟକି ଯାଉଛି। କଥା କହିବ କେମିତି? ଏଣେ ପୁଣି ଶତ୍ରୁ ଭଳି ଆଖି ପତା ତଳେ ଲୁହ ଭର୍ତ୍ତି ହୋଇ ଯାଉଛି। ସେଇ ଲୁହକୁ ଲୁଚେଇବା ପାଇଁ ସେ ତରବର ହୋଇ କହି ପକେଇଲା, ''ଛାଡ଼ ତ ବାଜେ କଥା ଯେତେକ। ତୁ ଏବେ କ'ଣ ସିଲେଇ କରୁଛୁ ଦେଖା। ଏମ୍ବ୍ରୟଡରି କିଛି କରିନୁ? ମୁଁ ତୋ ପାଇଁ ବଢ଼ିଆ ବଢ଼ିଆ ସୂତା ଆଣିଛି। ରହ, ବାକ୍ସ ଖୋଲି ଦେଉଛି।''

ମୁହଁ ଘୂରାଇ ନେଇ ବାକ୍ସ ଖୋଲିଲା ଅର୍ଚ୍ଚନା। ତା' ଭିତରୁ ସୁନ୍ଦର ସୁନ୍ଦର ସୂତା କାଢ଼ି ଅନୁପମା ହାତକୁ ବଢ଼େଇ ଦେଲା ସେ।

''ଇସ୍, ଦିଦି କି ବଢ଼ିଆ ସୂତା! ମୁଁ ଯେଉଁ ବାଉଁଶ ଗଛ ଉପରେ ବସିଥିବା ଚଢ଼େଇ ଏମ୍ବ୍ରୟଡରି କରୁଛି, ସେଇଟା ପାଇଁ ଏକଦମ୍ ବଢ଼ିଆ ହେବ।''

''ବାଉଁଶ ଗଛ ଉପରେ ଚଢ଼େଇ? କାହିଁ, ଦେଖା ତ।''

ଅନୁପମା ସିଲେଇ ବ୍ୟାଗ୍ ଭିତରୁ କାଢ଼ି ଆଣିଲା ଫ୍ରେମ୍‌ଟା।

ଫ୍ରେମ୍‌ରେ ଲଗା ହୋଇ ରହିଥିଲା ଟସର କନାଟିଏ। କିଏ ଜଣେ ବ୍ଲାଉଜ୍ କରିବାକୁ ଦେଇଥିଲେ। ସେଇଥିରୁ କଣିକିଆ ହୋଇ ଏତିକ କନା ବଳି ଯାଇଥିଲା। ଏତେ ଦାମୀ କନା ବୋଲି ଫୋପାଡ଼ି ନ ଦେଇ ଅନୁପମା ତାକୁ କାମରେ ଲଗାଇଛି। ''କେମିତି ହୋଇଛି?''

''ବହୁତ ବଢ଼ିଆ।'' ଅର୍ଚ୍ଚନା ଉତ୍ତର ଦେଲା। ସେଇମିତି ମୁଣ୍ଡ ତଳକୁ ପୋତି ସିଲେଇଟିକୁ ଦେଖୁ ଦେଖୁ ହଠାତ୍ ସେ ପଚାରିଲା, ''ସଲ୍‌ମା ଚାଚୀ ଭରିକାଙ୍କର ଖବର କ'ଣ, ଅନି?''

''ଚାଲିଛି ଏକରକମ। ହାଇଦର୍ ଦାଦା ପଢ଼ା ଛାଡ଼ିଦେଲା। ଆଉ ଜାହାଙ୍ଗୀର ଦାଦା ବେଶୀ ପଢ଼ିବ ବୋଲି ଚାଲିଯାଇଛି କଲିକତା।''

''ଆଉ...?'' ପଚାରିବା ଆଖିରେ ସାନ ଭଉଣୀ ମୁହଁକୁ ଚାହିଁ ରହିଲା

ଅର୍ଚ୍ଚନା ।

"ଆଉ ପୁଣି କ'ଣ ? ସଲ୍‌ମା ଚାଚୀ, ଆବିଦ୍ ଚାଚା ଏକା ଏକା ରହୁଛନ୍ତି ଏଠି ।"

ତଥାପି ପଚାରିବା ପଚାରିବା ଆଖିରେ ସାନ ଭଉଣୀକୁ ଚାହିଁ ରହିଲା ଅର୍ଚ୍ଚନା ।

"ଓ..., ତୁ ସଫିକ୍ ଦାଦା କଥା ପଚାରୁଛୁ ? ସଫିକ୍ ଦାଦା ତ କାହିଁ କେବେଠୁ ଚାକିରି ନେଇ ଦିଲ୍ଲୀ ଚାଲି ଯାଇସାରିଲେଣି..."

"ଦିଲ୍ଲୀ ??" ଅର୍ଚ୍ଚନା ସ୍ୱର ଟାଣି ହୋଇଗଲା ।

"ହଁ । ତାଙ୍କୁ ଏଠି ବି ଭଲ ଚାକିରି ମିଳିଥିଲା ଯେ ହେଲେ ସେ ଜମା ରାଜି ହେଲେନି ଏଠି ରହିବାକୁ । କେଜାଣି ବାବା, କେମିତି ତାଙ୍କର ଇଚ୍ଛା ହେଲା ସେ ଅବଙ୍ଗାଳୀ ରାଜ୍ୟକୁ ଚାଲିଯିବାକୁ ! ମୁଁ ତ ଭାବି ପାରୁନି । ସେଠିକା ଭାଷା ଭିନ୍ନ । ଅବଶ୍ୟ ସଫିକ୍ ଦାଦା ଉର୍ଦ୍ଦୁ ଜାଣେ, ସେ ଚଳେଇ ନେବ । ହେଲେ ବି କେତେ ଅସୁବିଧା କହିଲୁ । ସେଠି ମାଛ ମିଳେନି ଜମା । ସଂଦେଶ ମିଳେ କି ନାହିଁ ସଂଦେହଜନକ । ଆଉ ସଫିକ୍ ଦାଦା କି ଯେ ମିଠାପ୍ରିୟ, ତା' ତ ସମସ୍ତେ ଜାଣନ୍ତି ।" ହସି ହସି କହୁ କହୁ ଅନୁପମା ଅନୁଭବ କଲା ଯେ ସେ କେବଳ ଏକତରଫା କଥା କହି ଚାଲିଛି । ଦିଦି ଅନ୍ୟମନସ୍କ । କଥା ଶୁଣୁଛି କି ନାହିଁ କିଏ ଜାଣେ ?

ନିଜ କଥା ଶେଷ କରିଦେବା ପାଇଁ ଅନୁପମା ଶେଷ ବାକ୍ୟ ଯୋଡ଼ିଲା, "ଆବିଦ୍ ଚାଚା, ସଲ୍‌ମା ଚାଚୀ ଭରିକା କେତେ ବୁଝେଇଲେ, ଏତେ ଦୂରକୁ ଚାଲି ନ ଯିବାକୁ କେତେ କରି କହିଲେ, ହେଲେ ସଫିକ୍ ଦାଦା ପ୍ରାୟ ଜିଦି କରି ଦିଲ୍ଲୀର ଚାକିରି..."

ନା । ଶେଷ ବାକ୍ୟଟି ଆଉ ଶେଷ କରି ପାରିଲା ନାହିଁ ଅନୁପମା ।

ତା'ରି ଆଖି ସାମ୍ନାରେ ଯେମିତି ଶହ ଶହ ପ୍ରଶ୍ନର ଉତ୍ତର ସ୍ପଷ୍ଟ ଭାବରେ ଲେଖି ହୋଇଗଲା । ସବୁ ଜଟିଳ ପ୍ରହେଳିକାର ସମାଧାନ ହୋଇଗଲା । କଥା ଅଧାରୁ ବନ୍ଦ କରି ଦେଇ ଦିଦି ମୁହଁକୁ ଅବାକ ହେଇ ଚାହିଁ ରହିଲା ଅନୁପମା ।

ସଫିକ୍ ଦାଦା !! ସଫିକ୍ ଦାଦାକୁ ନେଇ ସବୁ କଥା ତା'ହେଲେ !!

ଏଇଥିପାଇଁ ପାବ୍‌ନା ଛାଡ଼ି ଚାଲି ଯାଇଥିଲା ଦିଦି । ଏଇଥିପାଇଁ ତା'ହେଲେ

ବାହାଘର ଭାଙ୍ଗି ଦେବା ପାଇଁ କାନ୍ଦି କାନ୍ଦି ଗଡ଼ି ଯାଉଥିଲା ସେ ? ଆଉ କେବଳ ଏଇଥିପାଇଁ ଚାକିରି ନେଇ ଦିଲ୍ଲୀ ପଳେଇଲେ ସଫିକ୍ ଦାଦା ?

"ଦିଦି..."

"ଉଁ..."

"ସଫିକ୍ ଦାଦା ଦିଲ୍ଲୀ ଯିବା କଥା ତତେ ଜଣେଇ ନାହାନ୍ତି ?"

"ମତେ ଜଣେଇବେ ?? ତୋ ମୁଣ୍ଡ ଖରାପ ହେଲାଣି ନା କ'ଣ !" ଅର୍ଚ୍ଚନାର ମୁହଁଟା ଲାଲ୍ ପଡ଼ି ଆସୁ ଆସୁ ହଠାତ୍ କରି ରଙ୍ଗଶୂନ୍ୟ ହୋଇଗଲା ।

ଅନୁପମା ମନରେ ଆଉ ସଂଦେହ ରହିଲା ନାହିଁ।

ଅଧା ହୋଇଥିବା ଏମ୍ବ୍ରୟଡରିକୁ ଓଲଟେଇ ଓଲଟେଇ ତଥାପି ଦେଖୁଥିଲା ଅର୍ଚ୍ଚନା, କିନ୍ତୁ ଆଖି ଦିଓଟି ତା'ର ଅଦ୍ଭୁତ ଭାବରେ ଶୂନ୍ୟ ହୋଇ ଯାଇଥିଲା ।

ସେଇ ଶୂନ୍ୟ ଆଖି ଦିଓଟିକୁ ଦେଖି ଅନୁପମାର ମନ ଭୀଷଣ ଖରାପ ହୋଇଗଲା ।

ଶ୍ରଦ୍ଧାଙ୍କ ବାଧବାଧକତାରେ ଅର୍ଚ୍ଚନା ଅନୁପମା ସାଙ୍ଗରେ ପୂଜା ମଣ୍ଡପକୁ ଯାଇଥିଲା । କିନ୍ତୁ ସେଠି ବେଶୀ ସମୟ ରହି ପାରିଲା ନାହିଁ ସେ । ତା' ଉପରେ ପହଁଚି ଯାଉଥିବା ସମସ୍ତଙ୍କର କୌତୁହଳୀ ଦୃଷ୍ଟି ତାକୁ ଭଲ ଲାଗୁ ନ ଥିଲା । ଅସ୍ୱସ୍ତିକର ମନେ ହେଉଥିଲା । ତା' ଉପରେ ପୁଣି ହୃଦୟ ଭିତରର ଏ ଯେଉଁ ଘୋର ଶୂନ୍ୟତା ! କେମିତି କେଉଁଠି ଭଲ ଲାଗିବ ତାକୁ ?

ପାବ୍ନା ସହରଟା ଅର୍ଚ୍ଚନାକୁ କେମିତି ରଙ୍ଗହୀନ ମନେ ହେଉଥିଲା । ଅବାଧ ଆଖି ତା'ର ପହଁଚି ଆସୁଥିଲା ପାବ୍ନାର ରାସ୍ତାରେ । ତାଙ୍କ ଘର ଗଳିରେ । ଆଉ ପଡ଼ିଶା ଆବିଦ୍ ଚାଚାଙ୍କ ବାରଣ୍ଡାରେ । କିନ୍ତୁ ପରମୁହୂର୍ତ୍ତରେ ହିଁ ତା' ଭିତରୁ ସ୍ୱରଟିଏ ଠେଲି ହୋଇ କହି ପକାଉଥିଲା ଯେ ଯାହାକୁ ଦେଖିବାକୁ ସେ ବିକଳ ହୋଇ ଯାଉଛି, ତାକୁ ସେ ଦେଖି ପାରିବନି । ଶହ ଶହ ମାଇଲ୍ ଦୂରକୁ ଚାଲି ଯାଇଛି ସେ ।

"ଚାଲ ଅନି, ଘରକୁ ଯିବା ।" ଅନୁପମାର ହାତ ଟାଣି ନେଇ ଘରକୁ ଚାଲି ଆସିଥିଲା ଅର୍ଚ୍ଚନା ।

ଦି'ପହରର ଖିଆପିଆ ସରିଲାଣି । ଅନିରୁଦ୍ଧ ତଥାପି ଘରକୁ ଆସିନି । ସେ

ଆଜି ପେଣ୍ଡାଲ୍‌ରେ ଖିଆପିଆ କରିବ, ଘରେ କହି ଯାଇଛି ।

ଶୋଇବା ଘରେ ସପ ବିଛାଇ ପକେଇ ଦେଇ ଦି' ଝିଅ ଆଉ ମା' ଗଡୁଥିଲେ । ଶରତର ଦିପହର । ତଥାପି ଏତିକି ଗରମ ! ହାତ ପଙ୍ଖାଟା ଘୂରାଉ ଘୂରାଉ କାହିଁ କେତେ ଆଡ଼ର ଗପ ମେଲାଇ ଦେଉଥିଲେ ଶ୍ରଦ୍ଧା । ପବନ ଖାଉ ଖାଉ ଅନୁପମା ନିଦରେ ଶୋଇ ପଡ଼ିଲାଣି । ଅର୍ଚ୍ଚନା 'ହୁଁ ହାଁ' ମାରି ଅନ୍ୟମନସ୍କ ଭାବରେ କେବଳ ମା'ଙ୍କ କଥା ଶୁଣି ଯାଉଛି ।

ହଠାତ୍ ଶ୍ରଦ୍ଧା କହିଲେ, ''ଅର୍ଚ୍ଚନା ମା'ରେ, ଅନି ବାହାଘର ତ ଠିକ୍ ହୋଇଗଲା । ଏଥର ତୋ କଥା...''

ଅର୍ଚ୍ଚନା ତରବର ହୋଇ କହି ପକେଇଲା, ''ମୋ କଥା ଛାଡ଼ । ତୁମେ ଅନିର ନିର୍ବନ୍ଧ କରେଇ ନେଇ ବାହାଘର ଦିନ କାହିଁକି ସ୍ଥିର କରି ଦେଉନ ? ଦାଦା ଫେରନ୍ତୁ ଆଜି । ମୁଁ ତାଙ୍କୁ କହୁଛି ଏକଥା ।''

''ସେମିତି କ'ଣ ହୁଏ ? ତୁ ବଡ଼ ଭଉଣୀଟା ଥାଉ ଥାଉ ସାନ ଭଉଣୀ ବାହାଘର କେମିତି ହେବ ? ଲୋକେ କ'ଣ କହିବେ ?''

''ଲୋକଙ୍କ କଥା କେବେଠୁ ତୁମେ ଭାବିଲଣି ମା' ? ...ମୋ କଥା ଛାଡ଼ ।''

''ଛାଡ଼ିବି କାହିଁକି ?''

ଦୀର୍ଘ ନିଶ୍ୱାସ ନେଲା ଅର୍ଚ୍ଚନା ଏବଂ ଅସ୍ପଷ୍ଟ ଭାବରେ କହିଲା, ''ମୁଁ ଯେଉଁଠି ଯେମିତି ଅଛି ଠିକ୍ ଅଛି ।... ମୁଁ ବାହା ହେବିନି ମା' ।''

''କାହିଁକି ? କାହିଁକି ?'' ଚିହିଙ୍କି ଯାଇ ଶ୍ରଦ୍ଧା ବିଛଣାରେ ଉଠି ବସିଲେ ।

''ମତେ କିଛି ପଚାରନି । ମତେ ବାଧ କରନି ।'' ଅର୍ଚ୍ଚନା ଆଖିରେ ଲୁହ ଟଳମଳ କଲା ।

ଶ୍ରଦ୍ଧାଙ୍କ ପାଟିରୁ କଥା ଯେମିତି ହଜି ଯାଇଥିଲା । କ'ଣ ଯେ ହୋଇଗଲା ଏ ଝିଅଟାର, ସେ ମା' ହୋଇ ବି ବୁଝି ପାରିଲେନି । ଅନିରୁଦ୍ଧ ବୁଝିଛି ନିଶ୍ଚୟ । ନହେଲେ କି ସେ ସେଦିନ କହିଦେଇଥାଆନ୍ତା, ''ଅର୍ଚ୍ଚନା କ'ଣ ବାହା ହେବା ପାଇଁ ରାଜି ହେବ ମା' ?''

ଏବେ ଝିଅଟାର କ'ଣ ହେବ ? ସାରା ଜୀବନ କ'ଣ ସେ ଏଇମିତି ଏକା ଏକା ରହିଯିବ ?

ଅନୁପମା ମ୍ୟାଟ୍ରିକ୍ ପାସ୍ କରିଗଲା ଅତି ଭଲ ନମ୍ବର ରଖି। ତା'ର ପରୀକ୍ଷା ଫଳ ଶୁଣି ସବୁଠାରୁ ବେଶୀ ଖୁସୀ ହୋଇଥିଲା ଅର୍ଚ୍ଚନା। ସେ ଶ୍ରଦ୍ଧାଙ୍କୁ ଚିଠି ଦେଇ ଲେଖିଥିଲା ଯେ ଅନିର ପାଠ ଯେମିତି ବନ୍ଦ ନ ହୁଏ। ତା'ର ଯେମିତି କଲେଜରେ ଆଡ୍‌ମିସନ୍ ହୁଏ। ଅନିର କଲେଜ ଖର୍ଚ୍ଚ ସେ ତୁଲେଇବ।

ଶ୍ରଦ୍ଧା ଭାବିଥିଲେ ଯେ ଅର୍ଚ୍ଚନାର ଚିଠି ପଢ଼ି ଅନିରୁଦ୍ଧ ପାଟିତୁଣ୍ଡ କରିବ। ତା'ର ଅହମିକାକୁ ବାଧିଯିବ। କିନ୍ତୁ ସେଭଳି କିଛି ହେଲାନାହିଁ। କିଛି ଦିନ ଭାବି ହେଲା ପରେ ସତକୁ ସତ କଲେଜରେ ଅନୁପମାର ଆଡ୍‌ମିଶନ୍ କରେଇ ଦେଲା ଅନିରୁଦ୍ଧ।

ପୁଲକର ବି.ଏ. ରେଜଲ୍ଟ ବାହାରିଗଲା ସେତିକି ବେଳେ। କୌଣସି ମତେ ସେକେଣ୍ଡ ଡିଭିଜନ୍‌ରେ ଲାଖିଯାଇ ପାସ୍ କରିଗଲା ସେ। ପାସ୍ ଖବର ଶୁଣି ଚକ୍ରବର୍ତ୍ତୀ ପରିବାରରେ ଆନନ୍ଦର ଢେଉ ଖେଳିଗଲା। ସେଇ ଆନନ୍ଦର ସ୍ରୋତରେ ସାମିଲ ହୋଇଯାଇଥିଲା ଅନିରୁଦ୍ଧ।

ଖବର ଶୁଣିବା ଦିନ ଘରକୁ ଆସି ସେ ଶ୍ରଦ୍ଧାଙ୍କୁ କହିଲା, ''ମୁଁ ତୁମକୁ କ'ଣ କହିଥିଲି ମା'? ଦେଖିଲ, ପୁଲକ ସେକେଣ୍ଡ ଡିଭିଜନ୍‌ରେ ବି.ଏ. ପାସ୍ କରିଛି। ବାସ୍, ତା'ର ଚାକିରି ଜାଣ ହୋଇଗଲା। ବଡ଼ ବାବୁଙ୍କୁ ଆମ କମ୍ପାନୀର ବଡ଼ ସାହେବ ପକ୍କା କଥା ଦେଇଛନ୍ତି। ଏଥର ଆମେ ବାହାଘର କଥା ଆଗେଇବା। ଯେତେ ଯାହା ହେଲେ ଆମେ ଝିଅ ଘର ଲୋକ। ଚକ୍ରବର୍ତ୍ତୀ ବାବୁ ବି ଆଶୀର୍ବାଦଟା କରେଇ ଦେବା କଥା କହୁଥିଲେ।''

''ହଉରେ ବାବୁ। ତୋର ଯାହା ଇଚ୍ଛା।''

''ସେମାନେ ଯଦି ଶୀଘ୍ର ବାହାଘର କରେଇ ଦେବା କଥା କହନ୍ତି, ତା'ହେଲେ ଅରାଜି ହେବାନି।''

''ନା।'' ଗମ୍ଭୀର ଭାବରେ ଶ୍ରଦ୍ଧା କହିଲେ, ''ପୁଲକ ଚାକିରି ନ ପାଇବା ପର୍ଯ୍ୟନ୍ତ ବାହାଘର ହୋଇ ପାରିବନି।''

''ଓହୋ ମା', ତୁମେ ଏମିତି କହୁଛ ଯେମିତିକି ସେମାନଙ୍କ ଘରେ ଖାଇବାକୁ

ନାହିଁ। ଜାଣିଛ, ଗାଁରେ ତାଙ୍କର କେତେ ଜମିଜମା? ସେମାନଙ୍କୁ ବର୍ଷଯାକର ଚାଉଳ ଡାଲି କିଛି କିଣିବାକୁ ହୁଏ ନାହିଁ। ଆଉ ସେମାନେ ବୋହୂଟିକୁ ଚଳେଇ ପାରିବେନି?''

''ବୋହୂ ଚଳେଇବା କଥା ନୁହଁ। ମୋର ଇଚ୍ଛା ପୁଲକ ସ୍ୱାବଲମ୍ବୀ ହେବା ପରେ ଯାଇ ଅନିର ହାତ ମୁଁ ତା' ହାତରେ ଦେବି। ...ଏ ବିଷୟରେ ତୁ ମତେ ଜମା ବାଧ କରିବୁନି ବାବୁ।''

''ହଉ, ହେଲା ମା'।''

ଶ୍ରଦ୍ଧାଙ୍କର ଚିନ୍ତା କିନ୍ତୁ ଶେଷ ହୋଇ ନ ଥିଲା। ସେ ଭାବିବା ଭଳି ହୋଇ କହିଲେ, ''...ଆମ ଅନିର ପାଠ ବନ୍ଦ କରେଇ ଦେବେନି ତ ସେମାନେ?''

''ମା', ବାହାଘର ପରେ କ'ଣ ହେବ ସେକଥା ଏବେଠୁ କ'ଣ କହିହେବ? ଯଦି ସେମାନେ ବାଧ କରନ୍ତି, ତା'ହେଲେ ଅନିକୁ ପାଠ ଛାଡ଼ିଦେବାକୁ ହେବ। ତେବେ ଏପର୍ଯ୍ୟନ୍ତ ତ ସେମାନେ ଅନିର କଲେଜ ଯିବା ନେଇ କିଛି କହିନାହାନ୍ତି, ତୁମେ ଏତେ ଭାବି ହେଉଛ କାହିଁକି?''

ରୋଷେଇ ଘରେ ପରିବା କାଟୁ କାଟୁ ସବୁ କଥା ଅନୁପମାର କାନରେ ପଡ଼ିଲା ଏବଂ କେମିତି କାଠ ହୋଇଗଲା ତା' ଦେହ ହାତ। ପଢ଼ା ଛାଡ଼ିବାକୁ ହେବ?

ଜୋରରେ ନିଶ୍ୱାସ ନେଲା ସେ। ବାହାଘର କଥା ଆଗେଇଲେ ତ ଶାଶୂଘର ଲୋକଙ୍କ କଥା ସେମାନଙ୍କୁ ମାନିନେବାକୁ ପଡ଼ିବ। ଉପାୟ କ'ଣ ଅଛି? ହେଲେ... ଥରେ ସେ ପୁଲକକୁ ପଚାରି ଦେଖିବ କି? ତା'ର ମତ କ'ଣ, ଜାଣିବାର ଚେଷ୍ଟା କରିବ କି?

ଅନୁପମା ଘରେ ସିନା କାହାକୁ କିଛି କହିନି, କିନ୍ତୁ ସେ କଲେଜ ଯିବା ଦିନଠାରୁ ପୁଲକ ପ୍ରତିଦିନ ଆସି କଲେଜରେ ପହଞ୍ଚି ଯାଉଥିଲା। ସେଇ ସ୍କୁଲ୍ ଦିନମାନଙ୍କ ଭଳି। ଆଗରୁ ସିନା ଦୂରରୁ ତାକୁ ଚାହିଁ ଚାହିଁ ରହୁଥିଲା, କିନ୍ତୁ ଥରେ ତା' ମା' ଓ ଦାଦା ବାହାଘର ପାଇଁ ସମ୍ମତି ଦେଇ ଦେବା ପରେ ତା'ର ସାହସ ଆଉ ଟିକିଏ ଅଧିକ ବଢ଼ିଗଲା। ଏବେ ସେ କେବଳ ଦୂରରୁ ତାକୁ ଚାହିଁ ରହେ ନାହିଁ କି ମୁରୁକି ମୁରୁକି ହସେ ନାହିଁ, ଏଥର ସେ ପାଖକୁ ଆସି ତା' ସାଙ୍ଗରେ ପଦେ ଦି'ପଦ କଥା କହିବାର ଚେଷ୍ଟା କରେ।

କଲେଜଟାଯାକର ପିଲାଙ୍କ ସାମ୍ନାରେ ଗୋଟିଏ ପୁଅ ସାଙ୍ଗରେ କଥା କହିବାଟା ଅନୁପମାର ରୁଚିକୁ ବାଧୁଥିଲା । ଅବଶ୍ୟ ପୁଅଟି ତା'ର ଭାବୀ ପତି ଏବଂ ସେଇ କଥା କାହାର ଅଜଣା ନ ଥିଲା । ତଥାପି ତାକୁ କେମିତି ମାଡ଼ି ମାଡ଼ି ପଡୁଥିଲା । ସେ ପଦେ ଦି'ପଦ କଥା କହି ପ୍ରାୟ ଦୌଡ଼ିବା ଭଳି ନିଜ କ୍ଲାସ୍‌କୁ ଚାଲି ଯାଉଥିଲା ।

ଏବେ ପାଠ ବନ୍ଦ କରେଇବା ଘଟଣା ନେଇ ତା' ମନ ଭିତରେ ଯେଉଁ ଉଦ୍‌ବେଳନ ଆରମ୍ଭ ହୋଇଛି, ସେଇଟା ଶାନ୍ତ କରେଇବା ପାଇଁ ସେ ପୁଲକଙ୍କୁ ଥରେ କଥାଟା ପଚାରି ଦେବ କି ?

ଅନୁପମା ଠିକ୍ ସେୟା କରିଥିଲା । ତା' ପରଦିନ କଲେଜରେ ପୁଲକ ଯେତେବେଳେ ତା' ପାଖକୁ ଆସି ବିଭିନ୍ନ କଥା ପଚାରିଥିଲା, ସବୁଥର ଭଳି 'ହଁ, ନା'ରେ ଉତ୍ତର ନ ଦେଇ ଆଖି ତୋଳି ଅନୁପମା କହିଥିଲା, ''ଆପଣଙ୍କୁ ଗୋଟିଏ କଥା ପଚାରିବାର ଅଛି ।'' ଅନୁପମା ସାଙ୍ଗରେ ଆଶୀର୍ବାଦ ହୋଇ ଯିବା ପରେ ପୁଲକ ତାକୁ 'ଆପଣ' ବାଦ୍ ଦେଇ 'ତୁମେ' କହିବାକୁ କହିଥିଲା, କିନ୍ତୁ ଅନୁପମା ପାରିନି । 'ତୁମେ' ଡାକଟି ସ୍ୱତଃସ୍ଫୁର୍ତ୍ତ ଭାବରେ ତା' ଭିତରୁ କେବେ ଆସିନି । 'ତୁମେ' ଡାକରେ ଯେଉଁ ଅନ୍ତରଙ୍ଗତା ଥାଏ, ତା' ଏପର୍ଯ୍ୟନ୍ତ ସେ ନିଜ ଭିତରେ ଆଦୌ ଅନୁଭବ କରିପାରିନି ।

ସେଥିପାଇଁ ଭଦ୍ର ଭାବରେ କହିଥିଲା, ''ଆପଣଙ୍କୁ ଗୋଟିଏ କଥା ପଚାରିବାର ଅଛି ।''

ପୁଲକ ଅଭିଭୂତ ହୋଇ ପଡ଼ିଥିଲା । ଯା'ହେଉ, ଆଜି ନିଜ ତରଫରୁ କଥାଟିଏ କହିବାକୁ ବସିଛି ଅନୁପମା । ଏଭଳି ସୌଭାଗ୍ୟ ତା'ର !

''ଗୋଟାଏ କାହିଁକି ପାଞ୍ଚଟା କଥା ପଚାର ।'' ବିଗଳିତ ସ୍ୱରରେ ସେ କହିଲା ।

ରହି ରହି ଅନୁପମା କହିଲା, ''ପରେ... ମାନେ... ପରେ ମତେ ପଢ଼ିବାକୁ ଦେବେ ତ ?''

ଇଏ କି ପ୍ରଶ୍ନ ? ''ପରେ ମାନେ ବାହାଘର ପର କଥା କହୁଛ ?''

"ହଁ।" ମାଟି ଉପରେ ନଖ ଦେଇ ଗାର ଟାଣୁ ଟାଣୁ ଅନୁପମା ମୁଣ୍ଡ ଟୁଙ୍ଗାରିଲା।

ପୁଲକ ଗମ୍ଭୀର ହୋଇଗଲା। ଅନୁପମା ଯେ ଏବେ ଏତେ ପିଲାଙ୍କ ସାଙ୍ଗରେ ଏକାଠି ବସି କଲେଜରେ ପଢୁଛି, ସେଇ କଥାଟା ତ ତାକୁ ଖାଇଯାଉଛି। ପୁଣି ବାହାଘର ପରେ ପାଠ ପଢ଼ିବାର ଆଶା ଏ ଝିଅ ରଖୁଛି? ତଥାପି ଅନୁପମାକୁ ମୁହଁ ଉପରେ ଧଡ଼୍ କରି କିଛି କହି ପାରିଲା ନାହିଁ ସେ। କେବଳ କହିଲା, "ତୁମେ କ'ଣ ଭାବୁଛ, ଘରର ବୋହୂକୁ ମା' ବାବା କଲେଜ ଛାଡ଼ିବେ?"

ତା' ମାନେ 'ନା'। ସେମାନେ ତାକୁ ବାହାଘର ପରେ ଆଉ ପଢ଼ିବାକୁ ଦେବେନି। ଅନୁପମା ତା' ପ୍ରଶ୍ନର ଉତ୍ତର ପାଇଗଲା। ଆଉ ପଦଟିଏ କଥା ନ କହି ସେ ଚାଲିଗଲା ନିଜ କ୍ଲାସ୍‌କୁ। ପଛରୁ ଡାକି ପୁଲକ ବୋଧହୁଏ କ'ଣ ସବୁ କହୁଥିଲା, କିନ୍ତୁ କିଛି କଥା ସେ ଶୁଣି ପାରିଲା ନାହିଁ। ଶୁଣିବାକୁ ଚାହିଁଲା ନାହିଁ।

ଏହାରି ଭିତରେ ଦିନେ ଅନୁପମାର ନିର୍ବନ୍ଧ ପୁଲକ ସାଙ୍ଗରେ ହୋଇଗଲା। ଭାବୀ ଶାଶୂ ତା' ହାତରେ ମୁଦି ପିନ୍ଧେଇ ଦେଲେ। ଭାବୀ ଶ୍ୱଶୁର ଗଲାବେଳେ କହିଗଲେ ଦଶ ମାସ ପରେ କ'ଣ ଗୋଟାଏ ବହୁତ ଭଲ ତିଥି ଅଛି, ସେତିକି ବେଳେ ବାହାଘର ହେବ। ଆଉ ହଁ, ବାହାଘର ପରେ ବୋହୂମା'ଙ୍କର କଲେଜ ପାଠ ବନ୍ଦ କରିବାକୁ ହେବ। ଲୋକଲଜ୍ଜା ବୋଲି ତ କିଛି ଅଛି।

ଶ୍ରଦ୍ଧା ଓ ଅନିରୁଦ୍ଧ ଦୁଇଟାଯାକ ବିଷୟରେ ରାଜି ହୋଇଗଲେ। ପାଠ ବନ୍ଦ କରିବାକୁ ହେଲେ ହେବ। ଉପାୟ ନାହିଁ। ଆଉ ବାହାଘର ଯେତେବେଳେ ଦଶ ମାସ ପରେ ହେବ ବୋଲି କଥା ହେଇଛି, ତା' ମାନେ ତା'ରି ଭିତରେ ପୁଲକର ଚାକିରି ହୋଇଯିବ ନିଶ୍ଚୟ।

ମା' ଓ ବାବାଙ୍କ ଭଳି ଖୁସୀ ହୋଇ ପାରିଲା ନାହିଁ ଅନୁପମା। କିନ୍ତୁ ପ୍ରତିବାଦ ମଧ୍ୟ କରି ପାରିଲା ନାହିଁ। ସତ କଥା, ବାହାଘର ପରେ କେତେ ଜଣ ପୁଣି ସେମାନଙ୍କ ବୋହୂକୁ ପାଠ ପଢ଼ିବାକୁ ଛାଡ଼ନ୍ତି? ଝିଅଙ୍କ ସ୍କୁଲ୍‌କୁ ତ ଛାଡ଼ନ୍ତି ନାହିଁ ଅଧିକାଂଶ, ଆଉ ପୁଅ ଝିଅ ମିଶି କରି ପଢୁଥିବା କଲେଜ କଥା କାହିଁକି ପଡ଼ିଛି?

ଏହାରି ଭିତରେ ଚାଲିଗଲା କେତେଟା ଦିନ।

ସେଦିନ ଅଫିସରୁ ଫେରିବା ବେଳେ ଅନିରୁଦ୍ଧ ମୁହଁଟା କେମିତି ପାଉଁଶିଆ ହୋଇ ଯାଇଥିଲା। ବଡ଼ ଭାଇ ହାତକୁ ପାଣି ଗ୍ଲାସେ ବଢ଼େଇ ଦେଇ ଅନୁପମା ପଚାରିଲା, ''କ'ଣ ହେଲା ଦାଦା ? ତୁମ ଦେହ ଭଲ ଲାଗୁନି କି ?''

''ନା, ଠିକ୍ ଅଛି। ମା' କାହାନ୍ତି ?''

ଶ୍ରଦ୍ଧା ଘର ଭିତରୁ ବାହାରି ଆସିଲେ। ପୁଅ ମୁହଁ ଉପରେ ଗୋଟିଏ ନଜର ଦେଇ ସେ ବୁଝିଗଲେ ଯେ ନିଶ୍ଚୟ କିଛି ଘଟଣା ଅଛି। ସେ ଚୁପ୍‌ଚାପ୍ ଖଟ ଉପରେ ବସି ପଡ଼ି ଅପେକ୍ଷା କଲେ।

କିଛି ସମୟ ପରେ ଅନିରୁଦ୍ଧ କହିଲା, ''ମା', ବାହାରେ ସବୁ କ'ଣ ଚାଲିଛି ଜାଣୁଛ ନା ନାହିଁ? ଲୋକେ ଯାହା ସବୁ କଥାବାର୍ତ୍ତା କରୁଛନ୍ତି ସେସବୁ ତୁମ କାନରେ ପଡ଼ିଲାଣି ?''

ଓ, ଏଇଥି ପାଇଁ ତେବେ ପୁଅର ଏତେ ଦୁଶ୍ଚିନ୍ତା। ଶ୍ରଦ୍ଧାଙ୍କ ମନ ହାଲୁକା ହୋଇଗଲା। ସେ କହିଲେ, ''ସ୍ୱଦେଶୀବାଲାଙ୍କ କଥା କହୁଛୁ ତ ? ଆଜିକାଲି ସେମାନଙ୍କ କାଣ୍ଡ କାରଖାନା ଦେଖିବାକୁ ବାହାରକୁ ଆଉ ଯିବାକୁ ପଡ଼େନି। ଘରେ ରହି ମଧ ସେମାନଙ୍କ ବିଷୟରେ ସବୁ ଖବର ମିଳିଯାଏ। ମା' ବାପାଙ୍କର ସନ୍ତାନସବୁ। କେମିତି ନିଜ ନିଜର ଜୀବନକୁ ପାଣି ଛଡ଼ାଇ ଦେଉଛନ୍ତି କେଜାଣି।''

''ନା ମା', ମୁଁ ସେମାନଙ୍କ କଥା କହୁନାହିଁ।'' ସ୍ୱର କମେଇ ନେଲା ଅନିରୁଦ୍ଧ। ''କ'ଣ ସବୁ କହୁଛନ୍ତି ଯେ ପୂର୍ବ ବଙ୍ଗଳାରୁ ହିନ୍ଦୁମାନଙ୍କୁ ତଡ଼ି ଦିଆ ହେବ।''

''କ'ଣ !!!'' ଶ୍ରଦ୍ଧା ହାଁ କରି ବଡ଼ ପୁଅ ମୁହଁକୁ ଚାହିଁ ରହିଲେ କିଛି ସମୟ। ପୁଣି କହିଲେ, ''ହିନ୍ଦୁମାନଙ୍କୁ ତଡ଼ି ଦେବେ? କ'ଣ ଖେଳଘର ନା କ'ଣ ? ଏଇଟା ଆମ ଦେଶ। ଆମ ଜାଗା। କ'ଣ ନା ତଡ଼ିଦେବେ। କ-ଅ-ଥା !!... କିଏ କରୁଛି ଏମିତି ଅପପ୍ରଚାର ? ଏଁ ? ସେ ଗୋରା ଲୋକେ ତ ? ସେଗୁଡ଼ାଙ୍କର ଆଉ କାମ ଧନ୍ଦା ନାହିଁ ଯେମିତି। ଆଗ ବଙ୍ଗଳା ଦେଶଟାକୁ ବି' ଭାଗ କରିଦେଲେ ହଜାରେ କାରଣ ଦେଖାଇ। ଏବେ କ'ଣ ନା ହିନ୍ଦୁଙ୍କୁ ତଡ଼ି ଦେବେ ପୂର୍ବ ବଙ୍ଗରୁ।''

''ଜିନ୍ନା କୁଆଡ଼େ ଭାରି ମତାଉଛନ୍ତି ମୁସଲମାନମାନଙ୍କୁ। ସେମାନଙ୍କୁ କହୁଛନ୍ତି

ଯେ ଭାରତରେ ହିନ୍ଦୁମାନେ ସଂଖ୍ୟାଗୁରୁ ସଂପ୍ରଦାୟ। ଭାରତରେ ସେମାନେ ସବୁ ବଡ଼ ବଡ଼ ସ୍ଥାନ ମାଡ଼ି ବସିବେ। ମୁସଲମାନମାନଙ୍କୁ ନିୟନ୍ତ୍ରଣରେ ରଖିବେ ବୋଲି ସମାଜରେ ଉପରକୁ ଉଠିବାକୁ ଦେବେ ନାହିଁ।''

''ଆଉ ତାଙ୍କ କଥା ବିଶ୍ୱାସ କରି ଯାଉଛନ୍ତି ମୁସଲମାନମାନେ ?''

''କେଜାଣି ମା', ବିଶ୍ୱାସ କରୁଛନ୍ତି କି ନାହିଁ କିଏ ଜାଣେ ? ହେଲେ ମୁସ୍‌ଲିମ୍ ଲିଗ୍ ତ ମୁସଲମାନଙ୍କ ପାଇଁ ଅଲଗା ଦେଶଟିଏ ସୃଷ୍ଟି କରିବା କଥା କହୁଛି। ତା' ନାଁ କୁଆଡ଼େ ହେବ ପାକିସ୍ତାନ। ଜିନ୍ନାଙ୍କ କଥା ମୁସଲମାନ ଲୋକେ ନିଶ୍ଚୟ କିଛି କିଛି ବିଶ୍ୱାସ କରୁଛନ୍ତି। ନହେଲେ ବଡ଼ ବଡ଼ ହିନ୍ଦୁ ଜମିଦାର ଘରେ ଲୁଟତରାଜ ଆରମ୍ଭ ହେଲାଣି କାହିଁକି ? ଆଗରୁ କେବେ ଶୁଣିଥିଲ ଏମିତିଆ କଥା ? ଗୁଡ଼ାଏ ଜାଗାରେ ହିଂସା, ଅଶାନ୍ତି ଚାଲିବାର ଘଟଣା ମଧ୍ୟ କାନରେ ପଡ଼ିଲାଣି।''

''ହିଂସା ? ଅଶାନ୍ତି ? ଆମର ଏଇ ମୁସଲମାନ ଭାଇମାନେ ହିଂସା, ଅଶାନ୍ତି କରିବେ ?'' ଶାଣିତ ସ୍ୱରରେ ଶ୍ରଦ୍ଧା କହିଲେ, ''ଆବିଦ୍ ଭାଇ ତ ମୁସଲମାନ। ତୁ କହୁଚୁ ସେ ଆସି ଆମକୁ ଏଠୁ ଧକ୍କା ଦେଇ ବାହାର କରିଦେବେ ? ତୋର ବିଶ୍ୱାସ ହେଉଛି ଏକଥା ?''

''ମା', ମୁଁ ଜାଣି ପାରୁନି କ'ଣ ବିଶ୍ୱାସ କରିବି ଆଉ ପୁଣି କ'ଣ ଅବିଶ୍ୱାସ କରିବି। ସବୁଦିନେ ଅଫିସ୍ ଗଲାବେଳେ ବାଟରେ ନୂଆ ନୂଆ କଥା ଦେଖିବାକୁ ମିଳୁଛି। ଅଫିସ୍‌ରେ ପହଞ୍ଚିଲେ ନୂଆ ନୂଆ କଥା ଶୁଣିବାକୁ ମିଳୁଛି। ... କେମିତି ଅବିଶ୍ୱାସ କରିବି ?''

''ମୁଁ ଜୋରଦେଇ ଆଉ ଥରେ କହିପାରେ ଯେ ଏଇଟା ଅପପ୍ରଚାର। ସେ ଜିନ୍ନା ହୁଏତ ଲାଗିପଡ଼ି ଅପପ୍ରଚାର ଚଳେଇଛି ସ୍ୱାଧୀନତା ପରେ ରାଜା ହୋଇ ବସିବା ପାଇଁ...''

''ମା', ତୁମେ ଯାହାକୁ ଅପପ୍ରଚାର କହୁଛ, ସେଥିରେ ଯେ ସତ୍ୟର ଛିଟା ନାହିଁ, ତା' ଜାଣିବା କେମିତି କହିଲ ? ଚାରିଆଡ଼େ ତ କେବଳ ସେଇ ଏକା ଆଲୋଚନା। ବିନା କାରଣରେ କ'ଣ ଏମିତି ଧୂଆଁ ଉଠିପାରେ ?''

ଏତେ ସମୟ ଚୁପ୍ ହୋଇ ମା' ଓ ବଡ଼ଭାଇଙ୍କ ଆଲୋଚନା ଶୁଣୁଥିଲା ଅନୁପମା। ଆଉ ରହି ନ ପାରି କହି ପକେଇଲା, ''ଆମ କଲେଜର ବଙ୍ଗଳା

ଅଧାପକ ବି ସେଇ ଏକା କଥା କହୁଛନ୍ତି, ଦାଦା। ଜିନ୍ନା କୁଆଡ଼େ ଗାନ୍ଧୀଙ୍କ ବିରୁଦ୍ଧରେ ଲୋକଙ୍କୁ ମତାଉଛନ୍ତି। ହିନ୍ଦୁ ମୁସଲମାନ ମୈତ୍ରୀ ଭାଙ୍ଗି ଦେବା ପାଇଁ ଚେଷ୍ଟା କରୁଛନ୍ତି। ଆମ ଦେଶର ଅନ୍ୟ ବଡ଼ ବଡ଼ ନେତାମାନେ ଭାରତକୁ ସ୍ୱାଧୀନ କରିଦେବା ପାଇଁ ଇଂରେଜ୍ ସରକାରକୁ ବାଧ କଲାରୁ କୁଆଡ଼େ ମହମ୍ମଦ ଆଲି ଜିନ୍ନାଙ୍କୁ ହାତ କରି ଏଇମିତି ଚାଲ୍ ଚଲାଉଛି ଗୋରା ସରକାର।''

ଅନ୍ୟଥର ଭଳି ସାନ ଭଉଣୀ ମୁହଁରୁ ଇଂରେଜ୍ ବିରୋଧୀ କଥା ଶୁଣି ଅନିରୁଦ୍ଧ ତାତି ଗଲାନି। ଦବିବା ସ୍ୱରରେ କହିଲା, ''ଆମ ନେତାମାନେ ଜାଣି ପାରୁନାହାନ୍ତି। ହେଲେ ଗୋରା ସରକାରକୁ ତଡ଼ିବା କ'ଣ ଏତେ ସହଜ? ସେ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଏନି। ପୃଥିବୀର ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଲମ୍ବିଛି ସେମାନଙ୍କ ସାମ୍ରାଜ୍ୟ। କମି କଥା? ଗାନ୍ଧୀଙ୍କ ଭଳି ଲୋକେ କ'ଣ ଅହିଂସା ମାର୍ଗରେ ସେମାନଙ୍କୁ ତଡ଼ି ପାରିବେ?''

''କାହିଁକି ପାରିବେ ନାହିଁ, ଦାଦା? ଆମ ଦେଶରେ କେତେ ଲୋକ ହେଲେଣି କହିଲ। ସମସ୍ତେ ଯଦି ଏକାଠି ହୋଇ ସ୍ୱର ଉଠେଇବେ, ତା'ହେଲେ ଆଉ ରହିପାରିବେ ସେ ଗୋରାମାନେ?''

''କିଏ ଜାଣେ?'' ଦୀର୍ଘ ନିଶ୍ୱାସ ନେଲା ଅନିରୁଦ୍ଧ। କହିଲା, ''ମୋର ବଡ଼ ଭୟ ହୁଏ ରେ। ଯଦି ଜିନ୍ନା ସତରେ ମୁସଲମାନମାନଙ୍କୁ ହିନ୍ଦୁଙ୍କ ବିରୁଦ୍ଧରେ ଠିଆ କରେଇ ଦିଅନ୍ତି... ଯଦି ଗୋରା ଲୋକମାନେ ଆମ ଦେଶ ଛାଡ଼ି ଚାଲିଗଲା ବେଳେ ବିରାଟ କିଛି ବିଭ୍ରାଟ କରେଇ ଦେଇ ଯାଆନ୍ତି ... ତା'ହେଲେ କ'ଣ ହେବ ଆମମାନଙ୍କର? ଆମ ପାଦ ତଳର ମାଟି ଟିକକ ତ ଧସିଯିବ।''

ଅନିରୁଦ୍ଧର ଏଭଳି କଥା ଦୋହଲାଇ ଦେଲା ଅନୁପମା ଓ ଶ୍ରଦ୍ଧାଙ୍କୁ। ବେଶ୍ କିଛି ସମୟ ଚୁପ୍ ହୋଇ ବସି ରହିଲେ ତିନି ଜଣ। ହଠାତ୍ ହାଉଳି ଖାଇବା ଭଳି ଶ୍ରଦ୍ଧା କହି ଉଠିଲେ, ''ଅର୍ଚ୍ଚନାର କ'ଣ ହେବ? ତା'ର ସେଠି ଯଦି ଗଣ୍ଡଗୋଳ ଆରମ୍ଭ ହୋଇଯାଏ, ତା'ହେଲେ ଏକା ଏକା ସେ କରିବ କ'ଣ? ସେ ତ ପୁଣି ଆଜିକାଲି ସୂତା କଟା, ଖଦଡ଼ ପିନ୍ଧା ଆରମ୍ଭ କରିଛି। ସେଇଥିରୁ ଯଦି କିଛି ଗୋଟାଏ ଅଘଟଣ ହୋଇଯାଏ? ... ନା ରେ ବାବୁ, ମତେ ଜମା ଭଲ ଲାଗୁନି। ତୁ ବରଂ ଦିନଟାଏ ଛୁଟି ନେଇ ଯା। ଝିଅକୁ ମୋ ପାଖକୁ ନେଇ ଆ। ଆମର ଦରକାର ନାହିଁ ସେ ଚାକିରି ବାକିରି।''

କିଛି ସମୟ ଚୁପ୍ ହୋଇ ବସି ଭାବିଦେଲା ଅନିରୁଦ୍ଧ। ତା'ପରେ ଧୀରେ ଧୀରେ କହିଲା, "ହଉ ମା'। ନେଇ ଆସିବି। ତୁମେ ଆଉ ଚିନ୍ତା କରନି।"

ଅନିରୁଦ୍ଧର ଯିବା ଦରକାର ହେଲା ନାହିଁ। ଦୁଇ ଦିନ ପରେ ହଠାତ୍ ଅର୍ଚ୍ଚନାର ଚିଠି ଆସି ପହଞ୍ଚିଲା। ସେ ଲେଖିଥିଲା,

"ମା',

ଏଠିକା ଅବସ୍ଥା ବଡ଼ ଖରାପ। ଗୌରୀ ଦିଦିଭଉଣୀ ସ୍ଥିର କରିଛନ୍ତି ଯେ ସେମାନେ କଲିକତା ଚାଲିଯିବେ। ସେମାନେ ଏଠିକା ଜମିଜମା, ସ୍କୁଲ ସବୁ ବିକ୍ରି କରି ଦେଉଛନ୍ତି। ମୁଁ ବି ଭାବିଛି ସେମାନଙ୍କ ସାଙ୍ଗରେ କଲିକତା ଯାଇ ଦେଖିବି। ଯଦି କିଛି ସୁବିଧା ହୁଏ। ଗୌରୀ ଦିଦିଙ୍କ ଜଣେଇ ଶ୍ୱଶୁର ମତେ ଆଶ୍ୱାସନା ଦେଇଛନ୍ତି ଯେ କଲିକତାରେ ନୂଆ ନୂଆ ବହୁତ ଝିଅଙ୍କ ସ୍କୁଲ୍ ଖୋଲୁଛି। ସେସବୁ ସ୍କୁଲ୍‌ରେ ସିଲେଇ ଶିକ୍ଷୟିତ୍ରୀ ଚାକିରି ମିଳିବାକୁ କଷ୍ଟ ହେବ ନାହିଁ। ଯଦିବା କଲିକତାରେ ନ ମିଳେ ଆଉ କୋଉଠି ତ ମିଳିବ।

ଆମେ କଲିକତା ଗଲେ ଗୌରୀ ଦିଦିର ପିଉସୀ ଶାଶୂଙ୍କ ଘରେ ରହିବୁ କିଛି ଦିନ ପାଇଁ। ଠିକଣା ଦେଉଛି। ମତେ ସେଇ ଠିକଣାରେ ଚିଠି ଦେଲେ ଚିଠି ଠିକ୍ ମିଳିଯିବ। ବୁନୁ ମାମୁଙ୍କ ଠିକଣା ମୋ ପାଖରେ ନାହିଁ। ତୁମେ ତାଙ୍କ ଠିକଣା ମତେ ଲେଖି ପଠେଇବ। ତା'ହେଲେ ମୁଁ ସେମାନଙ୍କ ସାଙ୍ଗରେ ଓ ଛୋଟ ଦା' ସାଙ୍ଗରେ ଯୋଗାଯୋଗ କରିବି।

ଦାଦା ଏବେ କ'ଣ ଚିନ୍ତା କରୁଛନ୍ତି?

ଚିଠି ଦେବ।

ଇତି ତୁମର

ଅର୍ଚ୍ଚନା

ଅର୍ଚ୍ଚନାର ଚିଠିକୁ ନିଠେଇ ନିଠେଇ ବେଶ୍ କିଛି ଅ[illegible]ଲା ଅନିରୁଦ୍ଧ।

ଚାଲି ଯାଉଛି ଅର୍ଚ୍ଚନା? ପୂର୍ବ ବଙ୍ଗକୁ ଛାଡ଼ି ଚାଲି ଯାଉଛି? କାହିଁକି? ଚାହିଁଥିଲେ ତ ସେ ପାବ୍‌ନା ଫେରି ଆସି ପାରି ଥାଆନ୍ତା। ମା' ଓ ଦାଦାଙ୍କ ପାଖକୁ ଚାଲି ଆସି ପାରି ଥାଆନ୍ତା। ତା' ନ କରି ଅନିଶ୍ଚିତ ଚାକିରିର ଆଶା ନେଇ ଚାଲି ଯାଉଛି କାହିଁକି? ଦୁର୍ବାର ଅଭିମାନରେ କି?

ଅନିରୁଦ୍ଧର ମନ ଖରାପ ହୋଇଗଲା । ଗୋଟାଏ ଦୋଷୀ ଦୋଷୀ ଭାବ ତା' ଅଜାଣତରେ ତାକୁ ଘେରି ପକେଇଲା ।

ତା'ରି ଯୋଗୁଁ ତ ଅର୍ଚ୍ଚନା ଦେଶଛଡ଼ା ହେଉଛି । କେବଳ ତା'ରି ପାଇଁ ।

ଦୁଇ ହାତରେ ଅନିରୁଦ୍ଧ ମୁଣ୍ଡ ଚିପି ଧରିଲା । ଶିରାଗୁଡ଼ାକ ଟଣଟଣ କରୁଛି । ମନଟା ଦବି ଦବି ଯାଉଛି ।

ସେ କ'ଣ କରି ପାରିଥାଆନ୍ତା ? ସତରେ କ'ଣ ଭଉଣୀକୁ ଖୁସୀ କରିବା ପାଇଁ ଏତେ ବଡ଼ ଗୋଟାଏ ସୃଷ୍ଟିଛଡ଼ା ପଦକ୍ଷେପ ନେଇ ପାରିଥାଆନ୍ତା ? ମୁଖୋପାଧ୍ୟାୟ ପରିବାରର ସମସ୍ତ ଗୌରବକୁ ଜଳାଞ୍ଜଳି ଦେଇ ପାରି ଥାଆନ୍ତା ?

'ମତେ କ୍ଷମା କରି ଦେ ରେ ଅର୍ଚ୍ଚନା । ମୋର ଯେ ହାତ ପାଦ ବନ୍ଧା ।' ମନକୁ ମନ ଗୁଣୁ ଗୁଣୁ ହୋଇ ଅନିରୁଦ୍ଧ କହିଲା ।

ତା'ର ସେ କ୍ଷମା ପ୍ରାର୍ଥନା ଆକାଶ ବତାସ ଦେଇ ଅର୍ଚ୍ଚନା ପାଖରେ ପହଞ୍ଚିଲା କି ନାହିଁ କିଏ ଜାଣେ ?

ପାବ୍‌ନା ସାଙ୍ଗରେ ତ ସମ୍ପର୍କ ପ୍ରାୟ କଟି ଯାଇଥିଲା, ଏବେ ଫରିଦ୍‌ପୁର ବି ଗଲା । ଦୀର୍ଘଶ୍ୱାସ ନେଇ ନିଜର ସାମାନ୍ୟ ଜିନିଷତକ ଟ୍ରଙ୍କରେ ପୂରେଇ ନେଲା ଅର୍ଚ୍ଚନା । କି ଭାଗ୍ୟ ନେଇ ସେ ଜନ୍ମ ହୋଇଛି କେଜାଣି । କେଉଁଠି ବି ସ୍ଥାୟୀ ଭାବରେ ରହିବାର ଯୋଗ ହେଉନି ତା'ର । ଗୋଟାଏ ଦିନ ଥିଲା, ସେ ପାବ୍‌ନା ଛାଡ଼ି ଆଉ କେଉଁଠିକି ଯିବା କଥା ଭାବି ପାରୁ ନ ଥିଲା । କିନ୍ତୁ ତାକୁ ଚାକିରି ନେଇ ପାବ୍‌ନା ଛାଡ଼ି ଆସି ଫରିଦ୍‌ପୁରରେ ରହିବାକୁ ହେଲା ।

ଯେଉଁଭଳି ପରିସ୍ଥିତିରେ ତାକୁ ପାବ୍‌ନାରୁ ନିର୍ବାସନ ନେବାକୁ ହୋଇଥିଲା, ସେଇମିତିଆ ପରିସ୍ଥିତିରେ ସାଧାରଣ ଝିଅଟିଏ ନିଜର ମାନସିକ ସ୍ଥିରତା ବଜାୟ ରଖି ପାରି ନ ଥାଆନ୍ତା । କିନ୍ତୁ ଅର୍ଚ୍ଚନା ଭଳି ଅସାଧାରଣ ଝିଅଙ୍କର କମ୍ ଉଦାହରଣ ନାହିଁ ଆମ ଦେଶରେ । ତା' ଭଳି ଶାନ୍ତ ବାଧ୍ୟ ଝିଅମାନେ ସବୁ ମାନି ନିଅନ୍ତି । ସମାଜର ବିଚାର ଅବିଚାରକୁ ଗ୍ରହଣ କରି ନିଅନ୍ତି ମୁଣ୍ଡ ପୋତି । ବିରୁଦ୍ଧାଚରଣ କରିବା କଥା ଚିନ୍ତା କରି ପାରନ୍ତି ନାହିଁ । ବିଦ୍ରୋହ କରିବା କଥା

ସ୍ୱପ୍ନରେ ବି ଭାବି ପାରନ୍ତି ନାହିଁ।

ଫରିଦ୍‌ପୁରରେ ଗୌରୀର ଶାଶୂ ଘରେ ଘରର ଝିଅଟିଏ ଭଳି ରହି ଯାଇଥିଲା ଅର୍ଚ୍ଚନା। ଏତେ ବିରାଟ ଘର। କେତେ କିଏ ଆସି ଖାଇ ଚାଲି ଯାଉଛନ୍ତି। କେତେ କିଏ ମାରି ନେଉଛନ୍ତି। ସେଥିରେ ତ କିଛି ସରିଯାଉନି ସେମାନଙ୍କର! ଆଉ ଏ ଅଠର ଉଣେଇଶ ବର୍ଷର ଝିଅଟା ଯେ ସେମାନଙ୍କ ଘରେ ରହିଲା, ତାହା ନେଇ ପୁଣି କିଏ ଅଶାନ୍ତି କରିଥାଆନ୍ତା? ତା' ପୁଣି ଅର୍ଚ୍ଚନା ଭଳି ଝିଅ। ଘରେ ରହିବା ସମୟତକ ଛାଇ ଭଳି ଘୂରୁଥିବ ଗୌରୀ ପଛେ ପଛେ। ଏଇଟା କାଟି ଦେଉଥିବ, ସେଇଟା ବାଟି ଦେଉଥିବ। ଚୁପ୍ ହୋଇ ବସି ରହିବାର କେହି ତାକୁ କେବେ ଦେଖିନି। ସେଥିରେ ପୁଣି ସମୟ କରି ନେଇ ବଂଶଟା ଯାକର ସମସ୍ତଙ୍କର ଲୁଗା ପଟା ସିଲେଇ କରେ ସେ। ମନା କଲେ ବି ଶୁଣେନି।

ଅର୍ଚ୍ଚନା ଯେତେବେଳେ ଖଦି ପିନ୍ଧା ଆରମ୍ଭ କଲା, ସେତେବେଳେ ଗୌରୀ ମନ ଖରାପ କରିଥିଲା। ତା' ମନ ସ୍ୱଦେଶୀଙ୍କ ପ୍ରତି ଢଳିଛି ବୋଲି ନୁହଁ, ବରଂ ତା'ଠୁଁ ସାତ ସାନ ଝିଅଟି ଯେ ଏଇମିତି ସନ୍ୟାସିନୀ ରୂପ ଧାରଣ କରି ନେଇଛି, ସେଥିପାଇଁ ସେ ବିବ୍ରତ ହୋଇ ପଡ଼ିଥିଲା। କିନ୍ତୁ ତା' କକେଇ ଶ୍ୱଶୁର ଦୀପେନ୍ ତାକୁ ବୁଝେଇଥିଲେ। ଅର୍ଚ୍ଚନାର ରାସ୍ତାରେ ବାଧା ନ ଦେବାକୁ ପୁତୁରା ବୋହୂକୁ ଉପଦେଶ ଦେଇଥିଲେ।

ଯା'ହେଉ, ତା'ପରେ ଆଉ କେହି କେବେ ଅର୍ଚ୍ଚନାକୁ ତା' ଲୁଗାପଟା ବା ସରଳ ଜୀବନ ଯାତ୍ରା ନେଇ କିଛି କହି ନାହିଁ।

ମାସ ପରେ ମାସ କଟି ଯାଇଥିଲା।

ଦିନେ ଶୁଣାଗଲା ଯେ ଇଂରେଜ ସରକାର ଦେଶ ଛାଡ଼ି ଚାଲିଯିବା ପାଇଁ ରାଜି ହୋଇଛି। କିନ୍ତୁ ଯିବା ଆଗରୁ ଦେଶ ବିଭାଜନ କରିଦେଇ ଯିବାର ବଡ଼ ସମ୍ଭାବନାଟିଏ ରହିଛି। ଥରେ ଏ ଖବର ପାଇବା ପରେ ଗୌରୀର ସ୍ୱାମୀ ପ୍ରସନ୍ନ ଚୁପ୍ ହୋଇ ରହିପାରିଲା ନାହିଁ। ତା' କକେଇଙ୍କ ସାଙ୍ଗରେ ଏକାନ୍ତରେ ବେଶ୍ କିଛି ସମୟ କଥାବାର୍ତ୍ତା କରିବା ପରେ ସେ ସ୍ଥିର କରି ନେଲା ଯେ ସମୟ ଥାଉ ଥାଉ ନିଜ ପରିବାରକୁ ନେଇ ଚାଲିଯିବ କଲିକତା।

ଫରିଦ୍‌ପୁରରେ ସେମାନେ ରହି ଯାଇଛନ୍ତି କାହିଁ କେତେ ପୁରୁଷ ଧରି।

ପ୍ରସନ୍ନର ଜେଜେ ବାପା ଆୟୁର୍ବେଦ ଔଷଧର ଦୋକାନଟିଏ ଆରମ୍ଭ କରିଥିଲେ ଏଇଠି। ତାଙ୍କ ପରେ ତାଙ୍କ ବଡ଼ ପୁଅ ଦୋକାନଟି ଚଳେଇଥିଲେ। ଆଉ ତାଙ୍କର ଅକାଳ ମୃତ୍ୟୁ ହୋଇ ଯିବା ପରେ ପ୍ରସନ୍ନକୁ ପାଠ ଅଧାରୁ ଛାଡ଼ି ଦେଇ ଦୋକାନରେ ବସିବାକୁ ହୋଇଥିଲା। ଗାଁର ଜମିରୁ ଆମଦାନୀ ହେଇ ଆସୁଥିଲା ଆବଶ୍ୟକରୁ ଅଧିକ ଫସଲ। ଦୋକାନରୁ ନାହିଁ ନ ଥିବା ଲାଭ ହେଉଥିଲା। ପୁଣି ବିପତ୍ନୀକ କକେଇଙ୍କର ସ୍କୁଲ୍‌ରୁ ଆୟ କିଛି କମ୍ ନ ଥିଲା। ସବୁ ନେଇ ରାଜା ଜମିଦାରଙ୍କ ଚଳଣୀ ଚଳୁଥିଲେ ସେମାନେ।

ଏବେ ସେସବୁ ତ୍ୟାଗ କରିବାର ସମୟ ଆସିଗଲା। ସ୍କୁଲ ବିକ୍ରି ହୋଇଗଲା, ଦୋକାନ ବିକ୍ରି ହୋଇଗଲା, ଗାଁର ଜମି ମଧ୍ୟ ବିକ୍ରି ହୋଇଗଲା। ସବୁ କିଛି ପାଣି ଦରରେ। ହାତରେ ସମସ୍ତ ଅର୍ଥ ଏକାଠି କରି ଫରିଦ୍‌ପୁର ଛାଡ଼ିବା ବେଳ ଆସିଗଲା।

ସେମାନଙ୍କର କଲିକତା ଚାଲିଯିବାର ହେଉଥିବା ବେଳେ ଦିନେ ଗୌରୀର ବର ପ୍ରସନ୍ନ ଅର୍ଚ୍ଚନାକୁ ଡାକି କହିଥିଲା, ''ଆମେ ସବୁ କଲିକତା ଚାଲିଯାଉଛୁ, ଅର୍ଚ୍ଚନା। ସ୍କୁଲ ତ ବିକ୍ରି ହୋଇଗଲା। ସ୍କୁଲ୍‌ର ନୂଆ ମାଲିକ ଆମ ଘରଟାକୁ ବି କିଣି ନେଇଛନ୍ତି। ତୁ ଏବେ କ'ଣ କରିବୁ? ପାବ୍‌ନା ଚାଲିଯିବୁ?''

ପାବ୍‌ନା! ପୁଣି ସେଇ ପାବ୍‌ନା। ସେଇ ଗଳି, ସେଇ ଘର, ସେଇ ବାରଣ୍ଡା। ଆଉ ପୁଣି ଗୋଟାଏ କାନ୍ଥର ଅନ୍ୟ ପଟେ ସଲ୍‌ମା ଚାଚୀ, ଆବିଦ୍ ଚାଚାଙ୍କ ଘର। ସେଇଠିକି ତାକୁ ଫେରି ଯିବାକୁ ହେବ?

ଅର୍ଚ୍ଚନା ତଳକୁ ମୁହଁ ପୋତି କହିଥିଲା, ''ମୁଁ ତୁମମାନଙ୍କ ସାଙ୍ଗରେ କଲିକତା ଯାଇ ପାରିବିନି, ପ୍ରସନ୍ନ ଦା'?''

''ଯିବୁ ଅର୍ଚ୍ଚନା? ସତରେ ଆମ ସାଙ୍ଗରେ ଯିବୁ?'' ପ୍ରସନ୍ନ କିଛି ଉତ୍ତର ଦେବା ଆଗରୁ ଗୌରୀ ଉଚ୍ଛଳ ଭାବରେ କହି ଉଠିଥିଲା।

''କାହିଁକି ଯିବିନି? ହେଲେ ଚାକିରି...''

''ଚାକିରି କଥା ତଡେ ଚିନ୍ତା କରିବାକୁ ହେବନି। ମୁଁ ଏବେ ଯାଇ ଦୀପେନ୍ କାକୁଙ୍କ ସାଙ୍ଗରେ କଥା କହୁଛି। ତାଙ୍କୁ ବି ତ ସେଠିକି ଯାଇ ନିଜର ଗୋଟାଏ ବ୍ୟବସ୍ଥା କରିବାକୁ ହେବ। ତା' ସାଙ୍ଗରେ ତୋର ବି ବ୍ୟବସ୍ଥା ନିଶ୍ଚୟ ହୋଇଯିବ।'' ଗୌରୀ କକେଇ ଶ୍ୱଶୁରଙ୍କ ସାଙ୍ଗରେ କଥା କହିବାକୁ ଚାଲି ଯାଇଥିଲା।

ସେ ଦୃଢ଼ ଭରସା ଦେଇଥିଲେ। ଚାକିରି ହୋଇଯିବ। ନିଶ୍ଚୟ ହୋଇଯିବ। ନାରୀ ଶିକ୍ଷା ଜାଗରଣ ଆରମ୍ଭ ହୋଇଛି। ଚାକିରି ପୁଣି ମିଳିବନି କଲିକତା ଭଳି ସହରରେ ?

ସେଇ ଭରସାରେ ମା'ଙ୍କ ପାଖକୁ ଚିଠି ଦେଇ ଅର୍ଚ୍ଚନା ଗୌରୀର ଶ୍ୱଶୁର ଘର ପରିବାର ସାଙ୍ଗରେ କଲିକତା ବାହାରିଥିଲା। ନିଜ ଟ୍ରଙ୍କ୍ ସଜାଡ଼ି ନେଇଥିଲା।

କିନ୍ତୁ ଟ୍ରେନ୍‌ରେ ଚଢ଼ିବା କ୍ଷଣି ଅଦ୍ଭୁତ ଏକ ଶୂନ୍ୟ ଭାବ ମାଡ଼ି ବସିଗଲା ତାକୁ। ଯେମିତି ସବୁ ଚାଲିଗଲା। ସବୁ ସରିଗଲା। ସେଇଭଳି।

ଅର୍ଚ୍ଚନା ନିଜକୁ ନିଜେ ପ୍ରଶ୍ନ କରିଥିଲା। ଏଭଳି ଭାବ ମନ ଭିତରକୁ ଆସିବାର କାରଣ ଖୋଜି ହୋଇଥିଲା। କିନ୍ତୁ ତାକୁ କୌଣସି ସନ୍ତୋଷଜନକ ଉତ୍ତର ମିଳି ନ ଥିଲା।

ତାକୁ ତ କେହି ବାଧ୍ୟ କରି ଏ ନିର୍ବାସନ ଦଣ୍ଡ ଦେଉ ନାହିଁ। ସେ ସ୍ୱେଚ୍ଛାରେ ଦେଶତ୍ୟାଗୀ ହେବାର ନିଷ୍ପତ୍ତି ନେଇଛି। ଏହା ବ୍ୟତୀତ ଆଉ କୌଣସି ରାସ୍ତା ନାହିଁ ବୋଲି ଏପରି ନିଷ୍ଠୁର ନିଷ୍ପତ୍ତି ସେ ଗ୍ରହଣ କରି ନେଇଛି। ତଥାପି କାହିଁକି ଏଭଳି ଶୂନ୍ୟ ଭାବ ? କାହିଁକି ଏ ବିବଶତା ? ଅନିର ବାହାଘର ଦେଖି ପାରିବ ନାହିଁ ବୋଲି କି ? ନା ସେ ତା' ମା', ଦାଦା ଓ ସାନ ଭଉଣୀଠୁଁ ଦୂରେଇ ଯାଉଛି ବୋଲି ?

ନା, ସମସ୍ତଙ୍କଠାରୁ ଜମା ନୁହଁ। ନିଜକୁ ନିଜେ କହିଥିଲା ଅର୍ଚ୍ଚନା। ପୂର୍ବ ବଙ୍ଗର ମାଟି ପାଣି ପବନଠାରୁ ସିନା ସେ ଦୂରେଇ ଯାଉଛି, କିନ୍ତୁ ନିଜ ପରିବାରଠୁଁ ଆଦୌ ନୁହଁ। ଅନିର ବାହାଘର ପରେ ଦାଦା ନିଶ୍ଚୟ ଚାଲି ଆସିବ ପଶ୍ଚିମ ବଙ୍ଗକୁ। କାହାର ଦୟା, ହାତ ଟେକା ନେଇ ସେ କେବେହେଲେ ପଡ଼ି ରହିବନି।

କିନ୍ତୁ କେବେ ଆସିବ ସେ ?

ପ୍ରସନ୍ନ ଦା' ବହୁତ ଭୟ ଦେଖାଇ ଦେଇଛନ୍ତି। ସେ କହିଛନ୍ତି ଯେ ଶୀଘ୍ର ପୂର୍ବବଙ୍ଗରୁ ଚାଲି ନ ଗଲେ ମରା କଟା ହଣା ଆରମ୍ଭ ହୋଇଯିବ। ଭାଇ ଭାଇ ଭିତରେ କନ୍ଦଳ ଲାଗିଯିବ। ସେତେବେଳେ ଆଉ ଚାଲିଯିବାର ରାସ୍ତାଟି ନ ଥିବ। ବନ୍ଦ ହୋଇ ଯାଇ ସାରିଥିବ।

ଆତଙ୍କରେ ଥରି ଉଠିଥିଲା ଅର୍ଚ୍ଚନା। ସତରେ ଏମିତି ସବୁ ହେବ ? ତା'

ଆଗରୁ ତା' ଦାଦା ସମସ୍ତଙ୍କୁ ଧରି ଚାଲି ଆସି ପାରିବ ତ ?

ନିଜକୁ ସେ ବୁଝେଇଥିଲା। ଦାଦା ବୋକା ମଣିଷ ନୁହଁ। ସେ ଦୂରଦର୍ଶୀ, ଦାୟିତ୍ୱ ସଂପନ୍ନ ମଣିଷ। ସେ ନିଶ୍ଚୟ ଯାହା କରିବା କଥା ଶୀଘ୍ର କରିବ। ଅନିକୁ ମଧ୍ୟ ସେ ପକେଇ ଦେଇ ଆସିବ ନାହିଁ। ତା' ଶ୍ୱଶୁର ଘର ଲୋକଙ୍କୁ ବୁଝେଇ ସୁଝେଇ ସେମାନଙ୍କୁ ମଧ୍ୟ ପଶ୍ଚିମ ବଙ୍ଗକୁ ଚାଲି ଆସିବାକୁ ବୁଦ୍ଧି ଦେବ ସେ।

ଟ୍ରେନ୍‌ର ଗତିରେ ଦୋହଲୁ ଦୋହଲୁ ଅର୍ଚ୍ଚନା ଆଉ ଥରେ ମନକୁ ମନ କହିଲା - 'ଦାଦା ନିଶ୍ଚୟ ଶୀଘ୍ର କିଛି କରିବ।' ନିଜକୁ ନିଜେ ସାନ୍ତ୍ୱନା ଦେଇ ସେ ବୁଝେଇଲା ଯେ ଏ ବିଚ୍ଛେଦ ସାମୟିକ। ସେମାନଙ୍କ ସାଙ୍ଗରେ ନିଶ୍ଚିତ ଭାବରେ ଖୁବ୍ ଶୀଘ୍ର ଦେଖା ହେବ।

ତଥାପି ଏ ବୀତରାଗ କାହିଁକି ତା' ମନ ଭିତରେ ?

ଅର୍ଚ୍ଚନା ମନ ଭିତରେ ଆଲୋଡ଼ନ। ଟ୍ରେନ୍‌ର ଝରକା ଦେଇ ସେ ବାହରକୁ ଚାହିଁଲା। କି ବେଗରେ ଓଲଟା ଦିଗରେ ଧାଇଁ ଚାଲିଛନ୍ତି ଗଛମାନେ। ଯେମିତି ଦୂରେଇ ଯିବାକୁ ଚାହାନ୍ତି ସେମାନେ ଅର୍ଚ୍ଚନାଠୁଁ। ଖାଲି ଗଛମାନେ କାହିଁକି, ଦୂର ପାହାଡ଼, ଝରଣା, ନଈ - କେହି ବି ତା'ର ସାଥୀ ହେବାକୁ ଚାହୁଁ ନାହାନ୍ତି। ଏଇତ, ତା' ଆଖିକୁ ଝଲସାଇ ଦେଇ ଲୁଚି ଯାଉଛନ୍ତି ପୂର୍ବ ବଙ୍ଗର ବିସ୍ତୃତ ଚାଷ ଜମି। ଛୋଟ ଛୋଟ ପଡ଼ା ଗାଁ ମୁହଁ ଘୁରେଇ ନେଇ ଆଖିର ଅନ୍ତରାଳରେ ହଜି ଯାଉଛନ୍ତି।

ଆଉ କ'ଣ କେବେହେଲେ ସେମାନଙ୍କୁ ଦେଖିବାର ସୁଯୋଗ ତା'ର ହେବ ?

ଅର୍ଚ୍ଚନା ଆଖିରେ ଲୁହ ଚିକ୍ ଚିକ୍ କରିଲା। କେହି ନ ଦେଖି ପାରିବା ଭଳି ସେ ଶାଢ଼ି କାନିରେ ସେତକ ପୋଛି ନେଲା। ଏଇଥି ପାଇଁ ତ ନିସ୍ୱ ଲାଗୁଛି। ନିଜ ଦେଶକୁ ପର କରି ଦେଇ ଯେ ତାକୁ ଚାଲିଯିବାକୁ ହେଉଛି, ସେଇଥିପାଇଁ ତ ଛାତି ଫାଟି ଯାଉଛି ତା'ର। କାହାକୁ କହିବ ସେ ? ବାକୀ ସମସ୍ତଙ୍କର ମନ ଅବସ୍ଥା କ'ଣ ଖୁବ୍ ଗୋଟାଏ ଭଲ ?

ଝରକା ଆଡ଼ୁ ମୁହଁ ଫେରାଇ ଟ୍ରେନ୍ ଡବା ଭିତରେ ଆଖି ବୁଲେଇ ନେଲା ସେ।

ତା' କୋଳରେ ମୁଣ୍ଡ ରଖି ଗୌରୀ ଦିଦିର ବଡ଼ ଝିଅ ମୌସୁମୀ ଶୋଇ

ପଡ଼ିଛି ନିଦରେ। ତା' ପାଖରେ ବସିଥିଲା ତା' ତଳ ଭାଇ ଗୁଣ୍ଟୁ। ବେଞ୍ଚ ଉପରେ ଚକା ପକେଇ ବସି ଠିକ୍ ଧ୍ୟାନସ୍ଥ ବୁଦ୍ଧ ଭଳି ଲାଗୁଛି ସେ। ଗୁଣ୍ଟୁ ପାଖରେ ନିଶ୍ଚଳ ହୋଇ ବସି ରହିଛନ୍ତି ପ୍ରୌଢ଼ତ୍ୱରେ ପାଦ ଦେଇଥିବା ଦୀପେନ୍ କାକୁ। ଗୌରୀର କକେଇ ଶ୍ୱଶୁର। କ'ଣ ଏତେ ଭାବି ହେଉଛନ୍ତି କେଜାଣି? ବୋଧହୁଏ ନିଜର ସାରା ଜୀବନର ସ୍ୱପ୍ନ ଓ ସଞ୍ଚୟ ଦେଇ ଗଢ଼ି ଥିବା ସ୍କୁଲ୍‌କୁ ଛାଡ଼ି ଆସିବାର ଶୋକରେ ସେ ସେପର୍ଯ୍ୟନ୍ତ ଉବୁଟୁବୁ ହୋଇ ରହିଛନ୍ତି।

ଦେହରେ ଖୋଲା ପବନ ବାଜିବ ବୋଲି ସାମ୍ନା ବେଞ୍ଚରେ ଝରକା ପାଖରେ ବସିଥିଲେ ମାସୀମା। ଗୌରୀର ବୟସ୍କା ବିଧବା ଶାଶୂ। ଏବେ ଝରକା ରେଲିଙ୍ଗ୍‌ରେ ମୁଣ୍ଡ ଥାପି ଦେଇ ଢୁଳାଇବା ଆରମ୍ଭ କରି ଦେଇଛନ୍ତି ସେ। ତାଙ୍କ ପାଖରେ ସବା ସାନ ଛୁଆଟାକୁ କୋଳରେ ବସେଇ ବସି ରହିଛି ଗୌରୀ। କିନ୍ତୁ ଆଖି ଦିଇଟା ତା'ର ଲାଖି ରହିଛି ତା' ବର ଉପରେ।

ଆଉ ପ୍ରସନ୍ନ?

ସେ ଜମା ସ୍ଥିର ହୋଇ ବସି ପାରୁ ନାହିଁ ଗୋଟାଏ ଜାଗାରେ। ନିଜର ସ୍ୱଚ୍ଛଳ ବ୍ୟବସାୟକୁ ଛାଡ଼ି ଦେଇ ଆସିବାକୁ ହେଲା। ସବୁ ପାଣି ଦରରେ ବିକ୍ରି କରି ଦେବାକୁ ହେଲା। ଏବେ ନୂଆ ଜାଗାକୁ ଯାଇ ପୁଣି ଯେ ନୂତନ କରି ଜୀବନ ଆରମ୍ଭ କରିବାକୁ ହେବ, ସେ ଚିନ୍ତାରେ ମୁଣ୍ଡ ଭାରି ହୋଇ ଯାଉଥିଲା ତା'ର।

ସେମାନଙ୍କୁ ଦେଖି ନିଜକୁ ବୁଝାଇଲା ଅର୍ଚ୍ଚନା। ଗୋଟାଏ ପରିବାରର ମୂଳଦୁଆ ଉପୁଡ଼ିଗଲା। ଏବେ ସେମାନେ ଉଦ୍‌ବାସ୍ତୁ। ସେମାନଙ୍କ ସାମ୍ନାରେ ଅନିଶ୍ଚିତ ଭବିଷ୍ୟତ। ସେଥିପାଇଁ ସମସ୍ତେ ଚିନ୍ତିତ। କିନ୍ତୁ କେହି ତ ବିବ୍ରତ ହୋଇ ପଡୁ ନାହାନ୍ତି। ଭାଙ୍ଗି ପଡୁ ନାହାନ୍ତି। ଭାଗ୍ୟର ଲେଖନୀକୁ ଚୁପ୍‌ଚାପ୍ ମାନି ନେଇଛନ୍ତି ସେମାନେ।

ତା'ହେଲେ ସେ କାହିଁକି ଏମିତି ଛାଟିପିଟି ହେଉଛି ନିଜ ଭିତରେ? କାହିଁକି ବାରମ୍ବାର ତା' ଆଖିକୁ ଲୁହ ଚାଲି ଆସୁଛି? କାହିଁକି? ଗୌରୀ ଭରିକାଙ୍କ ତୁଳନାରେ ତା'ର ଯେ କିଛି ହଜି ଯାଇନି। ସେମିତି ବିଶେଷ ଅନିଶ୍ଚିତତା ବି ନାହିଁ।

ନିଜକୁ ନିଜେ ସେ ଭରସା ଦେଇଥିଲା। ନିଜକୁ ସାଉଁଟି ନେଇ ମନକୁ ଦୃଢ଼ କରିଥିଲା।

ସିଆଲ୍‌ଦା ଷ୍ଟେସନ୍‌ରୁ ପ୍ରସନ୍ନର ପିଉସୀ ଘର ଅଳ୍ପ ବାଟ। ତଥାପି ଦୁଇଟା ଘୋଡ଼ା ଗାଡ଼ି ଭଡ଼ା କରିବାକୁ ହେଲା। ପିଲାଗୁଡ଼ିକ କ୍ଳାନ୍ତ। ଆଉ ପୁଣି ଏତେ ଗୁଡ଼ାଏ ଟ୍ରଙ୍କ୍, ବାକ୍ସ, ବେଡ଼ିଙ୍ଗ୍।

କେଇଟା ମିନିଟ୍ ପରେ ଘୋଡ଼ା ଗାଡ଼ି ଦିଇଟା ଆସି ଅଟକିଥିଲା ପିଉସୀଙ୍କ ଘର ସାମ୍ନାରେ। ଘୋଡ଼ା ଗାଡ଼ିରୁ ଓହ୍ଲେଇ ପଡ଼ି ଅବାକ୍ ଭାବରେ ସେଇ ଘର ଆଡ଼କୁ ଚାହିଁ ରହିଲା ଅର୍ଚ୍ଚନା। ସେ ଶୁଣିଥିଲା ଯେ ପ୍ରସନ୍ନ ଦା'ଙ୍କ ପିଉସା ପୋଲିସରେ କାମ କରୁଥିଲେ। ଇଂରେଜ ସରକାରଙ୍କ ଦୟାରେ ବେଶ୍ କିଛି ସମ୍ପତ୍ତି ବାଡ଼ି କରି ଯାଇଛନ୍ତି। କିନ୍ତୁ ଏଭଳି ଗୋଟାଏ ରାଜପ୍ରାସାଦ ଯେ ତାକୁ ଦେଖିବାକୁ ମିଳିବ, ତା' ସେ ଭାବି ପାରି ନ ଥିଲା।

ହଠାତ୍ ଖୋଲିଗଲା ଦାଣ୍ଡ କବାଟ। ନାଲି ଚଉଡ଼ା ଧଡ଼ିର ଶାଢ଼ି ପିନ୍ଧି ଚଉଡ଼ା କପାଳରେ ବିରାଟ ସିନ୍ଦୂର ଟୋପା ଲଗେଇ ଯେଉଁ ଶକ୍ତ ସାମର୍ଥ ମହିଳା ଜଣକ କବାଟ ସେପାଖରେ ଠିଆ ହୋଇଥିଲେ, ସେ ଯେ ସେମାନଙ୍କର 'ଚମ୍ପା ପିସୀମା', ତା' ବୁଝି ନେବାକୁ ଅସୁବିଧା ହୋଇ ନ ଥିଲା।

''ଆସିଗଲେ ହେ। ହେଇଟି ଶୁଣୁଛ, କୁଆଡ଼େ ଗଲ ମ। ଆସ ଆସ ବାହାରକୁ। ଏଇ ଦେଖ, ଆସିଗଲେ ମୋ ବାପଘରର ଗୋଷ୍ଠୀ।'' ଚେହେରା ସାଙ୍ଗରେ ଖାପ ଖାଇବା ଭଳି ମୋଟା ସ୍ୱରରେ ପାଟି କରି ଉଠିଥିଲେ ପିସୀମା'।

ଅର୍ଚ୍ଚନା ଚମକି ଉଠିଥିଲା। ଇଏ କି ରକମର ସମ୍ଭାଷଣ? କିନ୍ତୁ ଗୌରୀ, ପ୍ରସନ୍ନ ବା ଅନ୍ୟମାନଙ୍କୁ ଅସ୍ୱସ୍ତି ଲାଗି ନ ଥିଲା। ପିସୀମା' ତ ସବୁଦିନେ ଏଇମିତି ଟେଢ଼ା ଟେଢ଼ା କଥା ମୁହଁ ଉପରେ କହନ୍ତି। ନୂଆ ଆଉ କ'ଣ? ତେବେ ତାଙ୍କ ପାଟିର ଭାଷା ସାଙ୍ଗରେ ଯେ ହୃଦୟର ଭାବର କୌଣସି ସାମଞ୍ଜସ୍ୟ ନ ଥିଲା, ତା' ତାଙ୍କୁ ଜାଣି ନ ଥିବା ଲୋକ ପକ୍ଷରେ ଧରିବା ସମ୍ଭବପର ନୁହଁ। ସେଇଥିପାଇଁ ଅବାକ ହୋଇ ଯାଇଥିଲା ଅର୍ଚ୍ଚନା।

ବୁଢ଼ୀ ପୁଣି ପାଟି କରି ଉଠିଲେ, ''କାହିଁକି ଝିକି ଝିକି କରୁଛରେ ଟାଙ୍ଗାବାଲାମାନେ? ଏଇଟା କାହା ଘର ଜାଣିଛ ଟି? ପୋଲିସ ଘର ଏଇଟା ବାପୁ। ଏଠି ଆଉ ତୋଡ଼ ଦେଖାଅନି।''

ଅସନ୍ତୁଷ୍ଟ ମୁହଁରେ ଟ୍ରଙ୍କ୍ ବାକ୍ସ ଓହ୍ଲେଇ ଦେଇ ଟାଙ୍ଗାବାଲା ଦି'ଜଣ ଚାଲିଗଲେ।

''ଆଉ ଠିଆ ହୋଇ ରହିଲ କାହିଁକି ତୁମେମାନେ ?'' ଘାଘଡ଼ା ସ୍ୱରରେ ସେ ପୁଣି ପାଟି କରି ଉଠିଲେ, ''ଆସ ସବୁ ଭିତରକୁ। ଆସ ବୌଦି। ଆ ଆ ଭାଇ ଦୀପେନ। ... କି ହୋ ଦାଦୁଭାଇ, ଦିଦିଭାଇ, ଏ ବୁଢ଼ୀ ଠାକୁମା'ଟା ପସନ୍ଦ ହେଉ ନାହିଁ କି ? କିରେ ପ୍ରସନ୍ନ, ଠିଆ ହୋଇ ରହିଲୁ କାହିଁକି ବା ? ଜିନିଷ ହାତେ ହାତେ ଧରି ଭିତରକୁ ଚାଲି ଆ। ଆଉ ଏଠି ଚାକର ବାକର ନାହାନ୍ତି ଯେ ସେମାନଙ୍କୁ ଲଗେଇ ଦେବି ତୋ ଚର୍ଚ୍ଚାରେ। ତୋ ପିସେମସାଏ ଅବସର ନେବା ପରେ ସବୁ ଥାଟ ସରିଯାଇଛି ବାପୁ।''

ଏତେବେଳକେ ଅର୍ଚ୍ଚନା ଉପରେ ଆଖି ପଡ଼ିଲା ତାଙ୍କର। ''ଆଲୋ ଆଲୋ ଏଇଟି କିଏ ?'' ଚିହିଙ୍କିବା ସ୍ୱରରେ ପଚାରି ଉଠିଲେ ସେ। ଚାକିରି ଥିବାବେଳେ ଏଇ ଖଦଡ଼ ପିନ୍ଧାମାନଙ୍କୁ କ୍ଷୁଦ୍ରାଦପି କ୍ଷୁଦ୍ର ଦୃଷ୍ଟିରେ ଦେଖିଛନ୍ତି ତାଙ୍କ ସ୍ୱାମୀ। ଏବେ ସେଇମାନଙ୍କ ଭିତରୁ ଜଣେ ପୁଣି ତାଙ୍କ ଘର ଭିତରକୁ ଆସିବାକୁ ପାଦ ବଢ଼ାଉଛି। ରାମ ରାମ !

''ଏ ମୋ ଭଉଣୀ ହେବ, ପିସୀମା'। ଅର୍ଚ୍ଚନା। ଲେଖି ନ ଥିଲି ସେ ଆମ ସାଙ୍ଗରେ ଆସିବ ବୋଲି।'' ଗୌରୀ କହିଲା।

''ହଁ, ଲେଖିଥିଲୁ ତ।'' ଅପ୍ରସନ୍ନ ମୁହଁରେ ତା' ପିଉସୀ ଶାଶୂ କହିଲେ, ''ହେଲେ ସେ ଯେ ବାପୁ ଏ ସ୍ୱଦେଶୀବାଲା, ତା' ତ ଲେଖି ନ ଥିଲୁ। ଏଠି ରହି ଯଦି ସେ 'ବନ୍ଦେ ମାତରଂ' ଆରମ୍ଭ କରେ, ତା' ଦଳବଳଙ୍କୁ ଯଦି ଏଠି ପୂରେଇ ମିଟିଙ୍ଗ୍ ଫିଟିଙ୍ଗ୍ କରେ, ତେବେ ନାକ କଟିଯିବ ତୋ ପିଉସା ଶ୍ୱଶୁରଙ୍କର।''

''ନାଇଁ ମ ପିସୀମା'। ଅର୍ଚ୍ଚନା ଖାଲି ଖଦଡ଼ ପିନ୍ଧେ। ରାଜନୀତି ଫାଜନୀତିରେ ତା'ର କିଛି ନାହିଁ।''

''ତା'ହେଲେ ତ ଭଲ ବାପୁ। କର୍ତ୍ତା ଏବେ ଅବସର ନେଇଗଲେ ବୋଲି ଯେ ସବୁ ସମ୍ମାନ ପୋଡ଼ି ଦେବାକୁ ହେବ, ତା' ତ ନୁହଁ। ଚାଲ, ଚାଲ ଭିତରକୁ।''

ଉମାକାନ୍ତ ଘୋଷାଲ ସାରା ଜୀବନ ବ୍ରିଟିଶ ସରକାରର ପୋଲିସ ବିଭାଗରେ କାମ କରିଗଲେ। ସବୁବେଳେ ଗୋରା ସାହେବଙ୍କର ଆଖି ଦେଇ ଦେଶର ହାଲଚାଲ

ଦେଖୁଥିବାରୁ, ତାଙ୍କ ଦୃଷ୍ଟିକୋଣ ଅନ୍ୟରକମର ହୋଇଯାଇଥିଲା। ସ୍ୱାଧୀନତା ସଙ୍ଗ୍ରାମୀମାନଙ୍କ ପ୍ରତି ବିଶେଷ ଶ୍ରଦ୍ଧା ନ ଥିଲା ତାଙ୍କର। ଏଗୁଡ଼ାକ କାହିଁକି ଯେ ନିଜ ଜୀବନକୁ ପାଣି ଛଡ଼େଇ ଦେଇ 'ଭାରତ ମାତା କି ଜୟ' ଚଳେଇଛନ୍ତି, ତା' ସେ ଠିକ୍ ବୁଝି ପାରୁ ନ ଥିଲେ। ହେଲେ ସେମାନଙ୍କ ଉପରେ ଲାଠି ଚଳେଇବା ବା ବାୟୋନେଟ୍ ମୁନ ଗେଞ୍ଜି ସେମାନଙ୍କୁ ରକ୍ତାକ୍ତ କରି ଦେବା କଥା, ସେ ଆଦୌ ଭାବି ପାରୁ ନ ଥିଲେ। ବାହୁସ୍ଫୋଟ ମାରି ସିନା ସେ ଏଠି ସେଠି ଏଇଭଳି କୀର୍ତ୍ତିର ବହୁ ଉଦାହରଣ ବଖାଣୁଥିଲେ, କିନ୍ତୁ ବାସ୍ତବରେ ଥରଟିଏ ବି ସେସବୁ ଘଟଣାରେ ସାମିଲ ହୋଇ ନାହାନ୍ତି ସେ।

ଏମିତିରେ ମଣିଷଟି ଟିକିଏ ନରମ ପ୍ରକୃତିର। ନିହାତି ପେଟର ଦାୟରେ ପଡ଼ି ପୋଲିସରେ ପଶିଯାଇଥିଲେ, ସେଥିପାଇଁ କଠୋରତାର ମୁଖାଟିଏ ପିନ୍ଧିବାକୁ ହେଉଥିଲା ତାଙ୍କୁ। ଅବସର ନେଇ ଯିବା ପରେ ମୁଖାଟିକୁ କାଢ଼ି ଫୋପାଡ଼ି ଦେଇ ମୁକ୍ତି ପାଇଯାଇଛନ୍ତି ସେ ଯେମିତି।

ତଥାପି ପୋଲିସରେ ଥିବାବେଳେ ଗୋଟାଏ ବଡ଼ ସୁନାମ ଥିଲା ଉମାକାନ୍ତଙ୍କର। ସମସ୍ତେ କହୁଥିଲେ ଘୋଷାଲବାବୁ କାହାକୁ ଭୟ କରନ୍ତି ନାହିଁ। ଏପରିକି ବାଘମୁହାଁ ଗୋରା ସାଇବମାନଙ୍କୁ ମଧ୍ୟ ନୁହଁ।

କଥାଟା ମିଛ ନୁହଁ। ତେବେ ପୂରାପୂରି ସତ ବି ନୁହଁ। ନିଜ ଭିତରେ ଉମାକାନ୍ତଙ୍କର ଜଣେ ମଣିଷ ପ୍ରତି ଟିକିଏ ଟିକିଏ ଭୟ ଥିଲା। ସେ ହେଲା ତାଙ୍କ ସ୍ତ୍ରୀ ଚମ୍ପା। ଚମ୍ପାଙ୍କର ଶକ୍ତ ସାମର୍ଥ ଚେହେରା ଦେଖି ସେ କେବେ ଭୟ ପାଉ ନ ଥିଲେ, ଭୟ ଥିଲା ତାଙ୍କର ଖର କଥାକୁ। ସ୍ଥାନ ପାତ୍ର ବିବେଚନା ନ କରି ଯାହା ମନକୁ ଆସିଲା ତା' କହିଦେବାଟା ତାଙ୍କର ସବୁଦିନିଆ ପ୍ରକୃତି। ସେ ଯେ ବିନା କାରଣରେ ଏମିତି ପାଟି କରୁଥିଲେ, ତା' ନୁହଁ।

ହେଲେ ମନ୍ଦ କଥା ତ ମନ୍ଦ କଥା।

ବାହାଘର ପରେ ବୋହୂକୁ ନିୟନ୍ତ୍ରଣ କରିବାକୁ ଯାଇ ଏହାର ବେଶ୍ କେତେ ଥର ଉଦାହରଣ ପାଇଯାଇଥିଲେ ଉମାକାନ୍ତଙ୍କ ମା'। ବାକ୍‌ଯୁଦ୍ଧରେ ହାରି ଯାଇ ପାଖ ପଡ଼ୋଶୀଙ୍କ ପାଖରେ ନାଲିସ୍ କରୁଥିଲେ ସେ। କହୁଥିଲେ- 'ବୋହୂକୁ ଦିନେ ମୁଁ ଉଚିତ୍ ଶିକ୍ଷା ଦେବି। ପୁଅକୁ ଆଉ ଥରେ ବାହା ଦେବି। ସେତେବେଳେ ଦେଖିବି କେମିତି ଏ ତେଜ ଦେଖାଇବ ଚମ୍ପା।'

"ଆଉ ଥରେ ବାହା କରେଇବେ ପୁଅକୁ?" ଚମ୍ପା କାନରେ ପଡ଼ିଲେ ସେ ଛିଗୁଲାଇ କହୁଥିଲେ, "କରାନ୍ତୁ। ମୁଁ କ'ଣ ମନା କରୁଛି କି? ହେଲେ ଦେଖିବ ରହିଥା, ସେମିତି କିଛି ହେବାର ସମ୍ଭାବନା ଦେଖିଲେ ମୁଁ ସିଧା ଚାଲିଯିବି ବଡ଼ ଗୋରା ପୋଲିସ ସାଇବ ପାଖକୁ। ତା'ପରେ ଦେଖିବି କେମିତି ଏ ଚାକିରିର ଥାଟ୍ ରହିବ।"

ସମସ୍ତେ ଜାଣିଥିଲେ ଯେ ଚମ୍ପା ଯାହା କହୁଛନ୍ତି, ଦରକାର ପଡ଼ିଲେ ତା' କରି ଦେଖାଇ ଦେବେ। ତେଣୁ ତାଙ୍କ ସାଙ୍ଗରେ ଅଧିକ ବାଦାବାଦି ଲଗେଇବାର ସାହସ ଆଉ କାହାର ହୋଇ ନ ଥିଲା।

ଆଉ ଉମାକାନ୍ତ? ଉମାକାନ୍ତ ସ୍ତ୍ରୀକୁ କେବଳ ସହି ଯାଉଥିଲେ। ଏଇମିତି ସହି ଯାଉ ଯାଉ ଦିନେ ସେ ଆବିଷ୍କାର କଲେ ଯେ ସ୍ତ୍ରୀ ଉପରେ ସେ ସମ୍ପୂର୍ଣ୍ଣ ଭାବରେ ନିର୍ଭରଶୀଳ ହୋଇ ପଡ଼ିଛନ୍ତି। ସ୍ତ୍ରୀ ବିନା ଜୀବନ ଚିନ୍ତା କରି ପାରୁନାହାନ୍ତି।

କିନ୍ତୁ ଭୟଟି ଆଉ କେବେହେଲେ କଟି ଯାଇ ପାରି ନ ଥିଲା।

ଚମ୍ପା ଯେତେବେଳେ କହିଥିଲେ ଯେ ସେ ତାଙ୍କ ବାପ ଘରର ସମସ୍ତଙ୍କୁ କଲିକତା ଆସି ତାଙ୍କ ପାଖରେ ରହିବାକୁ କହିଛନ୍ତି, ସେତେବେଳେ ସେ ଆପତ୍ତି କରି ନ ଥିଲେ। ଭିତରେ ଭିତରେ ଟିକିଏ ଖୁସି ବି ଲାଗିଥିଲା। ନିଜର ପିଲାଛୁଆ ନାହିଁ। ସାରା ଜୀବନ ଖାଁ ଖାଁ ଘରେ ରହିବାକୁ ହେଲା। ଏବେ ପୁତୁରା, ପୁତୁରା ବୋହୂ, ନାତି ନାତୁଣୀ ଆସି ଘରେ ହଇଚଇ କରିବେ, ସେ ତ ବଡ଼ ଆନନ୍ଦର କଥା। ସେଇ କଥା ଭାବିଦେଲେ ହିଁ ତାଙ୍କୁ ଖୁସୀ ଲାଗୁଥିଲା।

ବଗିଚା କାମ କରୁ କରୁ ଚମ୍ପାଙ୍କର ବଡ଼ ପାଟି ତାଙ୍କ କାନରେ ପଡ଼ିଥିଲା। ହାତ ଗୋଡ଼ ଧୋଇ ଭିତରକୁ ଆସୁ ଆସୁ ଦେଖିଲେ ଯେ ବୈଠକ ଘରେ ଆସି ବସିଗଲେଣି ସମସ୍ତେ।

ପ୍ରଣାମ ପର୍ବର ସମାପ୍ତି ପରେ ସେ ସ୍ତ୍ରୀକୁ କହିଲେ, "ଆଉ କାହିଁକି ବସେଇ ରଖିଲ ଏମାନଙ୍କୁ ଏଠି ଅତିଥି ଭଳି। ଘର ଦେଖାଇ ଦିଅ।"

ପ୍ରସନ୍ନ ଚାରିଆଡ଼େ ଆଖି ବୁଲେଇ ନେଇ କହିଲା, "ଆପଣମାନେ ତ ତଳ ମହଲାରେ ରହୁଛନ୍ତି ପିସେମଶାଏ। ଆମେ ନ ହେଲେ ଦୋତାଲାରେ ରହିଯିବୁ।"

ଉମାକାନ୍ତ କିଛି କହିବା ଆଗରୁ ହାତ ହଲେଇ ନେଇ ଚମ୍ପା କହିଲେ, "ହବନାହିଁ ସେକଥା। ହେଇ ପାରିବ ନାହିଁ। ଆମେ ଏଠି ରହି ଖଟି ମରିବୁ, ଆଉ ତୁମେ ସବୁ ଦୋତାଲାରେ ଗୋଡ଼ ଲମେଇ ବସିବ! ଏ ବାବୁଆନା ଚଳିବନି ଏଠି। ପାଖରେ ଥିଲେ ବୋହୂଟା, ଏ ଝିଅଟା ଟିକିଏ ଟିକିଏ କାମରେ ହାତ ଲଗେଇବେ। ହେଲେ ଉପରକୁ ଚାଲିଗଲେ ଧରାଛୁଆଁ ଦିଏ କିଏ? ସେଠି ତ କାନରେ ତେଲ ଦେଇ, ଗୋଡ଼ ଉପରେ ଗୋଡ଼ ପକେଇ ଆରାମରେ ବସିଯିବେ ସେମାନେ, ଆଉ ମୁଁ ବୁଢ଼ୀଟା ଏଠି ଏ ଗୋଷ୍ଠୀ ପାଇଁ ହାଣ୍ଡି ଠେଲି ଠେଲି ମରିବି। ସେକଥା ଏଠି ହେଇ ପାରିବ ନାହିଁ ବାପୁ।"

ଗୌରୀ ଜମା ରାଗିଲା ନାହିଁ। କହିଲା, "ଏଥରକଠୁ ବାବୁଆନା ଆପଣ କରିବେ, ପିସୀମା'। ମୁଁ ଏଠି ଥିବାବେଳେ ଆପଣଙ୍କୁ ମୁଁ ଚୁଲିମୁଣ୍ଡରେ ବସିବାକୁ ଦେବିନି। ହଁ, ରୋଷେଇ ଘର ବାରଣ୍ଡାରେ ବସି ଯଦି ମା'ଙ୍କ ସାଙ୍ଗରେ ଗପୁ ଗପୁ ଶାଗ ଦିଇଟା ବାଛି ଦେବେ କି ପରିବାପତ୍ର କାଟିଦେବେ, ତା'ହେଲେ ମୋର କୌଣସି ଆପତ୍ତି ନାହିଁ।"

ଗୌରୀର କଥା ଶୁଣି ଚମ୍ପାଙ୍କ ମୁହଁରେ ସାମାନ୍ୟ ଭାବାନ୍ତର ହେଲା ନିଶ୍ଚୟ। କିନ୍ତୁ ସେ ଆନନ୍ଦରେ ଭାସି ଗଲେ ନାହିଁ। ଚିରାଚରିତ ଅପ୍ରସନ୍ନତାର ମୁଖା ମୁହଁ ଉପରେ ବସେଇ ଦେଇ ସେ କହିଲେ, "ମୁଁ ଜାଣେ ପରା ଏଠି ପହଞ୍ଚୁ ପହଞ୍ଚୁ ମୋ ହାତରୁ ସବୁ ଚାବିକାଠି ଖସେଇ ନେବୁ ତୁ। ହଉ, କର ଯାହା ଇଚ୍ଛା। କିନ୍ତୁ ଉପର ଘରେ ତମମାନଙ୍କୁ ରହିବାକୁ ମୁଁ ଦେବି ନାହିଁ। ଜମା ନୁହଁ।"

"କାହିଁକି ପିସୀମା'?"

"ଏତେ ଦିନ ପରେ ମୋ ନାତି ନାତୁଣୀ ଆସିଛନ୍ତି ମୋ ପାଖକୁ। ଆଉ ତୁ କ'ଣ ନା ସେମାନଙ୍କୁ ମୋ ପାଖରୁ ଦୂରେଇ ଦେବାକୁ ଚାହୁଁଛୁ? ହେଇ ପାରିବ ନାହିଁ ବାପୁ। ଏବେ ଯେତିକି ଦିନ ତମେମାନେ ଏଠି ରହିବ ମୋ ନାତି ନାତୁଣୀମାନେ ମୋ ପାଖେ ରହିବେ। ମୋ ଘରେ ଶୋଇବେ। ହଠାତ୍ କେତେବେଳେ ପୁଣି ପେଡ଼ି ପଟରା ବାନ୍ଧି ତୁମେମାନେ ଏଠୁ ଛୁ ମାରିବ ଏ ବୁଢ଼ାବୁଢ଼ୀ ଦିଇଟାଙ୍କୁ ଏକା ପୋପାଡ଼ି ଦେଇ..." କୋହରୁଦ୍ଧ ହେଇ ଆସିଲା ଚମ୍ପାଙ୍କର ସ୍ୱର।

ଅବାକ ହୋଇ ଦେଖୁଥିଲା ଅର୍ଚ୍ଚନା।

ହଠାତ୍ ପୁଣି ଆଗର ଖରମୁହାଁ ପିସୀମା' ହୋଇଗଲେ ଚମ୍ପା। ‘‘ଆସ ଆସ, ତମ ଘର ଗୁଡ଼ାକ ଦେଖି ନିଅ। ବେଳ ହେଲାଣି। ଚୁଲି ଫୁଲି ଲଗେଇବାକୁ ହେବ ପୁଣି।’’

ହଠାତ୍ ଦୀପେନ୍ କହିଲେ, ‘‘ଦିଦି, ତୁ ବି କ'ଣ ମୋ ପାଇଁ ତଳେ ରହିବା ବ୍ୟବସ୍ଥା କରିଛୁ?’’

‘‘ତୋ ପାଇଁ?’’ ଚମ୍ପା ନିଜଠୁ ସତର ବର୍ଷ ସାନ ଭାଇକୁ ସିଧା ଭାବରେ ଚାହିଁ କହିଲେ, ‘‘ମାଫ୍ କରିବାକୁ ହେବରେ ଭାଇ। ତତେ ମୁଁ ତଳେ ଜମା ରହିବାକୁ ଦେଇ ପାରିବିନି। ତୁ ମାଷ୍ଟରିଆ ଲୋକ। ଏଠି ଯଦି ମୋ ଭଳି ମୂର୍ଖଙ୍କୁ ତୁ ପାଠ ପଢ଼େଇବା ଆରମ୍ଭ କରି ଦେଉ, ତେବେ ସରିଯିବ କଥା। ତୋ ପାଇଁ ମୁଁ ଉପରେ ରହିବା ବ୍ୟବସ୍ଥା କରିଛି। ତୋ ଜ୍ଵାଇଁ ବାବୁଙ୍କର ଲାଇବ୍ରେରୀଟିଏ ଅଛି ଉପରେ। ତା'ରି ପାଖ ଘରେ ତୁ ରହିବୁ। ତଳକୁ ଆସି ଯେମିତି ଶିକ୍ଷା ଜାଗରଣର ଆନ୍ଦୋଳନ ନ କରୁ। ଏବେଠୁଁ କହି ଦେଉଛି।’’

ଅର୍ଚ୍ଚନା ଆଉ ରହି ପାରିଲା ନାହିଁ। ଆଗ୍ରହରେ ପଚାରି ଦେଲା, ‘‘ଆପଣଙ୍କର ଏଠି ଲାଇବ୍ରେରୀ ଅଛି?’’

‘‘ମ... ତୁ କ'ଣ ବିଦୁଷୀ ଲୀଳାବତୀ କିଲୋ ଝିଅ? ବହି ନାଁ ଶୁଣି ଥେଇ ଥେଇ ହେଉଛୁ? ... ଅଛି ବାପୁ ଅଛି ଲାଇବ୍ରେରୀଟେ ଏ ଘର ଭିତରେ। ମୋର ଯେଉଁ କର୍ତ୍ତା! କଷ୍ଟୋପାର୍ଜିତ ପଇସା ଫୋପାଡ଼ି ସବୁ ଚୁଲି ପାଉଁଶ ଗଦା କରିଛନ୍ତି ଦୋତାଲାର ଡାହାଣ ପଟ ଘରେ। ଏବେ ଆଉ ଯାଆନା ଲୋ ବିଦୁଷୀ। ଆଗ ଗାଧୁଆ ପାଧୁଆ କରି ଥଇଥାନ ହୋ। ତା'ପରେ ଯାଇ ମୁହଁ ମାଡ଼ି ପଡ଼ିବୁ ବହି ଭିତରେ।’’

ଉମାକାନ୍ତ ଘୋଷାଲଙ୍କ ଘରେ ସ୍ୱପ୍ନ ପରି ଦିନ କଟି ଯାଉଥିଲା ଅର୍ଚ୍ଚନାର। ମଝିରେ ଥରେ ଗୌରୀ ଦିଦି, ପ୍ରସନ୍ନ ଦା'ଙ୍କ ସାଙ୍ଗରେ ଯାଇ ସେ ମାମୁ ଘରେ ବୁଲି ଆସିଥିଲା। ତା' ହାତରେ ଟ୍ରଙ୍କ୍ ବା ବାକ୍ସ ନ ଦେଖି ସ୍ୱସ୍ତିର ନିଶ୍ୱାସ ନେଇଥିଲା ତା' ମାଇଁ ଲତା। ଯା'ହେଉ, ଏ ପ୍ରତିମାଟି ତା'ହେଲେ ତା' ପାଖରେ ରହିବାକୁ ଆସିନି। ଭଲ। ଖୁବ୍ ଭଲ। ସେ କୃତ୍ରିମ ହସ ଖେଳାଇ

ଚାହା ଜଳଖିଆ ମିଠା ଖୁଆଇ ଥିଲା। ଘରକୁ କେହି ଅତିଥି ବୁଲି ଆସିଲେ, ଯାହା ସାଧାରଣତଃ କରା ହୁଏ, ସେତିକି କରିଥିଲା।

ଫେରି ଆସିବା ବେଳେ ତା' ଛୋଟ ଦା' ପାଖକୁ ଖବର ପଠେଇବାକୁ ଅର୍ଚ୍ଚନା ବିନୟକୁ ଅନୁରୋଧ କରି ଆସିଥିଲା।

ମାମୁଙ୍କଠୁଁ ଖବର ପାଇ ଉମାକାନ୍ତ ଘୋଷାଲଙ୍କ ଘରକୁ ଧାଇଁ ଆସିଥିଲା ଅମରେଶ। ସାନ ଭଉଣୀକୁ ଦୁଇ ହାତରେ ଜଡ଼େଇ ଧରି କହିଥିଲା, ''ଚାଲ ଅର୍ଚ୍ଚନା। ମୋ ପାଖରେ ରହିବୁ। ମୁଁ ଏକା ଏକା ରହୁଛି। ଘରଟା ଗୋରୁ ଗୁହାଳ ହୋଇ ରହିଛି। ତୁ ପାଖରେ ରହିଲେ ଘରଟା ଘର ଭଳି ଲାଗିବ।''

ଅର୍ଚ୍ଚନା ଅନୁନୟ ଭରା ଆଖିରେ ଗୌରୀକୁ ଦେଖିଥିଲା। ଏତେ ଦିନ ଧରି ସେ ଗୌରୀର ସ୍ନେହ ଭାରରେ ଚଳି ଆସିଛି। ସେଇମାନଙ୍କ ସାଙ୍ଗରେ ଫରିଦ୍‌ପୁର ଛାଡ଼ି କଲିକତାରେ ପାଦ ଦେଇଛି। ଏବେ ଛୋଟ ଦା' ଆସି ଡାକି ନେଉଛି ବୋଲି ତ ସେ ସେମାନଙ୍କର ବିନାନୁମତିରେ ଏଠୁ ବାହାରି ଯାଇ ପାରିବ ନାହିଁ!

ଗୌରୀ ହସି ଦେଇ କ'ଣ ବୋଧହୁଏ କହି ଆସୁଥିଲା, କିନ୍ତୁ ଖଡ଼୍‌ଗ ଧରି ବସିଗଲେ ଚମ୍ପା ପିସୀମା'।

''ଭଲ କଥା କହିଲ ପୁଅ, ଘରଟା ଗୋରୁ ଗୁହାଳ ହୋଇ ପଡ଼ିଛି ବୋଲି ସାନ ଭଉଣୀକୁ ପାଖକୁ ନେଇ ଯିବ? ସେ ତମ ପାଖକୁ ଗଲେ ତମର ତ ଭଲ ହେବ। ତମ ଘରଟିର ଉଦ୍ଧାର ହୋଇଯିବ। କିନ୍ତୁ ତମ ଭଉଣୀଟିର କି ଅବସ୍ଥା ହେବ, ତା' ଭାବି ପାରୁଛ?''

ଅମରେଶ ସବୁଥର ଭଳି କେବଳ ନିଜ ତରଫରୁ ଭାବି ଦେଖିଥିଲା। ଏବେ ଚମ୍ପା ପିସୀମା'ଙ୍କ କଥାରେ, ସେ ଅର୍ଚ୍ଚନା ସ୍ଥାନରେ ନିଜକୁ ରଖି ଚିନ୍ତା କରିଲା କିଛି ସମୟ। ହେଲେ ଅର୍ଚ୍ଚନା ତା' ପାଖରେ ରହିବାରେ ସେ କିଛି ଅସୁବିଧା ଦେଖି ପାରୁ ନ ଥିଲା। ଭାଇ ପାଖରେ ଭଉଣୀ ରହିବ, ଅସୁବିଧା ପୁଣି କ'ଣ?

''ହଁ, ଭାଇ ଘରେ ରହିଲେ ରହି ପାରେ ଭଉଣୀ। କିନ୍ତୁ କିଭଳି ଭାଇ ଘର, ତା' ତ ଟିକିଏ ଭାବି ଦେଖିବ, ପୁଅ। ତୁମେ ଯେଉଁ ପଡ଼ାରେ ଘର ନେଇଛ, ସେଠି ତମର ଏ ଭଉଣୀଟା ଏକା ଏକା ଘରେ ଅଧିକାଂଶ ସମୟ

ରହିବ, ସେଇଟା କ'ଣ ଉଚିତ ହେବ? ତମେ ତ ତମ ହୋଟେଲକୁ ଚାଲିଯିବ ଯେ ସକାଳେ, ଫେରୁ ଫେରୁ ରାତି ଡେରି। କ'ଣ କରିବ ତୁମର ଏ ଭଉଣୀ ସେଠି?''

''ଚାକିରି କରିବ ପରା। ସେଠି ଆଖପାଖରେ ସ୍କୁଲ ଅଛି ଯେ। ଚେଷ୍ଟା କଲେ ନିଶ୍ଚୟ କୋଉଠି ହୋଇଯିବ।''

''ହଁ, ହୋଇ ଯାଇପାରେ। କିନ୍ତୁ ତମେ କୁହ, ସେ ଯେଉଁ ଗଳି, ସେଠି ଯେଉଁ ଭଳି ମଣିଷ, ସେମାନଙ୍କ ସାମ୍ନା ଦେଇ ତୁମର ଏ ସୁନ୍ଦରୀ ଭଉଣୀ ଏକା ଏକା ସ୍କୁଲ ଯିବ, ଏକା ଫେରିବ, ସେଇଟା କ'ଣ ଠିକ୍ ହେବ?'' ହାତ ହଲେଇ ଚମ୍ପା ଯୁକ୍ତି କରିଥିଲେ।

ଅମରେଶ ବୁଝିଥିଲା। ଚମ୍ପା ପିସୀମା' ଯେ ନିହାତି ଅବାନ୍ତର କଥା କହୁ ନାହାନ୍ତି, ତାହା ହୃଦୟଙ୍ଗମ ହୋଇଥିଲା ତା'ର। ସେ ଅର୍ଚ୍ଚନାକୁ ବୁଝେଇ କହିଥିଲା, ''ସତରେ ଆମ ପଡ଼ାଟା ଭଲ ନୁହଁ। ହେଲେ ଜାଣିଛୁ ଅର୍ଚ୍ଚନା, ମୁଁ ଖୁବ୍ ଶୀଘ୍ର ନିଜେ ଗୋଟାଏ ହୋଟେଲ କରିବା କଥା ଭାବୁଛି। ସେ ହୋଟେଲ ହେଲେ, ତା' ପାଖରେ ଘରଟେ ନେବାକୁ ହେବ। ଭଲ ଘର। ସେତେବେଳେ ତୁ ଆସି ମୋ ପାଖରେ ରହିବୁ। ଠିକ୍ ତ?''

ଅର୍ଚ୍ଚନା ମୁଣ୍ଡ ଟୁଙ୍ଗାରି ଥିଲା।

ଅମରେଶ ସେଦିନ ଫେରି ଯାଇଥିଲା। କିନ୍ତୁ ମଝିରେ ମଝିରେ ସମୟ କରି ଆସି ସେ ବୁଲି ଯାଉଥିଲା। ତା' ନିଜ ହୋଟେଲ୍ ଆରମ୍ଭ କରିବା ବିଷୟରେ ଗପୁଥିଲା। ଅର୍ଚ୍ଚନାର ଚାକିରି ମିଳିବା କଥା ଖୁଣ୍ଟିନାଣ୍ଟି ବୁଝୁଥିଲା।

ଅର୍ଚ୍ଚନାର ଚାକିରି ହେଉ ନ ଥିଲା। ଖାଲି ଅର୍ଚ୍ଚନାର ନୁହଁ, ଦୀପେନ ବା ପ୍ରସନ୍ନ ଜମା କିଛି ବ୍ୟବସ୍ଥା କରି ପାରୁ ନ ଥିଲେ ନିଜ ନିଜ ପାଇଁ। ଫରିଦ୍‌ପୁର ଛାଡ଼ିବା ବେଳେ ସେମାନେ ଭାବି ନେଇଥିଲେ ଯେ ନିଜ ଗୋଡ଼ରେ ଠିଆ ହେବାକୁ ଆଦୌ ଅସୁବିଧା ହେବ ନାହିଁ, କିନ୍ତୁ ଦେଶର ଯେଉଁ ଅବସ୍ଥା, ସେତେବେଳେ ଚାକିରି ଦିଏ କିଏ?

ବହୁତ ଖୋଜିବା ପରେ ବହୁ ଲୋକଙ୍କ ପାଖରେ ମୁଣ୍ଡ ନୁଆଁଇବା ପରେ ଦିନେ ଦୀପେନଙ୍କୁ ଚାକିରି ମିଳିଲା। ହେଡ୍ ମାଷ୍ଟର ନୁହଁ, ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ବି ନୁହଁ। ସାଧାରଣ ଶିକ୍ଷକଟିଏର ଚାକିରି। ତଥାପି ସେ ବିନା ପ୍ରତିବାଦରେ

ଚାକିରି ଗ୍ରହଣ କରି ନେଲେ । ଘରେ ଆସି ସମସ୍ତଙ୍କୁ କହିଥିଲେ, ''ବେଗର୍‌ସ କ୍ୟାନ୍‌ନଟ୍ ବି ଚୁଜର୍‌ସ ।'' ଉପାୟ ନାହିଁ । ଭଗବାନଙ୍କଠୁଁ ଯେତିକି କୃପା ଭିକ୍ଷା ମିଳୁଛି, ସେତିକି ଗ୍ରହଣ କରିବାକୁ ହେବ ।

ସେତିକି ଦୟା କିନ୍ତୁ ପ୍ରସନ୍ନର ଭାଗ୍ୟରେ ଲେଖା ନ ଥିଲା । ବହୁତ ଦୌଡ଼ାଦୌଡ଼ି କରିବା ସତ୍ତ୍ୱେ ସାଧାରଣ ଚାକିରିଟିଏ ମଧ୍ୟ ମିଳୁ ନ ଥିଲା ତାକୁ ।

ପ୍ରସନ୍ନର ଚାକିରି ଖୋଜା ନେଇ ଘରଟାଯାକର ସମସ୍ତେ ଯେତେବେଳେ ବିବ୍ରତ, ସେତେବେଳେ ଅର୍ଚ୍ଚନାର ଚାକିରି ହୋଇଗଲା ।

ଦୀପେନ୍ ଯେଉଁ ସ୍କୁଲ୍‌ରେ ଚାକିରି କରୁଥିଲେ, ତା' ପାଖରେ ରହିଥିଲା ନୂଆ ଖୋଲିଥିବା ଝିଅଙ୍କ ସ୍କୁଲ୍‌ଟିଏ । ଦିନେ ସେ ହେଡ୍‌ମାଷ୍ଟର୍‌ଙ୍କ କଥାରୁ ଜାଣିଲେ ଯେ ସେ ସ୍କୁଲ୍‌ରେ ନୂଆ ନୂଆ ଶିକ୍ଷୟିତ୍ରୀ ଖୋଜା ଚାଲିଛି । ଖବର ପାଇ ସ୍କୁଲ କମିଟି ନିକଟରେ ଅର୍ଚ୍ଚନାର ଚାକିରି ଦରଖାସ୍ତ ପକେଇ ଦେଇଥିଲେ ସେ । ଚାକିରି ହେବ ବୋଲି କୌଣସି ବିଶେଷ ଆଶା ନ ଥିଲା, କିନ୍ତୁ ହୋଇଗଲା ।

ପୁଣି ଅର୍ଚ୍ଚନାର ଆରମ୍ଭ ହୋଇଗଲା ଫରିଦ୍‌ପୁର୍ ଭଳି ପୁରୁଣା ରୁଟୀନ । ଦଶଟା ବେଳେ ଭାତ ଗଣ୍ଡେ ଖାଇ ଦେଇ ସେ ଦୀପେନ୍ କାକୁଙ୍କ ସାଙ୍ଗରେ ବାହାରି ଯାଉଥିଲା ଏବଂ ତାଙ୍କରି ସାଙ୍ଗରେ ଫେରୁଥିଲା ଚାରିଟା ବେଳେ । ନୂଆ ସ୍କୁଲ୍‌ରେ ତା'ର ଖୁବ୍ ଶୀଘ୍ର ବହୁତ ସୁନାମ ହୋଇଗଲା । ସେ ହୋଇଗଲା ପିଲାଙ୍କର ପ୍ରିୟ 'ଦିଦି' ।

ପିଲାଙ୍କୁ ଭଲରେ ପଢ଼େଇ ପାରିବାର ସନ୍ତୋଷ ନେଇ ସବୁଦିନ ଘରକୁ ଫେରୁଥିଲା ଅର୍ଚ୍ଚନା, କିନ୍ତୁ ଘରେ ପହଞ୍ଚିବା କ୍ଷଣି ସେସବୁ ମୁହଁ ଉପରୁ ପୋଛି ହୋଇ ଯାଉଥିଲା ତା'ର । ପ୍ରସନ୍ନ ଦା'ଙ୍କର ଶୁଖିଲା ମୁହଁ, ବ୍ୟସ୍ତ ଆଖି ଦେଖିବା କ୍ଷଣି ତାକୁ ବଡ଼ ଦୋଷୀ ଦୋଷୀ ଲାଗୁଥିଲା ।

ଦିନେ କିନ୍ତୁ ସ୍କୁଲ୍‌ରୁ ଫେରିବା ପରେ ଘରେ ଉତ୍ସବର ବାତାବରଣ ଦେଖିଲା ଅର୍ଚ୍ଚନା ।

ତାକୁ ଦୁଇ ହାତରେ କୁଣ୍ଢେଇ ପକେଇ ଗୌରୀ ଆନନ୍ଦ ଗଦଗଦ ହୋଇ କହି ପକେଇଲା, ''ଯାଙ୍କର ଚାକିରି ହୋଇ ଯାଇଛି ରେ ଅର୍ଚ୍ଚନା । ଠାକୁର ଶୁଣିଲେ ଆମ କଥା ଏତେ ଦିନକେ ।''

''ଏଇ ଦିଦି'', ହଠାତ୍ ଚମ୍ପା ଉଦ୍ଦେଶ୍ୟରେ ଦୀପେନ ପାଟି କରି ଉଠିଲେ,

''ତୁ କୁଆଡ଼େ ଗଲୁ, ଦିଦି ? ସନ୍ଦେଶ ଫନ୍ଦେଶ ଘରେ ନାହିଁ ? ଏତେ ବଡ଼ ଖବର। ମୁହଁ ଟିକିଏ ମିଠା କରେଇ ପାରୁନୁ ? ସନ୍ଦେଶ ନାହିଁ ତ କହି ଦେ। ମୁଁ ଯାଇ ବଜାରରୁ ନେଇ ଆସୁଛି।''

ଥାଳିରେ କେଇଟା ନଡ଼ିଆ ଲଡୁ ଆଣି ସଶବ୍ଦ ସେଇଠି ରଖି ଦେଲେ ଚମ୍ପା। ମୁହଁକୁ ମୋଡ଼ି ଦେଇ କହିଲେ, ''ଢଙ୍ଗ !!''

''କ'ଣ ହେଲା ଦିଦି, ତୁ ଖୁସୀ ନୁହଁ ? ପ୍ରସନ୍ନଟା ଏଡ଼େ ବ୍ୟସ୍ତ ହେଉଥିଲା ... ତା'ର ଯେ ଚାକିରି ହୋଇଗଲା, ତଥାପି ତୋ ମୁହଁରେ ହସ ନାହିଁ ?''

''ତମେମାନେ ମନ ଭରି ହସ ବାପୁ। ପ୍ରାଣ ଭରି ଖୁସୀ ହୁଅ। ମତେ ସେଥିରେ ମିଶାଅନି। ମୋର ତ ଛାତି ଫାଟି ଯାଉଛି। ଏଇମିତି ଯଦି ଦିନେ ଚାଲିଯିବା କଥା, ତା'ହେଲେ କାହିଁକି ଏ ବୁଢ଼ାବୁଢ଼ୀଙ୍କର ଶୁଖିଲା ଛାତି ଭିତରୁ ସ୍ନେହ ଧାର ବୁହାଉ ଥିଲ !''

''ଚାଲିଯିବା କଥା !'' ଅର୍ଚ୍ଚନା ଅବାକ ଭାବରେ ପଚାରିଲା, ''କୁଆଡ଼େ ଚାଲିଯିବା କଥା ?''

''ମତେ କାହିଁକି ପଚାରୁଛୁ ଲୋ ? ପଚାର ତୋ ଗୌରୀ ଦି'କୁ। ପଚାର ତୋ ପ୍ରସନ୍ନ ଦା'କୁ। ସେମାନେ ତ ଖବର ଶୁଣେଇ ଦେଇ ମୋ ଛାତି ଉପରେ ପାହାଡ଼ ଲଦି ଦେଇ ସାରିଛନ୍ତି। ଏବେ ପଚାରୁନୁ ତାଙ୍କୁ, ପଚାର।'' ଚମ୍ପା ଆଖି ଲୁହ ଲୁଚାଇବାକୁ ଘର ଭିତରକୁ ପଶିଗଲେ।

ଅର୍ଚ୍ଚନା ତୀକ୍ଷ୍ଣ ଭାବରେ ପଚାରିଲା, ''ପିସୀମା' ଏସବୁ କ'ଣ କହୁଛନ୍ତି ଗୌରୀ ଦି ? ଯିବା କଥା କ'ଣ ?''

ମୁହଁ ଶୁଖେଇ ଦେଇ ଗୌରୀ କହିଲା, ''ସେୟା ତ ହେଲା। କ'ଣ ଆଉ କରାଯିବ। ୟାଙ୍କର ଚାକିରି ହେଇଛି ବନାରସରେ।''

''ବନାରସ !! କ'ଣ କହୁଛ ଗୌରୀ ଦି' ?''

ଗୌରୀ କିଛି କହିଲା ନାହିଁ।

ଅର୍ଚ୍ଚନା ବିବ୍ରତ ଭାବରେ କହି ପକେଇଲା, ''ତୁମେମାନେ ବନାରସ ଚାଲିଗଲେ ମୁଁ କ'ଣ କରିବି ? ମୋର କ'ଣ ହେବ ? ନା ନା, ଗୌରୀ ଦି, ତୁମେମାନେ ଯଦି ବନାରସ ଚାଲିଯାଅ, ତେବେ ମୁଁ ବି ତୁମ ସାଙ୍ଗରେ ଯିବି। ଚୁଲିକୁ ଯାଉ ମୋର ଏଠିକା ଚାକିରି।''

ଫରିଦ୍‌ପୁର ଛାଡ଼ିବା ବେଳେ ଗୌରୀ ଯେମିତି ଖୁସିରେ ଗଦଗଦ ହୋଇ ଯାଇ କହି ପକେଇଥିଲା, 'ତୁ ଯିବୁ ଆମ ସାଙ୍ଗରେ ? ସତରେ ଯିବୁ ଅର୍ଚ୍ଚନା ?' ସେମିତି କିଛି ଶୁଣିବ ବୋଲି ବୋଧହୁଏ ଅର୍ଚ୍ଚନା ମନ ଭିତରେ ଆଶା ରଖିଥିଲା । କିନ୍ତୁ ଗୌରୀ କିଛି ନ କହି ଚୁପ୍ ହୋଇ ରହିଲା । ପ୍ରସନ୍ନ ମଧ ଆଖି ତଳକୁ କରି ନେଲା ।

''ଓ, ତୁମେମାନେ ମତେ ସାଙ୍ଗରେ ନେବାକୁ ଚାହୁଁନ ! ହଁ, ଗଳଗ୍ରହ ହୋଇ ରହିଛି ଯେତେବେଳେ...'' ଅର୍ଚ୍ଚନା ଆଖିରେ ଲୁହ ଟଳମଳ କରିଲା ।

''ନା ଲୋ ଅର୍ଚ୍ଚନା, ସେକଥା ନୁହଁ ।'' ଅର୍ଚ୍ଚନାର ଦୁଇ ହାତ ଧରି ନେଇ ନରମ ସ୍ୱରରେ ଗୌରୀ କହିଲା, ''ତୋ ଦାଦାଙ୍କର ଚାକିରି ହୋଇଛି ସିନା, କିନ୍ତୁ ଥରେ ସେଠିକି ଯାଇ ନ ଦେଖିବା ପରେ କ'ଣ କିଛି କହି ହେବ ? ଚାକିରିଟା ଭଲ କି ମନ୍ଦ, ତା' ଏପର୍ଯ୍ୟନ୍ତ ଜଣା ନାହିଁ । ଧର, ଯଦି କୌଣସି କାରଣରୁ ସେଠିକା ଚାକିରି ତାଙ୍କୁ ସୁହାଇଲା ନାହିଁ, ଚାକିରି ଛାଡ଼ିବା ଅବସ୍ଥାରେ ପହଞ୍ଚିବାକୁ ହେଲା, ତା'ହେଲେ ତତେ ଆମେ କି ଅବସ୍ଥାରେ ପକେଇ ଦେବୁ କହିଲୁ ।''

''ମୁଁ ସେଠି ଚାକିରି ଖୋଜି ନେବି ।''

''ବନାରସ ଅବଙ୍ଗାଳୀ ରାଜ୍ୟ । ତତେ ସେଠି ସହଜେ ଚାକିରି ଦେବ କିଏ ?''

''ତା'ହେଲେ ମୁଁ କ'ଣ କରିବି ?'' ବିକଳ ହୋଇ ଅର୍ଚ୍ଚନା କାନ୍ଦି ପକେଇଲା ।

ହଠାତ୍ ଝଡ଼ ଭଳି ଭିତରୁ ବାହାରି ଆସିଲେ ଚମ୍ପା ପିସୀମା' । ଅର୍ଚ୍ଚନାର ଦୁଇ କାନ୍ଧକୁ ହଲେଇ ଦେଇ ଚାପା ସ୍ୱରରେ କହି ଉଠିଲେ, ''ତତେ ମୁଁ କହି ଦେଉଛି ଲୋ ଲୀଳାବତୀ । ତତେ ମୁଁ ଏଠୁ ଛାଡ଼ିବିନି । ଯିଏ ଯୁଆଡ଼େ ଯିବା କଥା ଯାଆନ୍ତୁ । ତୁ କିନ୍ତୁ ଏଠୁ ଯାଇ ପାରିବୁ ନାହିଁ ।''

ଶେଷରେ ସେଇଠି ରହିଗଲା ଅର୍ଚ୍ଚନା । ଚମ୍ପା ପିସୀମା'ଙ୍କର ଝିଅ ଭଳି ସେ ରହିଗଲା । ମାସୀମା'ଙ୍କୁ ନେଇ ଗୌରୀ ଭଉଣୀ ବନାରସ ଚାଲିଯିବା ପରେ

ଦିନାକେତେ ଭାରି ଖରାପ ଲାଗିଥିଲା ଅର୍ଚ୍ଚନାକୁ। ପିଲାଙ୍କ ସାଙ୍ଗରେ ବଡ଼ ବେଶି ଆତ୍ମୀୟତା ହୋଇ ଯାଇଥିଲା। ବିଶେଷ କରି ଗୌରୀର ବଡ଼ ଝିଅ ମୌସୁମୀ ସାଙ୍ଗରେ। "ମାସୀ, ମାସୀ" କହି ସେ ଅର୍ଚ୍ଚନାକୁ ଦଣ୍ଡେ ଛାଡୁ ନ ଥିଲା ତା' ପାଖରୁ। ଏବେ ନୂଆ ଜାଗାକୁ ଯାଇ ତା' ମାଉସୀକୁ ଖୋଜି ହେଉ ନ ଥିବ ତ? କଥାଟି ମନକୁ ଆସିବା କ୍ଷଣି ତା' ମନ ଗୁଡ଼େଇ ତୁଡ଼େଇ ହୋଇ ଯାଉଥିଲା। ଇଚ୍ଛା ହେଉଥିଲା ସବୁ ଛାଡ଼ିଛୁଡ଼ି ଦେଇ ଚାଲିଯିବ ବନାରସ। କିନ୍ତୁ ତା' କ'ଣ ହୁଏ? ଦୀର୍ଘ ନିଶ୍ୱାସ ନେଇ ନିଜକୁ ବିଭିନ୍ନ କାମ ଭିତରେ ବୁଡ଼େଇ ରଖେ ଅର୍ଚ୍ଚନା।

ଧୀରେ ଧୀରେ ସବୁ ଠିକ୍ ହୋଇଗଲା। ସ୍କୁଲ୍‌ର ପିଲାଙ୍କ ମେଳରେ ରହି ଅର୍ଚ୍ଚନାର ମନଟା ସହଜ ହେଇ ଆସୁଥିଲା। ଆଗ ଭଳି ସେ ଆଉ ଝୁରି ହେଉ ନ ଥିଲା ମୌସୁମୀକୁ। ରାତିରେ ଶୋଇବା ବେଳେ ବାରମ୍ବାର ଆଖିରୁ ଲୁହ ପୋଛୁ ନ ଥିଲା।

ଅର୍ଚ୍ଚନା ମନ ସହଜ ହେବା ପଛରେ ଆଉ ଗୋଟାଏ ଜିନିଷର ବଡ଼ ଅବଦାନ ଥିଲା। ସେଇଟା ହେଲା ଉମାକାନ୍ତ ଘୋଷାଲଙ୍କର ଲାଇବ୍ରେରୀ। ଏତେ ବହି!! ସମୟ ପାଇଲେ ବହିର ପୃଥିବୀରେ ନିଜକୁ ହଜାଇ ଦେଉଥିଲା ଅର୍ଚ୍ଚନା। ଭଲ ଭଲ ଗପ, କବିତା ବହି ପଢ଼ିବାର ଆଗ୍ରହକୁ ପାଟ୍ନାରେ ଥିବା ବେଳେ ତାକୁ ଚାପି ଦେବାକୁ ହୋଇଥିଲା। ଅନିରୁଦ୍ଧର ଭୀଷଣ ଆପତ୍ତିର ବିରୋଧାଚରଣ ସେ କରି ନ ଥିଲା। ହେଲେ ଏଠି ଆସି ଯେମିତି କୁବେରର ଗନ୍ତାଘର ଖୋଲି ହୋଇ ଯାଇଥିଲା ତା' ସାମ୍ନାରେ।

ଗୌରୀ ଭରିକା ଚାଲିଯିବା ପରେ ସେଇ ବହି ହିଁ ହୋଇଗଲା ତା'ର ଜୀବନ। ରାତି ଡେରି ଯାଏଁ ସେ ଲାଇବ୍ରେରୀରେ ବସି ରହୁଥିଲା। ବହିରେ ମୁହଁ ମାଡ଼ି ପଡ଼ି ରହୁଥିଲା। ବେଳେବେଳେ ତା' ସାଙ୍ଗରେ ଆସି ବିଭିନ୍ନ ବିଷୟରେ ଆଲୋଚନା କରୁଥିଲେ ଦୀପେନ୍ କାକୁ ବା ଉମାକାନ୍ତ ପିସେମସାଏ। ଉମାକାନ୍ତ ଘୋଷାଲ ବଙ୍ଗଳା ସାହିତ୍ୟର ବିରାଟ ଭକ୍ତ। କିନ୍ତୁ ସେ ମଧ-ଯୁଗର ମାନସିକତା ନେଇ ବଙ୍ଗଳା ସାହିତ୍ୟର ତର୍ଜମା କରି ବସନ୍ତି। କହିବା ବାହୁଲ୍ୟ, ତାଙ୍କ ରକ୍ଷଣଶୀଳ ମନୋଭାବ ସହିତ ଦୀପେନ୍‌ଙ୍କ ଚିନ୍ତାଧାରା ଆଦୌ ଖାପ ଖାଉ ନ ଥିଲା।

ଦୀପେନ୍ କେବେହେଲେ ବିଦେଶ ଯାଇନାହାନ୍ତି। କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କରେ

କ'ଣ ହେଉଛି ନ ହେଉଛି, ସେସବୁ ତାଙ୍କ ନଖ ଦର୍ପଣରେ। ତାଙ୍କ କଥାରେ ସବୁବେଳେ ପ୍ରକାଶ ପାଏ ନୂଆ ପୃଥିବୀର ସମ୍ବାଦ। ମାନସିକ ସ୍ତରରେ ସେ ସବୁବେଳେ ଘୂରି ବୁଲୁଥାଆନ୍ତି ଲଣ୍ଡନ, ପ୍ୟାରିସ୍‌ରେ। ସେମାନଙ୍କ ସଭ୍ୟତାରୁ କଥା ଛାଣି ଆଣି ସେସବୁର ଉଦାହରଣ ଥୋଇ ଦିଅନ୍ତି ଅନ୍ୟମାନଙ୍କ ସାମ୍ନାରେ।

ଏଇ ଜିନିଷଟି ଜମା ପସନ୍ଦ କରନ୍ତି ନାହିଁ ଉମାକାନ୍ତ। ଇଂରେଜ୍ ଅଧୀନରେ ଚାକିରି କରୁଥିଲେ ବୋଲି ସେମାନଙ୍କର ଚାଲିଚଳଣକୁ ଯେ ଅନ୍ଧ ଭାବରେ ଗ୍ରହଣ କରିବାକୁ ହେବ, ଏମିତିଆ ଗୋଟାଏ ଉଦ୍ଭଟ ଉପଦେଶ ସେ ଜମା ମାନି ନେଇ ପାରୁ ନ ଥିଲେ।

ଦିନେ ଏଇ କଥା ନେଇ ଜୋର ଯୁକ୍ତି ଲାଗିଗଲା ଶଳା ଭିଣେଇଙ୍କ ଭିତରେ। ଅର୍ଚ୍ଚନା ଶ୍ରୋତାଟିଏ ହୋଇ ରହି ଯାଇଥିଲା କେବଳ। କିନ୍ତୁ ଏମିତିରେ ଦେଖିଲେ ତର୍କର ଅବତାରଣା ହେଇଥିଲା ତାରି ଯୋଗୁଁ ବା କହିବାକୁ ଗଲେ ସେ ପଢୁଥିବା କବିତାଟିରୁ ହିଁ ଯୁକ୍ତିର ଆରମ୍ଭ।

ଅର୍ଚ୍ଚନା ସେଦିନ ପଢୁଥିଲା ଜୀବନାନନ୍ଦ ଦାସ୍‌ଙ୍କର କବିତାଟିଏ। କବିତାଟିରେ ବର୍ଣ୍ଣିତ ଉପମା ତାକୁ ଏତେ ବେଶି ବିମୋହିତ କରି ଦେଇଥିଲା ଯେ ସେ ନିଜ ଅଜାଣତରେ କେତେବେଳେ ଆବୃତ୍ତି କରିବା ଆରମ୍ଭ କରି ଦେଇଥିଲା, ତା' ଠିକ୍ ସେ ଜାଣେନାହିଁ।

ଅର୍ଚ୍ଚନାର କଣ୍ଠ ସ୍ୱର ଖୁବ୍ ସୁନ୍ଦର। ତା'ଠୁଁ ସୁନ୍ଦର ତା'ର ଆବୃତ୍ତି କରିବାର ଭଙ୍ଗୀଟି। ଗାଲରେ ହାତ ଦେଇ ଏକା ଦୃଷ୍ଟିରେ ତା' ମୁହଁକୁ ଚାହିଁ ରହିଥିଲେ ଉମାକାନ୍ତ ଓ ଦୀପେନ୍।

କବିତା ଆବୃତ୍ତି ସରିବା କ୍ଷଣି ଦୁଇଜଣ ଯାକ ପ୍ରଶଂସା କରିବା ଆରମ୍ଭ କରି ଦେଲେ ଅର୍ଚ୍ଚନାକୁ। ତେବେ ଉମାକାନ୍ତଙ୍କ ପ୍ରଶଂସା ଜୀବନାନନ୍ଦଙ୍କ କବିତା ପାଇଁ। ଆଉ ଦୀପେନ୍‌ଙ୍କର ପ୍ରଶଂସା ଅର୍ଚ୍ଚନାର ଆବୃତ୍ତି ପ୍ରତିଭା ନେଇ।

ଉମାକାନ୍ତ ମୁଣ୍ଡ ହଲେଇ ହଲେଇ କହିଲେ, ''ସବୁତକ ସାର୍ଟିଫିକେଟ୍ ଅର୍ଚ୍ଚନାକୁ ଦେଲେ ଚଳିବ ନାହିଁ, ଶଳା ବାବୁ। କବିତାଟି କାହାର ତା' ବି ତ ଦେଖିବାକୁ ହେବ। ଜୀବନାନନ୍ଦଙ୍କ କବିତା... ଆହା ହା..., ତୁଳନା ହୁଏ ନାହିଁ।''

''ବାଜେ କଥା। ଇଂରେଜୀ ସାହିତ୍ୟରେ ଏଇମିତି କେତେ ରୋମାଣ୍ଟିକ୍ କବି ଅଛନ୍ତି। ସେମାନଙ୍କର କବିତା ସାଙ୍ଗରେ ଯଦି ଏଇ ଜୀବନାନନ୍ଦଙ୍କୁ ତୁଳନା

କରାଯାଏ...''

ସାମାନ୍ୟ ଚିଡ଼ିଯାଇ ଉମାକାନ୍ତ କହି ଉଠିଲେ, ''ତୁମେ ସବୁବେଳେ ଗୋରାମାନଙ୍କର ପ୍ରଶସ୍ତି ଗାଇ ହୁଅ କାହିଁକି, ଦୀପେନ୍?''

ହସିଦେଇ ଦୀପେନ୍ ଉତ୍ତର ଦେଇଥିଲେ, ''ଏଇଟା ଆପଣଙ୍କର ଭୁଲ ଧାରଣା, ଜ୍ୱାଁଇ ବାବୁ। ମୁଁ ଗୋରାମାନଙ୍କର ପ୍ରଶସ୍ତି ଗାଏ ନାହିଁ। ପାଶ୍ଚାତ୍ୟ ସଭ୍ୟତାର ଜଣେ ମୁଗ୍ଧ ପ୍ରଶଂସକ ମୁଁ।''

''ହେଲାନି ସେଇ ଏକା କଥା?''

''ନା ଏକା କଥା ନୁହଁ। ଆମ ଦେଶରେ ଆସି ଯେଉଁ କେଇ ଗଣ୍ଡା ଇଂରେଜ ହାକିମାତି ଚଳେଇଛନ୍ତି, ସେମାନେ ତ ଆଉ ପାଶ୍ଚାତ୍ୟ ଜଗତର ପ୍ରତିନିଧି ନୁହନ୍ତି। ଆପଣ ଭାବୁଛନ୍ତି ସେମାନେ ତାଙ୍କ ନିଜ ଦେଶରେ ରହୁଥିବା ବେଳେ ଏଇଭଳି ନାକ ଉଞ୍ଚା କରି କଥା କହୁଥିବେ? ଏଇଭଳି ହେୟ ଦୃଷ୍ଟିରେ ଦେଖୁଥିବେ ସେମାନଙ୍କର ପାଖ ପଡ଼ୋଶୀକୁ?''

''କେଜାଣି ବାବା। ବିଦେଶ ତ ଯାଇନି, ଜାଣିବି କେମିତି?''

''ଏସବୁ ଜାଣିବା ପାଇଁ ବିଦେଶ ଯିବାର ଦରକାର ହୁଏ ନାହିଁ, ଜ୍ୱାଁଇ ବାବୁ। ବିଦେଶୀ ସାହିତ୍ୟ ପଢ଼ିଲେ ହିଁ ସେମାନଙ୍କର ଦୃଷ୍ଟିଭଙ୍ଗୀ ବୁଝି ହେଇଯାଏ। ଜେମ୍ସ ଜଏସ୍‌ଙ୍କ 'ୟୁଲିସେସ୍' ପଢ଼ିଛନ୍ତି? ପଢ଼ିଛନ୍ତି ଡି. ଏଚ୍. ଲରେନ୍ସଙ୍କର 'ଲେଡ଼ି ଚାଟର୍‌ଲିଜ୍ ଲଭର୍'?''

ବୋକା ବୋକା ଆଖିରେ ଉମାକାନ୍ତ ଚାହିଁ ରହିଲେ। ପଢ଼ିବା ଦୂରେ ଥାଉ, ସେ ଏସବୁ ବହିର ନାଁ ହିଁ ଶୁଣି ନାହାନ୍ତି।

ଦୀପେନ୍ ବୋଧହୁଏ ବୁଝି ପାରିଲେ। କହିଲେ, ''ଏସବୁ ବହି ପାଇବା ଅବଶ୍ୟ ସହଜ ନୁହଁ। ତା'ଛଡ଼ା ଏମାନେ ବହୁ ବିବାଦୀୟ ଔପନ୍ୟାସିକ। କିନ୍ତୁ ଜନପ୍ରିୟ କବି ଲେଖକ କମ୍ ନାହାନ୍ତି ଇଂରାଜୀ ସାହିତ୍ୟ ଜଗତରେ। ସେକ୍ସପିଅର୍‌ଙ୍କ ଭାଷା ଦେଖନ୍ତୁ। ଶେଲିଙ୍କ ଲେଖା ଶୈଳୀ ଦେଖନ୍ତୁ।''

ଉମାକାନ୍ତଙ୍କ ମୁହଁ ସାମାନ୍ୟ ସହଜ ହେଲା। ଅନ୍ତତଃ ଏଇ ଦୁଇ ଜଣଙ୍କ ନାଁ ତାଙ୍କର ଅଜଣା ନୁହଁ।

''ସେମାନଙ୍କର ଲେଖା ପଢ଼ିଥିବେ ନିଶ୍ଚୟ, ଜ୍ୱାଁଇ ବାବୁ।''

''ନା ଭାଇ, ଇଂଲିଶ ଲେଖା ପଢ଼ିବାର ସୌଭାଗ୍ୟ ବା ଆଗ୍ରହ ମୋର

ନାହିଁ। ମୁଁ ଆମ ବଙ୍ଗଳା ଲେଖକଙ୍କ ରଚନା ପଢ଼ିଛି ଏବଂ ପଢ଼ି ଖୁସୀ ହେଉଛି।''

''ବଙ୍ଗଳା??'' ରହି ରହି ଦୀପେନ୍ କହିଲେ, ''ବଙ୍ଗଳା ସାହିତ୍ୟ ମାନେ ଏଇ ରବୀନ୍ଦ୍ରନାଥ, ତାରାଶଙ୍କର, ଜୀବନାନନ୍ଦ ତ?''

''ଖାଲି ଏମାନେ? ଆହୁରି କେତେ କିଏ ଅଛନ୍ତି। ବଙ୍କିମଚନ୍ଦ୍ରଙ୍କଠୁଁ ଆରମ୍ଭ କରି ବିଭୂତି ଭୂଷଣ ପର୍ଯ୍ୟନ୍ତ...''

''ହୁଁ...'' ଦୀପେନ୍ ଭାବି ହେବା ଭଳି କହିଲେ, ''ଏମିତିରେ ଦେଖିଲେ ବଙ୍ଗଳା ସାହିତ୍ୟ ନିହାତି ମନ୍ଦ ନୁହଁ। କିନ୍ତୁ ଅଧିକାଂଶ ଲେଖା ବଡ଼ ପୁରୁଣା କାଳିଆ। ... ପୃଥିବୀରେ ଏତେ ପରିବର୍ତ୍ତନ ହୋଇଗଲା। ଅଥଚ ଏତେ ସବୁ ପରେ ବି ବଙ୍ଗଳା ଲେଖକଙ୍କ ଲେଖନୀରେ ପରିବର୍ତ୍ତନ ହେଲାନି।''

''ଦୀପେନ୍, ପୃଥିବୀରେ ସିନା ପରିବର୍ତ୍ତନ ହୋଇଛି ହଜାର ରକମର। କିନ୍ତୁ ମଣିଷ କ'ଣ ବଦଳି ଯାଇ ପାରିଛି? ମଣିଷ ଭିତରର ଭାବ, ଆବେଗ କ'ଣ ହଜି ଯାଇ ପାରିଛି? ସେ ଏବେ ବି ସେଇ ଆଗ ଭଳି। ଏବେ ବି ତା' ଭିତରେ ପ୍ରେମ, ଭଲ ପାଇବା, ଈର୍ଷା, ଦ୍ୱେଷ ଭରି ରହିଛି। ଏବେ ବି ତା' ଦୁନିଆରେ ଶୋକ ଉଲ୍ଲାସ, ହସ କାନ୍ଦ, ମିଳନ ବିଚ୍ଛେଦ ରହିଛି ଆଗ ଭଳି।''

''ତା' ହୋଇ ପାରେ।'' ମାଡ଼ି ବସି ଦୀପେନ୍ କହିଲେ, ''ତଥାପି ମୋର ମନେ ହୁଏ ଯୁଗ ସହିତ ତାଳ ଦେଇ ମଣିଷ ଚାଲିବା ଉଚିତ୍।''

''ଯୁଗ ସହିତ ତାଳ ଦେଇ ଯେ ବଙ୍ଗଳା ସାହିତ୍ୟିକ ଚାଲୁ ନାହାନ୍ତି, ସେକଥା ତୁମେ ଅନ୍ତତଃ କହି ପାରିବନି, ଦୀପେନ୍। ବଙ୍ଗଳା ଭାଷାରେ କ'ଣ ଯୁଗାନ୍ତକାରୀ ଗଳ୍ପ ଉପନ୍ୟାସ ନାହିଁ?''

''ଆପଣ କାହା କଥା କହୁଛନ୍ତି?''

''ଏଇ ଧର ଶରତଚନ୍ଦ୍ରଙ୍କ କଥା। ସେ ପୁଣି ତାଙ୍କ ଲେଖାରେ ବିଧବା ବିବାହର ଅବତାରଣା କରିଛନ୍ତି, ଭିନ୍ନ ଜାତି ଭିତରେ ବୈବାହିକ ସମ୍ପର୍କ ସୃଷ୍ଟି ହେବାର ଉଦାହରଣ ଦେଇଛନ୍ତି।''

''କେତେଟା ଉଦାହରଣ ତ ଦେଇଛନ୍ତି ଶରତଚନ୍ଦ୍ର। କିନ୍ତୁ ନିଜ ଲେଖନୀକୁ ପୂରା ଦମ୍‌ରେ ସେଇ ନୂତନ ଦିଗରେ ଆଗେଇ ନେଇ ପାରି ନାହାନ୍ତି। ସମାଜକୁ ବଦଳେଇ ଦେଇ ପାରି ନାହାନ୍ତି।''

''ଲେଖାର ଜଗତରେ ଯୁଗାନ୍ତକାରୀ ପରିବର୍ତ୍ତନ ହେବା ଏବଂ ବାସ୍ତବ ଜଗତରେ ସେଇମିତି କିଛି କରିବାରେ ଫରକ ଅଛି, ଶଙ୍କା ବାବୁ। ସେଥିପାଇଁ ସମୟ ଲାଗିବ।''

''ସମୟ ଫମୟ ବାଜେ କଥା। ଅସଲରେ ପୂର୍ଣ୍ଣ ପ୍ରାଣରେ ଏସବୁ ପରିବର୍ତ୍ତନକୁ ଲେଖକମାନେ ଗ୍ରହଣ କରି ପାରି ନାହାନ୍ତି। ସେଥିପାଇଁ ସମାଜ ଉପରେ ତା'ର କୌଣସି ଛାପ ପଡ଼ି ପାରି ନାହିଁ। ଯେଉଁ ଶରତଚନ୍ଦ୍ର କେଇଟା ଉପନ୍ୟାସରେ ନୂଆ ମନ୍ତ୍ର ପ୍ରଚାର କରିଛନ୍ତି, ସେଇ ଶରତଚନ୍ଦ୍ରଙ୍କ କଲମରୁ ପୁଣି 'ଦତ୍ତା' ଝରିଛି। 'ପରିଣୀତା' ଝରିଛି। ଏସବୁ ଉପନ୍ୟାସରେ ଅଛି କ'ଣ ? ସେଇ ଚିରାଚରିତ କଥା।''

''ଚିରାଚରିତ କହି ତୁମେ ଏସବୁକୁ ଉପେକ୍ଷା କରି ପାରିବ ନାହିଁ ଦୀପେନ୍।''

''ନା ଜାମାଇ ବାବୁ, ଆପଣ ଯାହା କୁହନ୍ତୁ ପଛକେ ମୁଁ ଜମା ଶରତଚନ୍ଦ୍ରଙ୍କର ଏଇ ଉପନ୍ୟାସଗୁଡ଼ିକୁ ପସନ୍ଦ କରି ପାରେ ନାହିଁ। 'ପରିଣୀତା' କଥା ନିଅନ୍ତୁ। ଲଳିତା ମନରେ ଶେଖର ପ୍ରତି ଅନୁରାଗ ଅଛି, ତା'ମାନେ କ'ଣ ସାରା ଜୀବନ ସେ ତା' ପାଇଁ ଅପେକ୍ଷା କରିଯିବ ? ଜଣେ ସୁପାତ୍ର ତାକୁ ବିବାହ କରିବାକୁ ଚାହୁଁଛି। କିନ୍ତୁ ଲଳିତା ଜମା ରାଜି ହେଉନି। ହୋଇ ପାରୁନି। ମାମୁ ଝିଅ ଭଉଣୀର ବାହାଘର ତା' ସାଙ୍ଗରେ କରେଇ ଦେଉଛି। ... ଏସବୁ ଲେଖକର କଲମରେ ଅଙ୍କା ଭାବବିହ୍ୱଳିତ କଥା ! ବାସ୍ତବ ଜୀବନରେ ଏମିତି ହୁଏ ନାହିଁ।''

ଏତେ ସମୟ ଶ୍ରୋତାଟିଏ ହେଇ କେବଳ ବସି ରହିଥିଲା ଅର୍ଚ୍ଚନା। ଦୁଇ ଜଣଙ୍କର ଯୁକ୍ତି ଉପଭୋଗ କରୁଥିଲା। କିନ୍ତୁ ଦୀପେନ୍‌ଙ୍କର ଶେଷ କଥାପଦକ ଶୁଣି ଆଉ ନିଜକୁ ନିୟନ୍ତ୍ରଣ କରି ପାରିଲା ନାହିଁ।

ସେ କହି ଉଠିଲା, ''ଅସମ୍ଭବ କାହିଁକି, ଦୀପେନ୍ ଭାଇ ? ମୁଁ ଝିଅଟିଏ। ମୁଁ ଲଳିତାର ମାନସିକତା ଭଲ କରି ବୁଝେ। ସେ ଶେଖର ପାଇଁ ଅପେକ୍ଷା କରି ରହିବାଟା ଆଦୌ ଅବାସ୍ତବ ନୁହଁ। ଆବଶ୍ୟକ ହୋଇଥିଲେ ସେ ତା' ପାଇଁ ସାରା ଜୀବନ ଅପେକ୍ଷା କରି ଯାଇଥାଆନ୍ତା।''

''ତୁମେ କହୁଛ ଜଣେ ଜଣଙ୍କ ପାଇଁ ସାରା ଜୀବନ ଅପେକ୍ଷା କରି ରହିଯିବ। ହଉ ହେଲା, ଏବେ ଜଣେ ସେମିତି କଲା। କିନ୍ତୁ ତୁମେ କ'ଣ ଭାବୁଛ ସେଇ ସ୍ନେହ, ସେଇ ଅନୁରାଗ ବର୍ଷ ବର୍ଷ ପରେ ମଧ ଆଗ ଭଳି

ରହିପାରେ ?''

''ସେକଥା ମୁଁ ଜାଣିନି। ତେବେ ଗୋଟାଏ କଥା ନିଶ୍ଚିତ ଭାବରେ ସତ। ଏମିତି ବହୁତ ଝିଅ ଅଛନ୍ତି ଯେଉଁମାନେ କି ନିଜ ମନର ମଣିଷକୁ ନ ପାଇଲେ ସାରା ଜୀବନ ଏକା ରହିଯିବେ ନିର୍ବିବାଦରେ, କିନ୍ତୁ ନିଜକୁ ଅନ୍ୟ କାହା ପାଖରେ ସମର୍ପଣ କରି ଦେଇ ପାରିବେ ନାହିଁ...'' ଶେଷ ବେଳକୁ ତା'ର ଗଳା ଧରି ଆସିଲା।

ଅର୍ଚ୍ଚନା ଶରତଚନ୍ଦ୍ରଙ୍କ ଉପନ୍ୟାସର ନାୟିକା 'ଲଳିତା' କଥା କହୁଛି, ନା ନିଜ କଥା ?

ହଠାତ୍ ଉଠିଗଲା ସେ। ''ବହୁତ ଡେରି ହେଲାଣି। ମୁଁ ଯାଉଛି ଶୋଇବାକୁ।'' ଆଉ ପଦଟିଏ କଥା ନ କହି କାହା ମୁହଁକୁ ନ ଚାହିଁ ସେ ଉଠି ଚାଲିଗଲା ତଳକୁ।

ଅର୍ଚ୍ଚନା ତଳକୁ ଚାଲି ଯିବା ପରେ ପରେ କେଉଁଠି ଯେମିତି ଛନ୍ଦ ପତନ ହେଇଗଲା। ଆଲୋଚନାକୁ ଆଉ ନ ଆଗେଇ ଉମାକାନ୍ତ ମଧ ଉଠିଲେ। ବୟସ ହେଇଯିବା ପରେ ବେଶୀ ରାତି ଯାଏ ଚେଇଁ ରହିଲେ ପର ଦିନକୁ ଦେହ ଅସୁସ୍ଥ ହେଇଯାଉଛି। ଆଜି ଦୀପେନ୍ ସାଙ୍ଗରେ ଯୁକ୍ତି ଆଳାପ ଚାଲିଥିଲା ବୋଲି ସେ ସମୟ ଜାଣି ପାରି ନ ଥିଲେ, ନହେଲେ ତ ଏତେ ବେଳକୁ ଘଣ୍ଟାଏ ନିଦ ହୋଇ ସାରିଥାଆନ୍ତା ତାଙ୍କର।

ଦୀପେନ୍ କିନ୍ତୁ ଅବାକ ହୋଇ ସେଇ ଗୋଟାଏ ଜାଗାରେ ବସି ରହିଥିଲେ ଗୁଡ଼ାଏ ସମୟ। ବସି ବସି କେବଳ ମନେ ମନେ ଅର୍ଚ୍ଚନାର କଥାକୁ ଭାବି ହେଉଥିଲେ। ତାଙ୍କୁ ବହୁତ ପ୍ରଶ୍ନର ଉତ୍ତର ହଠାତ୍ କରି ମିଳିଯାଇଥିଲା।

ପୁତୁରାବୋହୂ ଗୌରୀ ବହୁତ ଦିନ ତଳେ ଅର୍ଚ୍ଚନାକୁ ସ୍କୁଲ୍‌ରେ ଚାକିରି ଦେବା କଥା କହିଥିଲା। କିନ୍ତୁ କାହିଁକି କେଜାଣି ସେତେବେଳେ ସେ ଚାକିରି କରିବାକୁ ଆସି ପାରିଲା ନାହିଁ। ଗୌରୀ କହିଥିଲା ଯେ ଝିଅଟିକୁ ତା' ଘରେ ଛାଡ଼ିଲେ ନାହିଁ ଚାକିରି କରିବାକୁ। ତା'ର ପୁଣି ବର୍ଷେ ଖଣ୍ଡେ ପରେ ସେଇ ଝିଅଟି ନିଜେ ଗୌରୀକୁ ଚିଠି ଲେଖିଲା ଚାକିରି ପାଇଁ। ମନେ ମନେ ଆଶ୍ଚର୍ଯ୍ୟ ହେଲେ ବି ଦୀପେନ୍ ଏ ବିଷୟରେ ବେଶୀ ଭାବି ନ ଥିଲେ। ବଙ୍ଗାଳୀ ପରିବାର। ନିଶ୍ଚୟ ବହୁତ କଷ୍ଟରେ ରାଜି ହୋଇଛନ୍ତି। ବୋଧହୁଏ ଝିଅଟି ଦେଖିବାକୁ ଭଲ

ନୁହଁ, ତା' ବାହାଘର ହୋଇ ପାରୁନି, ସେଥିପାଇଁ ନିରୁପାୟ ହୋଇ ତାକୁ ଚାକିରି ପାଇଁ ପଠେଇବାକୁ ତା' ପରିବାର ଲୋକେ ରାଜି ହୋଇଛନ୍ତି।

କିନ୍ତୁ ଯେଉଁଦିନ ସେମାନଙ୍କ ଘରେ ଆସି ପହଞ୍ଚିଥିଲା ଅର୍ଚ୍ଚନା, ସେଦିନ ସେ ମନେ ମନେ ଅବାକ ହୋଇ ଯାଇଥିଲେ। ଏଭଳି ସୁନ୍ଦରୀ ଝିଅ ! ତାକୁ ତା' ଘର ଲୋକେ ଏତେ ଦୂରକୁ ଛାଡ଼ିଲେ କେମିତି ? ଘରର ଅବସ୍ଥା କ'ଣ ଅତି ଦୟନୀୟ ?

ବୋଧହୁଏ ସେୟା। ବୋଧହୁଏ ବାହା ଦେବାର ଅବସ୍ଥା ଝିଅଟିର ପରିବାରର ନାହିଁ। ଯୌତୁକ ସଜାଡ଼ିବାର କ୍ଷମତା ନାହିଁ। ହେଲେ, ଏଇଭଳି ଝିଅ ପାଇଁ କ'ଣ ସତରେ ଯାନି ଯୌତୁକ ଦରକାର ହୁଏ ? ଲୋକେ ତ ଆନନ୍ଦରେ ବରଣ କରି ନେଇ ଯିବେ ଏଭଳି ଝିଅଟିଏକୁ। ନିଠେଇ ନିଠେଇ ଦୀପେନ୍ ଝିଅଟିକୁ ଦେଖିଥିଲେ। ତା' ଚେହେରାରେ କେମିତି ଝାଉଁଳି ପଡ଼ିବା ଭାବ ଫୁଟି ଉଠୁଥିଲା, କିନ୍ତୁ ସେସବୁ ଯେମିତି ତା' ସୌନ୍ଦର୍ଯ୍ୟକୁ ଆହୁରି ଅଧିକ ବଢ଼େଇ ଦେଉଥିଲା।

ଏଭଳି ଝିଅଟିକୁ ଯାହା ନିଜ ଆଖି ସାମ୍ନାରୁ ଦୂରେଇ ଦେଇ ପାରିଲେ ତା' ପରିବାରର ଲୋକମାନେ !

ସ୍କୁଲରେ ଅର୍ଚ୍ଚନା ପଢ଼େଇବା ବେଳେ ଫରିଦ୍‌ପୁରରେ ବେଶ୍ କେତେ ଜଣଙ୍କ ଆଖିରେ ପଡ଼ିଥିଲା ତା'ର ରୂପ ଓ ଶାନ୍ତ ସ୍ୱଭାବ। ସେତେବେଳେ ସେମାନଙ୍କ ଭିତରୁ କେହି କେହି ଆସି ସେମାନଙ୍କର ଭାଇ, ପୁଅ ବା ପୁତୁରାର ବାହାଘର ପ୍ରସ୍ତାବ ଅର୍ଚ୍ଚନା ସାଙ୍ଗରେ ପକେଇବା କଥା ଉଠେଇଥିଲେ। ଗୌରୀଠୁଁ ସେସବୁ ଖବର ଶୁଣି କିନ୍ତୁ ଭୀଷଣ ବିବ୍ରତ ହୋଇ ଉଠୁଥିଲା ଅର୍ଚ୍ଚନା। ଦିନେ ସ୍ପଷ୍ଟ ଭାବରେ ସେ ଜଣେଇ ଦେଇଥିଲା ଯେ ତା' ବାହାଘର ବିଷୟରେ ଯେମିତି କୌଣସି ଆଲୋଚନା ନ ହୁଏ। ସେ ଏବେ ବାହା ସାହା ହେବାର ପ୍ରଶ୍ନ ହିଁ ନାହିଁ।

ସେତେବେଳେ ଅବାକ ହୋଇଥିଲେ ଦୀପେନ୍। କିନ୍ତୁ କାରଣ ଖୋଜିବାର ଓ ବିଶେଷ ଚିନ୍ତା କରିବାର ସମୟ ବା ପ୍ରବୃତ୍ତି ତାଙ୍କର ନ ଥିଲା।

ତା'ପରେ ସେମାନେ ଫରିଦ୍‌ପୁର ଛାଡ଼ି କଲିକତା ଆସିବାର ହେଲା। ସ୍କୁଲ୍ ବିକ୍ରି ହୋଇ ଯିବା ପରେ ଅର୍ଚ୍ଚନାକୁ ପାବ୍‌ନା ପଠେଇ ଦେବାର ପ୍ରସ୍ତାବ ନିଜେ

ଦୀପେନ୍ ଦେଇଥିଲେ ପ୍ରସନ୍ନକୁ। କିନ୍ତୁ ପ୍ରସନ୍ନଠୁଁ କଥାଟି ଶୁଣି ଆଦୌ ରାଜି ହେଲା ନାହିଁ ଅର୍ଚ୍ଚନା ଏବଂ ସେମାନଙ୍କ ସାଙ୍ଗରେ କଲିକତା ଚାଲି ଯିବାକୁ ଚାହିଁଲା।

ପୁତୁରାବୋହୂ ଗୌରୀଠୁଁ କଥାଟି ଶୁଣି ଦୀପେନ୍ ପୁଣି ଥରେ ଅବାକ ହୋଇଥିଲେ। ସେତେବେଳ ତାଙ୍କର ମନେ ହେଇଥିଲା ଯେ ଏଥିରେ ନିଶ୍ଚୟ କିଛି ମାନ ଅଭିମାନର କଥା ରହିଛି। ଘର ମଣିଷଙ୍କ ସାଙ୍ଗରେ ଝଗଡ଼ାଝାଟି କରି ନିଶ୍ଚୟ ଆସିଛି ଝିଅଟି। ଏବେ ଯଦି ସେ କଲିକତା ଯିବା ପାଇଁ ଚାହୁଁଛି ଚାଲୁ। ସେ ତେଣୁ ଆଶ୍ୱାସନା ଦେଇଥିଲେ ଯେ କଲିକତା ଆସିବା ପରେ ତା'ର ଚାକିରି ପାଇଁ ଚେଷ୍ଟା କରିବେ।

କରିଥିଲେ ବି। ନିଜ ଚାକିରି ହୋଇଯିବା ପରେ ପରେ ଅର୍ଚ୍ଚନାର ଚାକିରି ହୋଇ ଯାଇଥିଲା ଖୁବ୍ ଶୀଘ୍ର। ତାଙ୍କରି ସାଙ୍ଗରେ ସେ ସ୍କୁଲ୍‌କୁ ଯିବା ଆସିବା କରୁଥିଲା।

ଅର୍ଚ୍ଚନା ସାଙ୍ଗରେ ସ୍କୁଲ ଯିବା ଆସିବା କରିବା ବେଳେ କେତେ ଆଡ଼ର କେତେ କଥା ହୁଏ। ବେଶୀ ଭାଗ ଦେଶର କଥା। ନହେଲେ ବା ସାହିତ୍ୟ, ଭାଷାତତ୍ତ୍ୱ କଥା। ତା'ରି ଭିତରେ ଦିନେ ଦିନେ ଆଲୋଚନାର ପରିସର ଭିତରକୁ ପଶି ଆସେ ନିଜ ଲୋକଙ୍କ କଥା। ପରିବାର କଥା। ଦିନେ ଆଗାମୀ ଦେଶ ବିଭାଜନର ଆଲୋଚନା କରୁ କରୁ ଅର୍ଚ୍ଚନା କହି ପକେଇଥିଲା ଯେ ତା' ସାନ ଭଉଣୀର ବାହାଘର ପରେ ପରେ ମା' ଆଉ ଦାଦା ପାବ୍‌ନା ଛାଡ଼ି କଲିକତା ଚାଲି ଆସିବେ। ସେଦିନ ଦୀପେନ୍‌ଙ୍କୁ କଥାଟା କେମିତି ଖଟ୍‌କା ଲାଗିଥିଲା। ବଡ଼ ଭଉଣୀ ଥାଉ ଥାଉ ସାନ ଭଉଣୀର ବାହାଘର ! ମାନ ଅଭିମାନକୁ କ'ଣ କିଏ ଏତେ ଦୂର ଗଡ଼ାଏ ?

କିନ୍ତୁ ସେ କିଛି କହି ନ ଥିଲେ। ଅନ୍ୟ କାହା ବ୍ୟକ୍ତିଗତ କଥାରେ ବେଶୀ ମୁଣ୍ଡ ଖେଳାଇବାଟା ସେ ପସନ୍ଦ କରନ୍ତି ନାହିଁ। ସେଥିପାଇଁ ନିଜ ଭିତରେ ଉଠିଥିବା ପ୍ରଶ୍ନକୁ ଏଡ଼ାଇ ଯାଇଥିଲେ।

କିନ୍ତୁ ଆଜି ଆଉ ପାରିଲେ ନାହିଁ। ଆଜିର ଆଲୋଚନା ପରେ ଅର୍ଚ୍ଚନାର ମନ କଥା ଅଦ୍ଭୁତ ଭାବରେ ତାଙ୍କ ସାମ୍ନାରେ ଲେଖି ହୋଇ ଯାଇଥିଲା। କାହିଁକି କେଜାଣି, ସେ ସେସବୁ ଭାବନାକୁ ମନ ଭିତରୁ ଜମା ଦୂରେଇ ଦେଇ ପାରିଲେ

ନାହିଁ।

ଦୀପେନ୍ ପରିଷ୍କାର ଭାବରେ ବୁଝି ପାରିଥିଲେ ଯେ ଅର୍ଚ୍ଚନା ମାନ ଅଭିମାନ ଘଟଣା ନେଇ ପାଢ୍‌ନା ଛାଡ଼ିନି। ପାଢ୍‌ନା ଛାଡ଼ିବାର କାରଣଟି ଆହୁରି ଅଧିକ ଗଭୀର। ସେ ନିଶ୍ଚିତ ଭାବରେ କାହାକୁ ନିଜର କରିବାକୁ ଚାହିଁଥିଲା। ନିଜ ହୃଦୟ ଭିତରେ ଆଉ କାହାର ରୂପକୁ ସଜେଇ ରଖିଥିଲା। ଯେ କୌଣସି କାରଣରୁ ହେଉ ପଛକେ, ସେକଥା ସମ୍ଭବପର ହୋଇନି ଏବଂ ସେଥିପାଇଁ ଚା' ମନ ଭିତରକୁ ତ୍ୟାଗ ଆସି ଯାଇଛି। ତପସ୍ୱିନୀ ଭଳି ରହିଯାଇଛି ସେ।

ଆହା! ଦୀପେନ୍‌ଙ୍କ ଛାତି ଭିତରେ ସହାନୁଭୂତିର ସ୍ରୋତଟିଏ ବହି ଆସିଲା। ପ୍ରିୟ ସଙ୍ଗୀ ହରାଇବାର ଦୁଃଖ ସେ ବି ଭୋଗିଛନ୍ତି। ସେ ଜାଣନ୍ତି ସେ ଦୁଃଖର ଗଭୀରତା। କିନ୍ତୁ ତାଙ୍କ କଥା ଅଲଗା।

ବାପା ମା'ଙ୍କର କୋଳପୋଛା ପୁଅ ଦୀପେନ୍। ପ୍ରସନ୍ନ ବାବାଙ୍କର ସବୁଠାରୁ ସାନ ଭାଇ। ଅନ୍ୟ ଦୁଇ ଭାଇ ଭଉଣୀଙ୍କଠାରୁ ବହୁତ ସାନ। ପ୍ରସନ୍ନ ବାପାଙ୍କର ବାହାଘର ବେଳେ ତାଙ୍କୁ ମାତ୍ର ଦଶ ବର୍ଷ ହେଇଥିଲା। ସେଥିପାଇଁ ପ୍ରସନ୍ନର ମା' ନୂଆବୋହୂ ହେଇ ଆସିବା ପରେ ଏଇ ମା' ଛେଉଣ୍ଡ ପିଲାଟିକୁ ଦିଅର ଦୃଷ୍ଟିରେ ନ ଦେଖି ନିଜ ପୁଅ ଭଳି ଦେଖୁଥିଲେ।

ଦୀପେନ୍‌ଙ୍କର ବୟସ ଯେତେବେଳେ ପଚିଶ, ସେତେବେଳେ ତାଙ୍କର ବାହାଘର ହୋଇଥିଲା ପାଖ ଗାଁର ଝିଅ କାନନବାଳା ସାଙ୍ଗରେ। ଭଲ ଘରର ଝିଅ କାନନବାଳା। କିନ୍ତୁ ପାଠ ଶାଠ ପଢ଼ି ନ ଥିଲା। ସମ୍ପୂର୍ଣ୍ଣ ରୂପେ ଶ୍ରୀ ଅକ୍ଷର ବିବର୍ଜିତା। ତଥାପି ଏ ପ୍ରସ୍ତାବ ପଛରେ ନିହାତି ବାବା, ମା'ଙ୍କର ପିଲାଦିନିଆ କଥା ଦିଆନିଆ ଘଟଣା ଥିଲା, ନହେଲେ କି ସହଜେ ରାଜି ହୋଇଥାଆନ୍ତେ ଦୀପେନ୍?

ଯାହେଉ, ବାହାଘର ହୋଇ ଯାଇଥିଲା। ଦିନ କେଇଟା ଭିତରେ ନିଜର ସ୍ୱଭାବରେ କାନନ ନୂଆ ପରିବାରର ସମସ୍ତଙ୍କୁ ଆପଣାର କରି ନେଇ ପାରିଥିଲା। ଏକଦା ଶିକ୍ଷିତ ଝିଅ ବାହା ହେବାର ଆଶା ମନେ ମନେ ରଖିଥିବା ଦୀପେନ୍ ଆଶ୍ଚର୍ଯ୍ୟଜନକ ଭାବରେ ବାନ୍ଧି ହୋଇ ଯାଇଥିଲେ କାନନ ସହିତ। କାନନ ବ୍ୟତୀତ ଜୀବନ ଯାପନ କରିବା କଥା ଆଦୌ ଭାବି ପାରୁ ନ ଥିଲେ।

ତା'ପରେ ଯାହା ଯାହା ଘଟିଗଲା, ସେସବୁ ସ୍ୱପ୍ନ ଭଳି ମନେ ହୁଏ

ଦୀପେନ୍‌ଙ୍କୁ । ଏବେ ଭାବିଲେ ଅବାକ ଲାଗେ ।

ଦିନେ ଜଣା ପଡ଼ିଲା ଯେ ସେ ବାବା ହେବାକୁ ଯାଉଛନ୍ତି । ଆନନ୍ଦରେ ଆତ୍ମହରା ହୋଇ ପଡ଼ିଥିଲେ ସେ । କିନ୍ତୁ ତା' ଆଉ ସମ୍ଭବ ହୋଇପାରି ନ ଥିଲା । ପିଲା ଜନ୍ମ ବେଳେ ସ୍ତ୍ରୀ ପୁଅ ଦୁହିଁଙ୍କୁ ହରାଇଥିଲେ ଦୀପେନ୍ ।

ସ୍ତ୍ରୀ ମରି ଯିବାର କେଇଟା ବର୍ଷ ପରେ ତାଙ୍କ ଭାଉଜ ତାଙ୍କୁ ଆଉ ଥରେ ବାହା ହେବା କଥା କହିଥିଲେ । କିନ୍ତୁ ଦୀପେନ୍ ପାରି ନ ଥିଲେ । ସେ ସେତେବେଳେ ନୂଆ ସ୍କୁଲ୍ ଖୋଲିବାର ସ୍ୱପ୍ନରେ ବିଭୋର । ସେ ବୌଦିଙ୍କ କଥାରେ ସମ୍ମତି ଦେଇ ପାରି ନ ଥିଲେ । ତା'ପରେ କେତେ ବର୍ଷ ଚାଲିଗଲା । ସ୍କୁଲ୍ ଖୋଲିଲା । ପ୍ରସନ୍ନର ବାହାଘର ହେଲା । ତାଙ୍କ ଦାଦା ସଂସାରରୁ ଚାଲିଗଲେ । ପୁଣି ଘର ମୁଖରିତ କରି ନାତି ନାତୁଣୀ ସଂସାରକୁ ଆସିଲେ ।

ଏସବୁ ଭିତରେ ଦୀପେନ୍ ଏତେ ବେଶୀ ମଜ୍ଜି ଯାଇଥିଲେ ଯେ ନିଜେ ଏକ ସ୍ୱତନ୍ତ୍ର ସଂସାର କରିବା କଥା ଆଦୌ ମନକୁ ଆଣି ପାରି ନ ଥିଲେ ।

ତା'ପରେ ଦେଶତ୍ୟାଗୀ ହୋଇ କଲିକତା ଆସିବାକୁ ହେଲା । କଲିକତାରେ ଆସି କିଛି ଦିନ ରହିବା ପରେ ମା', ସ୍ତ୍ରୀ ଓ ପିଲାଙ୍କୁ ନେଇ ବନାରସ୍ ଚାଲିଗଲା ପ୍ରସନ୍ନ । ପ୍ରସନ୍ନ ଭରିକା ଚାଲିଯିବା ପରେ ଦୀପେନ୍‌ଙ୍କୁ ଘରଟା ପ୍ରଥମ ଥର ପାଇଁ ନିର୍ଜୀବ, ନିଷ୍ପ୍ରାଣ ମନେ ହୋଇଥିଲା । ପ୍ରଥମ ଥର ପାଇଁ ତାଙ୍କୁ ଜୀବନଟା ବଡ଼ ଏକା ଏକା ଲାଗିଥିଲା । ସବୁ କିଛି ମୂଲ୍ୟହୀନ ମନେ ହୋଇଥିଲା । କିନ୍ତୁ ନିଜକୁ ବୁଝେଇ ନେଇଥିଲେ ସେ । ମନର ଶୂନ୍ୟତା ଉପରେ ସେ ଜମା ଗୁରୁତ୍ୱ ଦେଇ ନ ଥିଲେ ।

ଦିନେ କଥା ଛଳରେ ତାଙ୍କ ବଡ଼ ଭଉଣୀ ଚମ୍ପା ଆସି ଆଉଥରେ ବାହାଘର କଥା ଉଠେଇଥିଲେ । କହିଥିଲେ, ''ପଇଁଚାଳିଶ ଏମିତି କି ବୟସ ରେ ଦୀପେନ୍ । ତୋ ସାମ୍ନାରେ ସାରାଟା ଜୀବନ ପଡ଼ିଛି । ତୁ କ'ଣ ଏମିତି ଏକା ଏକା ରହିଯିବୁ ?''

ସେଦିନ ଦୀପେନ୍ ଉତ୍ତର ଦେଇଥିଲେ, ''କି କଥା ଯେ ତୁ କହୁଛୁ ଦିଦି ! ପଇଁଚାଳିଶଟା ତୋ ପାଇଁ କମ୍ ବୟସ ହେଲା ? ଥାଉ ଥାଉ । ଏ ବୟସରେ ଆଉ ଏମିତିଆ କଥା କହନା । ଲୋକେ ହସିବେ ।''

ଚମ୍ପା ବେଶୀ ଯୁକ୍ତି କରି ନ ଥିଲେ ।

କିନ୍ତୁ ବିଛଣାରେ ପଡ଼ି ଛଟପଟ ହେବା ବେଳେ କାହିଁକି ସେଦିନର କଥା ବାରମ୍ବାର ତାଙ୍କ ମନ ଭିତରକୁ ପଶି ଆସୁଛି ? କାହିଁକି ଅର୍ଚ୍ଚନାର ମୁହଁ ଥରକୁ ଥର ଭାସି ଉଠୁଛି ?

ଦୀପେନ୍‌ଙ୍କୁ ତାଙ୍କ ପ୍ରଶ୍ନର ଉତ୍ତର ମିଳି ସାରିଥିଲା ।

ତାଙ୍କ ମନ ଭିତରେ ଯେ ସେଇ ରାତିରେ କି ପରିବର୍ତ୍ତନ ହୋଇଗଲା, ତା' ଆଉ କେହି ଜାଣି ପାରିଲେ ନାହିଁ । ଏପର୍ଯ୍ୟନ୍ତ ପୁତୁରା ବୋହୂର ସାନ ଭଉଣୀ ରୂପେ ଦେଖୁଥିବା ଝିଅଟିକୁ ସେ ଜୀବନରେ ପ୍ରଥମ ଥର ପାଇଁ ଅନ୍ୟ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲେ ।

ସେ ଉତ୍କଣ୍ଠିତ ଭାବରେ ସକାଳ ହେବା ପାଇଁ ଅପେକ୍ଷା କରିଲେ ।

ପାବ୍‌ନାରେ ସକାଳ ଆସେ, ସକାଳ ପୁଣି ଚାଲିଯାଏ । ଏତେ ବର୍ଷ ଏଇ ସହରରେ ରହିଲେଣି ଶ୍ରଦ୍ଧା, କିନ୍ତୁ ତାଙ୍କୁ କେବେହେଲେ ଚହଲେଇ ଦେଇ ଯାଇ ପାରି ନାହିଁ ପାବ୍‌ନା ସହରର ସକାଳ । ପଡ଼ା ଗାଁର ଝିଅ ସିଏ । ସକାଳର ନରମ ରୂପ, ସ୍ନିଗ୍ଧ ରୂପ ଦେଖିଛନ୍ତି । ସହରିଆ ସକାଳ କାହିଁକି ରେଖାପାତ କରନ୍ତା ତାଙ୍କ ମନ ଭିତରେ ?

ହେଲେ ଆଜିକାଲି ଏଥିରେ ବ୍ୟତିକ୍ରମ ଆସିଛି । ସକାଳ ହେବା କ୍ଷଣି ମନ ଚହଲି ଯାଉଛି ତାଙ୍କର । ନା, ଆନନ୍ଦରେ ନୁହଁ । ବରଂ ଅନାଗତ ଆତଙ୍କରେ । ଯେଉଁ ଆତଙ୍କଟା ଆଜିକାଲି ପାବ୍‌ନା ସହରକୁ ଘୋଡ଼େଇ ରଖିଛି, ତା'ରି ଚାପରେ ସକାଳ ହେବା କ୍ଷଣି ମ୍ରିୟମାଣ ହୋଇ ପଡୁଛନ୍ତି ଶ୍ରଦ୍ଧା । କାହାକୁ କହି ହୁଏ ନାହିଁ । କିଛି ମଧ କରି ହୁଏ ନାହିଁ । ଘର ଭିତରେ ଏକା ବସି ବସି କେବଳ ଛାଟିପିଟି ହଉଛନ୍ତି ଶ୍ରଦ୍ଧା । ଅନୁପମା କଲେଜରୁ ଫେରିବା ପରେ ଓ ଅନିରୁଦ୍ଧ ଅଫିସ୍, କ୍ଲବ୍‌ରୁ ଆସିବା ପରେ ଯାଇ ସେ ଏଇ ଆତଙ୍କର ଆକ୍ରମଣରୁ ରକ୍ଷା ପାଆନ୍ତି । ହେଲେ କେତେ କ୍ଷଣ ?

ପୁଣି ସକାଳ ହେଲେ ପୂର୍ବର ସେଇ ଦୁଶ୍ଚିନ୍ତା ତାଙ୍କ ଛାତି ଭିତରେ ପ୍ରତିଧ୍ୱନିତ ହୋଇ ଉଠେ । ଆଶଙ୍କାର ହାତୁଡ଼ି ମୁଣ୍ଡ ଭିତରେ ଦୁମୁଦୁମୁ ହୋଇ ପିଟି ହୁଏ ।

ପୁଣି ଦୁର୍ଭାବନାରେ ମ୍ରିୟମାଣ ହୋଇ ପଡ଼ନ୍ତି ସେ। ଅନିରୁଦ୍ଧର ସିନା ଉପାୟ ନାହିଁ ବୋଲି ତାକୁ ଅଫିସ୍ ଯିବାକୁ ହୁଏ, ହେଲେ ଅନି କାହିଁକି ଘର ବାହାରେ ପାଦ ରଖେ? ଶ୍ରଦ୍ଧା ମନେ ମନେ ଯେତେ ବିବ୍ରତ ହେଲେ ବି ପାଟି ଖୋଲି ପାରନ୍ତି ନାହିଁ।

ଆଜଟି କହିଲେ କୋଉ ଶୁଣନ୍ତା ଯେ ତାଙ୍କର ସାନ ଝିଅ।

ଅନୁପମା ବି ଅଦ୍ଭୁତ। ଦେଶରେ ଏତେ ଅଶାନ୍ତି ଚାଲିଥିବା ସତ୍ତ୍ୱେ ବି ସେ କଲେଜ ଯାଉଥିଲା ଆଗ ଭଳି। କିନ୍ତୁ ଅନିରୁଦ୍ଧ ଯେଉଁ ରାସ୍ତା ଘାଟର ପରିବର୍ତ୍ତନ, ନୂଆ ବାତାବରଣ କଥା କହି ବ୍ୟସ୍ତ ହେଉଥିଲା, ସେଇଟା ତା' ଆଖିରେ ବେଶୀ ବେଶୀ ପଡୁଥିଲା। ବେଳେବେଳେ ଭୟ ମଧ୍ୟ ଲାଗୁଥିଲା ଦେଶର ଭବିଷ୍ୟତକୁ ନେଇ। ସେମାନଙ୍କର ନିଜ ଭବିଷ୍ୟତ ନେଇ।

କିନ୍ତୁ ସେ ଶ୍ରଦ୍ଧାଙ୍କ ଭଳି ଆତଙ୍କିତ ହୋଇ ପଡୁ ନ ଥିଲା। ବରଂ ନିଜକୁ ନିଜେ ବୁଝାଉଥିଲା। ଆଶ୍ୱାସନା ଦେଉଥିଲା। ପୃଥିବୀରେ ଏତେ ବଡ଼ ଗୋଟାଏ ଯୁଦ୍ଧ ଲାଗିଛି। ଦ୍ୱିତୀୟ ବିଶ୍ୱଯୁଦ୍ଧ! ତା'ର କିଛି ପ୍ରଭାବ ତ ପଡ଼ିବ ନିଶ୍ଚୟ ଦେଶ ଉପରେ।

ଏବଂ ପୁଣି ପର ଦିନ ମନକୁ ଶକ୍ତ କରି ବହି, ଖାତା ଧରି ସେ ବାହାରି ପଡୁଥିଲା।

ଏଇଭଳି ଆତଙ୍କଭରା ଆବେଶରେ ଦିନ ଗଡ଼ି ଯାଉଥିଲା।

ସେଦିନ କଲେଜରୁ ଫେରୁ ଫେରୁ ପାଟି କରି କମ୍ପେଇ ଦେଲା ଅନୁପମା। ''ମା' ଶୁଣିଲଣି? ଶୁଣିଲଣି? ସୁଭାଷ ବୋଷ ଖସି ପଳେଇଛନ୍ତି!''

''ଖସି ପଳେଇଛନ୍ତି? କୁଆଡ଼େ?''

''ଓହୋ ମା', ତୁମେ କ'ଣ ଜାଣିନ? ସୁଭାଷ ଖୋଲାଖୋଲି ଭାବରେ କହିଦେଲେ ଯେ ସତ୍ୟାଗ୍ରହ ରାସ୍ତାରେ ଦେଶ ସ୍ୱାଧୀନ ହେବନି। ସେଥିପାଇଁ ରକ୍ତ ଦେବାକୁ ହେବ। ତା'ପରଠୁଁ ତ ତାଙ୍କୁ ଗୃହବନ୍ଦୀ କରି ରଖିଦେଲା ଇଂରେଜ ସରକାର। ହେଲେ ସୁଭାଷ ପଠାଣ ବେଶରେ ଖସି ଯାଇ ପହଞ୍ଚିଗଲେ ପେଶୱାର। ତା'ପରେ ଲୁଚି ଆଫଗାନିସ୍ଥାନ, ରୁଷିଆ ହୋଇ ଏବେ କୁଆଡ଼େ ପହଞ୍ଚି ଯାଇଛନ୍ତି ଜର୍ମାନୀରେ।''

''ସେଥିରୁ କ'ଣ ହେବ?'' ଅବୁଝା ସ୍ୱରରେ ଶ୍ରଦ୍ଧା କହିଲେ।

''କ'ଣ ହେବ?? ମା' ତୁମେର ଯାହା କଥା... ଜର୍ମାନୀର ନେତାମାନଙ୍କ ସାଙ୍ଗରେ ମିଶି ସୁଭାଷ ଇଂରେଜ ବିରୁଦ୍ଧରେ ସ୍ୱର ଉଠାଇବେ। ବର୍ତ୍ତମାନ ପୃଥିବୀବାସୀ ଶୁଣିବେ ସେ ଆୱାଜ। ତା'ପରେ କେତେ ଦିନ ଆଉ ଆମକୁ ବାନ୍ଧି ରଖି ପାରିବ ଇଂରେଜ ସରକାର?''

ଶ୍ରଦ୍ଧା ସାନ ଝିଅ କଥାର କୌଣସି ଉତ୍ତର ନ ଦେଇ ନିଜ କାମରେ ଚାଲିଗଲେ। ତାଙ୍କର ନିଜ ଚିନ୍ତା ତ ତାଙ୍କୁ ଖାଇ ଯାଉଛି, ସେ ପୁଣି ଆହୁରି ଦେଶ ପାଇଁ ଚିନ୍ତା କରି ମରିବେ? ସେସବୁ ଚିନ୍ତା କରୁଥାଆନ୍ତୁ ଗାନ୍ଧୀ, ସୁଭାଷଙ୍କ ଭଳି ଲୋକମାନେ।

ଅନୁପମା ଚିଡ଼ି ଯାଇ ମା'ଙ୍କର ନିସ୍ପୃହତାକୁ ଦେଖୁଥିଲା। ଦିଦି ବାହାଘର ଭାଙ୍ଗିଯିବା ପରଠୁ ହିଁ ଏଇମିତି ହୋଇ ଯାଇଛନ୍ତି ସେ। ଗୋଟାଏ ବିରାଟ ଦେଶ ଭାଙ୍ଗି ରୁଜି ଯାଉଛି, ପେଷି ହୋଇ ଯାଉଛି, ଅଥଚ ମା'ଙ୍କର ଚିନ୍ତା ଗୋଟାଏ ଝିଅକୁ ନେଇ! ବିରକ୍ତିରେ ସେ ଘରୁ ବାହାରି ଆସିଲା। ରାସ୍ତା ଆର ପଟେ ଯେଉଁ କାୟସ୍ଥ ପରିବାର ନୂଆ ଆସି ରହିଛନ୍ତି, ସେଇ ବୀରେନ୍ କାକାଙ୍କ ଘରକୁ ଯାଉଥିଲା ସେ। ବୀରେନ୍ କାକାଙ୍କ ଘରେ ରେଡ଼ିଓ ଅଛି, ସେଠୁ କିଛି କିଛି ଖବର ମିଳେ। ପୁଣି ତାଙ୍କ ଘରକୁ କେଉଁଠୁ କେଉଁଠୁ ଖବରକାଗଜ ମଧ୍ୟ ଆସେ। କମ୍ ହେଉ ବେଶୀ ହେଉ, କିଛି ତ ଖବର ମିଳେ।

ବୀରେନ୍ ଘୋଷ ବର୍ମାରେ ଡାକ୍ତରୀ କରୁଥିଲେ। ଭଲ ରୋଜଗାର ହେଉଥିଲା। କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇ ଯିବା ପରେ, ସେ ଆଉ ବିଦେଶରେ ରହିବାକୁ ଚାହିଁଲେ ନାହିଁ। ସ୍ତ୍ରୀ ଓ ନିଜର ଏକମାତ୍ର ଝିଅ ମାଳାକୁ ଧରି ଚାଲି ଆସିଲେ ପାଟ୍ନା। ଏବେ ନୂଆ କରି ପୁଣି ପ୍ରାକ୍ଟିସ ଆରମ୍ଭ କରିଛନ୍ତି।

ବିଦେଶରେ ରହି ରହି ଘୋଷ ପରିବାରର ସମସ୍ତଙ୍କର ଦୃଷ୍ଟିଭଙ୍ଗୀ ଅନ୍ୟରକମର। ସେମାନେ ଅନ୍ୟମାନଙ୍କ ଭଳି କେବଳ ନିଜ ଘରର ଚାରି କାନ୍ଥ ଭିତରେ ଆବଦ୍ଧ ହୋଇ ରହିବାକୁ ଭଲ ପାଆନ୍ତି ନାହିଁ। ତାଙ୍କ ଘରେ କବିତା ପଢ଼ା ହୁଏ। ଗୀତର ଆସର ବସେ। ବୀରେନ୍ ଘୋଷ କଲିକତାରୁ ପତ୍ର ପତ୍ରିକା ଅଣାନ୍ତି। ଖବରକାଗଜ ରଖନ୍ତି। ତେଣୁ ଅନୁପମା ପାଇଁ ତାଙ୍କ ଘରଟା ଏକ ବିରାଟ ଆକର୍ଷଣ। ସୁବିଧା ପାଇଲେ ସେ ସେଠିକି ଚାଲିଯାଇ ବହିପତ୍ର ଭିତରେ ମୁଣ୍ଡ ଗୁଞ୍ଜି ଦିଏ। ଖବରକାଗଜ ଟିକି ନିଖି କରି ପଢ଼େ।

ଅବଶ୍ୟ ସେତେବେଳେ ଖବରକାଗଜରୁ ଯେ ସବୁ ଖବର ଠିକ୍ ଠିକ୍ ମିଳୁଥିଲା ତା' ନୁହଁ। ତଥାପି ଇଂରେଜ ସରକାରର ସତର୍କ ଦୃଷ୍ଟି ଏଡ଼ାଇ କେତେବେଳେ କେମିତି ନୂଆ ନୂଆ ଖବର ମିଳି ଯାଉଥିଲା। ତା'ଛଡ଼ା ବହୁତ ଗଜମର ଉଡ଼ା ଖବର ମଧ ଶୁଣାଯାଉଥିଲା।

ଦିନେ ଶୁଣାଗଲା ଯେ ସୁଭାଷ ବୋଷ 'ଆଜାଦ୍ ହିନ୍ଦ୍ ଫୌଜ' ଗଠନ କରିଛନ୍ତି ଏବଂ ଆହ୍ୱାନ ଦେଇଛନ୍ତି - 'ଦିଲ୍ଲୀ ଚଲୋ'। ତାଙ୍କର 'ଜୟ ହିନ୍ଦ୍' ଡାକ ଦେଶର ଯୁବକମାନଙ୍କ ରକ୍ତରେ ନିଆଁ ଲଗେଇ ଦେଇଥିଲା।

ଅନୁପମା ବି ପ୍ରଭାବିତ ହୋଇ ଯାଇଥିଲା। କିନ୍ତୁ ମା' ଓ ଦାଦାଙ୍କ ତୀବ୍ର ଅନିଚ୍ଛା ସାମ୍ନାରେ ସେ ସକ୍ରିୟ ଭାବେ କିଛି କରି ପାରୁ ନ ଥିଲା। ସୁଭାଷଙ୍କ ଆଜାଦ୍ ହିନ୍ଦ୍ ଫୌଜର କୀର୍ତ୍ତିମାନ ଶୁଣି ଶୁଣି ତାକୁ ସନ୍ତୁଷ୍ଟ ହୋଇ ରହିବାକୁ ପଡୁଥିଲା।

ନେତାଜୀ ଜାପାନର ସେନା ସହିତ ମିଶି ଦକ୍ଷିଣ ପୂର୍ବ ଏସିଆ ଦେଇ ଭାରତର ସୀମାରେ ଆସି ପହଞ୍ଚିଗଲେ। ଆଉ ପ୍ରଥମ ଥର ପାଇଁ ଭାରତ ମାଟିରେ ଉଡ଼ାଇ ଦେଲେ ତ୍ରିରଙ୍ଗ ପତାକା। କିନ୍ତୁ ଖୁବ୍ ଶୀଘ୍ର ଯୁଦ୍ଧର ରୂପ ରେଖ ବଦଳିଗଲା। ଜାପାନ ସେନା ବେଶୀ ଦିନ ଆଜାଦ୍ ହିନ୍ଦ୍ ଫୌଜକୁ ନିଜର ସାହାଯ୍ୟ ଦେଇ ପାରିଲା ନାହିଁ ଏବଂ ଆତ୍ମସମର୍ପଣ କରିବାକୁ ବାଧ ହେଲା। ସୁବିଧା ପାଇ ବ୍ରିଟିଶ୍ ସେନା ଆଜାଦ୍ ହିନ୍ଦ୍ ଫୌଜର ଅଧିକାଂଶ ସେନାଙ୍କୁ ଯୁଦ୍ଧ ବନ୍ଦୀ କରି ନେଲେ।

ନେତାଜୀ ରେଙ୍ଗୁନ୍‌ରୁ ବ୍ୟାଙ୍କକ୍ ଚାଲିଗଲେ ଏବଂ ସେଠୁ ଟୋକିଓ ଗଲା ବେଳେ ତାଙ୍କର ବିମାନ ଦୁର୍ଘଟଣାଗ୍ରସ୍ତ ହେଲା। ସୁଭାଷ ବୋଷଙ୍କ ଖବର ମିଳିଲା ନାହିଁ। ତେବେ ଶୁଣାଗଲା ଯେ ଦୁର୍ଘଟଣାରେ ସେ ମୃତ୍ୟୁ ବରଣ କରିଛନ୍ତି।

ଆଜାଦ୍ ହିନ୍ଦ୍ ଫୌଜ୍ ଓ ସୁଭାଷଙ୍କର ଏଭଳି ପରାଜୟ ଅନୁପମାକୁ ଦୋହଲାଇ ଦେଲା। କିନ୍ତୁ ସେ ବେଶୀ ଦିନ ଶୋକର ସାଗରରେ ବୁଡ଼ି ରହି ପାରିଲା ନାହିଁ। ସେତେବେଳେ ଯେ ଦେଶର ଦିଗ୍‌ବଳୟରେ ନୂତନ ସୂର୍ଯ୍ୟର ଆଲୋକ ଦେଖିବାକୁ ମିଳି ଯାଇଥିଲା।

ସେଦିନ ବୀରେନ୍ ଘୋଷଙ୍କ ଘରୁ ରେଡ଼ିଓ ଶୁଣି ଆସି ଉଲ୍ଲସିତ ଭାବରେ ଅନୁପମା କହିଲା, ''ମା' ଶୁଣୁଛ, ଆମ ଭାରତ ସ୍ୱାଧୀନ ହେବ। ଗାନ୍ଧିଜୀଙ୍କ

କଥା ମାନି ନେଇଛନ୍ତି ବ୍ରିଟିଶ୍ ସରକାର ।''

''ଏଁ, ଗୋରା ଲୋକେ ଚାଲିଯିବେ ତାହେଲେ ?''

''ହଁ ମା'। ଏଥରକଠୁ ଆମ ଦେଶ ଆମେ ନିଜେ ଚଳେଇବୁ। ଓଃ, ମତେ ଯାହା ଖୁସି ଲାଗୁଛି ନା ମା' ।''

''ଯାହେଉ। ସ୍ୱଦେଶୀବାଲାଙ୍କ ସ୍ୱପ୍ନ ସତ ହେଲା ଶେଷରେ ।''

ଅନିରୁଦ୍ଧ ଯେ କେତେବେଳୁ ଘର କବାଟ ପାଖରେ ଠିଆ ହୋଇ ମା' ଝିଅଙ୍କ କଥା ଶୁଣୁଛି, ତା' କେହି ଜାଣନ୍ତି ନାହିଁ। ଅନୁପମାର ଆଖି ତା' ଉପରେ ପଡ଼ିଯିବା କ୍ଷଣି ସେ ଆସି ଅନିରୁଦ୍ଧର ଦୁଇ ହାତକୁ ଜାବୁଡ଼ି ଧରିଲା ।

''ତୁମେ ଖବର ଶୁଣିଲଣି ଦାଦା ?''

''ହଁ।''

''ଖୁସି ଲାଗୁନି ତୁମକୁ ??''

''ଖୁସି ?? ଦେଶଟାକୁ କାଟି ଦିଗଡ଼ କରିଦେବେ, ଆଉ ମୁଁ ଖୁସୀ ହେବି ?'' ଚାପା ସ୍ୱରରେ ଅନିରୁଦ୍ଧ କହିଲା ।

''ଦେଶଟାକୁ କାଟିଦେବେ ? ତା' ମାନେ କ'ଣରେ ବାବୁ ?'' ଶ୍ରଦ୍ଧା ଆତଙ୍କରେ କହି ପକେଇଲେ। ''ଗୋରା ଲୋକେ ଠିକ୍ ଚାଲିଯିବେ ମା' ଆମ ଦେଶ ଛାଡ଼ି। କିନ୍ତୁ ଯିବା ଆଗରୁ ଆମ ଦେଶକୁ ଦୁଇ ଭାଗ କରି ଦେଇ ଯାଉଛନ୍ତି। ଜିନ୍ନା ଏତେ ବର୍ଷ ଧରି ଯେଉଁ ଚାଲ ଚଳାଇ ଆସୁଥିଲେ, ସେଇଟା ଏବେ ସଫଳ ହେବାକୁ ଯାଉଛି। ମୁଁ କହି ନ ଥିଲି ଦେଶ ଛାଡ଼ି ଯିବାକୁ ବାଧ କଲେ ଗୋରା ସରକାର ଯାଉ ଯାଉ କିଛି ବିଭ୍ରାଟ କରି ଦେଇ ଯିବ। ଏଇ ଦେଖ। କେମିତି କାଟିଦେଲା ଦେଶଟାକୁ ଦି' ଗଡ଼ କରି। କେମିତି ଭାଇ ଭାଇ ଭିତରେ କନ୍ଦଳ ଲଗେଇ ଦେଇଗଲା। ଦେଖ ।''

''କାହିଁକିରେ ବାବୁ ? ଏମିତି କାହିଁକି କଲେ ସେମାନେ ?''

''ସେମାନଙ୍କର କହିବା କଥା ଯେ ପୂର୍ବ ବଙ୍ଗରେ ଆଉ ଭାରତର ପଶ୍ଚିମ ପଟେ ବେଶୀ ମୁସଲମାନ। ତେଣୁ ସେମାନଙ୍କ ପାଇଁ ଅଲଗା ଦେଶ ହେବ। ସେମାନେ ଭାରତରେ ରହିବେ ନାହିଁ। କାରଣ ଭାରତ ହିନ୍ଦୁପ୍ରଧାନ ଦେଶ। ସେମାନେ କୁଆଡ଼େ ମୁସଲମାନଙ୍କ ଉପରେ ଅତ୍ୟାଚାର କରିବେ।''

''ଅତ୍ୟାଚାର ! କି ଅତ୍ୟାଚାର ମ। ବର୍ଷେ ବର୍ଷେ ଧରି ଆମେ ସବୁ ଏକାଠି

ରହୁଛୁ, ଏବେ କ'ଣ ନା ଖାଲି ଅତ୍ୟାଚାର ହୋଇ ଯାଉଛି।''

''ତୁମ କଥା ଆଉ ଶୁଣିବ କିଏ ମା'? ଗାନ୍ଧୀଜୀ ତ ରାଜି ହୋଇ ସାରିଲେଣି।''

''ରାଜି ହୋଇ ଗଲେ?? ଏବେ କ'ଣ ହେବ?''

ଏ ପ୍ରଶ୍ନର ଉତ୍ତର ଅନିରୁଦ୍ଧ ପାଖରେ ନ ଥିଲା। ତାକୁ କିନ୍ତୁ କିଛି ଭଲ ଲାଗୁ ନ ଥିଲା। ମନେ ହେଉଥିଲା ଯେମିତି ଦେଶର ଶନିଦଶା ଆସି ପହଞ୍ଚିଛି। ସେଇ ଶନିଦଶାର ଛାଇ ସେମାନଙ୍କ ଜୀବନ ଉପରେ ପଡ଼ି ଯିବନି ତ? କାହିଁକି କେଜାଣି ଗୋଟାଏ କୋକୁଆ ଭୟ ଅଚାନକ ମାଡ଼ି ବସିଲା ତାକୁ।

ଦିନ କାଳ ଭଲ ନୁହଁ ବୋଲି ଆଜିକାଲି ସବୁବେଳେ ଦାଣ୍ଡ କବାଟ ଦେଇ ରଖନ୍ତି ଶ୍ରଦ୍ଧା। ସନ୍ଧ୍ୟା ପରେ କେହି ଆସି କବାଟ ଖଡ଼ଖଡ଼ କଲେ, ଆଗ ଝରକା ବାଟେ ଭଲ କରି ଦେଖି ତା'ପରେ ଯାଇ କବାଟ ଖୋଲନ୍ତି। ଅନିରୁଦ୍ଧ ବାରମ୍ବାର ତାଗିଦା କରି ଦେଇଛି।

ସେଦିନ ସନ୍ଧ୍ୟାବେଳେ ଅନିରୁଦ୍ଧ କ୍ଲବ୍‌କୁ ଚାଲିଯିବା ପରେ ହଠାତ୍ ଦାଣ୍ଡ କବାଟଟା ଖଡ଼ ଖଡ଼ ହୋଇ ଉଠିଲା। ସଲ୍‌ମା ବା ବୀରେନ୍ ଘୋଷଙ୍କ ଝିଅ ମାଳା ଯେମିତି ଡାକନ୍ତି, ସେଇମିତିଆ ଡାକ ନୁହଁ। କେହି ଯେମିତି ନିହାତି ବ୍ୟତିବ୍ୟସ୍ତ ହୋଇ ଦାଣ୍ଡ କବାଟଟା ପିଟି ପକାଉଥିଲା। ଝରକା ବାଟେ ମୁହଁ ଗଳାଇ ବାହାରଟା ଦେଖି ନେଇ ଶ୍ରଦ୍ଧା ଅବାକ ହେଲେ। ବାହାରେ ବୋହୂଟିଏ ଠିଆ ହୋଇଥିଲା। କେଉଁ ଗରିବ ଘରର ବୋହୂ ବୋଧହୁଏ। ଦେହରେ ଛିଣ୍ଡା ନ ହେଲେ ବି ମଇଳାସିଆ ଶାଢ଼ି। ମୁଣ୍ଡରେ ଓଢ଼ଣା ଦେଇଛି। କିନ୍ତୁ ମୁଣ୍ଡର ଯେତିକି ଅଂଶ ଦେଖା ଯାଉଛି, ସେଥିରୁ ମନେ ହେଉଛି ବେଶ୍ କିଛି ଦିନ ହେବ ବାଳରେ ତେଲ ପାଣିଆ ବାଜିନି। ଦୁର୍ବଳ ଶରୀର। ମୁହଁର ରକ୍ତତକ ବି ଯେମିତି ନିଗିଡ଼ି ଯାଇଛି ତା'ର।

କୋଳରେ ଛୁଆଟିଏ ଧରି ବୋହୂଟି ଠିଆ ହୋଇଛି। ଆଉ ପୁଣି ବାରଣ୍ଡାର ଶେଷ ପାହାଚରେ ପାଦ ଦେଇ ଉଦ୍‌ଭ୍ରାନ୍ତ ଦୃଷ୍ଟି ନେଇ ଠିଆ ହୋଇଛି ତିରିଶ ବତିଶ ବର୍ଷର ଯୁବକଟିଏ। ତା'ର ଦୁଇହାତ ଧରିଛନ୍ତି ଦୁଇଟି ପିଲା।

କିଏ ଏମାନେ? ତାଙ୍କ ଘରେ କାହିଁକି? ଆଉ କାହା ଘର ଖୋଜିବାକୁ ଆସି ତାଙ୍କ ଘରେ ପହଞ୍ଚି ଯାଇନାହାନ୍ତି ତ ଏମାନେ?

ଦାଣ୍ଡ କବାଟ ଅଳ୍ପ ମେଲାଇ ଶ୍ରଦ୍ଧା ମୁହଁ ଗଳେଇଲେ। "କାହାକୁ ଖୋଜୁଛ?"

"ମାଉସୀମା'..." ତ୍ରସ୍ତ ସ୍ୱରରେ ବୋହୂଟି କହିଉଠିଲା, "ମାଉସୀମା', ମୁଁ ଉମା।"

ଉମା? କୋଉ ଉମା? ଶ୍ରଦ୍ଧା ଚେଷ୍ଟା କରି ମଧ୍ୟ କୌଣସି ଉମାକୁ ମନେ ପକାଇ ପାରୁ ନ ଥିଲେ।

"ମୁଁ ଠିକ୍ ଚିହ୍ନି ପାରୁନି ମା'।" ଗଳାରେ ସଂକୋଚ ନେଇ ସେ କହିଲେ।

"ମୁଁ... ମୁଁ ନରେନ୍ଦ୍ର ସାନ୍ୟାଲଙ୍କ ଝିଅ... ଶିବାନନ୍ଦ ସାନ୍ୟାଲଙ୍କର ନାତୁଣୀ।"

"ଉମା ମା'?" ଶ୍ରଦ୍ଧା ଆନନ୍ଦ ବିସ୍ମୟରେ ପାଟି କରି ଉଠିଲେ।

ଉମା ଆଖିରେ ଲୁହ ଚକ୍‌ଚକ୍ କଲା। ମାଉସୀମା' ଯେ ତାକୁ ଚିହ୍ନି ପାରିଲେ ନାହିଁ, ସେ ବିଷୟ ନେଇ ତା' ମନ ଭିତରେ କୌଣସି ଅଭିଯୋଗ ନ ଥିଲା। ତାକୁ ଯେ ଭିକାରୁଣୀ ଭାବି ଘର ଦ୍ୱାର ମୁହଁରୁ ତଡ଼ି ଦେଇ ନାହାନ୍ତି ସେତିକି ଯଥେଷ୍ଟ।

"ଉମା ମା'," ଶ୍ରଦ୍ଧାଙ୍କର ଅବାକ ଭାବ ତଥାପି ଯାଇ ନ ଥିଲା, "ତୁ ଏଠି କେମିତି ଲୋ? ଏ କି ଚେହେରା କରିଛୁ!"

ନିଜ ଚେହେରା କଥାର ଉଲ୍ଲେଖ ନ କରି ଉମା କହିଲା, "ମାଉସୀମା', ଆମ ଘରକୁ ଯାଇଥିଲି। ଯାଇ ଦେଖିଲି ସେଠି କେହି କେଉଁଠି ନାହାନ୍ତି। ପାଖ ପଡ଼ିଶା କହିଲେ ଯେ ସମସ୍ତେ ଗାଁକୁ ଚାଲି ଯାଇଛନ୍ତି କିଛି ଦିନ ତଳେ। କେବେ ଆସିବେ ଜଣା ନାହିଁ। ସେମାନେ କହୁଥିଲେ ତାଙ୍କ ଘରେ ରହିଯିବା ପାଇଁ। ହେଲେ ମୋ ମନ ଜମା ମାନିଲା ନାହିଁ। ଆପଣଙ୍କ କଥା, ଅନିରୁଦ୍ଧ ଦାଦାଙ୍କ କଥା ଆଗ ମନକୁ ଆସିଲା।"

ହଠାତ୍ ଶ୍ରଦ୍ଧାଙ୍କ ଦୁଇ ହାତ ଧରି ପକେଇ ଉମା ବିକଳ ଭାବରେ କହି ପକେଇଲା, "ଆମକୁ ଟିକିଏ ସାହାଯ୍ୟ କରିବାକୁ ହେବ, ମାଉସୀମା'!"

"ତୁ ଏମିତି କାହିଁକି କହୁଛୁ ଲୋ ଉମା? ଏଇଟା କ'ଣ ତୋ ନିଜ ଘର ନୁହଁ? ମେସୋମଶାଏ ମାନେ ତୋ ଠାକୁର୍ଦ୍ଦା ମତେ ନିଜ ଝିଅ ଭଳି ସ୍ନେହ କରନ୍ତି।"

"ଜାଣେ ମାଉସୀମା'। ସେଇଥି ପାଇଁ ତ ଆଶ୍ରା ପାଇବା ପାଇଁ ଏଠିକି ଧାଇଁ ଆସିଛି।"

"ସେମିତି କହନି ମା'। ନିଜ ଘରୁ କ'ଣ କିଏ ଆଶ୍ରା ଖୋଜେ? ଆ, ଘର ଭିତରକୁ ଆ।" ଶ୍ରଦ୍ଧା ଉମାକୁ ଘର ଭିତରକୁ ନେଇ ଯାଉ ଯାଉ ଟିକିଏ ରହିଗଲେ। ବାରଣ୍ଡା ଆଡ଼କୁ ଚାହିଁ ଦେଇ ପଚାରିଲେ, "ଆଉ ସେ କିଏ? ଜୋଇଁ?"

ମୁଣ୍ଡ ଟୁଙ୍ଗାରିଲା ଉମା।

ଚଟ୍ କରି ମୁଣ୍ଡରେ ଓଢ଼ଣା ଟାଣି ନେଇ ଶ୍ରଦ୍ଧା କହିଉଠିଲେ, "ଆସ ବାବା, ଭିତରକୁ ଆସ। ଆସରେ ପିଲେ, ଆସ। ଅନି ଲୋ, କୁଆଡ଼େ ଗଲୁ? ... ଦେଖ ତ କିଏ ସବୁ ଆସିଛନ୍ତି।"

ମା'ଙ୍କ ପାଟି ଶୁଣି ଅନି ରୋଷେଇ ଘରୁ ବାହାରି ଆସିଲା। ସେ ଅଚିହ୍ନା ଆଖି ନେଇ ଆଗନ୍ତୁକ ଅତିଥିମାନଙ୍କୁ ଚାହିଁ ରହିଲା କେଇଟା ମୁହୂର୍ତ୍ତ ପାଇଁ। କିନ୍ତୁ ପର ମୁହୂର୍ତ୍ତରେ ହିଁ ଚିହ୍ନି ପାରିଲା ଉମାକୁ।

"ଉମା ଦି'!!" ଧାଇଁ ଆସି ଅନୁପମା ଜଡ଼େଇ ଧରିଲା ତା' ସାଙ୍ଗର ଭଉଣୀକୁ। "ଏ କି ଚେହେରା କରିଛ ଉମା ଦି'?"

"ଆଉ ଚେହେରା!!" ବିଛଣା ଉପରେ ବସିଯାଇ ମ୍ଳାନ ଭାବରେ ହସିଲା ଉମା, "ବଞ୍ଚି ରହିଛୁ କହ, ସେଇଟା ବଡ଼ କଥା।"

"ଏମିତି କ'ଣ କହୁଛ ଉମା ଦି'?"

"ସତ କହୁଛି ଭଉଣୀ। ଜୀବନରେ ଯେ ଏମିତି ଦିନ ଦେଖିବାକୁ ହେବ, ତା' ମୁଁ କେବେ କଳ୍ପନା ବି କରି ନ ଥିଲି। ଏୟାକୁ ନା କହନ୍ତି ବିଧିର ବିଧାନ।"

"ଉମା ଦି, କୁହ କ'ଣ ହେଇଛି?"

"ସବୁ କହିବି ରେ ଅନି। ତୁ ଆଗ ମୋ ପିଲାଙ୍କ ପାଟିରେ ଦି' ମୁଠା ଦାନା ଦେଇ ପାରିବୁ? କାଲି ଦିପହର ପରଠୁଁ କିଛି ଖାଇ ନାହାନ୍ତି ସେମାନେ।"

"କାଲିଠୁଁ ଖାଇ ନାହାନ୍ତି?? ତମେ ଆଗ ପିଲାଙ୍କୁ ନେଇ ଭିତରକୁ ଆସ ତ। ସେଇଠି ଅଗଣାରେ ସେମାନଙ୍କ ହାତ ମୁହଁ ଧୋଇ ଦିଅ। ମୁଁ ସେମାନଙ୍କର ଖାଇବା ବ୍ୟବସ୍ଥା କରୁଛି।"

ଏତେ କଥାବାର୍ତ୍ତା ଭିତରେ ପଦଟିଏ କଥା କହି ନ ଥିଲା ଭାସ୍କର। ଉମାର ବର। ବିଭ୍ରାନ୍ତ ଦୃଷ୍ଟି ନେଇ ଏବେ ବି ସେ ବସି ରହିଥିଲା ପଥରର

ମୂର୍ତ୍ତିଟିଏ ଭଳି।

ଏ କିଶୋର ଗଙ୍ଗାର ମୈତ୍ର ପରିବାରର ପୁଅ ନା ? ଶ୍ରଦ୍ଧା ମନେ ପକାଉଥିଲେ। ହଁ, ସେୟା ତ କହିଥିଲେ ଶିବାନନ୍ଦ ସାନ୍ୟାଲ। ଯେତେବେଳେ ଉମା ବାହାଘର ପାଇଁ ନିମନ୍ତ୍ରଣ କରିବାକୁ ଆସିଥିଲେ, ସେତେବେଳେ ତୋଇଁର ପରିବାର ବିଷୟରେ କେତେ ପ୍ରଶଂସା କରି କହିଥିଲେ। କହିଥିଲେ ଯେ ଜମିଦାରଠୁଁ କମ୍ ନୁହନ୍ତି ସେମାନେ। ଅପର୍ଯ୍ୟାପ୍ତ ଚାଷ ଜମି। କୋଠା ଘର। ଗାଡ଼ି ଘୋଡ଼ା କେତେ କ'ଣ।

ସେଇ ବଂଶର ପୁଅଟିର ଏମିତି ଚେହେରା କାହିଁକି ହେଇଛି ?

ପିଲାଙ୍କୁ ଖୁଆଇ ସାରିବା ପରେ ଅନି ଭାସ୍କରକୁ ଭିତରକୁ ଡାକି ନେଲା। ତାଙ୍କ ହାତରେ ଅନିରୁଦ୍ଧର ଧୋତି ପଞ୍ଜାବୀଟିଏ ଧରେଇ ଦେଇ ତାଙ୍କୁ ଗାଧୋଇବାକୁ ପାଣି କାଢ଼ି ଦେଲା। ଆଉ ଉମାକୁ ନିଜର ଶାଢ଼ିଟିଏ ଜବରଦସ୍ତି ପିନ୍ଧାଇଲା। ଏତେ ବେଳକେ ଯାଇ ମଣିଷ ଭଳି ଦିଶିଲେ ସେମାନେ। ତା'ପରେ ଆସନ ପକାଇ ରୋଷେଇ ଘର ଭିତରେ ଦୁଇ ଜଣଙ୍କୁ ବସେଇ ଦେଇ ଅନୁପମା ଏକାଠି ଖାଇବାକୁ ବାଢ଼ି ଦେଲା।

ଚବିଶ ଘଣ୍ଟା ଉପାସ ରହିବା ପରେ ପେଟରେ ଖାଦ୍ୟ ପଡ଼ିଲା। ଖାଇ ସାରିବା କ୍ଷଣି ଭାସ୍କର ଆଉ ବସି ପାରିଲା ନାହିଁ। ଅନିରୁଦ୍ଧର ବିଛଣାରେ ସେ ନିଦରେ ଶୋଇ ପଡ଼ିଲା।

ଉମା ଭିତର ଘରେ ପିଲା ତିନିଙ୍କୁ ଶୁଆଇ ଦେଇ ଅଗଣାରେ ଆସି ବସିଲା। ଶ୍ରଦ୍ଧା କୋମଳ ଭାବରେ କହିଲେ, ''ତୁ ଟିକିଏ ଗଡ଼ି ପଡ଼ିଲୁନି, ମା'।''

''ଶୋଇବି ମାସୀମା' ଶୋଇବି। ହେଲେ ତୁମେ ଭାବୁଛ ନିଦ ହେବ ? ମୋ ଛାତି ଫାଟି ଯାଉଛି ଗୋ।'' କାନ୍ଦୁରା ସ୍ୱରରେ ଉମା କହିଲା।

''କ'ଣ ହେଇଛି ମା' ? ମତେ କହ।''

''କ'ଣ ଆଉ କହିବି ମାସୀମା'। ଦେଶରେ କ'ଣ ସବୁ ହେଉଛି, ତା' କ'ଣ ତୁମେ ଜାଣିନ ?...''

ଶାଢ଼ି କାନିରେ ମୁହଁ ପୋଛି ନେଇ ଉମା ସବୁକଥା କହିବା ଆରମ୍ଭ କଲା।

ମୈତ୍ର ପରିବାରର ମଝିଆ ବୋହୂ ହୋଇଥିଲା ଉମା। ଦୁଇ ଦେଢ଼ଶୁର, ଦୁଇ ଦିଅର, ତିନି ନଣନ୍ଦ, ଶାଶୂ, ଶ୍ୱଶୁରଙ୍କୁ ନେଇ ଭରପୂର ପରିବାର ତାଙ୍କର। ସବୁ ଭଲରେ ଚାଲିଥିଲା ଏତେ ଦିନ। ନଣନ୍ଦମାନଙ୍କର ବାହାଘର ସରିଥିଲା। ସାନ ଦିଅରକୁ ଛାଡ଼ିଦେଲେ ସବୁ ପୁଅଙ୍କର ବୋହୂ ଆସି ସାରିଥିଲେ। ବଡ଼ ଦୁଇ ପୁଅ ଚାକିରି କରୁଥିଲେ। ସାନ ତିନି ଜଣ ଜମିଜମା ଖବର ବୁଝୁଥିଲେ।

ଏତିକି ବେଳେ ଆରମ୍ଭ ହୋଇଗଲା ଗଣ୍ଡଗୋଳ। ସେମାନଙ୍କ ଚାଷ ଜମିରେ କାମ କରୁଥିବା ସରଳ ମୁସଲମାନ ଚାଷୀଙ୍କୁ କେଇ ଜଣ ଗୁଣ୍ଡା ଶ୍ରେଣୀର ଲୋକ ମତେଇବା ଆରମ୍ଭ କରିଦେଲେ। ଗରିବ ଚାଷୀମାନେ ଭଲିଯାଇ ମାଲିକମାନଙ୍କଠାରୁ ଜମି ଛଡ଼ାଇ ନେବାର ଅଭିଯାନ ଆରମ୍ଭ କରିଦେଲେ। ମୁହଁ ଉପରେ କହିଦେଲେ ଯେ ଆଉ ଆଗ ଭଳି ଜମିର ବଡ଼ ଆୟ ସେମାନଙ୍କୁ ଦିଆ ଯାଇ ପାରିବ ନାହିଁ। ଏ ଦେଶ ହେବ ମୁସଲମାନଙ୍କର। ଏ ଜମି ବି ମୁସଲମାନଙ୍କର।

ଘଟଣାର ଏଭଳି ମୋଡ଼ରେ ବିବ୍ରତ ହୋଇ ମୈତ୍ର ପରିବାରର ସମସ୍ତେ ସ୍ଥିର କଲେ ଯେ ସବୁ ଟଙ୍କା ପଇସା, ଗହଣାଗାଣ୍ଠି ନେଇ ସେମାନେ ଚାଲିଯିବେ ପଶ୍ଚିମବଙ୍ଗ। ଜମି ସିନା ନାହିଁ, ହେଲେ ବଡ଼ ଦୁଇ ପୁଅଙ୍କର ଚାକିରି ତ ଅଛି। ସେଇଥିରେ କୌଣସି ମତେ ଚଳିଯିବେ। ପରେ ସମୟ ସୁବିଧା ଦେଖି ନହେଲେ ବ୍ୟବସାୟ ଆରମ୍ଭ କରାଯିବ।

ଗୋଟାଏ ସୋମବାର ଭୋରରୁ ସେମାନଙ୍କର ସବୁ ଚାଲିଯିବାର ଥିଲା। କିନ୍ତୁ ରବିବାର ରାତିରୁ ଉମାର ଜର ଆରମ୍ଭ ହୋଇଗଲା। ଜର ମାନେ ଖଇ ଫୁଟିବା ଭଳି ଜର। ଯନ୍ତ୍ରଣାରେ ତା' ଦେହ ହାତ ଭାଙ୍ଗି ଯାଉଥିଲା। ବିଛଣାରୁ ଓହ୍ଲେଇ ମାଟିରେ ପାଦଟିଏ ରଖିବାର ଅବସ୍ଥା ନ ଥିଲା। ମଝିଆ ବୋହୂର ଏଭଳି ଅସୁସ୍ଥତା ଦେଖି ଶ୍ୱଶୁର ସେମାନଙ୍କର ଯିବା ବନ୍ଦ କରେଇ ଦେବା ଉପରେ ଥିଲେ। କିନ୍ତୁ ଭାସ୍କର ବାଧ କଲା। ସବୁ ଆୟୋଜନ ସରିଛି ଯେତେବେଳେ ନ ଯିବାଟା ଠିକ୍ ହେବନି। ସେ ତା' ତିନି ପିଲାଙ୍କୁ ଧରି ରହିଯିବ। ଉମାର ଦେହ ଟିକିଏ ଭଲ ହେଲେ ସେମାନଙ୍କୁ ନେଇ ଚାଲି ଆସିବ।

ପରିସ୍ଥିତି ଦେଖି ଅନ୍ୟମାନଙ୍କୁ ଏଥିରେ ରାଜି ହେବାକୁ ହେଲା।

ଏଣେ ଉମାର ଜର ଛାଡୁ ଛାଡୁ ଦଶ ଦିନ ହୋଇଗଲା। ଜରରୁ ଉଠିବା

ପରେ ସେ ଏତେ ବେଶୀ ଦୁର୍ବଳ ହୋଇଯାଇଥିଲା ଯେ ସେତେବେଳର ଅବସ୍ଥା ଅସୁସ୍ଥତାଠୁଁ ବଳି ପଡ଼ିଲା। ବିଶ୍ରାମ ନେଇ ଦେହରେ ସାମାନ୍ୟ ଜୋର ଆଣୁ ଆଣୁ ତା'ରି ଭିତରେ କଟିଗଲା ମାସଟାଏ। ତା'ପରେ ଦିନେ ଭାସ୍କର ସେମାନଙ୍କର ଯିବା ବ୍ୟବସ୍ଥା କଲା। କିନ୍ତୁ ସେମାନେ ଘୋଡ଼ାଗାଡ଼ିରେ ବସି ବସ୍ ଧରିବାକୁ ଗଲାବେଳେ କେମିତି କେଜାଣି ମୁସଲମାନ ଚାଷୀମାନେ ଖବର ପାଇଗଲେ ଯେ ଏମାନେ ସବୁଦିନ ପାଇଁ ଦେଶ ଛାଡ଼ି ଚାଲି ଯାଉଛନ୍ତି।

ତା'ପରେ ସେ କି ଉତ୍କଟ କାଣ୍ଡ! ସେମାନଙ୍କର ଘର ଭିତରେ ପଶି ଯିଏ ଯାହା ପାଇଲା ନେଇଗଲା। ଶେଷରେ ପୁଣି ଘରଟାକୁ ନିଆଁ ଲଗେଇ ଦେଲେ ସେମାନେ। ଦୂରରୁ ଏ ଘଟଣା ଦେଖି ସ୍ଥାଣୁ ପାଲଟି ଯାଇଥିଲେ ଭାସ୍କର ଓ ଉମା। କିନ୍ତୁ ଦୁର୍ଦ୍ଦିନ ସରି ନ ଥିଲା ସେମାନଙ୍କର। ଆହୁରି ଭୋଗିବା ବାକି ଥିଲା।

ବସ୍ ପାଇଁ ଯେତେବେଳେ ତିନି ଛୁଆଙ୍କୁ ଧରି ଉମା ଓ ଭାସ୍କର ଅପେକ୍ଷା କରିଥିଲେ, ସେତେବେଳେ ଗୁଣ୍ଡାମାନଙ୍କ ପ୍ରରୋଚନାରେ ସେମାନଙ୍କ ଉପରେ ଆକ୍ରମଣ ଆରମ୍ଭ କରି ଦେଲେ କିଏ କିଏ ସବୁ। ଉମା ଦେହରୁ, ହାତରୁ ଗହଣା ଛଡ଼ାଇ ନେଲେ। ଭାସ୍କର ପାଖରୁ ସମସ୍ତ ଟଙ୍କା ଛଡ଼େଇ ନେଲେ। ସାନ ଛୁଆଟା ହାତର ବଳା ବି ଛାଡ଼ିଲେ ନାହିଁ ଚଣ୍ଡାଳମାନେ।

ହଠାତ୍ ଜୋର୍‌ରେ କାନ୍ଦି ପକାଇଲା ଉମା। କହିଲା, ''ଗହଣାଗାଣ୍ଠି ଚାଲିଗଲା ବୋଲି ମୋତେ ଯେତେ ଖରାପ ଲାଗୁନି, ତା'ଠୁଁ ବେଶୀ ଖରାପ ଲାଗୁଛି ନିଜ ଲୋକଙ୍କ ବ୍ୟବହାର। ମାସୀମା', ଆମେ କେବେହେଲେ କାହା ପ୍ରତି ଖରାପ ବ୍ୟବହାର କରିନୁ। ସମସ୍ତଙ୍କୁ ନିଜ ଭାଇ ବନ୍ଧୁ କୁଟୁମ୍ବ ଭଳି ଦେଖିଛୁ। ତଥାପି ସେମାନେ ଏମିତିଆ କାମ କାହିଁକି କଲେ ମୁଁ ବୁଝି ପାରୁନି।''

ଆଖିର ଲୁହ ପୋଛି ନେଇ ସେ ପୁଣି କହିଲା, ''ଜାଣିଛ ମାସୀମା', ଏଇ ଯେଉଁ ମଜିଦ୍ ମିଆଁ... ଯିଏ ମୋ ସାନର ହାତରୁ ବଳା କାଢ଼ି ନେଲା... ସେଇ ମଜିଦ୍ ମିଆଁର ପାଞ୍ଚ ପୁଅରେ ଝିଅ ହେଇଛି ବୋଲି ମୁଁ ରୁପାର ପାଉଁଜି ଦେଇ ଆସିଥିଲି। ନୂଆ ଜାମା ପଠେଇଥିଲି। ... ଅଥଚ ସେଇ ମଜିଦ୍ ମିଆଁ...'' ଶାଢ଼ି କାନିରେ ପୁଣି ଆଖି ମାଡ଼ି ଦେଲା ଉମା। ଆପଣାର ମଣିଷମାନେ ହଠାତ୍ କରି ଏମିତି ବଦଳି ଯାଇଥିବାର ଦୁଃଖ ସେ ସହି ପାରୁ ନ ଥିଲା

ଛମା ।

ଶ୍ରଦ୍ଧା ଉମାର ମୁଣ୍ଡ ଆଉଁଶି ଦେଲେ। ତାକୁ ପାଖକୁ ଟାଣି ଆଣି କହିଲେ, "ତୁମମାନଙ୍କର ଯେ ଜୀବନ ବଞ୍ଚି ଯାଇଛି, ସେଇଟା ବଡ଼ କଥା। ତୁ ଯା ତ ମା' ଶୋଇ ପଡ଼ ଟିକିଏ।"

ଅନିରୁଦ୍ଧ ଅଫିସ୍‌ରୁ ଫେରିବା ପର୍ଯ୍ୟନ୍ତ ଶୋଇ ରହିଥିଲେ ସେମାନେ ସମସ୍ତେ। ବଡ଼ ପୁଅକୁ ଚୁପ୍ କରି ଭିତରକୁ ଡାକି ନେଇ ଶ୍ରଦ୍ଧା ସବୁ କହିଲେ। ସବୁ ଶୁଣିବା ପରେ ଅନିରୁଦ୍ଧ କହିଲା, "ଏମାନଙ୍କୁ ଏବେ କିଛି ଦିନ ଏଇଠି ରଖେଇ ଦିଅ ମା'। ଯିବାକୁ ଦିଅନି। ରାସ୍ତା ଘାଟରେ ବଡ଼ ଲୁଟ୍ ମାର ଚାଲିଛି।"

"ମୁଁ କହିଲେ କ'ଣ ଶୁଣିବ ସେ ? ତୁ ବରଂ ବୁଝେଇ କହ ତାକୁ।"

"ସେୟା କରିବି। ତୁମେ ଚାହା ଟିକିଏ କର ତ ମା'। ମୁଁ ଭାସ୍କରଦା'ଙ୍କୁ ଉଠାଇ ଦିଏ।"

ବାରଣ୍ଡାରେ ବସି ଚାହା ପିଇବା ବେଳେ ଅନିରୁଦ୍ଧ ଭାସ୍କରକୁ କଥାଟି କହିଲା। କଥାର ଯଥାର୍ଥତା ବୁଝୁଥିଲେ ବି ଅପରିଚିତ ଲୋକଙ୍କ ଘରେ ଏଇମିତି ରହିଯିବା କଥା ଭାବି ଭାସ୍କର ଲଜ୍ଜିତ ହୋଇ ପଡ଼ିଥିଲା। ଆଜି ଅବଶ୍ୟ ଯେମିତି ହେଲେ ରହିବାକୁ ହେବ। ଉପାୟ କିଛି ନାହିଁ। ରାତିର ବସ୍ ଟ୍ରେନ୍‌ର ବ୍ୟବସ୍ଥା ହେଇ ପାରିବନି। ହେଲେ ତା' ବୋଲି ଏମିତି ଜଣଙ୍କ ଘରେ ଡେରା ପକେଇ ବସିଯିବାକୁ ହେବ ନା କ'ଣ ?

ତା'ର ଚିନ୍ତାଶୀଳ ମୁହଁକୁ ଚାହିଁ ଅନିରୁଦ୍ଧ କହିଲା, "କ'ଣ ଏତେ ଭାବି ହେଉଛ ଭାସ୍କରଦା' ?"

"ନା - ସେମିତି କିଛି ନୁହଁ। ବାବା, ମା', ଦାଦା - ଏମାନେ ବ୍ୟସ୍ତ ହେଉଥିବେ ଆମ ପାଇଁ।"

"ହଁ, ତା' ତ ହେଉଥିବେ। ତଥାପି ମୋ ମତରେ ଏବେ ଛମା ଯିବା କଥା ନୁହଁ। ସେପଟ ଆଡ଼େ ଭାରି ଗଣ୍ଡଗୋଳ ଚାଲିଛି ବୋଲି ଶୁଣୁଛି। କେମିତି ଯିବ ଛୁଆ ପିଲା ଧରି ?"

ହଠାତ୍ ଯେମିତି ମନ ସ୍ଥିର କରି ପକେଇଲା ଭାସ୍କର। ଗଳାରେ ଜୋର ଆଣି ଅନିରୁଦ୍ଧ ଆଖିରେ ଆଖି ରଖି କହିଲା, "ନା ଭାଇ, ମତେ ଯିବାକୁ ହେବ। ଯେମିତି ହେଉ ଚାଲି ଯିବାକୁ ହେବ। ଘର ଲୋକେ ସିନା ଚାଲି

ଯାଇଛନ୍ତି ପଶ୍ଚିମ ବଙ୍ଗ, କିନ୍ତୁ କେମିତି ଅଛନ୍ତି, କ'ଣ କରୁଛନ୍ତି, କିଛି ଜାଣିନି। ଭଲରେ ପହଞ୍ଚିଲେ କି ନାହିଁ, ସେ ଖବର ଟିକକ ଏପର୍ଯ୍ୟନ୍ତ ମୋ ପାଖରେ ପହଞ୍ଚିନି। ଭାରି ବ୍ୟସ୍ତ ଲାଗୁଛି। ... ମୁଁ ସୁବିଧା କରି ଚାଲିଯିବି ଖୁବ୍ ଶୀଘ୍ର।''

''ହେଲେ ଯିବ କେମିତି?''

''ଜାଣିନି। କିଛି ଭାବିବାକୁ ହେବ। କାଲି ଏଠି ଘୂରାଘୂରି କରି ଖୋଜ ନେବି।''

''ଖୋଜ ନେବ ତ ନିଅ। ହେଲେ ତରବର ହୋଇ କିଛି କରିବ ନାହିଁ। ଭଲରେ ଭାବି ଚିନ୍ତି ତା'ପରେ ଯାହା କରିବା କଥା କରିବ। ...ଏଇଟାକୁ ନିଜ ଘର ବୋଲି ମନେ କରିବ ଭାସ୍କରଦା'।''

ଭାସ୍କର ଆଖିକୁ ଲୁହ ଚାଲି ଆସିଲା। ମୁଣ୍ଡ ପୋତି ସେ ବାରଣ୍ଡାରେ ବସି ରହିଲା ବେଶ୍ କେତେ ସମୟ।

ପରଦିନ ସକାଳୁ ଜଳଖିଆ ଖାଇ ବାହାରିଗଲା ଭାସ୍କର। ସାରା ଦିନ ବୁଲି ବୁଲି ପାଞ୍ଚଟା ବେଳେ ସେ ଯେତେବେଳେ ଫେରିଲା, ସେତେବେଳେ ତା' ହାତରେ ଥିଲା ବୁର୍ଖା ଆଲ୍‌ଖାଲା।

''ଏ କ'ଣ?'' ଶ୍ରଦ୍ଧା ଅବାକ ଭାବରେ ପଚାରି ଉଠିଲେ।

''ମାସୀମା', ପୂର୍ବ ବଙ୍ଗରୁ ବାହାରି ଯିବା ପାଇଁ ଏଇଟା ଏକମାତ୍ର ଉପାୟ। ଏସବୁ ପିନ୍ଧି ମୁସଲମାନ ସାଜି ଯିବାକୁ ହେବ। ଉପାୟ ନାହିଁ। ହିନ୍ଦୁ ବୋଲି ଜାଣିଲେ ବାଟରେ ଯେ କି ଅତ୍ୟାଚାର ଆରମ୍ଭ ହୋଇଯିବ, କିଏ ଜାଣେ।''

''ଏବେ ବାହାରିଯିବ!!''

''ଟିକିଏ ଅନ୍ଧାର ହେଉ ହେଉ ବାହାରିଯିବୁ ମାସୀମା'।'' କ୍ଳାନ୍ତ ଭାବରେ ଭାସ୍କର ଉତ୍ତର ଦେଲା।

''କିନ୍ତୁ ଅନିରୁଦ୍ଧ କହିଲା ଯେ ବାଟରେ...''

''କିଛିଟା ଦୁଃସାହସ କରିବାକୁ ହେବ।''

ଆସନ୍ନ ବିପଦର ଆଶଙ୍କାରେ ଶ୍ରଦ୍ଧାଙ୍କର ଡାହାଣ ଆଖି କମ୍ପି ଉଠିଲା। କିନ୍ତୁ ସେ ଆଉ କିଛି ନ କହି ସେମାନଙ୍କର ଖାଇବା ବ୍ୟବସ୍ଥା କରିବାକୁ ଚାଲିଗଲେ। ଭାତ ଦିଇଟା ବରଂ ଖାଇ ଯାଆନ୍ତୁ। ରାତିରେ କିଛି ମିଳିବ କି ନାହିଁ କିଏ ଜାଣେ?

ସନ୍ଧ୍ୟା ହୋଇଯିବା ମାତ୍ରକେ ତରବର ହୋଇ ଦି'ଟା ଖାଇଦେଇ ସେମାନେ ବାହାରିଗଲେ। ଅନିରୁଦ୍ଧ ଘରକୁ ଫେରିବା ପର୍ଯ୍ୟନ୍ତ ଆଉ ଅପେକ୍ଷା କରି ପାରିଲେ ନାହିଁ।

ସବୁ ଦିନ ଭଳି ଦୋକାନରୁ ଫେରିବା ମାତ୍ରକେ ଅନିରୁଦ୍ଧ ଘର ଭିତରେ ଆଖି ବୁଲେଇ ଆଣି ପଚାରିଲା, ''କୁଆଡ଼େ ଗଲେ ଉମା ଭଉଣୀ? ପିଲାଙ୍କୁ ବି ଦେଖୁନି ଯେ।''

''ସେମାନେ ଚାଲିଗଲେ।''

''ଚାଲିଗଲେ??'' ଅନିରୁଦ୍ଧର ମୁହଁ କେମିତି ଶେତା ପଡ଼ିଗଲା। ''ତୁମକୁ ଏତେ କରି କହିଥିଲି, ତଥାପି ତୁମେ ସେମାନଙ୍କୁ ଛାଡ଼ି ଦେଲ? ତୁମେ ତାଙ୍କୁ ଅଟକାଇ ପାରିଲ ନାହିଁ ମା'?''

''ମନା କରିଥିଲିରେ। କିନ୍ତୁ ଭାସ୍କର ପୂରାପୂରି ମନ ସ୍ଥିର କରି ନେଇଥିଲା। ଅଧିକା ଜୋର ଜବରଦସ୍ତି କରିଥାଆନ୍ତି କେମିତି?''

''ମା', କଥାଟା ଜମା ଭଲ ହେଲାନି। ଆଜି ସେପଟେ ଭାରି ଗଣ୍ଡଗୋଳ ଚାଲିଛି ବୋଲି ଶୁଣି ଆସିଲି। କୁଆଡ଼େ ଗାଡ଼ି ଘୋଡ଼ାରୁ ହିନ୍ଦୁମାନଙ୍କୁ ଟାଣି ଆଣି ନୃଶଂସ ଭାବରେ...'' ଆଉ କିଛି କହି ପାରିଲା ନାହିଁ ସେ।

ଘରର ନିସ୍ତବ୍ଧତା ଭାଙ୍ଗି ଅନୁପମା କହିଲା, ''ହେଲେ ଦାଦା, ସେମାନେ ସବୁ ମୁସଲମାନ ସାଜି ଯାଇଛନ୍ତି।''

''ମୁସଲମାନ ସାଜି? ମାନେ?''

''ଉମା ଦି ବୁର୍ଖା ପିନ୍ଧି ନେଇଛି। ମୁଣ୍ଡରୁ ସିନ୍ଦୂର ପୋଛି ଦେଇଛି। ହାତରୁ ଶଙ୍ଖା କାଢ଼ି ନେଇ ପାଣିକାଚ ଗଳେଇଛି। ଆଉ ଭାସ୍କର ଦାଦା ଆଲ୍‌ଖାଲା ପିନ୍ଧି ନେଇଛନ୍ତି। ... କେହି ଧରି ପାରିବେନି ସେମାନେ ହିନ୍ଦୁ ବୋଲି।''

''ଓ।'' ଏତେ ବେଳକୁ ଅନିରୁଦ୍ଧର ଆଶଙ୍କା କମିଲା। କିନ୍ତୁ ସମ୍ପୂର୍ଣ୍ଣ ଭାବରେ ନିଶ୍ଚିନ୍ତ ହୋଇ ପାରୁ ନ ଥିଲା ସେ।

ଅନିରୁଦ୍ଧର ଆଶଙ୍କା ଯେ ଅମୂଳକ ନୁହଁ, ସେ କଥା ସକାଳୁ ସକାଳୁ ପ୍ରମାଣିତ ହେଇଗଲା।

ରାତି ପାହିବା କ୍ଷଣି ପ୍ରାୟ ଚିତ୍କାର କରି କାନ୍ଦି କାନ୍ଦି ତାଙ୍କ କ୍ଲବ୍‌ର ପିଲାଟାଏ ଆସି ପହଞ୍ଚି ଗଲା ସେମାନଙ୍କ ଘରେ। ''ଶୀଘ୍ର ଚାଲ ଅନିରୁଦ୍ଧ

ଦାଦା । ବିରାଟ କାଣ୍ଡଟାଏ ହୋଇ ଯାଇଛି ।''

''କ'ଣ ହୋଇଛି ? ...ଆରେ ଏତେ କାନ୍ଦୁଛୁ କାହିଁକି ? କହ, କ'ଣ ହୋଇଛି ?''

''କାଲି ଏଇଠୁ ଯାଇଥିଲେ ନା ଶିବାନନ୍ଦ ସାନ୍ୟାଲଙ୍କର ନାତୁଣୀ ଆଉ ତାଙ୍କ ପରିବାର ?''

''ହଁ ଯାଇଥିଲେ ତ । କ'ଣ ହେଲା ସେଠୁ ? ସେମାନେ ଏତେବେଳକୁ ସୀମା ପାର ହେଇ ସାରିବେଣି କି କ'ଣ ।''

''ନା ଗୋ ନା, ଆଉ କୌଣସି ଦିନ ସୀମା ପାର ହୋଇ ପାରିବେନି ସେମାନେ ।''

''କ'ଣ ଏମିତି ପାଗଳଙ୍କ ଭଳି କହୁଛୁ ? କ'ଣ ହୋଇଛି ?''

''କାଲି ପାବ୍‌ନା ଟପି ଗଲାବେଳେ ସେମାନଙ୍କୁ ବାଟରେ କେତେ ଜଣ ମୁସଲ୍‌ମାନ ଅଟକାଇଦେଲେ ।''

''ହେଲେ ସେମାନେ ତ ବୁର୍ଖା, ଆଲ୍‌ଖାଲା ପିନ୍ଧି ଥିଲେ । ଉମା ବି ତା' କପାଳରୁ, ସୁନ୍ଥାରୁ ସିନ୍ଦୂର ଧୋଇ ନେଇଥିଲା ।''

''ହଁ, ଅନିରୁଦ୍ଧ ଦାଦା । ସେ ତ ସେସବୁ କରିଥିଲେ । ହେଲେ ତାଙ୍କ ବରଟି ଯେ ବେକରୁ ପଇତା ଖୋଲି ରଖି ଯିବା କଥା ଭୁଲି ଯାଇଥିଲେ ।''

''ପଇତା !!'' ଅନିରୁଦ୍ଧର ମୁହଁ ଶେତା ପଡ଼ିଗଲା । ''ତାହେଲେ...''

''ତା'ହେଲେ ଆଉ କ'ଣ ଦାଦା ପଚାରୁଛ ? ସେମାନଙ୍କୁ ଟାଣି ଆଣି ଗଳା କାଟି ପକେଇଛନ୍ତି ପରା ସେ ଜନ୍ତୁଗୁଡ଼ାକ । ପିଲା ତିନିଟାଙ୍କୁ ବି ଛାଡ଼ି ନାହାନ୍ତି । ...ଓଃ, ସେ ଦୃଶ୍ୟ ଆଖିରେ ଦେଖିବା ପରେ କିଏ ଛାତି ଧରି ରହି ପାରିବ ?''

ଦୁଇ ହାତରେ ମୁହଁ ଘୋଡ଼ାଇ ଦେଲା ସେ ।

ଅନିରୁଦ୍ଧ ପଥର ହୋଇଯାଇଥିଲା । ଖବର ଶୁଣି ଅନୁପମା ଓ ଶ୍ରଦ୍ଧା କନ୍ଦାକଟା ଆରମ୍ଭ କରିଦେଲେ । କିନ୍ତୁ ଅନିରୁଦ୍ଧର ଆଖିରୁ ଟୋପାଏ ଲୁହ ଝରି ନ ଥିଲା । ସେ ଖାଲି ବସି ଭାବି ହେଉଥିଲା ।

ଏ ଅରାଜକ ରାଜ୍ୟରୁ ଚାଲିଯିବାକୁ ହେବ । ଯେତେ ଶୀଘ୍ର ସମ୍ଭବ ।

କିନ୍ତୁ ଚାଲିଯିବ କେମିତି ? ଆଉ କିଛି ମାସ ପରେ ଯେ ଅନିର ବାହାଘର । ବାହାଘର ଯାଏଁ ତ ଯେମିତି ହେଉ ଅପେକ୍ଷା କରିବାକୁ ପଡ଼ିବ ।

ତା'ପରେ ? ତା'ପରେ କ'ଣ ହେବ ? ସେ କ'ଣ ଅନିକୁ ଏଇ କଂଗ୍ରେସଙ୍କ ରାଜ୍ୟରେ ପକେଇ ଦେଇ ମା'ଙ୍କୁ ନେଇ ନିଜ ପ୍ରାଣ ବଞ୍ଚେଇବାକୁ ଚାଲି ଯାଇ ପାରିବ ?

ନା, ଚକ୍ରବର୍ତ୍ତୀ ବାବୁଙ୍କ ସାଙ୍ଗରେ କଥା କହି ବୁଝି ନେବାକୁ ହେବ। ସେମାନେ ସବୁ ପଶ୍ଚିମବଙ୍ଗ ଚାଲିଯିବା ବିଷୟରେ କ'ଣ ଭାବୁଛନ୍ତି, ସେଇଟା ଜାଣି ନେବାକୁ ହେବ। ଦରକାର ପଡ଼ିଲେ ତାଙ୍କୁ ବୁଝେଇ ଭୟ ଦେଖାଇ ପାବ୍‌ନା ଛାଡ଼ିବାର ଉପଦେଶ ଦେବାକୁ ହେବ। ଯେମିତି ହେଉ।

ଭାଗ୍ୟ ଭଲ, ଅର୍ଚ୍ଚନା ଚାଲି ଯାଇ ସାରିଛି ଏଠୁ। ଅନାତ୍ମୀୟ ଲୋକଙ୍କ ପାଖରେ ଅଛି ସିନା, କିନ୍ତୁ ଭଲରେ ତ ଅଛି। ସେତିକି ଯଥେଷ୍ଟ ଅନିରୁଦ୍ଧ ପାଇଁ।

''ପିସେମଶାଏ ଚାହା।'' ଅର୍ଚ୍ଚନା ଉମାକାନ୍ତ ଘୋଷାଲଙ୍କ ହାତକୁ ଚାହା କପେ ବଢ଼ାଇ ଦେଲା।

ଖୁବ୍ ସକାଳୁ ଉଠି ପଡ଼ିବା ଉମାକାନ୍ତଙ୍କର ପୁରୁଣା ଅଭ୍ୟାସ। ଆଉ ଉଠିବା ପରେ ହିଁ ତାଙ୍କର ଦରକାର ହୁଏ କପେ ଚାହା। ଏତେ ବର୍ଷ ଧରି ଚମ୍ପା ସେଇ କାମଟି କରି ଆସୁଥିଲେ। ଅର୍ଚ୍ଚନା ଆସିବା ପରଠୁଁ ସେଥିରେ ପରିବର୍ତ୍ତନ ହେଇଛି। ଅର୍ଚ୍ଚନା ଜୋର୍ କରି ନିଜ ହାତକୁ ଏଇ କାମଟି ନେଇ ଯାଇଛି।

ତା' ହାତରୁ ଚାହା କପ୍‌ଟି ନେଉ ନେଉ ଉମାକାନ୍ତ ବହିରୁ ମୁଣ୍ଡ ଟେକି ପଚାରିଲେ, ''ତୋ ପିସୀମା' ଉଠିଲାଣି କି ରେ ମା'? ...ତାକୁ ପଚାର ତ, ଆଜି କ'ଣ କ'ଣ ଆସିବ ବଜାରରୁ। ଆଉ ମାଛ, ପରିବା ବ୍ୟାଗ୍‌ଟା ଆଣି ଦେ। ଖରା ବେଶୀ ହେବା ଆଗରୁ ମୁଁ ଟିକିଏ ବୁଲି ଆସେ ସେଇ ଆଡ଼ୁ।''

ସକାଳୁ ଉଠି ଅଘଣ୍ଟା ପାଟିରେ ଚାହାଟା ପିଇ ଦେଇ ହାତରେ ବ୍ୟାଗ୍ ଝୁଲେଇ ଉମାକାନ୍ତ ଘୋଷାଲ ସବୁଦିନ ହାଟକୁ ବାହାରିଯାଆନ୍ତି। ବର୍ତ୍ତମାନର ଅବସରପ୍ରାପ୍ତ ଜୀବନରେ ଏଇଟା ତାଙ୍କର ପରମ ଆନନ୍ଦର କାର୍ଯ୍ୟ। ସାରାଟା

ବଜାର ବୁଲି ବୁଲି ସବୁ ଜିନିଷ ତଦାରଖ କରି ଦରଦାମ୍ କରି ସେ ମାଛ, ପରିବା କିଣନ୍ତି। ତାଙ୍କୁ ଦେଖି ଚିହ୍ନା ମାଛବାଲାଟା ଦୂରରୁ ପାଟି କରି ଉଠେ, "ଏଇ ଯେ ବାବୁ, ଦେଖନ୍ତୁ ଆଜି ଆପଣଙ୍କ ପାଇଁ କ'ଣ ଆଣିଛି। ଚିତଳ ମାଛର ପେଟି। ଅଲଗା କରି ରଖି ଦେଇଛି ଆପଣଙ୍କ ପାଇଁ।"

ମନେ ମନେ ଉତ୍ଫୁଲ୍ଲ ହେଲେ ବି ଗମ୍ଭୀର ଭାବରେ ଉମାକାନ୍ତ ପଚାରନ୍ତି, "ହୁଁ। କିଲୋ କେତେ ?"

ଆଉ ଦାମ୍‌ଟା ଶୁଣି ଦେଇ କହନ୍ତି, "ତୁମର ବାବୁ ମାଛଟା ବୋଧେ ବିକ୍ରି କରିବାର ଇଚ୍ଛା ନାହିଁ। ନହେଲେ ସୁନା ରୂପାର ଦର ହାଙ୍କନ୍ତ ? ଆଚ୍ଛା ଥାଉ..." ସେ ଚାଲିଯିବାକୁ ପାଦ ବଢ଼ାନ୍ତି।

ମାଛବାଲା ଗଳାରେ ହାତ ଦେଇ କହି ଉଠେ, "ରାମ ରାମ ମଣାଏ, ମୋ ଦୋକାନକୁ ଆସି ପୁଣି ମାଛ ନ ନେଇ ଫେରିଯିବେ ? ଲକ୍ଷ୍ମୀ ଆଉ ରହିବେ ଏଠି ?   ଆପଣ କୁହନ୍ତୁ କେତେ ଦେବେ। ଯାହା କହିବେ ସେଇ ଠିକ୍।"

କହିବା ବାହୁଲ୍ୟ, ଉମାକାନ୍ତ ଯାହା କହନ୍ତି ତାହା ନେଇ ମାଛବାଲା ସହଜେ ରାଜି ହୁଏ ନାହିଁ। ଦୁଇଜଣଙ୍କର ଦର କଷାକଷି ଚାଲେ ଖୁବ୍ ସୁନ୍ଦର ଭାବରେ। ଶେଷରେ ମାଛକୁ ମାଛ ବ୍ୟାଗ୍‌ରେ ରଖି ଗର୍ବର ସହିତ ଘରକୁ ଫେରନ୍ତି ସେ।

ଏଇ ଯେଉଁ ଆନନ୍ଦ, ତା' କେତେଟା ଲୋକ ବୁଝିବେ ? ନିଜେ ଉମାକାନ୍ତ ଜାଣିଥିଲେ କି ?

ଚାକିରି କରିବା ବେଳେ ତାଙ୍କର ବଜାରକୁ ଯିବାର ପ୍ରଶ୍ନ ନ ଥିଲା। ଘରର ଚାକର ବାକର ମଧ୍ୟ ନିୟମିତ ଭାବରେ ବଜାର ଯିବାର ଆବଶ୍ୟକତା ପଡୁ ନ ଥିଲା। କୋଉଠୁ ସବୁ ଆସି ଘର ଭିତରେ ଗଦା ହୋଇ ଯାଉଥିଲା ମାଛ, ପରିବା, ଫଳମୂଳ। ଖାଇବାକୁ ତ ଦିଓଟି ମାତ୍ର ପ୍ରାଣୀ। ସବୁ ସେଇ ଚାକର ବାକର ଖାଉଥିଲେ।

କିନ୍ତୁ ଅବସର ନେବା ପରେ ବେଶୀ ଜିନିଷ କିଣନ୍ତୁ ବା କମ୍, ବଜାରକୁ ଯିବା ରୁଟୀନ ହୋଇଯାଇଛି ଉମାକାନ୍ତଙ୍କର। ଆଜି ରବିବାର ବୋଲି ସେଥିରେ ପରିବର୍ତ୍ତନ ଆସିଥାଆନ୍ତା କାହିଁକି ?

ଅର୍ଚ୍ଚନାଠୁଁ ବ୍ୟାଗ୍ ନେଇ ଉମାକାନ୍ତ ବଜାର ବାହାରି ଯାଇଥିଲେ। ସ୍ତ୍ରୀଙ୍କର

ବରାଦ୍ ଅଛି ଛୋଟ ଚିଙ୍ଗୁଡ଼ି ନେଇ ଆସିବାକୁ। ଆଉ ପୁଣି ଭାକୁଡ଼ମାଛ, ଫୁଲକୋବି, ଲାଉ। ଆଜି ଫୁଲକୋବି ଦେଇ ମାଛ ଝୋଳ ହେବ। ତା' ସାଙ୍ଗରେ ଦୀପେନ୍‌ର ପ୍ରିୟ ଲାଉ ଚିଙ୍ଗୁଡ଼ି।

ଉମାକାନ୍ତ ବଜାର ଚାଲିଯିବା ପରେ ସକାଳ ଜଳଖିଆ ପାଇଁ ଲୁଚି, ଆଳୁଦମ୍‌ର ଆୟୋଜନରେ ଲାଗି ପଡ଼ିଥିଲା ଅର୍ଚ୍ଚନା। ସବୁ ରବିବାର ସକାଳେ ଏଇଟା ଧରାବନ୍ଧା ଜଳଖିଆ। ଅବଶ୍ୟ ଅର୍ଚ୍ଚନା ଆସି ରହିବା ପରେ ଏଇଟା ଧରାବନ୍ଧାର ପର୍ଯ୍ୟାୟରେ ପଡ଼ିଛି। ନ ହେଲେ ତ ଆଗରୁ ରବିବାର ଦିନ ବଜାରର କଚୁଡ଼ି ଖାଇ ଉମାକାନ୍ତଙ୍କୁ ସନ୍ତୁଷ୍ଟ ହେବାକୁ ହେଉଥିଲା। ଚମ୍ପାଙ୍କର ହାତରେ ବାତ। ମଇଦା ଚକଟାଚକଟି ସେ ପାରନ୍ତି ନାହିଁ। ସ୍ୱାମୀଙ୍କୁ ଚାକିରିରୁ ସବୁଦିନିଆ ଛୁଟି ମିଳିଯିବା ପରେ ରୋଷେଇଆ ବ୍ରାହ୍ମଣ ରଖିବାର ଅୟସଟି ଛାଡ଼ିବାକୁ ହୋଇଛି। ତେଣୁ ଅଧିକାଂଶ ଦିନର ଜଳଖିଆ ମୁଢ଼ି। ଆଉ ପାଟି ବଦଳାଇବା ପାଇଁ ରବିବାର ଦିନ କିଣା ଜଳଖିଆ ଘରକୁ ଆସୁଥିଲା। ଅର୍ଚ୍ଚନା ଆସି ପାଖରେ ରହିବାରୁ ସିନା ସବୁ ବଦଳିଲା! ଚମ୍ପା ସ୍ନେହର ଆଖିରେ ଝିଅଟିକୁ ଦେଖୁଥିଲେ।

କି କାମିକା ଝିଅ! ସବୁ ଚଟ୍‌ପଟ୍ କରି ନିଏ। ଏହାରି ଭିତରେ ମଇଦାଟା ମଏନ୍ ଦେଇ ଚକଟି ସାରିଲାଣି। ବଟା ମସଲା କଷି ଆଳୁଦମ୍ ବସେଇ ସାରିଲାଣି।

''ପିସୀମା', ମୁଁ ଯାଉଛି ଗାଧୋଇବାକୁ। ସବୁ କାମ ସରିଲାଣି। ଆଳୁଦମ୍‌ଟା ବସିଛି ଚୁଲିରେ। ଟିକିଏ ପରେ ଓହ୍ଲେଇ ଦେବ। ପିସେମଶାଏ ତ ଫେରି ନାହାନ୍ତି। ଫେରିଲେ ଗରମ ଗରମ ଲୁଚି ଭାଜି ଦୀପେନ୍ କାକୁ ଓ ପିସେମଶାଏଙ୍କୁ ଦେଇ ଦେବି। ଆଚ୍ଛା?'' ଅର୍ଚ୍ଚନା ଗାଧୋଇବାକୁ ବାହାରିଗଲା।

ଆଜି ସକାଳଠୁଁ ତାକୁ କିଛି ଭଲ ଲାଗୁନି। ଭଲ ନ ଲାଗିବାର କଥା। କି ନିର୍ଲଜ୍ଜାମି କରି ପକେଇଛି ସେ ଆଗ ଦିନ ସଂଧ୍ୟାରେ। ଉମାକାନ୍ତ ପିସେମଶାଏ ଓ ଦୀପେନ୍ କାକୁଙ୍କ ସାମ୍ନାରେ ଏଭଳି ଯୁକ୍ତି କରିବାଟା କ'ଣ ଉଚିତ ହୋଇଛି ତା'ର? ତା' ପୁଣି ଶରତଚନ୍ଦ୍ରଙ୍କ ଶେଖର ଓ ଲଳିତାଙ୍କ ସମ୍ପର୍କ ନେଇ। ଛି ଛି ଛି। ଅର୍ଚ୍ଚନାର ମୁହଁ ପୋଡ଼ି ଯାଉଛି। ଗୁରୁଜନମାନଙ୍କ ସାମ୍ନାରେ ଏସବୁ ବିଷୟରେ କିଏ ଆଲୋଚନା କରେ?

ମନର ଭାବନାକୁ ଚାପି ଦେବା ପାଇଁ ସେ ଜୋର୍‌ରେ ପାଣି ଢାଳି ହେଲା।

ରୋଷେଇଘର ଭିତରେ କ୍ଷୀର ଫୁଟାଉଥିଲେ ଚମ୍ପା। ଏଇ ମାତ୍ର କ୍ଷୀରବାଲା ଆସି ଦେଇ ଯାଇଛି। ତାଙ୍କରି ପାଖରେ ପିଢ଼ାଟାଏ ଟାଣି ଆଣି ଦୀପେନ୍ ବସିଲେ। ''ଦିଦି, କପେ ଚାହା ଦେବୁ?''

ଦୀପେନ୍‌ଙ୍କର ଚାହା ମାଗିବା ଘଟଣାଟି ଚମ୍ପାଙ୍କୁ ଯେତେ ଅବାକ୍ ନ ଲାଗିଲା, ତା'ଠାରୁ ଅଧିକ ଆଶ୍ଚର୍ଯ୍ୟ ଲାଗିଲା ତାଙ୍କର ରୋଷେଇଘରେ ଆସି ପିଢ଼ା ପାତି ବସିବା ଘଟଣାଟି। ସକାଳର ବ୍ରାହ୍ମ ମୁହୂର୍ତ୍ତ। ଏମିତି ଗୋଟାଏ ବିଶେଷ ସମୟରେ ଲାଇବ୍ରେରୀ ବା ଛାତରେ ବହି ଭିତରେ ମୁହଁ ମାଡ଼ି ନ ଦେଇ ଦୀପେନ୍ ପୁଣି ଆସି ରୋଷେଇଘରେ ବସିବ? ଖାଲି ସେତିକି? ହାତରେ ପୁଣି ତା'ର ଖଣ୍ଡିଏ ବି ବହି ନାହିଁ ଯେ!

କେଟ୍‌ଲିଟା ଚୁଲି ଉପରେ ଚଢ଼ାଉ ଚଢ଼ାଉ ଚମ୍ପା ନିର୍ବିକାର ଭାବରେ କହିଲେ, ''କହ, କ'ଣ କହିବୁ।''

ଥତମତ ହେଇଗଲେ ଦୀପେନ୍। କହିଲେ, ''କହିବି ପୁଣି କ'ଣ? ଏମିତି ଖାଲି ଚାହା ପିଇବାକୁ ଇଚ୍ଛା ହେଲା... ଥଣ୍ଡା ଥଣ୍ଡା ଲାଗୁଛି...''

''ଥାଉ ସେ ଢଙ୍ଗତକ।'' ସାନ ଭାଇ ମୁହଁକୁ ସିଧା ହୋଇ ଚାହିଁଲେ ଚମ୍ପା। ଏଇ ସାନ ଭାଇର ବୟସ ଯେତେବେଳେ ସାତ ମାସ, ସେତେବେଳେ ନିମୋନିଆରେ ମା' ମରି ଯାଇଥିଲେ। ଚମ୍ପା ସେଇ ସମୟରେ ବାହା ସାହା ହୋଇ ଶାଶୂଘରେ। ମା' ଚାଲିଯିବା ଖବର ପାଇ ସେ ଯେଉଁ ବାପଘର ଫରିଦ୍‌ପୁରକୁ ଆସିଥିଲେ, ସେତେବେଳେ ଛଅ ମାସ ଫେରି ଯାଇ ପାରି ନ ଥିଲେ ଶାଶୂଘର। ତା'ପରେ କେତେ କଷ୍ଟରେ ଭାଇକୁ ଖୁଡ଼ୀଙ୍କ ଜିମା ଦେଇ ସେ ଫେରି ଥିଲେ। ନିଜର ପିଲା ଛୁଆ ନାହିଁ ବୋଲି ସେଥିପାଇଁ ଏଇ ସାନ ଭାଇ ଉପରେ ଅପତ୍ୟ ସ୍ନେହ ରହିଯାଇଛି ତାଙ୍କର।

ବେଶୀ ଦେଖା ସିନା ହୁଏ ନାହିଁ। କିନ୍ତୁ ଭାଇଟିକୁ ଭଲ ଭାବରେ ବୁଝନ୍ତି ଚମ୍ପା। ହୁଁ। କହୁଛି କ'ଣ ନା ଚାହା ପାଇଁ ଆସିଛି। ଆଗରୁ ବି ଏମିତି ଚାହା ଦରକାର ହୋଇଛି ତା'ର। ସେତେବେଳେ ସେ କ'ଣ କରେ? ସେଇ ଉପର ଘରୁ ପାଟିଟାଏ କରି କହେ, ''ଦିଦି, ଚାହା କପେ।'' ବାସ୍ ସେତିକି। ଏମିତି ତ ବିଲେଇ ଭଳି ଆସି ଲେସି ହୁଏ ନାହିଁ।

''ଚୁପ୍ ହୋଇ ବସିଲୁ କାହିଁକି? କହୁନୁ। ଯାହା କହିବାକୁ ଆସିଛୁ।''

ଚମ୍ପାଙ୍କ କଣ୍ଠରେ ମିଛ ବିରକ୍ତି।

"...ଉଏ ..ଅର୍ଚ୍ଚନା ଏଠି ନାହିଁ ତ କୋଉଠି।"

"ଅର୍ଚ୍ଚନା ଗାଧୋଇ ଯାଉଛି।"

"ଓ..." ଦୀପେନ୍ ଧୀରେ ଧୀରେ କହିଲେ, "ଦିଦି, ତୁ ସେଦିନ ବାହାଘର କଥା କହୁଥିଲୁ..."

ଚମ୍ପା ନ ବୁଝିବା ଆଖି ନେଇ ଆଗ ଘଡ଼ିଏ ଚାହିଁ ରହିଲେ ସାନ ଭାଇ ମୁହଁକୁ। ତା'ପରେ ଉଚ୍ଛୁଳି ଉଠି କହିଲେ, "ତୁ ଆଉ ଥରେ ବାହା ହେବାକୁ ରାଜି ହେଉଛୁ, ମୋ ସୁନା ଭାଇ! ଆଜି ମୁଁ ମଧ୍ୟସ୍ଥିକୁ ଡାକୁଛି। ଟିପଣା ଅଣେଇବାର ବ୍ୟବସ୍ଥା କରୁଛି। ମୋ ସୁନା ଭାଇଟା ରେ.." ଦୀପେନ୍‌ଙ୍କୁ ଆଦର କରି ଦେଲେ ଚମ୍ପା।

ଦୀପେନ୍ ଅସ୍ୱସ୍ତିରେ କହିଲେ, "ନାଇଁ ସେ ନାହାକ ପାହାକ ଡାକି ଛାତକ ପକେଇ ବାହାଘର ଥାଉ।"

"ତାହେଲେ..."

ଚୁପ୍ ରହିଲେ ଦୀପେନ୍। କେମିତି କଥାଟା ଦିଦିକୁ କହିବେ? କିନ୍ତୁ କହିବାକୁ ହେବ। ଦିଦି ଆଖିରେ ଆଖି ରଖି ସେ କହିଲେ, "ଦିଦି, ଏଇ ଆମ ଅର୍ଚ୍ଚନା ସାଙ୍ଗରେ..."

"ଅର୍ଚ୍ଚନା !!!" ଚମ୍ପା ଅବାକ୍ ଭାବରେ ଚାହିଁ ରହିଲେ ସାନ ଭାଇ ମୁହଁକୁ। ପୁଣି ସମ୍ବିତ ଫେରି ପାଇ ପଚାରିଲେ, "ତୁ ଅର୍ଚ୍ଚନାକୁ କହିଛୁ? ତା'ର ଏଥିରେ ସମ୍ମତି ଅଛି?"

ଦୀପେନ୍ ହଠାତ୍ ବିବ୍ରତ ହୋଇଗଲେ, "ନା ନା। ଅର୍ଚ୍ଚନା କିଛି ଜାଣିନି। ତାକୁ ମୁଁ କିଛି କହିନି।"

ଚମ୍ପା ଚିନ୍ତିତ ଭାବରେ କହିଲେ, "ଏତେ ଛୋଟ ଝିଅଟା। ତାକୁ ମୁଁ କେମିତି କହିବି ସିଧା ସଳଖ ଏ ବିଷୟରେ। ତା' ବଡ଼ ଭାଇ କି ମା'ଙ୍କ ପାଖକୁ ଖବର ପଠେଇଲେ ହୁଅନ୍ତା।"

"ବୟସର ବହୁତ ଫରକ ହୋଇଯିବ, ନାରେ ଦିଦି?"

"ଧେତ୍!" ବୟସ କଥାଟା ଏକ ଫୁ'ରେ ଉଡ଼େଇ ଦେଲେ ଚମ୍ପା। "ପୁରୁଷ ପିଲାର ପୁଣି ବୟସ! ତା' ବି ତୋ ଭଳି ଯୋଗ୍ୟ ମଣିଷର? ତୁ ଚିନ୍ତା

କରନା । ମୁଁ ଆଜି ବାହାଘରର ପ୍ରସ୍ତାବ ଦେଇ ଖବର ପଠାଉଛି ପାଲ୍‌ନାକୁ ।''

''ସେଇ ଭଲ, ଦିଦି । ଅର୍ଚ୍ଚନାର ଦାଦାଭଉଣୀଙ୍କର ଯଦି କିଛି ଆପତ୍ତି ନ ଥାଏ, ତେବେ...'' ଖାଲି ଚାହା କପ୍‌ଟିକୁ ସେଇଠି କଡ଼େଇ ରଖିଦେଇ ଦୀପେନ୍ ଉପରକୁ ଚାଲିଗଲେ । ପଇଁଚାଳିଶ ବର୍ଷ ବୟସରେ ବାହାଘର ନାଁ ଶୁଣି ଏତେ ଆହ୍ଲାଦ ! ଦୀପେନ୍ ଅବାକ୍ ହୋଇ ଯାଉଥିଲେ ।

କିନ୍ତୁ ରୋଷେଇଘର ଝରକା ପାଖରେ ଅର୍ଚ୍ଚନା କାଠ ହୋଇ ଯାଇଥିଲା । ସେ ଏ କି କଥା ଶୁଣିଲା ? କି କଥା ! କାହିଁକି ସେ ଚଣ୍ଡାଳୁଣୀ କୂଅ ପାଖ ଦଉଡ଼ିରେ ସବୁଦିନ ଭଳି ଲୁଗା ନ ଶୁଖାଇ ଖରା ପଡ଼ିବ ବୋଲି ଲୁଗା ଶୁଖାଇବାକୁ ଏପାଖକୁ ଚାଲି ଆସିଥିଲା ? ଆସିଥିଲା ବୋଲି ନା ରୋଷେଇଘର ଭିତରେ ହେଉଥିବା କଥାତକ ପରିଷ୍କାର ଭାବରେ ତା' କାନରେ ପଡ଼ିଲା !

ଦୀପେନ୍ କାକୁ ! ଆଜି ଏ କିଭଳି କଥା କହିଲେ ଦୀପେନ୍ କାକୁ ?

ଗୌରୀ ଘରେ ଆସି ରହିବା ପରଠାରୁ, ଦୀପେନ୍ କାକାଙ୍କ ସ୍କୁଲ୍‌ରେ କାମ କରିବା ପରଠାରୁ ଅର୍ଚ୍ଚନାର ଦୀପେନ୍‌ଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ରହି ଆସିଥିଲା । ତାଙ୍କ ଭଳି ବିଦ୍ୱାନ ମଣିଷଟିଏର ସ୍ନେହ ଯେ ସେ ପାଇ ପାରିଥିଲା, ସେଥିପାଇଁ ବେଳେବେଳେ ତାକୁ ଖୁସୀ ଲାଗୁଥିଲା । କିନ୍ତୁ ସେ ସ୍ନେହ, ସମ୍ମାନର ଏ କି ତର୍ଜମା କଲେ ଦୀପେନ୍ କାକୁ ?

ନା, ଅର୍ଚ୍ଚନା ତାଙ୍କୁ ଦୋଷ ଦେଇ ପାରୁ ନ ଥିଲା । ଦୋଷ ତା' ନିଜର । ସେ ନିଶ୍ଚୟ କିଛି କଥା କହିଛି ବା କିଛି କାମ କରିଛି, ଯେଉଁଥିପାଇଁ କି ଦୀପେନ୍ କାକୁଙ୍କ ମନରେ ଏଭଳି ଚିନ୍ତା ପଶିଲା । ଛି ଛି ଛି । ନିଜ ପ୍ରତି ଘୃଣାରେ ଅର୍ଚ୍ଚନା ତଳିତଳାନ୍ତ ହୋଇ ଯାଉଥିଲା । ଏକ ଅପବିତ୍ର ଅପବିତ୍ର ଭାବ ତା' ସତ୍ତାକୁ ବେଢ଼ାଇ ରଖି ସାରିଥିଲା । ଇଚ୍ଛା ହେଉଥିଲା, ସେ ଧାଇଁ ଚାଲିଯିବ । ଯେଉଁ ଆଡ଼େ ଆଖି ପଡ଼ିବ, ସେଇ ଆଡ଼େ । ଏମିତି ଗୋଟାଏ ଜାଗାରେ ପହଞ୍ଚିଯିବ, ଯେଉଁଠାରେ କି ତାକୁ କେହି ଚିହ୍ନିବେ ନାହିଁ । ତାକୁ ନେଇ କୌଣସି ଆଗ୍ରହ କାହାର ରହିବ ନାହିଁ ।

କିନ୍ତୁ ନା । ଅର୍ଚ୍ଚନା ସେମିତି କରି ପାରିବ ନାହିଁ । ଅନ୍ତତଃ ଏବେ ସେ ସେମିତି କିଛି କରି ପାରିବ ନାହିଁ । ଓଦା ବାଲରେ ଗଣ୍ଠିଟିଏ ପକେଇ ଦେଇ ସେ ରୋଷେଇଘର ଆଡ଼କୁ ବୁଲିଗଲା । ଯେମିତି କିଛି ଜାଣି ନାହିଁ, ସେଇଭଳି

ସ୍ୱରରେ ପଚାରିଲା, ''ଏଠି କାହା ବାହାଘର କଥା ପଡ଼ିଥିଲା କି ପିସୀମା' ?''

ଦୁଇ ପାଟି ହସ ହସି ଚମ୍ପା କହିଲେ, ''କାହାର ଆଉ ? ଏଇ ଯୋଉ ଝିଅଟି ମୋ ସାମ୍ନାରେ ଠିଆ ହୋଇ ମୋ ସାଙ୍ଗରେ କଥା କହୁଛି, ତା'ରି ବାହାଘର କଥା ପଡ଼ିଥିଲା ।''

ଅର୍ଚ୍ଚନା ଲାଜେଇ ଗଲା ନାହିଁ। ମୁହଁ ବୁଲାଇ ଦେଲା ନାହିଁ। ଏବେ ପଛେଇ ଗଲେ ତାକୁ ଆହୁରି ଅଧିକ ଯନ୍ତ୍ରଣା ସହିବାକୁ ହେବ। ଆହୁରି ବେଶୀ ମାନସିକ ନିର୍ଯାତନା ଦେଇ ଗତି କରିବାକୁ ହେବ। ସେଥିପାଇଁ ସେ ସ୍ଥିର ଭାବରେ କହିଲା, ''ମୋ ବାହାଘର ? ସେ ତ ଏ ଜନ୍ମରେ ହେବାର ନୁହଁ।''

ଚମ୍ପା ଆଶ୍ଚର୍ଯ୍ୟ ହେଲେ। ପଚାରିଲେ, ''ସେମିତି କାହିଁକି କହୁଛୁ ? ତୋର ପୁଣି କେତେ ବୟସ ଯେ ଏ ଜନ୍ମରେ ବାହାଘର ନ ହେବା କଥା କହୁଛୁ ?''

''ବୟସ ସାଙ୍ଗରେ କ'ଣ ଅଛି ? ମୁଁ ବହୁତ ଦିନରୁ ମୋ ମନ ସ୍ଥିର କରି ନେଇ ସାରିଛି, ପିସୀମା ।''

''ଆଲୋ, ତୋ ପାଇଁ ମୁଁ ଏମିତି ବର ଆଣିବା କଥା ଭାବୁଛି ଯେ ତୁ ଶୁଣିଲେ...''

''ମୁଁ ଶୁଣିବାକୁ ଚାହୁଁ ନାହିଁ। ପୃଥିବୀର ଶ୍ରେଷ୍ଠ ମଣିଷଟିକୁ ବି ତୁମେ ଯଦି ଖୋଜି ଆଣ, ତଥାପି ମୋର ସେଇ ଗୋଟିଏ ଉତ୍ତର - ନା ନା ନା ।''

ଚମ୍ପା ଅବାକ୍ ହୋଇ ଚୁପ୍ ହେଇଗଲେ। ଅର୍ଚ୍ଚନାର ମୁହଁରୁ ଏ ବିଷୟରେ ଏଭଳି ନିଶ୍ଚିତ କଥା ଶୁଣିବେ ବୋଲି ବୋଧହୁଏ ସେ ଆଶା କରି ନ ଥିଲେ। ରହି ରହି ସେ କହିଲେ, ''ଆଉ କେଇ ମାସ ପରେ ତୋ ସାନ ଭଉଣୀ ବାହାଘର ହେବାର ଅଛି ନା ? ଭଲ ହେଲା। ଦି' ଭଉଣୀଙ୍କ ବାହାଘର ଏକାଠି ହୋଇ ଯାଇ ପାରିବ।''

''ନା, ଅସମ୍ଭବ।''

''ଅସମ୍ଭବ କାହିଁକି ? ଓ, ହଁ ତ। ସେମାନଙ୍କ ପକ୍ଷରେ ଏବେ ସେଠୁ ଆସିବା ସମ୍ଭବ ହେବନି। ଆଉ ଆମେ ବି ତ ସେଠିକି ଚାଲି ଯାଇ ପାରିବାନି। ... ହେଲା ଏବେ, ଆଗ ପଛ ହୋଇ ବାହାଘର ହେବ। ମୁଁ ଆଜି ପାପ୍‌ନାକୁ, ମାନେ ତୋ ମା' ଓ ଦାଦାଙ୍କ ପାଖକୁ ଚିଠି ଦେବି ବୋଲି ଭାବିଥିଲି।''

''ନା। ଚିଠି ଦେଇ ଲାଭ ନାହିଁ। ଘରେ ମୁଁ ମୋ ନିଷ୍ପତ୍ତି ପରିଷ୍କାର ଭାବରେ ସମସ୍ତଙ୍କୁ ଜଣେଇ ଦେଇଛି। ଏ ନିଷ୍ପତ୍ତି ଅଟଳ।'' କଠିନ ସ୍ୱରରେ କଥାଟକ କହି ଦେଇ ଅର୍ଚ୍ଚନା ମୁଣ୍ଡ କୁଣ୍ଡେଇବାକୁ ଘର ଭିତରକୁ ଚାଲିଗଲା।

ତା'ରି ଯିବା ବାଟକୁ ସ୍ଥାଣୁ ଭାବରେ କେବଳ ଚାହିଁ ରହିଥିଲେ ଚମ୍ପା। ସେ ଏତେ ବେଶୀ ନିଜ ଭାବନାରେ ହଜି ଯାଇଥିଲେ ଯେ କେତେବେଳେ ସ୍ୱାମୀ ଆସିଲେ, ଗଳା ଖଙ୍କାରି ଚଟି ଖୋଲି ରଖିଲେ, ତା' ସେ ଜାଣି ପାରିଲେ ନାହିଁ। ସମ୍ବିତ ଫେରିଲା ସ୍ୱାମୀଙ୍କ କଥାରେ।

ବ୍ୟାଗ୍ ଦିଇଟା ସ୍ତ୍ରୀ ପାଖରେ ରଖୁ ରଖୁ ଉମାକାନ୍ତ ଘୋଷାଲ କହିଲେ, ''ହଇହୋ, ଶୁଣୁଛ, ତୁମ ଚିଙ୍ଗୁଡ଼ି ଆଜି ମିଳିଲା ନାହିଁ। ତେବେ ଭଲ କେରାଣ୍ଡି ମାଛ ପାଇଲି। ସୋରିଷ ମସଲା ଦେଇ ଆଜି ଦିପହରେ ଟିକିଏ କେରାଣ୍ଡି ମାଛର ଝୋଲ୍ କରିବାକୁ ଅର୍ଚ୍ଚନାକୁ କୁହ। ସେଦିନ କରିଥିଲା ଯେ ଆଜି ପର୍ଯ୍ୟନ୍ତ ତା' ସ୍ୱାଦ ମୋ ପାଟିରେ ଲାଗି ରହିଛି।''

''ଆଜି ତ ଏବେଳା ମୁଁ ରାନ୍ଧି ପାରିବିନି, ପିସେମଶାଏ।'' ମୁଣ୍ଡ କୁଣ୍ଡେଇ ଧୋବା ଘରୁ ଆସିଥିବା ଶାଢ଼ିଟିଏ ପିନ୍ଧି ଅର୍ଚ୍ଚନା ରୋଷେଇଘର କବାଟ ପାଖରୁ କହି ପକେଇଲା।

''କାହିଁକି ରାନ୍ଧି ପାରିବୁନି? ତୁ କୁଆଡ଼େ ଯାଉଛୁ କି?'' ଆଶ୍ଚର୍ଯ୍ୟ ଭାବରେ ଅର୍ଚ୍ଚନାର ଧୋବ ଶାଢ଼ିଟି ଦେଖୁ ଦେଖୁ ଉମାକାନ୍ତ କହି ଉଠିଲେ।

ଆଶ୍ଚର୍ଯ୍ୟ ହେବାର କଥା। ସ୍କୁଲ୍‌କୁ ଯିବା ଆସିବା ଛାଡ଼ିଦେଲେ ଘର ବାହାରେ କେବେ ପାଦ ଦିଏ ନାହିଁ ଅର୍ଚ୍ଚନା। ଆଜି ସେ ସକାଳୁ ସକାଳୁ ବାହାରକୁ ଯିବାକୁ ଯେ ପ୍ରସ୍ତୁତ ହେଇଗଲାଣି, ତା' ତ ନିହାତି ତାଜୁବ୍ ହେବା ଭଳି ଘଟଣା।

''କୁଆଡ଼େ ବାହାରିଛୁ ରେ ମା'?'' ସେ ଆଉ ଥରେ ପଚାରିଲେ।

''ଭାବୁଛି ଟିକିଏ ମାମୁଘରୁ ବୁଲି ଆସିବି।''

''ତୋ ମାମୁଘରୁ?'' ଚମ୍ପା ବିସ୍ମୟରେ କହି ପକେଇଲେ। ମାମୁଘର ଏତେ ପାଖରେ ଥାଇ ବି ଦିନେ କାଳେ ସେଠିକି ଯିବା କଥା ଅର୍ଚ୍ଚନା ଉଠାଇ ନାହିଁ। ସେଇ ଯେଉଁ ଆସିବା ପରେ ଗୌରୀ, ପ୍ରସନ୍ନ ସାଙ୍ଗରେ ଥରେ ଯାଇଥିଲା, ସେଇ ଥରକ ଯାହା। ଏତେ ଦିନ ପରେ ଆଜି ହଠାତ୍ କାହିଁକି ମାମୁଘରକୁ

ବାହାରିଛି ? ଚମ୍ପାଙ୍କ ମନରେ ସନ୍ଦେହ ହେଲା । କିନ୍ତୁ ସେ କିଛି କହିଲେ ନାହିଁ ।

"ତୁ ମାମୁ ଘରକୁ ଯିବୁ ତ ଦୀପେନ୍‌କୁ ମୁଁ କହି ଦେଉଛି, ସେ ତତେ ନେଇଯିବ ।" ଉମାକାନ୍ତ ନିର୍ଲିପ୍ତ ଗଳାରେ କହିଲେ ।

"ନା ନା ।" ଅର୍ଚ୍ଚନା 'ଦୀପେନ୍' ନାଁଟି ଶୁଣି ଚିହିଁକି ଉଠିଲା ଭଳି କହି ପକେଇଲା ।

ଉମାକାନ୍ତ ବୋଧହୁଏ ଭାବିନେଲେ ଯେ ଦୀପେନ୍ ଭଳି ବହିପାଗଳା ମଣିଷକୁ ସାଙ୍ଗରେ ଟାଣି ନେବାକୁ ଅର୍ଚ୍ଚନାକୁ ଖରାପ ଲାଗୁଛି । ସେ ସେଥିପାଇଁ ହସି ଦେଇ କହିଲେ, "ହଉ ହେଲା । ଦୀପେନ୍ ନ ଯାଉ । ମୁଁ ତତେ ନେଇଯିବି । ରହ, ଚଟ୍ କରି ଗାଧୋଇ ନେଇ ମୁଁ ଜଳଖିଆଟା ଖାଇ ଦିଏ । ତା'ପରେ ଯିବା । ଆଚ୍ଛା ?"

ସମ୍ମତି ଜଣେଇ ମୁଣ୍ଡ ତଳକୁ କରି ନେଲା ଅର୍ଚ୍ଚନା । ଶାଢ଼ି କାନି ଅଣ୍ଟାରେ ଗୁଡ଼େଇ ନେଇ ସେ ଚମ୍ପାଙ୍କୁ ଲୁଚି ବେଲାରେ ସାହାଯ୍ୟ କରିବାକୁ ବସିଗଲା ।

ଗୌରୀଭଉଣିକା ଯେତେବେଳେ ବନାରସ ଚାଲିଯିବାର ହୋଇଥିଲା, ସେତେବେଳେ ମାମୁଘରକୁ ଥରେ ଯାଇ ସେଠି ରହିବାର ବ୍ୟବସ୍ଥା କରିନେବାର ଇଚ୍ଛା ଅର୍ଚ୍ଚନାର ହୋଇଥିଲା । କିନ୍ତୁ ଚମ୍ପା ପିସୀମା' ଯେମିତି ଭାବରେ ଆଦର କରି, ସ୍ନେହର ଅଧିକାର ଜମେଇ କହିଥିଲେ, 'ତୁ ରହିବୁ ଏଠି । ଆମ ଘରେ । ତତେ ମୁଁ ଜମା ଛାଡ଼ିବିନି କୋଉଠିକି,' ତା'ପରେ କ'ଣ ଜୋର ଦେଇ କିଛି କହି ହୁଏ ?

ଅର୍ଚ୍ଚନା ପାଟିର କଥା ସେଦିନ ଅଧା ରହିଯାଇଥିଲା । ଯିଏ ଏତେ ନିଜର କରି ବ୍ୟବହାର କରୁଛନ୍ତି, ସେ କେମିତି ତାଙ୍କୁ ମୁହଁ ଉପରେ କହିଥାନ୍ତା ଯେ- 'ତୁମେ ପର । ତୁମ ପାଖରେ ମୁଁ ରହି ପାରିବି ନାହିଁ ।' ଏମିତି କ'ଣ କହି ହୁଏ ?

କିନ୍ତୁ ମୁଣ୍ଡ ତଳକୁ ପୋତି ଲୁଚି ବେଲୁ ବେଲୁ ଆଜି ସେ ମନ ସ୍ଥିର କରି ନେଉଥିଲା । ଆଜି ଦରକାର ପଡ଼ିଛି ତା'ର । ସେ କ'ଣ ଏତିକି ଅଧିକାର ସାବ୍ୟସ୍ତ କରି ପାରିବନି ତା' ନିଜ ମାମୁଙ୍କ ଉପରେ ?

ଉମାକାନ୍ତଙ୍କୁ ନେଇ ମାମୁ ଘରେ ପହଞ୍ଚୁ ପହଞ୍ଚୁ ଏଗାରଟା ବାଜି ଯାଇଥିଲା । ବୈଠକ ଘରେ ବିନୟ ଓ ବ୍ରଜେନ୍ଦ୍ର ସାଙ୍ଗରେ ଗପ କରିବାକୁ ବସିଗଲେ ଉମାକାନ୍ତ ।

ଆଉ ଲତା ଅର୍ଚ୍ଚନାକୁ ନିଜ ଘର ଭିତରକୁ ଡାକିନେଲା ।

ଅର୍ଚ୍ଚନା କିଛି କହିବା ଆଗରୁ ଶାଣିତ ସ୍ୱରର ହଠାତ୍ ଲତା ପଚାରି ଉଠିଲା, "କ'ଣ ଅର୍ଚ୍ଚନା, ଏତେ ଦିନକେ ଆମ କଥା ମନେ ପଡ଼ିଗଲା କେମିତି ? କ'ଣ ତୁମର ସେ ଲେଖାଚୋଖାର ପିସୀମା' ତୁମକୁ ତଡ଼ି ଦେବାର ବ୍ୟବସ୍ଥା କରୁଛନ୍ତି ନା କ'ଣ ?"

"ନା ନା ମାମୀମା', ସେମିତି କିଛି ନାହିଁ ।" ତରବର ହେଇ ଅର୍ଚ୍ଚନା ପାଟିରୁ ବାହାରିଗଲା । ଆରେ, ସେ କ'ଣ କହିବ ବୋଲି ଆସିଥିଲା, ଆଉ ଏ କ'ଣ କହି ଯାଉଛି । ଢୋକ ଗିଳିଲା ସେ । "ମୁଁ ଚାକିରି କରୁଛି ତ ଏବେ, ସେଥିପାଇଁ ଆସିବାକୁ ଜମା ସମୟ ହେଉ ନ ଥିଲା ।"

"ଆଉ ଆଜି କେମିତି ଚାଲି ଆସିଲ ମ ? ବାଟ ଭୁଲିଗଲ କି ?"

ଅର୍ଚ୍ଚନା ଚୁପ୍ ରହିଲା । ସାମାନ୍ୟ ହସି ସେ କେବଳ ଆଖି ତଳକୁ କରି ବସି ରହିଲା । ମାମୀମା' ଏକତରଫା ବହୁ ରକମର କଥା କହି ଚାଲିଥିଲେ । କେମିତି ଦେଶ ସ୍ୱାଧୀନ ହେଲେ ଘୋର ଅନ୍ଧକାର ମାଡ଼ି ଆସିବ । ଇଂରେଜ ସରକାର ଚାଲିଗଲେ ସବୁ ସରି ଯିବ । ତାଙ୍କ ଭଳି ବ୍ୟବସାୟ ବାଣିଜ୍ୟ କରୁଥିବା ମଣିଷମାନେ ରାସ୍ତାର ଭିକାରୀ ହୋଇଯିବେ ।

ତାଙ୍କ କଥା ଶୁଣୁ ଶୁଣୁ ବାରମ୍ବାର କବାଟ ଆଡ଼କୁ ଚାହୁଁଥିଲା ଅର୍ଚ୍ଚନା । କାଳେ ତା' ସାଙ୍ଗରେ କଥା କହିବାକୁ ମାମୁ ଆସିଯିବେ । ମାମୀମା'ଙ୍କ ପାଖରେ ସିନା ପାଟିରୁ କଥା ବାହାରୁନି, କିନ୍ତୁ ମାମୁଙ୍କୁ ସେ ନିଶ୍ଚୟ ପଚାରି ଦେଇ ପାରିବ ଏଠି ରହିବା କଥା । କିନ୍ତୁ ବିନୟ ବୈଠକ ଘର ଭିତରୁ ମୁହଁ ବୁଲାଉ ନ ଥିଲା । ଲତା କେବଳ କଥା କହି ଚାଲିଥିଲା ଅକ୍ଳାନ୍ତ ଭାବରେ ।

କିଛି ସମୟ ତାଙ୍କ ବକର ବକର ଶୁଣିବା ପରେ ଅର୍ଚ୍ଚନା ଉଠିଲା । ଆଉ ବସିରହି ଲାଭ ନାହିଁ ।

ଯେଉଁ କଥା କହିବାକୁ ସକାଳୁ ଏତେ ପ୍ରସ୍ତୁତି ନେଇ ସେ ଯାଇଥିଲା, ସେଇ କଥା ତା'ର ଅକୁହା ରହିଗଲା । ମାମୁ ଘରେ ରହିପାରିବାର ଆଶାଟି ବିସର୍ଜ୍ଜନ ଦେବାକୁ ହେଲା ।

ତଥାପି ଅନ୍ୟ ଗୋଟିଏ ଆଶା ଥିଲା ତା'ର । ଛୋଟ ଦା' ।

ଛୋଟ ଦା' ପାଖକୁ ସେ ଚାଲି ଯାଇ ପାରିବ ।

ଅର୍ଚ୍ଚନା କଲିକତା ଆସିବା ପରେ ଅମରେଶ ପ୍ରଥମେ ନିୟମ କରିବା ଭଳି ସବୁ ରବିବାରକୁ ରବିବାର ତାକୁ ଦେଖା କରିବାକୁ ଚାଲି ଆସୁଥିଲା ଏବଂ ପ୍ରାୟ ସବୁଥର ତାକୁ ତା' ଘରକୁ ଚାଲି ଆସି ରହିବା କଥା କହୁଥିଲା। କିନ୍ତୁ ଚମ୍ପାଙ୍କ ସ୍ନେହର ଲାଲ ଆଖିକୁ ଅସ୍ୱୀକାର କରି ଭାଇ ଘରକୁ ଚାଲିଯିବାର ସାହସ କରି ପାରୁ ନ ଥିଲା ଅର୍ଚ୍ଚନା। ବୁଝିବା ଭଳି ଅମରେଶ ସେତେବେଳେ କହୁଥିଲା, ''ରହ, ମୁଁ ନିଜ ହୋଟେଲ୍ କରେ। ଭଲ ଘରଟେ ନିଏ, ତା'ପରେ ଦେଖିବି କେମିତି ତୁ ମୋ ପାଖକୁ ଆସି ରହିବୁନି।''

ଅମରେଶ ଖୁବ୍ ଶୀଘ୍ର ନିଜ ହୋଟେଲ୍‌ଟିଏ ଖୋଲିଲା। କିନ୍ତୁ ସେ ଏମିତି ଧାର ଦେଣାରେ ବୁଡ଼ି ଯାଇଥିଲା ଯେ ସେଇ ମୁହୂର୍ତ୍ତରେ ଭଲ ପଡ଼ାରେ ବଡ଼ ଘରଟିଏ ନେବା କଥା ଆଦୌ ଭାବି ପାରିଲା ନାହିଁ।

ତଥାପି ସମୟ କରି ସେ ଆସୁଥିଲା ସାନ ଭଉଣୀ ପାଖକୁ।

ଧୀରେ ଧୀରେ ରୁଟୀନ୍‌ରେ ପରିବର୍ତ୍ତନ ଆସିଲା। ଅମରେଶର ସପ୍ତାହକୁ ଥରେ ଆସିବାଟା ପନ୍ଦର ଦିନକୁ ଥରେ ହୋଇଗଲା। ପୁଣି ସେଇଟା ବଦଳିଗଲା ମାସକୁ ଥରେର ରୁଟୀନ୍‌ରେ। ସେତେବେଳେ ଗୋଟାଏ କଥା ଅର୍ଚ୍ଚନା ଆଖିରେ ପଡ଼ିଥିଲା। ସେ ଲକ୍ଷ୍ୟ କରିଥିଲା ଯେ ତାକୁ ଆଉ ନିଜ ପାଖରେ ଯାଇ ରହିବା କଥା ଅମରେଶ କହେ ନାହିଁ। ସେ କହିଥିଲେ ଯେ ଅର୍ଚ୍ଚନା ଚାଲି ଯାଇ ପାରିଥାଆନ୍ତା, ତା' ନୁହଁ। କିନ୍ତୁ ସେ କହିଥିଲେ ନିଶ୍ଚୟ ତାକୁ ଭଲ ଲାଗିଥାଆନ୍ତା। ତା' କଥା ଯେ କିଏ ଜଣେ ଭାବୁଛି, ସେଇମିତି ମନେ ହୋଇଥାଆନ୍ତା।

ଅର୍ଚ୍ଚନା ନିଜ ଉପରେ ଚିଡ଼ିଯାଏ ବେଳେବେଳେ। କି ବାଜେ କଥା ଚିନ୍ତା କରି ବସି ଯାଉଛି ସେ। ଛୋଟ ଦା' ଅନ୍ୟମନସ୍କ ରହିବାର ଯଥେଷ୍ଟ କାରଣ ନାହିଁ? ଏତେ କଷ୍ଟ କରି ନିଜ ହୋଟେଲ୍ ଖୋଲିଲା। ସେଇଟା ଚଳେଇବାର ଚିନ୍ତା ଯେ ସବୁବେଳେ ତା' ମୁଣ୍ଡ ଉପରେ ରହିଥିବ, ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି?

ସେତିକି ବେଳେ ବିରାଟ ଗୋଟାଏ ଅଘଟଣ ଘଟିଗଲା ଅମରେଶର ଜୀବନରେ।

କଲିକତା ଚାଲି ଆସିବା ପରେ ଅମରେଶର ଲକ୍ଷ୍ୟ ଥିଲା ଗୋଟିଏ। ଯେତେ ଶୀଘ୍ର ସମ୍ଭବ, ହାତରେ କିଛି ପଇସା କରି ନେଇ ଦାରିଦ୍ର୍ୟର ଆବେଷ୍ଟନୀରୁ ମୁକ୍ତି ପାଇବା। ପାରିବାରିକ ସଂସ୍କାର ତା' ଅସ୍ଥି ମଜ୍ଜାଗତ ହୋଇ ଯାଇ ନ ଥିଲେ ସେ ନିଶ୍ଚିତ ଭାବରେ ପାପ ପୁଣ୍ୟର ମଝିଆମଝି ଥିବା ସୀମାରେ ପାଦ ଦେଇ ସାରି ଥାଆନ୍ତା। ଦ୍ୱିତୀୟ ବିଶ୍ୱ ଯୁଦ୍ଧ ବେଳେ କଲିକତାରେ ଏହାର ଯଥେଷ୍ଟ ଅବକାଶ ଥିଲା। କିନ୍ତୁ ଅମରେଶ ପାରି ନ ଥିଲା। ପୁଣ୍ୟ ନ କରୁ ପଛକେ ପାପର ଦୁନିଆରୁ ଦୂରେଇ ଦୂରେଇ ଚଳୁଥିଲା ସେ। ହେଲେ ଦିନେ ନା ଦିନେ ନିଜର କିଛି ବ୍ୟବସାୟ କରି ଭଲ ରୋଜଗାର କରିବାର ଆଶାକୁ ସେ ବିସର୍ଜନ କରି ଦେଇ ନ ଥିଲା।

ନିଜର ଆଶା ଆକାଂକ୍ଷା ନେଇ ଅମରେଶ ଆଲୋଚନା କରୁଥିଲା କେବଳ ଜଣକ ସାଙ୍ଗରେ। ସେ ହେଲା ପର୍‌ଭେଜ୍ ମିଆଁ। କଲିକତାରେ ବାପ ଦାଦାଙ୍କର ଛୋଟ ଦୋକାନଟିଏ ଚଳାଉଥିଲା ପର୍‌ଭେଜ୍। ଲାଭ ବେଶ୍ ଭଲ ହିଁ ହେଉଥିଲା।

ପର୍‌ଭେଜ୍ ଅମରେଶ ମନରେ ହୋଟେଲ୍ କରିବା କଥା ପ୍ରଥମେ ପୂରାଇଥିଲା। ସେତେବେଳେ ଦେଶର ଅବସ୍ଥା ଯାହା, ବିଭିନ୍ନ ସ୍ଥାନରୁ କାମର ସଂଧାନରେ ବହୁ ଲୋକ ଆସି କଲିକତାରେ ପହଞ୍ଚୁଥିଲେ। ସେମାନଙ୍କ ଖିଆ ପିଆ ସବୁ ହୋଟେଲ୍‌ରେ। ତେଣୁ ଶସ୍ତା, ସୁନ୍ଦର, ପରିଷ୍କାର ହୋଟେଲ୍‌ଟିଏ କଲେ ଯେ ଭଲ ଲାଭ ହେବ, ତା' ନେଇ ପର୍‌ଭେଜ୍ ମନରେ କୌଣସି ସନ୍ଦେହ ନ ଥିଲା। ଅମରେଶ ଧୀରେ ଧୀରେ କଥାର ଯଥାର୍ଥତା ଅନୁଭବ କଲା। ସେ ହୋଟେଲ୍ କରିବା ପାଇଁ ପଇସା ଜମେଇବା ଆରମ୍ଭ କରିଦେଲା। ତଥାପି ଜାଗା ଖୋଜି, ଦି'ଟା ଲୋକଙ୍କୁ ଚାକିରି ଦେଇ ହୋଟେଲ୍ ଆରମ୍ଭ କରିବା ବେଳେ ଆହୁରି ଅଧିକା ଅର୍ଥର ଆବଶ୍ୟକତା ପଡ଼ିଥିଲା ତା'ର। ଅମରେଶ ବୁଝି ପାରୁ ନ ଥିଲା କାହା ପାଖରେ ହାତ ପତେଇବ। ଅବଶ୍ୟ ଚୁପ୍‌ଚାପ୍ ମାଗିଥିଲେ କାହାକୁ କିଛି ନ କହି ମାମୁ ତା' ହାତକୁ କିଛି ଟଙ୍କା ବଢ଼େଇ ଦେଇ ପାରି ଥାଆନ୍ତେ। କିନ୍ତୁ ସେ ପାରିଲା ନାହିଁ।

ସେତିକି ବେଳେ ସାହାଯ୍ୟର ହାତ ବଢ଼େଇ ଦେଇଥିଲା ପର୍‌ଭେଜ୍।

ଏମିତିରେ ତ ପର୍‌ଭେଜ୍ ସାଙ୍ଗରେ ଭଲ ବନ୍ଧୁତ୍ୱ ଥିଲା। କିନ୍ତୁ ଅମରେଶକୁ ନିଜ ଗୋଡ଼ରେ ଠିଆ ହେବା ପାଇଁ ସାହାଯ୍ୟ କରିବା ପରେ, ସେ ଯେମିତି

ଭାଇ ଠାରୁ ବି ଅଧିକ ହୋଇଗଲା ।

ଆଉ ତା'ପରେ...

ଇସ୍ !! ଭାବି ଦେଲେ ହିଁ ଅର୍ଚ୍ଚନାର ଦେହ ହାତ ଶିହରି ଉଠେ ।

ସେ ପ୍ରାୟ ପାଞ୍ଚ ଛଅ ମାସ ଆଗର କଥା । ବେଶ୍ କିଛି ଦିନ ନ ଆସିବା ପରେ ଦିନେ ସନ୍ଧ୍ୟାବେଳେ ଆସି ଉମାକାନ୍ତ ଘୋଷାଲଙ୍କ ଘରେ ପହଞ୍ଚିଗଲା ଅମରେଶ । ତାକୁ ଦେଖି ଅର୍ଚ୍ଚନା ଚମକି ଉଠିଥିଲା । ଏ ଯେମିତି ତା' ଛୋଟ ଦା' ନୁହଁ । ଛୋଟ ଦା'ର ସାମାନ୍ୟ ଛାପ ମୁହଁରେ ଥିବା କେହି ଅଜଣା ମଣିଷ ।

"ଛୋଟ ଦା !!" ଆର୍ତ୍ତନାଦ କଲା ଭଳି ସେ କହି ପକେଇ ଥିଲା । "କ'ଣ ହୋଇଛି ଛୋଟ ଦା' ?"

ମ୍ଲାନ ଭାବରେ ହସିବାକୁ ଚେଷ୍ଟା କରିଥିଲା ଅମରେଶ । କିନ୍ତୁ ତା' ଓଠରୁ ହସ ଝରି ନ ଥିଲା । ଶୁଖିଲା ସ୍ୱରରେ ସେ ଉତ୍ତର ଦେଇଥିଲା, "କ'ଣ ଆଉ ହେବ ? ଚାଲିଛି ।"

ଅର୍ଚ୍ଚନା ଏ କଥା ମାନିବାକୁ ପ୍ରସ୍ତୁତ ନ ଥିଲା ।

"କିଛି ତ ହୋଇଛି ନିଶ୍ଚୟ । ...ତୋ ଦେହ ଭଲ ନ ଥିଲା କି ଯା ଭିତରେ ? ଆଖି ଦିଇଟା କୋରଡ଼ରେ ପଶି ଯାଇଛି । ଗାଲର ହନୁହାଡ଼ ବାହାରି ଯାଇଛି । କ'ଣ ହୋଇଥିଲା ତୋର ? ...କହନାରେ, ଛୋଟ ଦା' ।" ବିକଳ ହୋଇ ସେ ପଚାରି ଉଠିଥିଲା ।

ଆଉ ନିଜକୁ ସମ୍ଭାଳି ପାରି ନ ଥିଲା ଅମରେଶ । ତା' ଆଖିରୁ ଝର ଝର ହୋଇ ଲୁହ ଝରି ଆସିଥିଲା । କୋହ ପରେ କୋହ ଉଠି ତାକୁ ଅସ୍ଥିର କରି ଦେଇଥିଲା ।

ସ୍ଥାଣୁ ଭଳି କେବଳ ଚାହିଁ ରହିଥିଲା ଅର୍ଚ୍ଚନା ।

କେତେବେଳକେ ନିଜ କୋହ ଚାପି ସେ ଉତ୍ତର ଦେଇଥିଲା, "ପର୍‌ଭେଜ୍ ଆଉ ନାହିଁରେ ଅର୍ଚ୍ଚନା । ସବୁଦିନ ପାଇଁ ଚାଲିଗଲା ।"

"କ'ଣ କହୁଛୁ, ଛୋଟ ଦା' ! କ'ଣ ହୋଇଥିଲା ତାଙ୍କର ?"

"କିଛି ନାହିଁ । ସୁସ୍ଥ ସବଳ ମଣିଷଟା । ରାତିରେ ଖାଇ ପିଇ ଶୋଇଥିଲା ।..."

"ତା'ହେଲେ ??"

‘‘ରାତିରେ ତା’ ଦାଣ୍ଡ କବାଟ ଭାଙ୍ଗି କେଇଜଣ ଗୁଣ୍ଡା ଭିତରେ ପଶିଗଲେ। ଆଉ କିଛି କଥା ନାହିଁ, ବାର୍ତ୍ତା ନାହିଁ, ମଣିଷଟାକୁ ହାଣି ପକେଇଲେ ସେମାନେ।’’

‘‘ହାଣି ପକେଇଲେ !!’’

‘‘ହଁ। ଦୋଷ ଭିତରେ ଏତିକି, ସେ ଯେଉଁଠି ଦୋକାନ କରିଥିଲା, ସେଇଟା ହିନ୍ଦୁପ୍ରଧାନ ଜାଗା। ସେଠି ଯେ ମୁସଲମାନଟିଏ ଦୋକାନ କରି ଭଲ ରୋଜଗାର କରୁଥିଲା, ତା’ ଅନେକେ ସହି ପାରୁ ନ ଥିଲେ। ହିନ୍ଦୁ ମୁସଲମାନ ଦଙ୍ଗା ବେଳେ ସେମାନଙ୍କୁ ସୁବିଧା ମିଳିଗଲା।’’

‘‘ପର୍‌ଭେଜ୍ ଦାଦା ବାହା ହୋଇ ଥିଲେ ନା ? ପିଲାଟାଏ ବି ଥିଲା ନା କ’ଣ ?’’ ଛୋଟ ଦା’ଠୁ ଶୁଣିଥିବା କଥା ମନେ ପକାଇ ଅର୍ଚ୍ଚନା ପଚାରିଲା।

‘‘ହଁ। ତା’ ସ୍ତ୍ରୀ ବାନୁ। ତିନି ମାସର ଛୁଆଟାଏ ବି ତାଙ୍କର। ସେଇ ରାତିରେ ଘର ଭିତରେ ଏସବୁ କାଣ୍ଡ କାରଖାନା ଚାଲିଥିବା ବେଳେ ବାଡ଼ି କବାଟ ଖୋଲି ଚିତ୍କାର କରିଥିଲା ବାନୁ। ଚିତ୍କାର କରି କରି ସାହି ପଡ଼ିଶାଙ୍କୁ ଡାକିଥିଲା। ...କେହି ବାହାରିଲେନି, ଅର୍ଚ୍ଚନା। କେହି କବାଟ ଖୋଲି ପଦାକୁ ଆସିଲେ ନାହିଁ। ଅବଳା ସ୍ତ୍ରୀ ଲୋକଟିକୁ କେହି ଟିକିଏ ସାହାଯ୍ୟ କଲେ ନାହିଁ। ନିଜ ନଜର ପ୍ରାଣ ବଞ୍ଚେଇବା ପାଇଁ କାପୁରୁଷଙ୍କ ଭଳି ଘର ଭିତରେ ବସି ରହିଲେ ସମସ୍ତେ।’’

ଢୋକ ଗିଳି ଅମରେଶ ପୁଣି କହିଲା, ‘‘ରାସ୍ତାରେ ପାଗଳୀଙ୍କ ଭଳି କିଛି ସମୟ ଏପାଖ ସେପାଖ ଦୌଡ଼ା ଦୌଡ଼ି କରିବା ପରେ ବାନୁ ତା’ ଝିଅକୁ ଧରି ଧାଇଁ ଧାଇଁ ଚାଲି ଆସିଲା ମୋ ଘରକୁ। ମୋ ଘର ପର୍‌ଭେଜ୍ ଘରଠୁ ପ୍ରାୟ ଦେଢ଼ କିଲୋମିଟର୍ ରାସ୍ତା। ଏତେ ଗୁଡ଼ାଏ ବାଟ ପାର ହୋଇ କେମିତି ଯେ ବାନୁ ଆସିଲା ତା’ ମୁଁ ଜାଣେନି। ମୋ କବାଟରେ ଜୋରରେ ଥରେ ଧକ୍କା ଦେଇ ସେଇଠି ଅଜ୍ଞାନ ହୋଇଗଲା ସେ। ...କବାଟ ଖୋଲି ମୁଁ ଅବାକ୍। ଡାକ୍ତର ଡାକିବାର ଅବସ୍ଥା ନ ଥିଲା ସହରରେ। ଯାହେଉ କୌଣସି ମତେ ପାଣି ଫାଣି ଛାଟି ତାକୁ ମୁଁ ସାଷ୍ଟାମ କଲି। ତା’ପରେ ସେ ମତେ କହିଲା ସବୁ କିଛି ...କେମିତି ପର୍‌ଭେଜ୍‌କୁ...’’ ଆଉ ଥରେ ସକ ସକ ହୋଇ କାନ୍ଦି ପକେଇଲା ଅମରେଶ।

ଅର୍ଚ୍ଚନା ନିଜ ଆଖିର ଲୁହକୁ ଆଉ ଚାପି ରଖି ପାରି ନ ଥିଲା। ଛୋଟ

ଦା'ର ହାତ ଧରି ସେ ଭଙ୍ଗା ଭଙ୍ଗା ସ୍ୱରରେ ପଚାରିଲା, ‘‘ଏବେ କ'ଣ ହେବ ବାନୁ ବୌଦିଙ୍କର ?’’

ହାତ ପାପୁଲି ଓଲଟେଇ ଅସହାୟ ଭାବରେ ଅମରେଶ କହିଲା, ‘‘ମୁଁ କିଛି ଭାବି ପାରୁନି ରେ।’’

‘‘ତାଙ୍କୁ ତାଙ୍କ ବାପଘର କି ଶାଶୂ ଘରକୁ ପଠେଇ ହେବନି।’’

‘‘ଶାଶୂଘର ? ଶାଶୂଘର ଯାଇ ମୈମନ୍‌ସିଂ ଜିଲ୍ଲାରେ। ସେଠିକୁ ଯିବାର ପ୍ରଶ୍ନ ନାହିଁ। ଆଉ ବାପଘର ଲୋକେ ଯେ ଆଜି ପର୍ଯ୍ୟନ୍ତ ଚନ୍ଦନ ନଗରରେ ଅଛନ୍ତି, ତା' ବି କହି ହେବନି। ହୁଏତ ସେମାନେ ବି ଚାଲି ଯାଇ ସାରିଲେଣି ଆଉ କୁଆଡ଼େ। ପୂର୍ବ ବଙ୍ଗର କୋଉ ସ୍ଥାନକୁ।’’

‘‘ତାହେଲେ ଏଇଠି ରହିବାକୁ ହେବ ବାନୁ ବୌଦିଙ୍କୁ ?’’

ହଠାତ୍ ବୁଲି ପଡ଼ି ସାନ ଭଉଣୀ ମୁହଁକୁ ଚାହିଁଲା ଅମରେଶ। ଆଖିରେ ବିବଶତା। ‘‘ମୁଁ କେମିତି ବାନୁକୁ ମୋ ଘରେ ରଖିବି ରେ ଅର୍ଚ୍ଚନା ? ସାଇ ପଡ଼ିଶା କ'ଣ କହିବେ ? ... ଜଣେ ଦି'ଜଣ ମତେ ପଚରା ପଚରି କରିଥିଲେ। ମୁଁ ଆଖି ବୁଜି ମିଛ କହି ଦେଇଛି ଯେ ସେ ମୋର ଜଣେ ଆତ୍ମୀୟ। ପାବ୍‌ନାରୁ ଆସି ରହିଛି। କେହି ଯେମିତି ସନ୍ଦେହ ନ କରନ୍ତି, ସେଇଥିପାଇଁ। ହେଲେ ବେଶୀ ଦିନ ତ ସେ ମିଛ ଚଳିବନି। ତା'ପରେ କ'ଣ ହେବ !’’

କିଛି ସମୟ ଚୁପ୍ ହୋଇ ରହିଲା ଅର୍ଚ୍ଚନା। ତା'ପରେ କହିଲା, ‘‘ତୁ ବ୍ୟସ୍ତ କାହିଁକି ହେଉଛୁ ଛୋଟ ଦା' ? ବାନୁ ବୌଦି ଏକା ତୋ ପାଖରେ ରହିଲେ ସିନା ତୋତେ ବାର ଲୋକେ ବାର କଥା କହିବେ। ତୋର ବଦ୍‌ନାମ ହେବ। ହେଲେ ମୁଁ ବି ଯଦି ଯାଇ ସେଠି ରହେ...’’

‘‘ତୁ !! ତୁ ମୋ ପାଖରେ ରହିବୁ, ଅର୍ଚ୍ଚନା ! ସତରେ ରହିବୁ ! ତାହେଲେ ତ ଭାରି ଭଲ ହେବ ରେ।’’ ଉଲ୍ଲସିତ ଭାବରେ ଅମରେଶ କହି ପକେଇଥିଲା।

‘‘କହ, କେବେ ଯିବି ? ଆଜି ?’’

ଅମରେଶ ସାମାନ୍ୟ ଚିନ୍ତା କରି କହିଲା, ‘‘ନା, ଆଜି ଥାଉ। ଆଜି ମୁଁ ଯାଉଛି। ଟିକିଏ ଖୋଜ ନେବି ଯାଇ ଏହା ଭିତରେ। ଯଦି ବାନୁର ବାପଘର ଖବର ଠିକ୍ ଠିକ୍ ମିଳିଯାଏ, ତାହେଲେ ଚିନ୍ତା କରିବାର କିଛି ନାହିଁ। ନହେଲେ ଆସି ତତେ ମୁଁ ଏଠୁ ନେଇ ଯିବି। ଆଚ୍ଛା ?’’

ଚାଲିଗଲା ଅମରେଶ। କିନ୍ତୁ ତା'ପରେ ବେଶ୍ କିଛିଦିନ ସେ ଆସିଲା ନାହିଁ। ଅର୍ଚ୍ଚନା ମନେ ମନେ ସାମାନ୍ୟ ନିଶ୍ଚିତ ହୋଇ ଯାଇଥିଲା। ନିଶ୍ଚୟ ବାନୁ ବୌଦିଙ୍କ ବାପଘର ଲୋକେ ତାଙ୍କୁ ଆସି ନେଇ ଯାଇଛନ୍ତି। ସେଇଥିପାଇଁ ଛୋଟ ଦା' ଆଉ ତାକୁ ନିଜ ଘରକୁ ନେବା କଥା କହି ନାହିଁ। ଯାହେଉ, ଭଲ ହେଲା।

ଅମରେଶ ତା' ପର ଥର ଆସିଲା ବେଶ୍ କିଛି ସପ୍ତାହ ପରେ। ମୁହଁ ଗମ୍ଭୀର। ଆଖିରେ ଅନ୍ୟମନସ୍କ ଭାବ। ଅର୍ଚ୍ଚନାର କୌଣସି ପ୍ରଶ୍ନର ଉତ୍ତର ଠିକ୍ ଭାବରେ ନ ଦେଇ ସେ ଆଡ଼େଇ ଆଡ଼େଇ ହୋଇ ରହି ଯାଉଥିଲା। ବାନୁ ବିଷୟରେ ପଦଟିଏ କଥା କହି ନ ଥିଲା। ଯେତିକି କହିଥିଲା, ସେଥିରୁ ଅର୍ଚ୍ଚନା ବୁଝିଥିଲା ଯେ ବାନୁ ବିଷୟରେ ବେଶୀ କହିବାକୁ ତା'ର ଭୀଷଣ ଆପତ୍ତି।

କାହିଁକି ?

କାହିଁକି ସେଦିନ ଏମିତି ଆଡ଼େଇ ଆଡ଼େଇ ହୋଇ ରହିଥିଲା ଛୋଟ ଦା' ?

ମାମୁଘରୁ ଘୋଡ଼ା ଗାଡ଼ିରେ ବସି ଚମ୍ପା ପିସୀମା'ଙ୍କ ଘରକୁ ଫେରିବା ବେଳେ ଭାବି ହେଉଥିଲା ଅର୍ଚ୍ଚନା। ଗୋଟାଏ ନାମ ନ ଥିବା ଅସ୍ୱସ୍ତି ଧୀରେ ଧୀରେ ମାଡ଼ି ବସୁଥିଲା ତା' ଛାତି ଉପରେ।

ନା। ଏତେ ଭାବି ହେବନି ସେ। ଆଜି ଖାଇ ସାରିବା ପରେ ସେ ନିଶ୍ଚୟ ଯିବ ଛୋଟ ଦା' ପାଖକୁ। ଠିକଣା ଅଛି ପାଖରେ। ଗଳିର ନାଁ ଜଣା। ସେଠି ପୁଣି ଜଣାଶୁଣା ଶିବ ମନ୍ଦିରଟିଏ ଅଛି। ଯେ କୌଣସି ଟାଙ୍ଗାବାଲା ତାକୁ ନେଇ ଯାଇପାରିବ। ବାସନ ମାଜିବାକୁ ଆସୁଥିବା ଗିରି ମା'କୁ ନେଇଗଲେ ହେବ ସାଙ୍ଗରେ। ଅଯଥା କାହିଁକି ହଇରାଣ କରିବ ପିସେମଶାଏଙ୍କୁ ? ଅର୍ଚ୍ଚନା ମନେ ମନେ ସ୍ଥିର କରି ନେଲା।

ସେହି ହିସାବରେ ବି ବାହାରି ଗଲା ଠିକ୍ ଦି'ପହରର ଖିଆପିଆ ପରେ। ଏଥର ଆହୁରି ଆଶ୍ଚର୍ଯ୍ୟ ହେଲେ ଚମ୍ପା। କିନ୍ତୁ ସକାଳ ଭଳି କିଛି କହିଲେ ନାହିଁ କି ବାଧା ମଧ୍ୟ ଦେଲେ ନାହିଁ।

ଅର୍ଚ୍ଚନା ଭାବିଥିଲା ଅମରେଶର ଘର ଖୋଜି ପାଇବାରେ ବିଶେଷ କିଛି ଅସୁବିଧା ହେବନି। ଥରେ ଶିବ ମନ୍ଦିର ପାଖରେ ପହଞ୍ଚିଗଲେ, ଗଳିଟା ମିଳିଯିବ। ଆଉ ଗଳି ଭିତରେ ପଶିଗଲେ ଛୋଟ ଦା' ନାଁ କହିଲେ ନିଶ୍ଚୟ ଯିଏ ନାହିଁ

ସିଏ ଘରଟାକୁ ଦେଖେଇ ଦେବେ।

ଶିବ ମନ୍ଦିର ମିଳିଗଲା। ଗଳି ମଧ୍ୟ ମିଳିଗଲା। କିନ୍ତୁ ଅମରେଶର ଘର ସହଜେ ମିଳିଲା ନାହିଁ ଅର୍ଚ୍ଚନାକୁ। ଏଇ କଦର୍ଯ୍ୟ ଗଳି ଭିତରେ ଯେ ଏତେ ଗୁଡ଼ାଏ ଉପଗଳି ରହିଥିବ, ତା' ସେ ଧାରଣା କରି ପାରି ନ ଥିଲା। ଟାଙ୍ଗାରେ ବସି ବସି ପ୍ରତିଟି ଉପଗଳି ଭିତରେ ପଶି 'ଅମରେଶ ମୁଖୋପାଧ୍ୟାୟଙ୍କ ଘର କେଉଁଟା କହି ପାରିବେ କି?' ପଚାରିବା ଛଡ଼ା ଉପାୟ କିଛି ନ ଥିଲା। ସରୁ ସରୁ ଗଳି ଭିତରେ ପଶି ଟାଙ୍ଗାବାଲା ବିରକ୍ତ। ବହୁ ଲୋକଙ୍କୁ ସେଇ ଏକା କଥା ପଚାରି ପଚାରି ଗିରି ମା' ବି ଚିଡ଼ି ଯାଇ ସାରିଲାଣି।

''ନାଇଁ ଗୋ ଦିଦି, ତୁମ ଭାଇ ଏଠି କେଉଁଠି ରହନ୍ତି ନାହିଁ। ତୁମ ପାଖରେ ନିଶ୍ଚୟ ଭୁଲ ଠିକଣା ଅଛି। ଚାଲ, ଫେରିଯିବା ଘରକୁ।'' ଶେଷରେ ମନର ବିରକ୍ତିକୁ ଲୁଚେଇ ନ ପାରି ଗିରି ମା' କହିଲା।

''ରୁହ ଟିକିଏ। ଏଇ ଶେଷ ଗଳିରେ ଥରେ ପଚାରି ଦେବା। ନ ମିଳିଲେ ଚାଲିଯିବା। ଆଚ୍ଛା?''

ଗିରି ମା' ରାଜି ହେଲା। ଗଳି ଆରମ୍ଭରେ ଗୋଟାଏ ଭଙ୍ଗା ଘର। ତା'ର ବାରଣ୍ଡାରେ ବସି ବିଡ଼ି ଫୁଙ୍କୁ ଫୁଙ୍କୁ ଚାରି ଜଣ ଟୋକା ତାସ୍ ଖେଳୁଥିଲେ।

''ହେ ଭାଇ, ଟିକିଏ ଶୁଣିବ?'' ଗିରି ମା' ଟାଙ୍ଗାରୁ ଓହ୍ଲେଇ ପଡ଼ି ସେମାନଙ୍କୁ ଡାକିଲା।

କେହି ଉଠି ଆସିଲେ ନାହିଁ। ଖେଳରୁ ମୁହଁ ଉଠାଇ କେବଳ ଜଣେ ପଚାରିଲା, ''କ'ଣ କହୁଛ?''

''ଏଠି ବାବୁ ଶ୍ରୀ ଅମରେଶ ମୁଖୋପାଧ୍ୟାୟଙ୍କ ଘର କେଉଁଠି ଟିକିଏ କହିବ?''

''ସେମିତି କେହି ଏଠି ରହନ୍ତି ନାହିଁ।'' ଟୋକାଟି ତାସ୍‌କୁ ଫେରିଗଲା।

ଗିରି ମା' ଆଉ କ'ଣ ପଚାରି ଆସୁଥିଲା, କିନ୍ତୁ ହଠାତ୍ କରି ଆଉ ଗୋଟାଏ ପିଲା କହି ଉଠିଲା, ''ରହନ୍ତି ନାହିଁ ବୋଲି ମିଛ କହି ଦେଉଛୁ କେମିତି ବେ ଶଳା?''

ପ୍ରଥମ ପିଲାଟି ଖିଙ୍କାରି ଉଠିଲା, ''ମିଛ କାହିଁକି କହିବି? ଏଠି ସେମିତିଆ ଅମରେଶ ବାବୁ ଫାବୁ କିଏ ରହନ୍ତି ନାହିଁ।''

''ଆବେ ସେ ହୋଟେଲିଆଟାର ନାଁ ଅମରେଶ ନୁହଁ କି?''

"କୋଉ ହୋଟେଲିଆ ?"

"ସେଇ ଯିଏ ମାଇକିନିଆ ଲୁଚେଇ ରଖିଛି..." ହିଁ ହିଁ ହୋଇ ହସି ଉଠିଲା ସିଏ।

ଅର୍ଚ୍ଚନାର ମୁହଁ ଲାଲ ପଡ଼ିଗଲା। କି ଛତରା ଟୋକାଗୁଡ଼ାକ! କେମିତି ଅସଭ୍ୟ ଭାଷାରେ କଥାବାର୍ତ୍ତା କରୁଛନ୍ତି! ଗିରି ମା'କୁ ଡାକି ଫିସ୍ ଫିସ୍ କରି କହିଲା, "ତୁ ଆଗରେ ଯାଇ କୌଣସି ଘରେ ପଚାର। ଏମାନଙ୍କୁ ପଚାରି ଲାଭ ନାହିଁ।"

ଟିକିଏ ବାଟ ଯିବା ପରେ ମଧ୍ୟବୟସ୍କା ସ୍ତ୍ରୀଲୋକଟିଏ କାଖରେ ପାଣି ଗରାଟିଏ ଧରି ଆସୁଥିବାର ଦେଖିଲା ଗିରି ମା'। ଆଗେଇ ଯାଇ ତାକୁଇ ସେଇ ଏକା ପ୍ରଶ୍ନଟି ପଚାରିଲା ସେ।

ଗିରି ମା'ର ପ୍ରଶ୍ନରେ ଥମକି ଠିଆ ହୋଇଗଲା ଆଗ ସ୍ତ୍ରୀଲୋକଟି। ତା'ପରେ ଓଠରେ ଏକ ବିଚିତ୍ର ହସ ଖେଳାଇ ଟାଙ୍ଗା ଭିତରକୁ ଉଙ୍କି ମାରିଲା ସେ। ଟାଙ୍ଗା ଭିତରେ ଅର୍ଚ୍ଚନାକୁ ଦେଖି ଓଠର ହସଟି ଆହୁରି ଜଘନ୍ୟ ହୋଇଗଲା ତା'ର।

ଥୁ କରି ମେଞ୍ଚାଏ ପାନ ଛେପ ରାସ୍ତା କଡ଼କୁ ପକେଇ ଦେଇ ସେ କହିଲା, "ଆଉ ଟିକେ ଆଗେଇ ଯାଅ। ଚାରି ପାଞ୍ଚଟା ଘର ଛାଡ଼ି ଲାଲ ରଙ୍ଗର ଦରଜାଟିଏ ଦେଖିବ। ସେଇ ଘର।" ଆଉ ଥରେ ଅର୍ଚ୍ଚନାକୁ ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ଦେଖି ନେଇ ସେ ଚାଲିଗଲା ତା' ବାଟରେ।

ଅର୍ଚ୍ଚନାକୁ ଜମା ଭଲ ଲାଗିଲା ନାହିଁ ସ୍ତ୍ରୀ ଲୋକଟିର ହସ ଓ କଥା। କିନ୍ତୁ ଘରଟି ତ ବତେଇ ଦେଇଛି। ଏତେ ବାଟ ଆସି ସେ ପୁଣି କ'ଣ ଫେରିଯିବ ?

ଟାଙ୍ଗାବାଲା ଘର ସାମ୍ନାରେ ଟାଙ୍ଗା ରଖିଲା।

"ହାଇରେ କପାଳ!!" ଗିରିମା'ର କଥାରେ ଟାଙ୍ଗାରୁ ଓହ୍ଲାଉ ଓହ୍ଲାଉ ଅର୍ଚ୍ଚନା ରହିଗଲା। ପଚାରିଲା, "କ'ଣ ହୋଇଛି ?"

"ପଚାରୁଛ ଆଉ ? ଦେଖିପାରୁନ ? କବାଟରେ ପରା ଏଡ଼େ ବଡ଼ ତାଲା।"

ତାଲା ?? ଛୋଟ ଦା' ନାହିଁ ? ରବିବାର ଦିନ ପରା ତା' ହୋଟେଲ ବନ୍ଦ ରହେ। ତେବେ ସେ ଗଲା କୁଆଡ଼େ ? କୋଉ ସାଙ୍ଗ ସାଥୀ ଘରକୁ

ଚାଲି ଯାଇଛି ନା କ'ଣ ? ଏବେ ଅର୍ଚ୍ଚନା କ'ଣ କରିବ ? ଫେରି ଯିବ ?

''କିଏ ? ଅର୍ଚ୍ଚନା ??''

ହଠାତ୍ ଚମକି ଉଠିଲା ଅର୍ଚ୍ଚନା । ଛୋଟ ଦା । ଫେରିଛି ଛୋଟ ଦା' ।

''ଛୋଟ ଦା, ମୁଁ ତ ଫେରି ଯାଉଥିଲି । କୁଆଡ଼େ ଚାଲି ଯାଇଥିଲୁ ?''

''କେଇଟା ଜିନିଷ କିଣିବାର ଥିଲା । ବଡ଼ ବଜାର ଆଡ଼େ ଚାଲି ଯାଇଥିଲି ଟିକିଏ ।'' କଥାଟା କହି ଦେଇ ସାମାନ୍ୟ ଇତସ୍ତତଃ କଲା ଅମରେଶ । ପାଖରେ ଆସି ଠିଆ ହେଲାଣି ଅର୍ଚ୍ଚନା । ଆଉ ଉପାୟ ନାହିଁ । ଏଥର ଖୋଲିବାକୁ ହେବ କବାଟ ।

କବାଟ ଖୋଲିଗଲା । ତାଲା ଲଗା ଘର ଭିତର ଯେ ଜନଶୂନ୍ୟ ଥିବ, ତା' ଜଣାଶୁଣା କଥା । କିନ୍ତୁ ଘର ଭିତରେ ଜଣେ ମହିଳା ତଳେ ବସି ସିଲେଇ କରୁଥିଲେ । ଅର୍ଚ୍ଚନା ଭୟଙ୍କର ଭାବରେ ଚମକି ପଡ଼ିଲା ।

ତା' ମୁହଁକୁ ନ ଚାହିଁ ଅମରେଶ ତରବର ହୋଇ କହି ପକେଇଲା, ''ଇଏ ବାନୁ ।''

''ଓ, ବାନୁ ବୌଦି ?'' ଅର୍ଚ୍ଚନା ବୋକା ବୋକା ଭାବରେ ହସିଲା ।

ଏପର୍ଯ୍ୟନ୍ତ ସେ ଏଇଠି ଅଛନ୍ତି ! ତାହେଲେ ଅର୍ଚ୍ଚନାକୁ ପାଖକୁ କାହିଁକି ନେଇ ଆସିଲା ନାହିଁ ଅମରେଶ ?

କୈଫିୟତ ଦେବା ଭଳି ଅମରେଶ କହିଲା, ''ବାନୁର ବାପା ଭାଇ ଚନ୍ଦନ ନଗରରୁ ଚାଲି ଯାଇଛନ୍ତି । କୁଆଡ଼େ ଯାଇଛନ୍ତି, କିଛି ଖବର ନାହିଁ ।''

''ତୁ ମତେ ତ କିଛି କହିଲୁ ନାହିଁ ଛୋଟ ଦା' । କହିଥିଲେ, ମୁଁ ଚାଲି ଆସି ଥାଆନ୍ତି ।''

ଅସ୍ୱସ୍ତିର ହସ ଓଠରେ ଖେଳାଇ ଅମରେଶ ଉତ୍ତର ଦେଲା, ''ପରେ ଭାବିଲି ଅଯଥାରେ ସାଇ ପଡ଼ିଶାଙ୍କୁ ଡରି ଚଳିବି କାହିଁକି ? ତା'ଛଡ଼ା ତୁ ତ ଅଛୁ ସେଠି ଭଲରେ । ଅଯଥା କାହିଁକି ତତେ ଏପାଖ ସେପାଖ କରିବି ।''

ଏଇଟା ପୁଣି କି କଥା ! ଅର୍ଚ୍ଚନା ବୁଝୁ ନ ଥିଲା । ଯଦି ତା' ଛୋଟ ଦା' ସାଇ ପଡ଼ିଶାଙ୍କ କଥାକୁ ଖାତିର କରୁନି, ତାହେଲେ ବାନୁ ବୌଦିଙ୍କୁ ଏମିତି ତାଲା ବନ୍ଦ କରି ରଖିଛି କାହିଁକି ? ଛଣାଛଣି ହୋଇଗଲେ ସେ ନ ଥିବା ବେଳେ ତାଙ୍କ ଉପରେ ପଡ଼ା ପ୍ରତିବେଶୀ ଆକ୍ରମଣ କରିବେ ବୋଲି

କି ? କିନ୍ତୁ ସତରେ କ'ଣ କେହି କିଛି ଜାଣନ୍ତି ନାହିଁ ? ଯଦି ନ ଜାଣନ୍ତି, ତାହେଲେ ସେ ଟୋକାମାନେ ହସାହସି କରିଲେ କାହିଁକି ? ପାଣି ନେଉଥିବା ସ୍ତ୍ରୀ ଲୋକଟି ଏଭଳି ତାଚ୍ଛଲ୍ୟ ଭାବରେ ଓଠ ବଙ୍କେଇଲା କାହିଁକି ?

ଅର୍ଚ୍ଚନାକୁ ଭଲ ଲାଗିଲା ନାହିଁ। କିନ୍ତୁ କ'ଣ କରି ପାରିବ ସେ ? ଅନନ୍ୟୋପାୟ ହୋଇ ସେ ବାନୁ ଉଦ୍ଦେଶ୍ୟରେ ହାତ ଯୋଡ଼ିଲା।

କିଛି ସମୟର ଅସ୍ୱସ୍ତିକର ନୀରବତା।

ହଠାତ୍ ଅସ୍ୱସ୍ତି କଟାଇବା ପାଇଁ ଅମରେଶ ପଚାରି ଉଠିଲା, ''ଚାହା ପିଇବୁ ଅର୍ଚ୍ଚନା ?''

ଅର୍ଚ୍ଚନା ମନା କରି ଆସୁଥିଲା। କିନ୍ତୁ ତା'ର 'ହଁ, ନାହିଁ' ଶୁଣିବା ଆଗରୁ ଅମରେଶ ତରବରରେ କହି ପକେଇଲା, ''ବାନୁ, ଚାହା ଟିକିଏ କର।''

ବାନୁ ବୌଦି ଚାହା କରିବେ ?? ଆଉ ତାଙ୍କ ହାତ ତିଆରି ଚାହା ସେ ପିଇବ ? ଜନ୍ମରୁ ଦେଖି ଆସିଥିବା ସଂସ୍କାର କ୍ଷଣିକ ପାଇଁ ଚମକେଇ ଦେଲା ଅର୍ଚ୍ଚନାକୁ। କିନ୍ତୁ ପର ମୁହୂର୍ତ୍ତରେ ହିଁ ନିଜର କ୍ଷୁଦ୍ର ଭାବନାରେ ଲଜ୍ଜିତ ହୋଇ ପଡ଼ିଲା ସେ। ସେ କ'ଣ ସଲମା ଚାଚିଙ୍କ ହାତ ରନ୍ଧା ଜିନିଷ କେବେ ଖାଇ ନାହିଁ ? ହଁ, ଭାତ ଖିଆ ଅବଶ୍ୟ ହୋଇ ନ ଥିଲା କେବେ। କିନ୍ତୁ ଖାଇଲେ ବା କ୍ଷତି କ'ଣ ? ଯାହା ଜଣା ପଡ଼ୁଛି, ତା' ଛୋଟ ଦା' ଘରେ ରୋଷେଇ ଘରର ଦାୟିତ୍ୱ ନେଇଛନ୍ତି ବାନୁ ବୌଦି। ତାଙ୍କ ହାତ ରନ୍ଧା ଯଦି ଛୋଟ ଦା' ଖାଇ ପାରୁଛି, ତେବେ ଅର୍ଚ୍ଚନା ଖାଇଲେ କ'ଣ କ୍ଷତି ହୋଇଯିବ ?

ନିଜ ଭାବନାକୁ ଚାପି ରଖିବା ପାଇଁ ସେ ଅପେକ୍ଷାକୃତ ଜୋର ଗଳାରେ କହି ପକେଇଲା, ''ମୋ ପାଇଁ ଅଧା କପ୍ ଚାହା କରିବ, ବାନୁ ବୌଦି। ମୁଁ ଏବେ ଭାତ ଖାଇ ଆସିଛି।''

ବାନୁ ଭିତରକୁ ଚାଲିଯିବା ପରେ ଅର୍ଚ୍ଚନା ରହି ରହି କହିଲା, ''ଛୋଟ ଦା'ରେ, ତୋ ଘରେ ଆସି ମୁଁ ରହି ପାରିବି ?''

''ଏଠି ? ମାନେ ବାନୁ ପାଇଁ ? ନା.. ସେ ଚଳି ଯାଉଛି... ଲୋକଙ୍କ କଥା ଶୁଣେ କିଏ ?''

''ନା, ସେଥିପାଇଁ ନୁହଁ। ମୋର ନିଜର ଭାରି ଇଚ୍ଛା। ମୁଁ ଏଠି ରହି ପାରିବିନି ?'' ଆଉ ଥରେ ପଚାରିଲା ଅର୍ଚ୍ଚନା।

ଅମରେଶ ଅବାକ ହେଇଗଲା । ''କ'ଣ ହୋଇଛି ଅର୍ଚ୍ଚନା ? କିଛି ଅସୁବିଧା ହୋଇଛି କି ? କେହି କିଛି କହିଛନ୍ତି କି ସେଠି ?''

''ଧେତ୍, କି ଯେ କଥା କହୁଛୁ ! ମତେ କାହିଁକି କିଏ କ'ଣ କହିବ ସେଠି ? ହେଲେ ମୋର ଭାରି ଇଚ୍ଛା କିଛି ଦିନ ପାଇଁ ତୋ ପାଖରେ ରହିବାକୁ । ରହି ପାରିବିନି ?''

''ହଁ ହଁ, ରହି ପାରିବୁନି କାହିଁକି ? ନିଶ୍ଚୟ ରହି ପାରିବୁ ।'' ତରବର ହେଇ ଅମରେଶ କହି ପକେଇଲା ଏବଂ ଉଠି ଯାଉ ଯାଉ ଯୋଡ଼ିଲା, ''ତୁ ବସ୍ ଟିକିଏ । ମୁଁ ଦେଖେ ଚାହା କରିବାକୁ ବାନୁର ଏତେ ଡେରି କାହିଁକି ହେଉଛି ।''

ଅର୍ଚ୍ଚନାକୁ ଖରାପ ଲାଗିଲା । ଛୋଟ ଦା'ର କଥାରେ ଆତ୍ମୀୟତାର ଅଭାବ ଥିବା ଭଳି ତା'ର ମନେ ହୋଇଥିଲା । ଯେମିତି ଖାଲି କଥାର କଥାଟିଏ ସେ କହି ଦେଇଛି, ସେମିତି ଲାଗିଥିଲା ।

ଛୋଟ ଦା' ତ ଉଲ୍ଲସିତ ଭାବରେ କହି ପାରିଥାଆନ୍ତା, 'ମତେ ତୁ ପଚାରୁଛୁ କାହିଁକି, ଅର୍ଚ୍ଚନା ? ମୋ ଘର ତୋ ଘର ନୁହଁ ? ଭାଇ ଘରେ ଆସି ରହିବା ପାଇଁ କ'ଣ ଏତେ ଅନୁମତି ଫନୁମତିର ଆବଶ୍ୟକତା ହୁଏ ?'

ହେଲେ କାହିଁକି ଅମରେଶ ସେମିତି କିଛି କହିଲା ନାହିଁ ? ତା' ସ୍ୱରରେ ବି କୌଣସି ବିଭୋର ଭାବ ନ ଥିଲା । ଅର୍ଚ୍ଚନା କଥାରେ ତା' ମନରେ କ'ଣ କୁଣ୍ଠା ଆସିଛି ? କାହିଁକି ? ସେ ତ ପାଖରେ ରହିବାକୁ ନିଚ୍ଛେ ଏତେ କରି ଡାକୁଥିଲା ତାକୁ । ହଠାତ୍ ପୁଣି ମନ କାହିଁକି ବଦଳିଗଲା ତା'ର ?

ଚୁପ୍ ହୋଇ ବସି ଅର୍ଚ୍ଚନା ଭାବୁଥିଲା ଏବେ ସେ କ'ଣ କରିବ ।

''ନେ, ମିଠା ଖା ।'' ତା' ସାମ୍ନାରେ ଗୋଟାଏ ପ୍ଲେଟ୍ ଭର୍ତ୍ତି ମିଠା ଥୋଇ ଦେଇ ଅମରେଶ ହସିଲା ।

ଆଉ ସେଇ ହସ ଖଣ୍ଡିକ ଦେଖି ହିଁ ଅର୍ଚ୍ଚନା ଛାତି ଉପରୁ ଉଦ୍‌ବେଗର ବାଦଲଟି ଘୁଞ୍ଚିଗଲା । ତା' ଛୋଟ ଦା' କଥାରେ ସେ ପୁଣି ଆତ୍ମୀୟତାର ଅଭାବ ଅଛି ବୋଲି ଭାବୁଛି ! ତା' ମନରେ କୁଣ୍ଠା ଅଛି ବୋଲି ଭାବୁଛି ! ଛି ଛି । ଛୋଟ ଦା' ତ ସବୁ ଦିନ ଏଇ ଭଳି । ତେଢ଼ା ତେଢ଼ା କରି କଥା କହେ । କିଛି ନ ଭାବି ଯାହା ମନକୁ ଆସେ ତା' ଆଗ କହି ଦିଏ । ତା'

କଥା ପୁଣି ଧରୁଛି ଅର୍ଚ୍ଚନା ?

"ମୁଁ ତାହେଲେ ଚାଲି ଆସିବି ଛୋଟ ଦା'।"

"ହଁ ନିଶ୍ଚୟ। କେବେ ଆସିବୁ? ମତେ କହ। ମୁଁ ଯାଇ ନେଇ ଆସିବି।"

"ତୁ କାଲି ଆ, ଛୋଟ ଦା'। ପିସୀମା'ଙ୍କୁ କହି ମୁଁ କିଛି ଦିନ ପାଇଁ ଚାଲି ଆସିବି ତୋ ପାଖକୁ।"

ଅର୍ଚ୍ଚନା ଭାବିଥିଲା ତାକୁ ଛାଡ଼ିବା କଥାରେ ଅଟଳ ମେରୁ ହୋଇ ବସିଯିବେ ଚମ୍ପା ପିସୀମା'। କିନ୍ତୁ ସେମିତି ହେଲା ନାହିଁ। ପରଦିନ ଅମରେଶ ଆସିବା ପରେ ସେ ଯେତେବେଳେ ଜାଣିଲେ ଯେ ଅର୍ଚ୍ଚନା କିଛି ଦିନ ପାଇଁ ସେଠିକି ଯାଇ ରହିବାକୁ ଚାହୁଁଛି, ସେତେବେଳେ ସେ ବିନା ପ୍ରତିବାଦରେ ନିଜର ସମ୍ମତି ଦେଇଦେଲେ।

ଅବାକ୍ ହୋଇଥିଲେ ଦୀପେନ୍। ହଠାତ୍ ଯେ ଅର୍ଚ୍ଚନା ପେଡ଼ିପେଟରା ବାନ୍ଧି ଭାଇ ଘରକୁ କାହିଁକି ବାହାରିଛି, ତା' ସେ ବୁଝି ପାରୁ ନ ଥିଲେ। ସତ କହିବାକୁ ଗଲେ, ଦୁଇଦିନ ଆଗର ଆବିଷ୍କାର ପରେ ଅର୍ଚ୍ଚନାକୁ ଆଖି ସାମ୍ନାରୁ କ୍ଷଣିକ ପାଇଁ ଅନ୍ତର କରିବାକୁ ଇଚ୍ଛା ହେଉ ନ ଥିଲା ତାଙ୍କର। କିନ୍ତୁ ଅର୍ଚ୍ଚନା ଯେମିତି ତାଙ୍କ ଦୃଷ୍ଟିର ଦିଗ୍‌ବଳୟ ଭିତରେ ନ ଆସିବାକୁ ବଦ୍ଧପରିକର ହୋଇ ଯାଇଛି। ସାରାଟା ରବିବାର ମାମୁଘର, ଭାଇଘର ହୋଇ କଟେଇ ଦେଲା। ଚାହିଁଥିଲେ ତ ଦୀପେନ୍‌ଙ୍କ ସାଙ୍ଗରେ ସେ ଯାଇ ପାରିଥାଆନ୍ତା। କିନ୍ତୁ ଥରେ ବି ସେକଥା ଉଠେଇଲାନି। ସୋମବାର ଦିନ ସ୍କୁଲ ଗଲାବେଳେ ମୁହଁ ପୋତି ପୋତି ଗଲା ଏବଂ ସେଇମିତି ମୁହଁ ପୋତି ପୋତି ଦୂରେଇ ଚାଲି ଚାଲି ଫେରିଲା। ସ୍କୁଲ୍‌ରୁ ଫେରିବା ପରେ ବି ଗୋଟାଏ ମିନିଟ୍ ପାଇଁ ସେ ଉପରକୁ ଆସି ଲାଇବ୍ରେରୀରେ ବସିଲା ନାହିଁ। ଦୀପେନ୍‌ଙ୍କୁ ଚାହା ଆଣି ଦେଲା ନାହିଁ। ଦେଇଥିଲେ ତାଙ୍କ ଦିଦି।

ଆଉ ଆଜି ପୁଣି ଦେଖ। ଅର୍ଚ୍ଚନାର ଭାଇ ଆସି ହାଜର। କ'ଣ ନା କିଛି ଦିନ ପାଇଁ ଭଉଣୀକୁ ସେ ନେଇଯିବ। କାହିଁକି ଏମିତି ନେଇଯିବ? ଦୀପେନ୍ ଭାବୁଥିଲେ ତାଙ୍କ ଦିଦିକୁ ଯାଇ ଚୁପ୍‌ଚାପ୍ କହିବେ ଅର୍ଚ୍ଚନାକୁ ଏବେ ନ ଛାଡ଼ିବାକୁ। କିନ୍ତୁ ଚମ୍ପାଙ୍କର ମୁହଁ ଦେଖି ସେ ବୁଝି ଯାଇଥିଲେ ଯେ କିଛି

ଘଟଣା ଅଛି ନିଶ୍ଚୟ। ନହେଲେ ପଦଟିଏ କଥା ନ କହି ସେ ରହି ପାରିଥାଆନ୍ତେ ?

ହଉ ଯାଉ। ଦୀପେନ୍ ମନକୁ ମନ କହିଲେ। ଅର୍ଚ୍ଚନାକୁ ସବୁଦିନ ପାଇଁ ପାଖରେ ରଖିବାର ବ୍ୟବସ୍ଥା ହେଉଛି ଯେତେବେଳେ, କେଇଟା ଦିନର ବିଚ୍ଛେଦ ଏମିତି ପୁଣି କ'ଣ ?

ଅମରେଶର ଛୋଟ ଛୋଟ ତିନି ବଖରା ଘର। ବାହାର ଘରେ ଦିଇଟା ପୁରୁଣା ଚୌକୀ ଆଉ ଖଟଟିଏ। କେବେ କେମିତି ଚାଲି ଆସୁଥିବା ଲୋକଙ୍କ ପାଇଁ ସେଇ ବ୍ୟବସ୍ଥା କରିଛି ଅମରେଶ। ଭିତରେ ଦିଇଟା ଶୋଇବା ଘର। ବଡ଼ ଘରଟାରେ ଅର୍ଚ୍ଚନା ରହୁଥିଲା ବାନୁ ଓ ତା' ଝିଅ ସାଙ୍ଗରେ। ଅନ୍ୟ ଛୋଟ ଘରଟା ଅମରେଶର। ଉମାକାନ୍ତ ଘୋଷାଲଙ୍କ ବିରାଟ ଖୋଲା ମେଲା ଘରେ ଏତେ ଦିନ ରହିଯିବା ପରେ ଅର୍ଚ୍ଚନାକୁ ଅନ୍ୟ ରକମ ତ ଲାଗୁଥିଲା, କିନ୍ତୁ ବିଶେଷ ଅସୁବିଧା ହେଉ ନ ଥିଲା।

କେବଳ ଗୋଟାଏ ବିଷୟକୁ ଛାଡ଼ି ଦେଲେ।

କଥାଟି ନିଜ ପାଖରେ ସ୍ୱୀକାର କରିବାକୁ ଅର୍ଚ୍ଚନାର ଲଜ୍ଜା। ମାନି ନେବାକୁ ବି ତା' ମନ ପ୍ରସ୍ତୁତ ନୁହଁ। ତଥାପି ତା' ଭିତରୁ କିଏ ଯେମିତି ଅସ୍ୱୀକାର କରି ପାରୁନି ଘଟଣାର ସତ୍ୟତା ବିଷୟରେ।

ଅର୍ଚ୍ଚନା ଯେ ତା' ଛୋଟ ଦା' ଓ ପରଭେଜ୍ ଦା'ର ସ୍ତ୍ରୀ ବାନୁ ଭିତରେ କୌଣସି ଏକ ନିଷିଦ୍ଧ ସମ୍ପର୍କର ସୁରାକ ପାଇଛି !

ଦୁଇ ଜଣଙ୍କ ମଧ୍ୟରୁ କେହି ଅବଶ୍ୟ ଏଭଳି କିଛି କରି ନାହାନ୍ତି, ଯାହା କି ଅନ୍ୟଜଣଙ୍କର ଦୃଷ୍ଟିକଟୁ ହେବ। ତଥାପି ଘରର ବାତାବରଣରେ, ଅକୁହା କଥାରେ ବହୁତ କିଛି ଜଣା ପଡ଼ି ଯାଉଥିଲା ଏବଂ ଅର୍ଚ୍ଚନାର ଶ୍ୱାସରୁଦ୍ଧ ହୋଇ ଯାଉଥିଲା।

ସେଦିନ ରାତିରେ ଶୋଇବା ବେଳେ ବେଶ୍ ଡେରି ହୋଇ ଯାଇଥିଲା। ଏମିତିରେ ସବୁଦିନ ଶୋଉ ଶୋଉ ସେମାନଙ୍କର ଡେରି ହିଁ ହୁଏ। କାରଣ

ଅମରେଶ ହୋଟେଲରୁ ଘରକୁ ଫେରୁ ଫେରୁ ରାତି ସାଢ଼େ ନଅ, ଦଶ ବାଜିଯାଏ। ବାନୁ କେତେ ଥର କହିଛି, "ତୁମେ ଖାଇ ନେଇ ଶୋଇ ପଡ଼, ଅର୍ଚ୍ଚନା। ତୁମ ଦାଦା ଆସିଲେ ମୁଁ ତାଙ୍କୁ ଖାଇବାକୁ ଦେଇ ଦେବି।"

ଅର୍ଚ୍ଚନା ରାଜି ହୋଇ ପାରିନି। ସକାଳ ଦଶଟା ବେଳେ ସ୍କୁଲ୍ ଗଲାବେଳେ ଅମରେଶ ନିଦରୁ ଉଠି ନ ଥାଏ। ତା'ପରେ ସେ ସ୍କୁଲରୁ ଫେରିବା ବେଳକୁ ଘରେ ନ ଥାଏ ଅମରେଶ। ତେଣୁ ଛୋଟ ଦା' ସାଙ୍ଗରେ ଦି'ଟା କଥା ଗପିବାକୁ ଏଇ ରାତିଟା ହିଁ ଏକମାତ୍ର ସମୟ। ଆଗତୁରା ଖାଇ ଦେଇ କେମିତି ଶୋଇ ପଡ଼ିବ ?

ସେଦିନ କିନ୍ତୁ ଅନ୍ୟ ଦିନ ଅପେକ୍ଷା ଅଧିକା ଡେରି ହୋଇ ଯାଇଥିଲା। କାରଣ ଅମରେଶ ଫେରିଥିଲା ଗୁଡ଼ାଏ ଖୁସୀ ହେଇ ଏବଂ ହାତରେ ଗଦାଏ ଜଳଖିଆ ମିଠା ନେଇ।

"ଆସ ଆସ। ଖାଅ ଆଗ ଏସବୁ।" ଘରେ ପହଞ୍ଚୁ ପହଞ୍ଚୁ ଖୁସୀ ହୋଇ ପାଟି କରି ଉଠିଥିଲା ସେ।

"ଏ କ'ଣ ଛୋଟ ଦା'? ଏବେ ଏସବୁ ଖାଇଲେ ଭାତ ଖିଆ ହେବ କେତେବେଳେ ?"

"ତୁ ଭାତ ଖାଇବା କଥା ଛାଡ଼ ତ। ଆଁ କର। ମସ୍ତବଡ଼ ଆଁ।" ହାତରେ ବିରାଟ ରସଗୋଲାଟିଏ ଉଠେଇ ନେଇ ଅମରେଶ କହିଲା।

"ଏ ମା', ଏତେ ବଡ଼ ରସଗୋଲା ! ପାଟିରେ ଜାଗା ହେବନି ରେ ଛୋଟ ଦା'... ଓହୋ, ଜବରଦସ୍ତି କରୁଛୁ କାହିଁକି ! ହଉ ହେଲା ବାବା, ଖାଉଛି। ହେଲେ ସିରାଟା ଅନ୍ତତଃ ବାହାର କରି ଦେ। କେମିତି ପାଟି ଭିତରେ..." ଅର୍ଚ୍ଚନାର ପ୍ରତିବାଦ ଅଧା ହୋଇ ରହିଗଲା। ଅମରେଶ ଜବରଦସ୍ତି ମିଠାଟା ପୂରେଇ ଦେଲା ସାନ ଭଉଣୀ ପାଟିରେ।

"ବାନୁ, ତୁମେ ଆଁ କର।" ହାତରେ ଆଉ ଗୋଟାଏ ବଡ଼ ରସଗୋଲା ଧରି ଅମରେଶ ଆଗଭଳି ଉଚ୍ଛ୍ୱସିତ ଭାବରେ କହି ପକେଇଲା।

ବାନୁ ଚମକି ଯାଇ ଆଖିରେ ଆଖିରେ ତାକୁ କ'ଣ ଯେମିତି କହିବାକୁ ଚେଷ୍ଟା କଲା, କିନ୍ତୁ ଅମରେଶ କିଛି ଦେଖି ପାରିଲା ନାହିଁ। କିଛି ବୁଝି ପାରିଲା ନାହିଁ। ହାତରେ ରସଗୋଲାଟି ଧରି ସେ ବାନୁ ଆଡ଼କୁ ଆଗେଇ ଗଲା।

ତା' ମନ ଯେ ଫୁରୁ ଫୁରୁ ଉଡୁଛି ଆକାଶରେ। ପୃଥିବୀର ଦୃଶ୍ୟ ସେ ଦେଖିବ କେମିତି ? ଆଉ କାହାର ଅକୁହା କଥା ସେ ପଢ଼ିବ କେମିତି ?

ହେଲେ ବାନ୍ଟୁ ଆଖିର ଭାଷା ଠିକ୍ ପଢ଼ି ପାରିଥିଲା ଅର୍ଚ୍ଚନା ଏବଂ ତଣ୍ଟି ଭିତରେ ପବନ ଅଟକିଗଲା ଯେମିତି ତା'ର। ପାଟି ଉପରେ ଦୁଇ ହାତ ମାଡ଼ି ଦେଇ ସେ ଜୋରରେ କାଶି ଉଠିଲା।

''ଆରେ, ଆରେ... ରସଗୋଲା ତଣ୍ଟିରେ ଲାଗିଗଲା ନା କ'ଣ।'' ବୁଲି ପଡ଼ି ସାନ ଭଉଣୀର ତାଳୁରେ ବାଁ ହାତ ଥାପୁଡୁ ଥାପୁଡୁ ଅମରେଶ ତରବର ହୋଇ କହିପକେଇଲା, ''ବାନ୍ଟୁ, ଶୀଘ୍ର ପାଣି ଟିକିଏ ଆଣିଦିଅ ଅର୍ଚ୍ଚନା ପାଇଁ।''

ବାନ୍ଟୁ ଯେମିତି ରକ୍ଷା ପାଇଗଲା। ଅମରେଶର ରସଗୋଲା ସମେତ ଲମ୍ବି ଆସୁଥିବା ହାତ ସାମ୍ନାରୁ ବୁଲି ପଡ଼ି ସେ ଧାଇଁଗଲା ଭିତରକୁ। ରୋଷେଇ ଘରୁ ପାଣି ଗ୍ଲାସେ ନେଇ ଆସି ଅର୍ଚ୍ଚନା ଓଠରେ ଛୁଆଁଇ ଦେଲା ସେ। ଧୀରେ ଧୀରେ ଅର୍ଚ୍ଚନାର କାଶ କମିଲା।

ସମସ୍ତ ଘଟଣା ଘଟିଗଲା ମାତ୍ର କେଇ ମିନିଟ୍ ଭିତରେ। ହେଲେ ତା'ରି ଭିତରେ ଅମରେଶ ବୋଧହୁଏ ସେ କରିବାକୁ ଯାଉଥିବା କାର୍ଯ୍ୟଟିର ଅଶାଳୀନତାକୁ ବୁଝି ପାରିଥିଲା। ରସଗୋଲାଟିକୁ ହାଣ୍ଡି ଭିତରେ ରଖି ଦେଇ ସେ ଅନ୍ୟ ଆଡ଼େ ମୁହଁ ଘୂରାଇ ନେଇ ଉତ୍ତେଜନାବିହୀନ ସ୍ୱରରେ କହିଲା, ''ବାନ୍ଟୁ, ନିଅ। ତୁମେ ରସଗୋଲା ଖାଅ।''

''ଖାଉଛି।'' ପାଣି ଗ୍ଲାସ୍‌ଟିକୁ ତଳେ କଡ଼େଇ ରଖି ଦେଇ ହାଣ୍ଡିରୁ ରସଗୋଲାଟିଏ ବାନ୍ଟୁ ଉଠେଇ ନେଲା।

ଆଉ ଅର୍ଚ୍ଚନା ?

ଅର୍ଚ୍ଚନା ଭିତରେ ସବୁ ଯେମିତି ଗୋଳମାଳ ହୋଇ ଯାଉଥିଲା। ନିଜ ଆଖିକୁ, ନିଜ ଷଷ୍ଠ ଇନ୍ଦ୍ରିୟର ସନ୍ଦେହକୁ ବିଶ୍ୱାସ କରିବ କି ନାହିଁ, ତା' ସେ ଠିକ୍ ବୁଝି ପାରୁ ନ ଥିଲା। ଛୋଟ ଦା' ଏଭଳି ଅନ୍ତରଙ୍ଗତା ନେଇ କାହିଁକି ବାନ୍ଟୁ ବୌଦିକୁ ମିଠା ଖୁଆଇ ଦେବାକୁ ବସିଥିଲା ? କାହିଁକି ? ବିଧବା ବନ୍ଧୁପତ୍ନୀକୁ ତ ଏମିତି ନିଜର ଭାବ କେହି ଦେଖାଏ ନାହିଁ।

ତଳେଇ କରି ଭାବିଲେ, ଅର୍ଚ୍ଚନାର ମନେ ହେଉଛି ଯେ ଭାବନାର ଏଇ ସାମାନ୍ୟ ତରଙ୍ଗ ତଳେ ପୃଥିବୀ ସମୁଦ୍ର ଏକ କରି ଦେବା ଭଳି ଜୁଆର

ଉଠି ସାରିଛି। ହେଲେ ପୁଣି ପର ମୁହୂର୍ତ୍ତରେ ତାକୁ ଲାଗୁଛି ଯେ ଏସବୁ ତା' ମନର ଭ୍ରମ। ଛୋଟ ଦା'ର କ୍ଷଣିକ ଉତ୍ତେଜନାର ଏଇଟା ହୁଏତ ଏକରକମ ପରିପ୍ରକାଶ।

ଅର୍ଚ୍ଚନା ଦ୍ୱିତୀୟ କାରଣଟିକୁ ମାନି ନେବା ପାଇଁ ସ୍ଥିର କରି ନେଲା। ପରିବେଶକୁ ସହଜ କରି ଦେବା ପାଇଁ ଶାଢ଼ି କାନିରେ ଓଦା ଓଠଟା ପୋଛି ନେଇ ସେ ଗଡ଼ ଗଡ଼ ହୋଇ କହି ପକାଇଲା, ''ତୁ କି ବଢ଼ିଆ ରସଗୋଲା ଆଣିଛୁ ରେ ଛୋଟ ଦା'। ଆଁ କର। ମୁଁ ତତେ ଖୁଆଇ ଦିଏ। ବାନୁ ବୌଦି, ନିଅ ଆଉ ଗୋଟାଏ ଖାଅ।''

''ନାଇଁ ଅର୍ଚ୍ଚନା, ଆଉ ଖାଇ ପାରିବିନି।''

''ଆରେ ନିଅନା। ...ତୁମେ ଯଦି ନିଅ, ତାହେଲେ ମୁଁ ଆଉ ଗୋଟାଏ ନେବି।'' ବାଧ୍ୟ କଲା ଅର୍ଚ୍ଚନା।

ହସ ହସ ମୁହଁରେ ବାନୁ ହାତ ବଢ଼େଇ ଆଉ ଗୋଟାଏ ରସଗୋଲା ହାଣ୍ଡିରୁ ନେଲା। ସେଥିରେ ଛୋଟ କାମୁଡ଼ଟିଏ ଦେଉ ଦେଉ କହିଲା, ''ଆଉ ଆଜି ଭାତ ଖାଇ ପାରିବିନି ରାତିରେ।''

''ଯା ପରେ ଆଉ କିଏ ଭାତ ଖାଇବ ମ, ବାନୁ ବୌଦି? ତୁ ଖାଇବୁ, ଛୋଟ ଦା'?''

''ପାଗଳ! ଏତକ ଚପ୍, କଟ୍‌ଲେଟ୍ ଯେ ପେଟ ଭିତରେ ପୂରାଇବାକୁ ହେବ। ... ତା'ପରେ ପୁଣି ଭାତ! ଅସମ୍ଭବ!''

''ତା'ହେଲେ ମୁଁ ଯାଏ। ତରକାରୀପତ୍ର ରଖା ଥୁଆ କରି ଦିଏ। ଆଜି ବେଶ୍ ଥଣ୍ଡା ପଡ଼ିଛି। କାଲି ପର୍ଯ୍ୟନ୍ତ ରହିଯିବ। ଖରାପ ହେବନି।'' ବାନୁ ରୋଷେଇ ଘରକୁ ଚାଲିଗଲା।

ମାଛର ଚପ୍‌ଟିଏ ଠୋଲାରୁ ଉଠେଇ ନେଉ ନେଉ ଅର୍ଚ୍ଚନା ପଚାରିଲା, ''ଆଜି ହଠାତ୍ ଏମିତି ମିଠା, ଜଳଖିଆ ମହୋତ୍ସବ କାହିଁକି, ଛୋଟ ଦା'? ତତେ ଅମୂଲ୍ୟ ଧନ ମିଳି ଯାଇଛି କି?''

ମୁରୁକି ମୁରୁକି ହସିଲା ଅମରେଶ। କହିଲା, ''ତା'ଠୁଁ ମହାର୍ଘ ଯଦି କିଛି ଥାଏ, ତା' ଆଜି ମୋ ହାତ ପାଆନ୍ତାକୁ ଆସି ଯାଇଛି। ...ଆଜି ମୋ ପାଇଁ ଗୋଟାଏ ବିରାଟ ଦିନ, ଅର୍ଚ୍ଚନା।''

"କ'ଣ ହୋଇଛି, ଛୋଟ ଦା' ?"

ଅମରେଶର ପ୍ରତି ଲୋମ କଣାରୁ ଆନନ୍ଦର ଫୁଆରା ପୁଣି ଥରେ ଝରି ଆସିଲା। ଆଗ ଭଳି ଖୁସି ଖୁସି ଭାବରେ ସେ କହି ପକେଇଲା, "ଆଜି ମୋ ହୋଟେଲ୍‌ର ସବୁ ଦେଣା ଶୋଧ ହୋଇଗଲା।"

ଅର୍ଚ୍ଚନା ଅବାକ୍। "ସବୁ ଦେଣା !! ଏତେ ଶୀଘ୍ର! ଏଇ ସେଦିନ ପରା ହୋଟେଲ ଆରମ୍ଭ କଲୁ! କହିଲୁ ଯେ ବହୁତ ଧାର ଦେଣା ହୋଇ ଯାଇଛି। ଅଥଚ ଯାରି ଭିତରେ... ଛୋଟ ଦା', ତୁ ଯାଦୁ କରିଲୁ ନା କ'ଣ ?"

"ଯାଦୁ ମୁଁ କରିନି। ବାନୁ କରିଛନ୍ତି।"

"ବାନୁ ବୌଦି !!"

"ହଁ। ... ମୋ ପଛରେ ଲାଗି ଲାଗି ପରଭେଜ୍‌ର ଦୋକାନଟା ବିକ୍ରି କରେଇ ଦେଲେ। ଦୋକାନ କିଣିବା ପାଇଁ ଦୁଇ ପାଖର ଦୁଇ ବ୍ୟବସାୟୀ ତ ଲାଳ ଗଡ଼େଇ ଗଡ଼େଇ ବସି ରହିଥିଲେ। ଦୁଇ ଜଣଙ୍କର ବାଦାବାଦିରେ ଲାଭ ହେଲା ବାନୁଙ୍କର। ବେଶ୍ ଭଲ ଦାମ୍‌ରେ ବିକ୍ରି ହୋଇଗଲା ଦୋକାନଟା। ତା'ପରେ ବାନୁଙ୍କର ଏକା ଜିଦି। ସେଇ ଟଙ୍କା ଦେଇ ହୋଟେଲ୍ ଦେଣା ସୁଝାଯିବ।"

ଅର୍ଚ୍ଚନା ଆଗ ଭଳି ଅବାକ୍ ହୋଇ ଚାହିଁ ରହିଥିଲା। ଏତେ ସବୁ ଘଟଣା ଏଇ ଘର ଭିତରେ ହୋଇଗଲା, ଅଥଚ ସେ କିଛି ବି ଜାଣି ପାରିଲା ନାହିଁ? ଖୁବ୍ ସାବଧାନତାର ସ୍ୱରରେ ସେ କହିଲା, "ବାନୁ ବୌଦି କହିଲେ ବୋଲି ତୁ ମାନି ନେଲୁ! ଭାବି ଦେଖ୍, ସେତିକ ଟଙ୍କା ଛାଡ଼ି ଦେଲେ ତାଙ୍କର ଆଉ କୌଣସି ଭରସା ନାହିଁ। ଆଉ କିଛି ବି ନାହିଁ। ହେଲେ ସେତକ ନେଇ ତୁ ତୋ ହୋଟେଲ୍ ଧାର ସୁଝି ଦେଲୁ!"

ଅମରେଶ କିଛି କହିବା ଆଗରୁ ରୋଷେଇ ଘରୁ ଚାଲି ଆସିଲା ବାନୁ। ମୁହଁରେ ସ୍ମିତ ହସ ଖେଳାଇ କହିଲା, "ସେଥିରେ କ'ଣ ଅଛି, ଅର୍ଚ୍ଚନା ? ଟଙ୍କାଟା ଏମିତି ପଡ଼ି ରହିବା ଅପେକ୍ଷା ହୋଟେଲ୍‌ରେ ଖଟେଇ ଦେବା ଭଲ। ...ତା'ଛଡ଼ା ଏବେ ଭାବି ନିଅ ଯେ ମୁଁ ତୁମ ଦାଦାଙ୍କ ହୋଟେଲ୍‌ର ଜଣେ ଅଂଶୀଦାର।"

ଅମରେଶ ବିହ୍ୱଳ ଭାବରେ ବାନୁକୁ ଦେଖୁଥିଲା। ସେ ଚୁମ୍ବକୀୟ ଦୃଷ୍ଟିର

ଆକର୍ଷଣରେ ବାନୁ ବି ଯେମିତି ପାରିପାର୍ଶ୍ୱିକ ଜଗତକୁ ଭୁଲି ଯାଇଥିଲା ।

ଆଉ ସେଠି ବସି ପାରିଲା ନାହିଁ ଅର୍ଚ୍ଚନା । ସେ ଦୁଇଜଣଙ୍କ ଭିତରେ ସୃଷ୍ଟି ହୋଇ ଯାଇଥିବା ବିଶେଷ ବଳୟ ଭିତରେ ତା' ନିଜକୁ କେମିତି ଏକ ବାହାରର ମଣିଷଟିଏ ଭଳି ମନେ ହେଲା । ତଳୁ ଉଠି ଯାଇ ମୁହଁ ବୁଲେଇ ନେଇ ଶୋଇବା ଘରକୁ ଚାଲି ଯାଉ ଯାଉ ସେ ମନକୁ ମନ କହିବା ଭଳି କହି ପକେଇଲା, "ମୁଁ ଶୋଇବାକୁ ଯାଉଛି ।"

ତା' କଥାରେ କେହି ଉତ୍ତର ଦେଲେ ନାହିଁ ।

ବାନୁ ଝିଅ ପରଭିନ୍ ପାଖରେ ଜାଗା ଟିକିଏ କରି ନେଇ ଅର୍ଚ୍ଚନା ଗଡ଼ି ପଡ଼ିଲା । ଆଖି ବନ୍ଦ କରି କେତେ ସମୟ ସେ ପଡ଼ି ରହିଲା କେଜାଣି, କିନ୍ତୁ ଜମା ନିଦ ଆସୁ ନ ଥିଲା ଆଖିକୁ । ଶୋଇ ଶୋଇ କେବଳ ଛାତର କଡ଼ି କାଠ ଗଣୁଥିଲା ସେ ।

ସେ ଭୋରରୁ ଉଠିଛି । ସାରାଟା ଦିନ ସ୍କୁଲ୍‌ରେ ଖଟିଛି । ସ୍କୁଲ୍‌ରୁ ଫେରି ବାନୁକୁ ରୋଷେଇରେ ସାହାଯ୍ୟ କରିଛି । ପରଭିନ୍ ସାଙ୍ଗରେ ଖେଳିଛି । ଖୁବ୍ ମନଯୋଗ ଦେଇ ଗୁଡ଼ାଏ ପରୀକ୍ଷା ଖାତା ବି ଦେଖିଛି । ଏତେ ସବୁ ପରେ ବିଛଣା ଛୁଉଁ ଛୁଉଁ ତାକୁ ନିଦ ହୋଇ ଯିବା କଥା । ଅଥଚ କିଏ ଯେମିତି ସବୁତକ ନିଦ ତା' ଆଖିରୁ ପୋଛି ନେଇଛି ।

ଅର୍ଚ୍ଚନା ଆଖି ବନ୍ଦ କଲା । ନିସ୍ତେଜ ଭାବରେ ଖଟରେ ପଡ଼ି ରହି ଭିତରେ ଭିତରେ ସେ କେବଳ ଛଟପଟ ହେବାକୁ ଲାଗିଲା । କିଛି ସମୟ ପରେ ସେ ଜାଣି ପାରିଲା ଯେ ପରଭିନ୍‌ର ଅନ୍ୟ ପାଖରେ ଶୋଇବାର ଉପକ୍ରମ କରୁଛି ବାନୁ । ଅଥଚ ସେ ସେଇମିତି ନିଶ୍ଚଳ ହୋଇ ପଡ଼ି ରହିଲା । ଅନ୍ୟ ଦିନ ରାତିରେ ଅର୍ଚ୍ଚନା ଶୋଇବା ଆଗରୁ ବାନୁ ସାଙ୍ଗରେ ଗୋଟାଏ ଦିଇଟା ଅବାନ୍ତର କଥା କହେ । କୋଉ ପୁରୁଣା ଘଟଣା ବର୍ଣ୍ଣନା କରୁ କରୁ ସେ ହସି ପକାଏ ବା ଆଖି ଛଳଛଳ କରେ ।

କିନ୍ତୁ ସେଦିନ ଅର୍ଚ୍ଚନା କିଛି କହିଲା ନାହିଁ । ଶୋଇ ପଡ଼ିବାର ଅଭିନୟ କରି ବିଛଣାରେ ପଡ଼ି ରହିଲା କେବଳ । ଅଭିନୟ କରୁ କରୁ କେତେବେଳେ ଯେ ତାକୁ ସତରେ ନିଦ ହେଇଗଲା, ତା' ସେ ବୁଝି ପାରିଲା ନାହିଁ ।

ହଠାତ୍ କିନ୍ତୁ ନିଦ ଭାଙ୍ଗିଗଲା ତା'ର । ରାତି କେତେ ହେବ କେଜାଣି ।

ରାସ୍ତା ଘାଟ ଭୀଷଣ ନିସ୍ତବ୍ଧ। ଝିଙ୍କାରୀମାନଙ୍କର ଏକଟାଣା ଝିଁ ଝିଁ ସଙ୍ଗୀତ ଭାସି ଆସୁଛି କେବଳ। ମଝିରେ ମଝିରେ ବିକଟ ଚିତ୍କାର କରି ଭୁକି ଉଠୁଥିଲା କୋଉ ଦେଶୀ କୁକୁର। କେତେବେଳେ ପୁଣି କାହା ପାଚିରୀ ଉପରେ ବସି ଭୁଆଁଟାଏ 'ମ୍ୟାଉଁ ମ୍ୟାଉଁ' କରି ଉଠୁଥିଲା ଭୟ ଆତଙ୍କରେ।

ଏସବୁ ଅର୍ଚ୍ଚନାର ଚିହ୍ନା ସ୍ୱର। ଏଥିରେ ତ ନିଦ ଭାଙ୍ଗିଯିବା କଥା ନୁହଁ। ବୋଧହୁଏ ମନ ଭିତରର ଦୁର୍ଭାବନା ତାକୁ ଉଠେଇ ଦେଲା। ନିଜକୁ ନିଜେ ସେ କହିଲା ଏବଂ ବିଛଣାରେ ଉଠି ବସିଲା। ଦୁଇ ହାତ ମୁଣ୍ଡ ପଛପଟକୁ ନେଇ ହୁଗୁଳା ହୋଇ ଯାଇଥିବା ବେଣୀକୁ ଗୁଡ଼େଇ ଢିଲା ଖୋସାଟାଏ ସେ କରି ନେଲା। କୋଠରୀର ଛାପିଛାପିକିଆ ଅନ୍ଧାର ଭିତରେ ଆଖି ଦିଓଟି ତା'ର କ୍ରମଶଃ ଅଭ୍ୟସ୍ତ ହୋଇ ଯାଉଛି।

ହଠାତ୍ ଅବାକ୍ ହୋଇ ପାଖ ବିଛଣାକୁ ଚାହିଁଲା ଅର୍ଚ୍ଚନା। ତକିଆରେ ମୁହଁ ଗୁଞ୍ଜି ନିଘୋଡ଼ ନିଦରେ ଶୋଇଛି ପରଭିନ୍। କିନ୍ତୁ ବାନୁ କାହିଁ?

ଆଉଜା କବାଟ ତଳ ଦେଇ ସେପାଖ ଘରୁ କ୍ଷୀଣ ଲଣ୍ଠନ ଆଲୁଅ ଦେଖା ଯାଉଥିଲା। ଅର୍ଚ୍ଚନା ଆଶ୍ଚର୍ଯ୍ୟ ହେଲା। ଏତେ ରାତି ଯାଏଁ ବସି ସିଲେଇ କରୁଛନ୍ତି ବାନୁ ବୌଦି? ତା' ବି ଲଣ୍ଠନ ଆଲୁଅରେ? ସେ ପରା ଆସି ଶୋଇ ରହିଥିଲେ ପାଖ ବିଛଣାରେ। ପୁଣି ଉଠିଗଲେ କାହିଁକି ଯେ?

ନା, ଏଇଟା ଜମା ଠିକ୍ ହେଉନି। ସିଲେଇ କରିବେ ବୋଲି କ'ଣ ଆଖି ଦିଇଟାକୁ ନଷ୍ଟ କରି ଦେବେ ନା କ'ଣ? ଏମିତି ଲଣ୍ଠନ ଆଲୁଅରେ ସିଲେଇ କରିବା ଜମା ଠିକ୍ ହେଉନି। ବାନୁକୁ ସଚେତନ କରାଇ ଦେବା ପାଇଁ ଆଉଜା କବାଟରେ ହାତ ରଖିଲା ଅର୍ଚ୍ଚନା ଏବଂ ପର ମୁହୂର୍ତ୍ତରେ ହିଁ ଦେହ ହାତ ତା'ର ପଥର ହୋଇଗଲା।

ଏ କ'ଣ ଦେଖୁଛି ସେ!

ଲଣ୍ଠନର ସରୁ ଆଲୁଅରେ ଅର୍ଚ୍ଚନା ସବୁ କିଛି ପରିଷ୍କାର ଭାବରେ ଦେଖି ପାରୁଥିଲା। ଯେଉଁଠି ଅଳ୍ପ ସମୟ ଆଗରୁ ଆସି ମିଠା ଖିଆର ପର୍ବ ଚାଲିଥିଲା, ସେଇଠି କାନ୍ଥକୁ ଆଉଜି କରି ବସି ରହିଥିଲା ବାନୁ। କିନ୍ତୁ ଏକା ନୁହଁ। ତା' ପାଖରେ, ଅତି ପାଖରେ ବସି ରହିଥିଲା ଆଉ ଜଣେ। ସେ ଅମରେଶ। ଅର୍ଚ୍ଚନାର ଛୋଟ ଦା'।

ବାନୁର ମୁହଁ ଉପରେ ଖୁବ୍ ହାଲୁକା ଭାବରେ ଆଙ୍ଗୁଠି ଚଲାଉ ଚଲାଉ ଅମରେଶ ସମ୍ମୋହନର ଦୃଷ୍ଟିରେ ତାକୁ ଦେଖୁଥିଲା । ଆଖିର ପଲକ ନ ପକାଇ ।

ଅର୍ଚ୍ଚନା ପାଦ ତଳେ ଭୂମିକମ୍ପ । ସେ ଅନଭିଜ୍ଞ ହେଇପାରେ । କିନ୍ତୁ ପୁରୁଷର ଏ ଦୃଷ୍ଟି ସେ ଚିହ୍ନିଛି ।

ପୁରୁଷର ଏଭଳି ଦୃଷ୍ଟି କେବଳ ଆତ୍ମିକ ସ୍ନେହ ପ୍ରେମରେ ସୀମିତ ହୋଇ ରହେ ନାହିଁ, ନାରୀକୁ ସମ୍ପୂର୍ଣ୍ଣ ଭାବରେ ଚଳତ୍‌ଶକ୍ତିହୀନ କରିଦିଏ । ସମ୍ପୂର୍ଣ୍ଣ ଭାବରେ ଗ୍ରାସ କରିଦିଏ ।

ଏ କି ଚାହାଣି ଛୋଟ ଦା'ର !

ଅର୍ଚ୍ଚନା ହଲି ପାରୁ ନ ଥିଲା, ଯଦିଓ ସେ ବୁଝୁଥିଲା ଯେ ଏଇମିତି ଆଢୁଆଳରେ ଠିଆ ହୋଇ ରହିବାଟା ଅନୁଚିତ ।

ସେଇମିତି ଭାବରେ କେତେ ସମୟ କଟିଗଲା କିଏ ଜାଣେ ? ଧୀରେ ଧୀରେ ଉଠି ଠିଆ ହେଲା ଅମରେଶ । ବାନୁ ପିଠିରେ ହାତ ରଖି ତାକୁ ତଳୁ ଉଠେଇ ଦେଲା ସେ । ତା'ପରେ ନିଜ ଶରୀରରେ ବାନୁକୁ ଜଡ଼େଇ ନେଇ ଛୋଟ ଛୋଟ ପାଦରେ ସେ ଆଗେଇ ଗଲା ନିଜ କୋଠରି ଆଡ଼କୁ ।

ଦରଜାର ଅନ୍ୟ ପଟେ ଦୁଇ ଜଣ ଅଦୃଶ୍ୟ ହୋଇ ଗଲେ । ଧୀରେ କବାଟଟି ବନ୍ଦ ମଧ୍ୟ ହୋଇଗଲା । ତଥାପି ମୂର୍ତ୍ତିଟିଏ ଭଳି ଠିଆ ହୋଇ ରହିଥିଲା ଅର୍ଚ୍ଚନା ନିଜ ଘରର ଆଉଜା କବାଟର ଅନ୍ତରାଳରେ । ତା' ମୁଣ୍ଡଟା ଘୂରିଯାଉଛି । ଆଉ ଟିକକରେ ଯେମିତି ଜ୍ଞାନ ହରେଇ ସେ ତଳେ ପଡ଼ିଯିବ ।

ଅର୍ଚ୍ଚନା ଟଳି ଟଳି ଆସି ବିଛଣାରେ ବସିଲା । ଓଠ ଦିଓଟି କମ୍ପି ଉଠୁଛି ତା'ର । ସେ ମୁହଁ ଘୂରେଇ ନେଲା । ପୂର୍ବ ପଟ କାନ୍ଥରେ ଦିଇଟା ବଡ଼ ବଡ଼ ଝରକା । ତା' ବି ବନ୍ଦ । ଯୋଡ଼ା କାଠର ଫାଟ ଦେଇ ବାହାରର ଆକାଶ ଦେଖା ଯାଉଛି କିଛି କିଛି । ତାରା ନାହିଁ, ଜହ୍ନ ବି ନାହିଁ । ମେଘ ଘୋଡ଼େଇ ରହିଛି ବୋଧେ ଆକାଶରେ । ସେଇ ଆଡ଼େ ଏକା ଦୃଷ୍ଟିରେ ଚାହିଁ ରହିଥିଲା ଅର୍ଚ୍ଚନା ।

ସେ ବୁଝୁଥିଲା ଯେ ଘୋର କାଳରାତ୍ରି ଘୋଟି ଯାଇ ସାରିଛି । ଦେଶର ଆକାଶରେ ତ ନିଶ୍ଚୟ । କିନ୍ତୁ ତା'ଠାରୁ ଭୟଙ୍କର ଅର୍ଚ୍ଚନା ଆକାଶରେ ଉଙ୍କି ମାରିଥିବା କାଳରାତ୍ରିର କରାଳ ରୂପ । ଏଥିରୁ ସେ ବର୍ତ୍ତିବ କେମିତି ?

ବାରଣ୍ଡାରେ ବସିରହି ପାବ୍‌ନା ଆକାଶକୁ ଦେଖୁ ଦେଖୁ ଅର୍ଚ୍ଚନା ଭଳି ସେଇ ଏକା କଥା ଭାବି ହେଉଥିଲା ଅନିରୁଦ୍ଧ। କେମିତି ବର୍ତ୍ତିବ ସେ ଏ ଅନ୍ଧକାରର ପୃଥିବୀରୁ ?

ସମସ୍ତେ ପୂର୍ବବଙ୍ଗ ଛାଡ଼ି ଚାଲି ଯାଉଛନ୍ତି। ସମସ୍ତେ।

ଅର୍ଚ୍ଚନା ଚାଲିଯିବା ଆଗରୁ ଚିଠିରେ ପଚାରିଥିଲା ଯେ ଦାଦା କ'ଣ ଚିନ୍ତା କରୁଛି। ଅର୍ଥାତ୍, ସେ ପାବ୍‌ନା ଛାଡ଼ିବା କଥା ଭାବୁଛି କି ନାହିଁ।

ସେତେବେଳେ କିଛି ଭାବି ପାରି ନ ଥିଲା ଅନିରୁଦ୍ଧ। ହେଲେ ଏବେ ଅସ୍ୱସ୍ତି ହେଉଛି। କିଛି ଭଲ ଲାଗୁନି। ଏବେ ସେ କ'ଣ କରିବ ? କି ନିଷ୍ପତ୍ତି ନେବ ? ଗାଲରେ ହାତ ଦେଇ ସେଇମିତି ବସି ରହିଲା ସେ ବେଶ୍ କିଛି ସମୟ।

ଗୌରୀ ଦିଦିର ଶ୍ୱଶୁରଘର ଲୋକେ ଚାଲି ଯାଇଥିଲେ। ଏବେ ତା' ବାପଘରର ଲୋକମାନେ ବି ଚାଲିଗଲେ। ନାରଣ କକେଇଙ୍କର ଏତେ ଘର ଏଠି। ଅଥଚ ସବୁ ପ୍ରାୟ ପାଣି ଦରରେ ବିକ୍ରି କରି ଦେଇ ସେ ବାହାରିଲେଣି ସିଲିଗୁଡ଼ି। ତାଙ୍କର କୋଉ ଲେଖାଜୋଖାର ଭାଇ ପାଖକୁ। ନାରଣ କକେଇ ବଡ଼ ବୁଝିବା ସୁଝିବାର ଲୋକ। ସେ ଯଦି ସବୁ ବିକ୍ରିବଟା କରି ଦେଇ ପୂର୍ବ ବଙ୍ଗ ଛାଡ଼ିବାକୁ ବସିଲେଣି, ତା' ମାନେ ଅବସ୍ଥା ନିଶ୍ଚୟ ସାଙ୍ଘାତିକ।

କିନ୍ତୁ ତା'ର ଭୟ କରିବାର କ'ଣ ଅଛି ? ଅନିରୁଦ୍ଧ ନିଜକୁ ନିଜେ କହିଲା। ଯଦି ସେଭଳି ଅବସ୍ଥା ଆସି ପହଞ୍ଚେ, ଯଦି ଗୋରା ସରକାର ତାକୁ ପାବ୍‌ନା ଛାଡ଼ି ଚାଲିଯିବାକୁ କହନ୍ତି, ତେବେ ଜିନିଷପତ୍ର ଗୋଟେଇ ଚାଲିଯିବାକୁ କେତେ ଆଉ ସମୟ ଲାଗିବ ? ତାଙ୍କର ନା ଅଛି ଜମି ନା ଅଛି ଘର। ବିକ୍ରିବଟାର ଝାମେଲା ନାହିଁ। ସର୍ବମୋଟ ଗୋଟାଏ ଶଗଡ଼ ଜିନିଷ ହେବ କି ନ ହେବ। ତା'ହେଲେ ଆଉ ଏତେ ଚିନ୍ତା କାହିଁକି ? ଯାଉ କିଛି ଦିନ। ଅନିର ବାହାଘରଟା ସରିଯାଉ। ତା'ପରେ ଦେଖା ଯିବ।

ନିଜକୁ ନିଜେ ଆଶ୍ୱାସନା ଦେଲା ଅନିରୁଦ୍ଧ।

କିନ୍ତୁ ତା'ର ଏତେଟା ଆଶ୍ୱସ୍ତ ହୋଇ ଯିବାର ନ ଥିଲା। ଆହୁରି ଗୋଟାଏ ବିଶାଳ ପାରିବାରିକ ସମସ୍ୟା ଯେ ତା' ଦ୍ୱାର ମୁହଁରେ ପହଞ୍ଚି ସାରିଲାଣି, ସେ ଧାରଣା ତା'ର ନ ଥିଲା।

ଆଗରୁ କୌଣସି ଖବର ନ ଦେଇ ପରଦିନ ସନ୍ଧ୍ୟା ବେଳେ ହଠାତ୍ କରି ଆସି ସେମାନଙ୍କ ଘରେ ପହଞ୍ଚି ଗଲେ ଚକ୍ରବର୍ତ୍ତୀବାବୁ। ଅନିରୁଦ୍ଧ ଅଫିସ୍‌ର ବଡ଼ବାବୁ। ଅନୁପମାର ଭାବୀ ଶ୍ୱଶୁର।

"ଆପଣ !! ମତେ ଅଫିସ୍‌ରେ କିଛି କହିଲେ ନାହିଁ..." ଅନିରୁଦ୍ଧ ହନ୍ତସନ୍ତ ହୋଇ କହି ପକେଇଲା। ପୁଣି ସେଇଠୁ ପାଟି କରି ଉଠିଲା, "ମା' ଗୋ ମା', ବଡ଼ବାବୁ ଆସିଛନ୍ତି।"

ଶ୍ରଦ୍ଧା ଭିତରୁ ବାହାରି ଆସି ହାତ ଯୋଡ଼ିଲେ। "ଆଜି କି ସୌଭାଗ୍ୟ ଆମର। ଏତେ ଦିନ ପରେ ଆପଣଙ୍କ ପାଦ ପଡ଼ିଲା। ଦିଦିଙ୍କୁ ବି ନେଇ ଆସିଲେ ନାହିଁ କାହିଁକି ?"

"ନା, ସେ ବ୍ୟସ୍ତ ଅଛନ୍ତି।" ଆଲୋଚନା ବନ୍ଦ କରିଦେବାର ସ୍ୱରରେ ସେ କହିଲେ।

ଶ୍ରଦ୍ଧା ବୋଧହୁଏ ବୁଝି ପାରିଲେ ଯେ କୌଣସି ବିଶେଷ ଆଲୋଚନା କରିବା ପାଇଁ ଏମିତି ହଠାତ୍ କରି ତାଙ୍କ ଘରେ ପହଞ୍ଚି ଯାଇଛନ୍ତି ଚକ୍ରବର୍ତ୍ତୀବାବୁ। ତେଣୁ ସେ ଆଉ ସେଠି ଠିଆ ନ ହୋଇ ଚାହା କରିବାକୁ ଭିତରକୁ ଚାଲିଗଲେ। ଭାଗ୍ୟକୁ ଆଜି ସକାଳେ ଗୋକୁଳପିଠା କରିଥିଲେ। ଏବେ ବି ରହିଛି କେତେଟା। ନହେଲେ ଯେ ନାକ କଟି ଯାଇଥାଆନ୍ତା ଭାବୀ ସମୁଦିଙ୍କ ସାମ୍ନାରେ !

ଶ୍ରଦ୍ଧା ଚାଲିଯିବା ପରେ କାଠର ଚୌକିରେ ନିଜର ମୋଟା ଦେହଟାକୁ ବସେଇ ଦେଲେ ଭବେଶ ଚକ୍ରବର୍ତ୍ତୀ। ପଞ୍ଜାବୀ ପକେଟରୁ ନାସଦାନୀଟା କାଢ଼ି ଟିପରେ ନାସ ଟିକିଏ ନେଇ ନାକରେ ଟାଣିଲେ ସେ। ଆଃ, କି ଆରାମ ! ମନ ମିଜାଜ ଖୁସୀ ହୋଇଗଲା ତାଙ୍କର।

ଅନିରୁଦ୍ଧ କ୍ରମଶଃ ଅଧୈର୍ଯ୍ୟ ହୋଇ ପଡୁଥିଲା। ବିନା କାରଣରେ ନିଶ୍ଚୟ ଭବେଶ ଚକ୍ରବର୍ତ୍ତୀ ତାଙ୍କ ଘରକୁ ଆସି ନାହାନ୍ତି। ହେଲେ ସେ କାରଣଟା କ'ଣ ?

ଏତେବେଳକେ ଆଖି ଟେକି ଅନିରୁଦ୍ଧକୁ ଦେଖିଲେ ସେ। ମୁରୁକି ହସି

କହିଲେ, ''କ'ଣ ଅନିରୁଦ୍ଧ, ବାହାଘରର ଆୟୋଜନ ଆରମ୍ଭ ହୋଇ ଗଲାଣି ?''

ଅନିରୁଦ୍ଧ ସାମାନ୍ୟ ଆଶ୍ୱସ୍ତ ହେଲା। ଏମିତି ଖୁସି ଗପ କରିବାକୁ ଆସିଛନ୍ତି ତା'ହେଲେ ସେ? ରକ୍ଷା ହୋଇଛି। ସେ ବିନୀତ ସ୍ୱରରେ ଉତ୍ତର ଦେଲା, ''ସେଇମିତି ଆଜ୍ଞା। ଟିକିଏ ଟିକିଏ କରି ଆଗେଇ ନେଉଛି।''

''ଭଲ। ଭଲ। ସମୟ ଥାଉ ଥାଉ ସବୁ ବ୍ୟବସ୍ଥା କରି ନେଲେ ପରେ ଆଉ ଧାଁ ଧଉଡ଼ କରିବାକୁ ହେବନି।'' ଉପଦେଶ ଦେବା ସ୍ୱରରେ ସେ କହିଲେ।

''ଆଜ୍ଞା।''

''ଓ ହଁ,'' ହଠାତ୍ ଯେମିତି ମନେ ପଡ଼ିଗଲା, ସେଇଭଳି ସ୍ୱରରେ ଚକ୍ରବର୍ତ୍ତୀ ବାବୁ କହି ଉଠିଲେ, ''ବାହାଘର ବେଳେ ଜ୍ୱାଇଁକୁ ଆଉ ସୁନା ବୋତାମ ଦିଆଦିଇ କରିବନି। ଦି' ଯୋଡ଼ା ସୁନା ବୋତାମ ରହିଛି ତା'ର। ବରଂ ତା'କୁ ଯେଉଁ ଘଡ଼ି ଦେବ, ତା'ର ଚେନ୍‌ଟା ସୁନାରେ କରି ଦେବ।''

''ଚେନ୍ !!'' ଅନିରୁଦ୍ଧ ଢୋକ ଗିଳିଲା। ସେ ଭାବି ଥିଲା ଯେ ବାପାଙ୍କର ଯେଉଁ ପୁରୁଣା ସୁନା ବୋତାମ ଅଛି, ତାକୁଇ ବଣିଆ ପାଖରେ ମଜାମଜି କରି ଅନି ଜ୍ୱାଇଁକୁ ଦେଇ ଦେବ। ହେଲେ ଏବେ ଯେ ଚେନ୍ ଦେବା କଥା ଉଠେଇଲେଣି ବଡ଼ ବାବୁ! ଉଃ, କ'ଣ କରିବ ସେ? ଘଡ଼ିର ଚେନ୍ ମାନେ ତ ବେଶ୍ ମୋଟା। ଗୁଡ଼ାଏ ସୁନା ଲାଗିବ ସେଥିରେ। କେଉଁଠୁ ଆସିବ? ନା, ମା'ଙ୍କ ସାଙ୍ଗରେ ଏ ବିଷୟରେ କଥାବାର୍ତ୍ତା କରିବାକୁ ହେବ। କିଛି ପୁରୁଣା ଗହଣା ଭାଙ୍ଗି ସେଥିରେ ସୁନା ଚେନ୍‌ଟିଏ ତିଆରି କରେଇ ପୁଲକକୁ ଦେବାକୁ ହେବ।

''ସେୟା କରିବି ମୁଁ। ଘଡ଼ିର ଚେନ୍ ବରାଦ କରି ଦେବି ବଣିଆ ପାଖରେ।''

''ବାଃ ବେଶ୍। ଆଉ ଏ ତାଲିକାଟା ରଖ, ଅନିରୁଦ୍ଧ।'' ଦେହକୁ ଅଣେଇ ନେଇ ପଞ୍ଜାବୀ ପକେଟରୁ ମୋଡ଼ାମୋଡ଼ି ହୋଇଥିବା କାଗଜଟିଏ ବାହାର କରିଲେ ଭବେଶ ଚକ୍ରବର୍ତ୍ତୀ।

''କି ତାଲିକା ଆଜ୍ଞା ?''

''ଆହେ ସେ ପ୍ରଣାମୀ ପ୍ରଣାମୀ ଦିଆଯିବ ନାହିଁ ବାହାଘର ବେଳେ? ଆଜି ମୁଁ ଏଠିକି ଆସିବା ବେଳେ ମୋ ସ୍ତ୍ରୀ ଧରେଇ ଦେଲେ ଏଇଟା। କହିଲେ, ଆଗରୁ ତୁମକୁ ଦେଇ ଦେଲେ ତୁମେ ସୁବିଧାରେ କିଣାକିଣି କରି

ନେବ।''

''ଆଜ୍ଞା।'' ଅନିରୁଦ୍ଧ ଆଉ ତାଲିକାଟି ଖୋଲି ଦେଖିଲା ନାହିଁ।

''ଲୁଗାପଟା ଯେମିତି ଭଲ ହୁଏ ସେଇଟା ଟିକିଏ ଦେଖିବ, ଅନିରୁଦ୍ଧ। ଗୋଟିଏ ବୋଲି ପୁଅ ଆମର। ତା' ବାହାଘରେ ପ୍ରଣାମୀ ଭଲ ନ ହେଲେ ଆତ୍ମୀୟମାନେ ବଡ଼ ଛି ଛାକର କରିବେ।''

''ସେ ବିଷୟରେ ନିଶ୍ଚିନ୍ତ ରୁହନ୍ତୁ ଆପଣ।'' ଅନିରୁଦ୍ଧ ହସ ଖେଳାଇ କହିଲା, ''ଏ ବିଷୟରେ ମା'ଙ୍କର ଭୀଷଣ ତୀକ୍ଷ୍ଣ ନଜର। ସେ ମତେ କହି ସାରିଛନ୍ତି ଯେ ଆଉ ଯେଉଁଥିରେ ଯାହା ଯେମିତି ହେଉ, ଲୁଗା ପଟାରେ ଯେମିତି କାହାର ମନ ଊଣା ନ ରହେ। ଯେତେ ଯାହା ହେଲେ ଏଇଟା ଆମ ଅନିର ସମ୍ମାନର କଥା।''

''ବାଃ ବାଃ! ତୁମ ମା' ସତରେ ବଡ଼ ବୁଦ୍ଧିମତୀ! ବଡ଼ ଉଚ୍ଚ ମନ ତାଙ୍କର।'' ମିଛ ପ୍ରଶଂସା କରି କହି ଉଠିଲେ ଭବେଶ ଚକ୍ରବର୍ତ୍ତୀ। ମିଛ ପ୍ରଶଂସା ତ କରିବାକୁ ହେବ। ଯେଉଁ ବିଷୟଟି କହିବାକୁ ସେ ଆଜି ଆସିଛନ୍ତି, ସେଇଟିର ଅବତାରଣା କରିବା ଆଗରୁ ତାଙ୍କୁ ଯେ ପରିବେଶଟିକୁ ଜମେଇ ରଖିବାକୁ ହେବ। ବିପକ୍ଷ ଦଳର ମାନସିକତାକୁ ପ୍ରସ୍ତୁତ କରି ରଖିବାକୁ ହେବ। ନହେଲେ ଯେ ତାଙ୍କର ସବୁ ଯୋଜନା ଧୂଳିସାତ୍ ହୋଇଯିବ।

''ଆରେ ହଁ, ଅନିରୁଦ୍ଧ, ଅସଲ କଥାଟି ତୁମକୁ ତ ମୁଁ ଏ ପର୍ଯ୍ୟନ୍ତ କହି ନାହିଁ।'' ଏଥର ସିଧା ହେଇ ଚୌକିରେ ବସିଲେ ଚକ୍ରବର୍ତ୍ତୀ ବାବୁ।

''ଅସଲ କଥା! କି କଥା ଆଜ୍ଞା? ଅଫିସ୍‌ରେ କହିଲେ ନାହିଁ?''

''ସବୁ କଥା କ'ଣ ଅଫିସ୍‌ରେ କହି ହୁଏ? ଚାରିଆଡ଼େ ଲୋକ ବିଜିବିଜି। ସମସ୍ତଙ୍କ କାନ ଏଣେ ସଜାଗ ହୋଇ ରହିଥିବ ଅନ୍ୟର କଥା ଶୁଣିବାକୁ। ଛ୍ୟାଦ୍-'' ମୁହଁ ବିକୃତ କଲେ ସେ।

ଅନିରୁଦ୍ଧ ଅପେକ୍ଷା କଲା ପରବର୍ତ୍ତୀ କଥା ଶୁଣିବାକୁ।

ଏଥର ନିଜର ପୃଥୁଳ ଶରୀରକୁ ଆଉ ଟିକିଏ ଫୁଲେଇ ନେଇ ଗର୍ବର ସହିତ ଚକ୍ରବର୍ତ୍ତୀ କହିଲେ, ''ପୁଲକର ଚାକିରି ହେଇଗଲା।''

''ହେଇଗଲା?? ମୁଁ ଜାଣିଥିଲି ନିଶ୍ଚୟ ହେଇଯିବ।'' ଅନିରୁଦ୍ଧ ଗଦ୍‌ଗଦ୍ ହେଇ କହି ପକେଇଲା, ''...କେଉଁଠି ଚାକିରି ହେଲା ଆଜ୍ଞା?''

ଭବେଶ ଚକ୍ରବର୍ତ୍ତୀ ଏ ପ୍ରଶ୍ନର ଉତ୍ତର ଦେବା ଆଗରୁ ଘର ଭିତରକୁ ପଶି ଆସିଲେ ଶ୍ରଦ୍ଧା। ବାଁ ହାତରେ କପେ ବାମ୍ଫ ଉଠୁଥିବା ଚାହା। ଆଉ ଡାହାଣ ହାତରେ ଚକ୍‌ଚକ୍ କରୁଥିବା କଂସା ଥାଳିଆଟିଏ। ସେଥିରେ ସଜା ହେଇ ରହିଥିଲା ଦୁଇଟା ନଡ଼ିଆ ଲଡ୍ଡୁ, ଦିଇଟା ଗୋକୁଳ ପିଠା ଆଉ କିଛି ନିମିକି।

ଶ୍ରଦ୍ଧାଙ୍କୁ ଦେଖି ବିଭୋର ଭାବରେ ଅନିରୁଦ୍ଧ ଆଉ ଥରେ କହି ପକେଇଲା, ''ଶୁଣିଲଣି ମା', ଶୁଣିଲଣି ? ଆମ ପୁଲକର ଚାକିରି ହୋଇଗଲା। ମୁଁ କହି ନ ଥିଲି।''

ଶ୍ରଦ୍ଧାଙ୍କ ଓଠରେ ହସ ଖେଳିଗଲା। ''ଏତେ ବଡ଼ ଖବର ଦେଲେ, ଏଥର ମିଠା ଟିକିଏ ମୁହଁରେ ଦିଅନ୍ତୁ।''

''ଏ..ତେ.. ?'' ଶ୍ରଦ୍ଧାଙ୍କ ହାତରୁ ଥାଳିଆଟି ନେଉ ନେଉ ଭବେଶ ଚକ୍ରବର୍ତ୍ତୀ କହିପକେଇଲେ। ଖାଦ୍ୟପ୍ରିୟ ମଣିଷଟି ବିଚରା। ସାମ୍ନାରେ ଯଦି ଲୋଭନୀୟ ଗୋକୁଳ ପିଠା କିଏ ବଢ଼େଇ ଦିଏ, କେମିତି ମନା କରିବେ ସେ ?

''ଆପଣ କରିଛନ୍ତି ପିଠା ?''

''ଛାଣି ସିରାରେ ପକେଇଛି ମୁଁ। ହେଲେ ଆଜ୍ଞା, ଆଉ କ'ଣ ସେ ନଡ଼ିଆ କୋରାକୋରି, ବାକି ସବୁ ଆୟୋଜନ କରି ହେଉଛି ? ସେସବୁ ଅନି କରିଛି।''

''ବାଃ ବାଃ ବେଶ୍।'' ଗୋକୁଳ ପିଠାରେ କାମୁଡ଼ ଦେଲେ ସେ।

ଶ୍ରଦ୍ଧା ଆଉ ସେଠି ନ ବସି ଚାଲିଗଲେ ଭିତରକୁ। ଅନିରୁଦ୍ଧକୁ ନିଶ୍ଚିନ୍ତରେ ସବୁ କଥା କହନ୍ତୁ ଚକ୍ରବର୍ତ୍ତୀ ବାବୁ। ପରେ ସେସବୁ ସେ ଜାଣି ନେବେନି କି ?

ସବୁତକ ଜଳଖିଆ ଖାଇନେଇ ହେଉଡ଼ି ମାରୁ ମାରୁ ଭବେଶ ଚକ୍ରବର୍ତ୍ତୀ କହିଲେ, ''ଯାହା କୁହ ଅନିରୁଦ୍ଧ, ତୁମ ମା'ଙ୍କର ହାତ ରନ୍ଧାର ତୁଳନା ହୁଏ ନାହିଁ। କେତେ ଯୁଗ ପରେ ଜାଣ ଏଭଳି ଗୋକୁଳ ପିଠା ଖାଇଲି। ମୋ ମା' କରୁଥିଲେ ଠିକ୍ ଏମିତି। ଆଜିକାଲି ଆଉ କେହି ଏତେ ସୁନ୍ଦର କରି ପାରନ୍ତି ନାହିଁ।''

କିଛି ନ କହି ଅନିରୁଦ୍ଧ ହସି ଦେଲା।

ସୁଡୁ ସୁଡୁ କରି ଚାହାଡକ ପିଇ ଦେଇ କପ୍‌ଟି ଚୌକି ପାଖରେ ରଖି ଦେଲେ ଭବେଶ ଚକ୍ରବର୍ତ୍ତୀ। ତା'ପରେ ସାମ୍ନାକୁ ସାମାନ୍ୟ ଝୁଙ୍କି ପଡ଼ି କୌଣସି ଏକ ଗୁରୁତର କଥା କହିବା ଭଳି ସ୍ୱରରେ ସେ କହିଲେ, ''ଆରେ ହଁ ଅନିରୁଦ୍ଧ, ଯେଉଁ ବିଷୟରେ ତୁମ ସାଙ୍ଗରେ ପରାମର୍ଶ କରିବାର ଥିଲା, ସେଇ କଥାଟି ତ ହେଲାନି ଏପର୍ଯ୍ୟନ୍ତ।''

ପୁଣି ଆଗର ଅସ୍ୱସ୍ତି ଭରିଗଲା ଅନିରୁଦ୍ଧ ଛାତି ଭିତରେ। ସେଇଟାକୁ ଚାପି ରଖି ଆଗ ଭଳି ସଂଯତ ସ୍ୱରରେ ସେ କହିଲା, ''ମୋ ସାଙ୍ଗରେ ପୁଣି କି ପରାମର୍ଶ? ଆପଣ ଆଦେଶ ଦିଅନ୍ତୁ, ଆଜ୍ଞା।''

ଭବେଶ ଚକ୍ରବର୍ତ୍ତୀ ଖୁସୀ ହେଲେ। ଝିଅ ଘର ସବୁବେଳେ ଏଇମିତି ନଇଁ, ବିନୟ ହୋଇ ରହିବା କଥା। ଯେତେ ଯାହା ହେଲେ ସେ ପୁଅର ବାପା। ତା' ପୁଣି ପୁଲକ ଭଳି ଯୋଗ୍ୟ ପୁଅର।

ମୁଣ୍ଡ ହଲେଇ ହଲେଇ ସେ କହିଲେ, ''ଆଚ୍ଛା ଅନିରୁଦ୍ଧ, ତୁମେ ତ ଥରେ ମତେ ପଚାରିଲନି ପୁଲକ କି ଚାକିରି ପାଇଲା? ତା'ର କେଉଁଠି ଚାକିରି ହେଲା?''

ଅନିରୁଦ୍ଧ ଲଜ୍ଜିତ ହୋଇ ପଡ଼ି ପଚାରିଲା, ''କେଉଁଠି ହେଲା ଆଜ୍ଞା? ଆମ ଅଫିସ୍‌ରେ?''

''ଆମରି କମ୍ପାନୀରେ। ହେଲେ ଆମ ଅଫିସ୍‌ରେ ନୁହଁ। ହେଡ୍ ଅଫିସ୍ ଲଣ୍ଡନ୍‌ରେ।''

''ଲ-ଣ୍ଡ-ନ୍!!'' ଅନିରୁଦ୍ଧର ଆଖି ପାଉ ନ ଥିଲା।

''ହଁ। ମୁଁ ଯେତେବେଳେ ମ୍ୟାନେଜର୍ ବାବୁଙ୍କୁ କହିଲି ପୁଲକ କଥା, ସେ ସେତେବେଳେ ତାକୁ ଡକେଇ ପଠେଇଲେ। ତା' ସାଙ୍ଗରେ ବସି କେତେ କ'ଣ ଆଲୋଚନା ବି କଲେ। ତା'ପରେ ମତେ କହିଲେ ଯେ ସେ ପୁଲକକୁ ଲଣ୍ଡନ ଅଫିସ୍‌କୁ ପଠେଇବାକୁ ସ୍ଥିର କରିଛନ୍ତି। ଏ ଯେ କି ଗୌରବର ବିଷୟ ଆମ ପାଇଁ।''

''ତା' ତ ନିଶ୍ଚୟ। ହେଲେ ଆଜ୍ଞା, ଏତେ କଥା ହୋଇଗଲା, ଅଫିସ୍‌ରେ କେହି କିଛି ଜାଣିଲେ ନାହିଁ କେମିତି?''

''ଆହେ, ଜାଣିବେ କେମିତି? ମ୍ୟାନେଜର୍‌ବାବୁ ପରା କହିଦେଲେ ଯେ

ଲଣ୍ଡନ୍‌ରୁ ଚିଠି ନ ଆସିବା ଯାଏ କଥାଟି ଦି'କାନରୁ ତିନି କାନ ଯେମିତି ନ ହୁଏ। ମୁଁ ଆଉ କାହାକୁ କହି ଥାଆନ୍ତି କେମିତି? ...ଲଣ୍ଡନରୁ ଆଜି ତାର ଆସିଛି। ସେଥିପାଇଁ ମୁଁ ଖବରଟା ତୁମକୁ ଦେବାକୁ ଚାଲି ଆସିଲି।''

''ଆପଣଙ୍କ ଦୟା।'' କି କଥା କହିବ ବୁଝି ନ ପାରି ଅନିରୁଦ୍ଧ ଗୁଣୁ ଗୁଣୁ ହୋଇ କହି ପକେଇଲା।

''ଏବେ ମତେ କୁହ, ଅନିରୁଦ୍ଧ। କ'ଣ କରିବା?'' ପରାମର୍ଶ ନେବା ସ୍ୱରରେ ଭବେଶ ଚକ୍ରବର୍ତ୍ତୀ ପଚାରିଲେ।

''କୋଉ ବିଷୟରେ ଆଜ୍ଞା?''

''ଏଇ ଆମ ପୁଲକ ବିଷୟରେ। ତା'ର ଏଇଠି ଚାକିରି ହୋଇଥିଲେ ମୋର ଚିନ୍ତା ନ ଥିଲା। ହେଲେ ଲଣ୍ଡନ୍ ମାନେ ତ ବିରାଟ ସମସ୍ୟା ସୃଷ୍ଟି ହୋଇଗଲା।''

''ସମସ୍ୟା? କି ସମସ୍ୟା?''

''ଲଣ୍ଡନ୍ କେତେ ବାଟ ହେଲାଣି ଭାବି ପାରୁଛ? ଜାହାଜରେ ଯିବାକୁ ହେବ। ଭଡ଼ା କେତେ ଜାଣ?''

ହଠାତ୍ ଅନିରୁଦ୍ଧର ମୁହଁ ଶେତା ପଡ଼ିଗଲା। ଅନୁପମାର ଭାବୀ ଶ୍ୱଶୁର ଯେ କି କଥା କହିବାକୁ ଆସିଛନ୍ତି, ତା' ଆଉ ତା'ର ଅଜଣା ରହିଲା ନାହିଁ।

ଚକ୍ରବର୍ତ୍ତୀବାବୁଙ୍କର କଥା ଶେଷ ହୋଇ ନ ଥିଲା। ସେ କହିଲେ, ''ପୁଲକର ଇଚ୍ଛା ବୋହୂକୁ ନେଇ ଲଣ୍ଡନ ଯିବ। ତା' ମାନେ ଦି ଦି'ଟା ଟିକେଟ୍। ଗୋଟାଏ ଟିକେଟ୍ କିଣିବାର କ୍ଷମତା ମୋର ନାହିଁ, ଦିଇଟା ଟିକେଟ୍ କଥା କାହିଁକି ପଡ଼ିଛି?''

ଅନିରୁଦ୍ଧ ଚୂପ୍ ରହିଲା। କ'ଣ କହିବ ସେ?

ଭବେଶ ଚକ୍ରବର୍ତ୍ତୀ ସିଧା ଭାବରେ ଚାହିଁଲେ ଅନିରୁଦ୍ଧକୁ। ଆଉ ସ୍ପଷ୍ଟ ଭାବରେ ପଚାରିଲେ, ''ତୁମେ କିଛି କରି ପାରିବ ନାହିଁ, ଅନିରୁଦ୍ଧ?''

''ମୁଁ??'' ଅନିରୁଦ୍ଧ ଗଳା ଝାଡ଼ିଲା। ''ଆମର ଯଦି ଶକ୍ତି ଥାଆନ୍ତା, ତେବେ ଆପଣ କହିବା ଯାଏଁ କଥା ଯାଇ ନ ଥାଆନ୍ତା, ବଡ଼ବାବୁ। ମୁଁ ଏଇ ସାଙ୍ଗେ ସାଙ୍ଗେ ଟିକେଟ୍ କିଣେଇବା ବ୍ୟବସ୍ଥା କରେଇ ଦେଇଥାଆନ୍ତି। କିନ୍ତୁ ଆଜ୍ଞା, ଆପଣଙ୍କୁ ତ ଆମ ଘର ଅବସ୍ଥା ଅଜଣା ନାହିଁ।''

''ହୁଁ। ...ତା'ହେଲେ କ'ଣ କରିବା ଅନିରୁଦ୍ଧ?'' ଭାବିବା ଭଳି ହୋଇ

ଚକ୍ରବର୍ତ୍ତୀ ବାବୁ କହିଲେ।

ଅନିରୁଦ୍ଧ ଗାଲରେ ହାତ ଦେଇ ବସି ରହିଲା।

"ତୁମେ ଗୋଟାଏ କଥା କର, ଅନିରୁଦ୍ଧ। ତୁମେ ତୁମ ମା'ଙ୍କ ସାଙ୍ଗରେ କଥା କହି ଦେଖ। ସେ ବଡ଼ ବୁଦ୍ଧିମତୀ ମହିଳା। ତାଙ୍କ ପାଖରେ ନିଶ୍ଚୟ କିଛି ସମାଧାନର ପଥ ଥିବ।" ଭବେଶ ଚକ୍ରବର୍ତ୍ତୀ ଉଠିଲେ। "ମୁଁ କାଲି ସକାଳୁ ଗାଁକୁ ଯାଉଛି କିଛି ଦିନ ପାଇଁ। ମୋ ଭଉଣୀର ଝିଅ ବାହାଘର। ଫେରିଲେ ତୁମ ଘର ହୋଇ ଯିବି। ସେଦିନ ମତେ ତୁମେ କହିଦେବ କ'ଣ ସ୍ଥିର ହେଲା। ଆଚ୍ଛା ?"

ଅନିରୁଦ୍ଧ ହଲି ପାରୁ ନ ଥିଲା। କଥା କହି ପାରୁ ନ ଥିଲା। କାହିଁକି ଏମିତି ହେଉଛି ତା' ଜୀବନରେ ? କାହିଁକି ଏତେ ବଡ଼ ବଡ଼ ସମସ୍ୟା ଆସି ତା' ମୁଣ୍ଡ ଉପରେ ଚାପି ହେଇ ଯାଉଛି ? ଆଉ କେତେ ସଙ୍କଟରେ ପକେଇବେ ଠାକୁର ?

ଶ୍ରଦ୍ଧା ଆସି ପାଖରେ ବସିଲେ। ପୁଅଠୁଁ ସବୁ କଥା ଶୁଣିଲେ। ତା'ପରେ ଦୀର୍ଘ ନିଶ୍ୱାସ ନେଇ କହିଲେ, "କରିବାର ତ କିଛି ନାହିଁ, ବାବୁ। ତାଙ୍କୁ ସତ କଥା କହିବାକୁ ପଡ଼ିବ। କହି ଦେବାକୁ ହେବ ଯେ ଦି ଦି'ଟା ଟିକେଟ୍ ତ ଦୂର କଥା, ଗୋଟାଏ ଟିକେଟ୍ ବି କିଣିବା ଭଳି ଅବସ୍ଥା ଆମର ନାହିଁ। ଘରର ସବୁ ଜିନିଷପତ୍ର, ଗହଣାଗାଣ୍ଠି ବିକ୍ରି କଲେ ବି ସେତକ ଟଙ୍କା ବାହାରିବନି।"

"ମା', କୋଉଠୁ ଧାର କରି ହେବନି ?"

"ଧାର୍ ? ଏତେ ଟଙ୍କା ତତେ ଧାର ଦେବ କିଏ ? ଶେଷରେ କ'ଣ କୋଉ କାବୁଲିବାଲା ପାଖରେ ମୁଣ୍ଡ ବିକ୍ରି କରିଦେବୁ ? ନା, ଏତେ ହୀନିମାନି ହେବା ଦରକାର ନାହିଁ।"

"ତୁମେ ତା'ହେଲେ ସେୟା କହୁଛ ?"

"ହଁ।" ଶ୍ରଦ୍ଧା ଦୃଢ଼ ଭାବରେ କହିଲେ, "ଅନି ପାଇଁ ବାହାଘର ପ୍ରସ୍ତାବ ଆଣିଥିଲେ ସେମାନେ। ସେମାନେ ହିଁ ବେଶୀ ଆଗ୍ରହ ଦେଖାଇଥିଲେ। ଥରେ ବାହାଘର ସ୍ଥିର ହୋଇଗଲା ବୋଲି କ'ଣ ସବୁକିଛି ବଦଳିଗଲା ? ଏବେ ଆମେ କନ୍ୟାପକ୍ଷ ହୋଇଗଲୁ ବୋଲି କ'ଣ ସେମାନଙ୍କର ସବୁ ସଙ୍କଟର ବୋଝ ଆମ ମୁଣ୍ଡରେ ଲଦି ହୋଇଯିବ ? ନା, ସେମାନଙ୍କର ସମସ୍ୟାର ସମାଧାନ ସେମାନଙ୍କୁ

କରିବାକୁ ହେବ। ଆମକୁ ନୁହଁ।''

ଶନିବାର ଦିନ ଗାଁରୁ ଫେରିଲେ ଭବେଶ ବାବୁ। ଆଉ ରବିବାର ସକାଳୁ ସକାଳୁ ହିଁ ଆସି ପହଞ୍ଚିଗଲେ ଅନିରୁଦ୍ଧ ପାଖରେ। ଚାହା, ଜଳଖିଆ ଖାଇବା ପରେ ଅସଲ କଥାକୁ ଓହ୍ଲେଇ ଆସିଲେ ସେ।

''ତା'ହେଲେ ତୁମେ ଟିକେଟ୍ କଥା କ'ଣ ସ୍ଥିର କଲ, ଅନିରୁଦ୍ଧ?''

''ମା'ଙ୍କ ସାଙ୍ଗରେ କଥାବାର୍ତ୍ତା କରିଥିଲି ଆଜ୍ଞା। କିନ୍ତୁ ଏତେ ଟଙ୍କା ଯୋଗାଡ଼ କରିବା ଆଦୌ ସମ୍ଭବ ନୁହଁ ଆମ ପକ୍ଷରେ।''

''ସମ୍ଭବ ନୁହଁ?'' ଭାବିବା ଭଳି ହୋଇ ଭବେଶ ଚକ୍ରବର୍ତ୍ତୀ କହିଲେ, ''ଏ ତ ବଡ଼ ଅସୁବିଧାର କଥା ହେଲା, ଅନିରୁଦ୍ଧ। ମୁଁ ଯେ ତା'ହେଲେ କଥା ଆଗେଇ ନେଇ ପାରୁନି।''

'ଆଗେଇ ନେଇ ପାରୁନି?' ଏଭଳି କଥାର ଅର୍ଥ କ'ଣ ହୋଇ ପାରେ? ଶୋଇବା ଘର କବାଟ ପାଖରେ ଠିଆ ହେଇ ଭାବି ହେଉଥିଲା ଅନୁପମା। ତା'ମାନେ କ'ଣ ସେମାନେ ବାହାଘର ଭାଙ୍ଗି ଦେବାକୁ ଚାହୁଁଛନ୍ତି?

କଥାଟି ଶ୍ରଦ୍ଧାଙ୍କ କାନରେ ବି ପଡ଼ିଥିଲା। ସେ ବୋଧହୁଏ ଭାବି ପାରି ନ ଥିଲେ ଯେ କଥା ଏତେଦୂର ଗଡ଼ିଯିବ ବୋଲି। ତରବର ହୋଇ ସେ ପଶି ଆସିଲେ ବାହାର ଘର ଭିତରକୁ।

ଆଉ ଆତଙ୍କିତ ସ୍ୱରରେ ସେ କହିପକେଇଲେ, ''ଏ କ'ଣ କହୁଛନ୍ତି? ଆଶୀର୍ବାଦ ସରିଛି। ବାହାଘର ଦିନ ସ୍ଥିର ହୋଇ ସାରିଛି। ସମସ୍ତେ ଜାଣିଛନ୍ତି ଯେ ଆପଣଙ୍କ ପୁଅ ସାଙ୍ଗରେ ଅନିର ବାହାଘର ଠିକ୍ ହୋଇ ଯାଇଛି। ଆଉ ଏମିତି କରି ହଠାତ୍ ... ମୋ ଝିଅଟା ତ ଭାସିଯିବ, ଆଜ୍ଞା।''

''ମୁଁ କ'ଣ କରିବି କୁହନ୍ତୁ। ମୋ ହାତ ପାଦ ତ ବନ୍ଧା।''

''ଆପଣ ପୁଲକକୁ ଥରେ ପଚାରି ଦେଖନ୍ତୁ।'' ଶ୍ରଦ୍ଧାଙ୍କର ବୋଧହୁଏ ତଥାପି ଆଶା ଥିଲା। ଯେଉଁ ପୁଲକ ଅନି ଚାରିପାଖରେ ଘୂରୁ ଘୂରୁ ହେଉଥିଲା, ସେ ଅନ୍ତତଃ ଏତେ ସହଜରେ ବାହାଘର ଭାଙ୍ଗି ଦେବା କଥାରେ ରାଜି ହେବନି।

''କ'ଣ ପଚାରିବି ପୁଲକକୁ? ତା'ରି ସାଙ୍ଗରେ ତ କଥାବାର୍ତ୍ତା କରି ସାରି ମୁଁ ଆସିଥିଲି ଆପଣମାନଙ୍କ ସାଙ୍ଗରେ କଥା କହିବାକୁ। ଏତେ ବଡ଼ ଗୋଟାଏ ସୁଯୋଗ ସେ ପାଇଛି ସେ ତ ସଜାଡ଼ି ହୋଇ ବସିଛି ଲଣ୍ଡନ୍ ଯିବ

ବୋଲି। ଏମିତି ସମୟରେ କ'ଣ ମୁଁ ତାକୁ କହି ଦେଇ ପାରିବି ଯେ ତା' ଟିକେଟ୍ ବ୍ୟବସ୍ଥା ହୋଇ ପାରୁନି ବୋଲି ? ...ସେ ମତେ ପରିଷ୍କାର କହି ଦେଇଛି। ଲଣ୍ଡନ୍ ସେ ଯେମିତି ହେଲେ ଯିବ। ସେଥିପାଇଁ ଯଦି କିଛି ଛାଡ଼ିବାକୁ ହୁଏ, ହେବ।'' ଆଉ ବୁଲେଇ ବାଙ୍କେଇ କଥା ନ କହି ସିଧା ସଳଖ କହି ଦେଲେ ଚକ୍ରବର୍ତ୍ତୀ ବାବୁ।

ଶ୍ରଦ୍ଧା କି ଅନିରୁଦ୍ଧ କାହା ପାଟିରେ କଥା ନ ଥିଲା।

ଗଳା ଝାଡ଼ି ଚକ୍ରବର୍ତ୍ତୀ ବାବୁ ପୁଣି କହିଲେ, ''ପୁଲକର ଲଣ୍ଡନ ଯିବା କଥା ଶୁଣି ବଡ଼ନଗର ଜମିଦାର ଖବର ପଠେଇଛନ୍ତି। ତାଙ୍କର ଏକମାତ୍ର ଝିଅର ପ୍ରସ୍ତାବ ଦେଇ।''

''ବଡ଼ନଗର ଜମିଦାର ? ଅରିଦମନ ରାୟ ?'' ହେୟ ଭାବରେ କହି ପକେଇଲେ ଶ୍ରଦ୍ଧା। ତାଙ୍କ ଅନୁପମା ସାଙ୍ଗରେ ପୁଣି ତୁଳନା ହୁଏ ଅରିଦମନ ରାୟଙ୍କ ଝିଅର !!

ପାବ୍‌ନାରେ ସମସ୍ତେ ଉଣା ଅଧିକେ ଜାଣନ୍ତି ଅରିଦମନ ରାୟଙ୍କ କଥା। ନିହାତି କୁଟୀଳ ଲୋକ। କେତେ ଦୁଃଖୀ ରଙ୍କୀଙ୍କର ଘର ଉଜାଡ଼ି ନିଜ ଘର ପୂର୍ଣ୍ଣ କରିଛନ୍ତି, ତା'ର କ'ଣ ଇୟତ୍ତା ଅଛି ? ଏବେ ଏଇ ଘଟଣା ଦେଖ। ଭଲ ଭାବରେ ତାଙ୍କୁ ଜଣା ଯେ ପୁଲକ ସାଙ୍ଗରେ ତାଙ୍କ ଅନିର ବାହାଘର ଠିକ୍ ହୋଇ ଯାଇଛି। ଅଥଚ ପିଲାର ଲଣ୍ଡନ ଚାକିରି ଶୁଣି ଥୋଢ ଝୁଲେଇ ବସିଗଲେ ! ଚକ୍ରବର୍ତ୍ତୀ ବାବୁ ବି କେମିତିଆ ଲୋକ ? ଘୃଣାରେ ମୁହଁ ଘୂରାଇ ନ ନେଇ ଆନନ୍ଦରେ ଥୋପ ଗିଳିବା ପାଇଁ ପ୍ରସ୍ତୁତ ହୋଇ ବସିଛନ୍ତି !

ଗିଳନ୍ତୁ। ଏମିତିଆ ଲୋକଙ୍କ ଘରେ ଯେ ତାଙ୍କ ଝିଅକୁ ଯାଇ ପଡ଼ିବାକୁ ହୋଇନି, ସେଇଟା ଠାକୁରଙ୍କ ଦୟା। ଶ୍ରଦ୍ଧା ମନକୁ ମନ କହିହେଲେ। ନିଜକୁ ବୁଝେଇଲେ।

କିନ୍ତୁ ଚକ୍ରବର୍ତ୍ତୀ ବାବୁ ଚାଲିଯିବା ପରେ ପରେ ଆଉ ସମ୍ଭାଳି ପାରିଲେନି ନିଜକୁ। ମୁଣ୍ଡ ଉପରେ ଆକାଶ ଯେମିତି ଭାଙ୍ଗିଗଲା ତାଙ୍କର। ଆଖିରେ ଶାଢ଼ି କାନି ମାଡ଼ି ଦେଇ ସେ ଖଟ ଉପରେ ପଡ଼ିଗଲେ ନିସ୍ତେଜ ଭାବରେ। ତାଙ୍କୁ ଥରେ ଦେଖି ନେଇ କିଛି ନ କହି ଦେହରେ ସଫା ପଞ୍ଜାବୀଟା ଅନିରୁଦ୍ଧ ଗଳେଇ ନେଲା। ଭଲ ଲାଗୁନି, ତାଙ୍କୁ କିଛି ଭଲ ଲାଗୁନି। ଏବେ ଯାଇ କ୍ଲବ୍‌ରେ ତାସ୍, କ୍ୟାରମ୍ ଖେଳିଲେ ଯାଇ ମନ କିଛିଟା ସ୍ୱାଭାବିକ ହେବ।

"ଅନି, କବାଟଟା ଦେ। ମୁଁ କ୍ଲବ୍‌କୁ ଯାଉଛି।"

"କେତେବେଳେ ଆସିବ, ଦାଦା ?"

"ମୁଁ ଜାଣିନି। କିଛି ଜାଣିନି। ମତେ କିଛି ଭଲ ଲାଗୁନିରେ ଅନି।" ବିବ୍ରତ ଭାବରେ କହି ଦେଇ ଅନିରୁଦ୍ଧ ସାଇକେଲ୍ ନେଇ ବାହାରିଗଲା।

ଦାଣ୍ଡ କବାଟ ଦେଇ ଆସି ସେଇ ବାହାର ଘର ଖଟ ଉପରେ ବସିଲା ଅନୁପମା। ଏଇଠି ଅଳ୍ପ ସମୟ ଆଗରୁ ତା' ବାହାଘର ଭାଙ୍ଗିଯିବା କଥା ହୋଇଥିଲା। ଏଇ ସାମ୍ନା ଚୌକିରେ ବସି ଶେଷ କଥା ଶୁଣେଇ ଦେଇଥିଲେ ଚକ୍ରବର୍ତ୍ତୀ ବାବୁ। ପୁଲକର ବାପା। ଯିଏ କି ଆଉ କେଇଟା ମାସ ପରେ ତା' ଶ୍ୱଶୁର ହୋଇ ଥାଆନ୍ତେ।

ଓଠ ବଙ୍କିଗଲା ଅନୁପମାର।

ତା' ବାହାଘର ଭାଙ୍ଗିଗଲା। ନୂଆ ପୃଥିବୀରେ ପାଦ ଦେବାକୁ ଯାଉ ଯାଉ ସେଇ ପୃଥିବୀଟା ହିଁ ହଠାତ୍ କରି ତା' ଆଖି ସାମ୍ନାରୁ ଉଭେଇଗଲା।

'ଭଲ ହେଲା। ଖୁବ୍ ଭଲ ହେଲା।' ନିଜ ମନକୁ ମନ କହିଲା ସେ।

ଭଲ ହେଲା ?? ଏ କି ଭାବନା ଆସିଛି ତା' ମନ ଭିତରକୁ ??? ଅନୁପମା ନିଜ ମନର ଭାବନାରେ ଆଶ୍ଚର୍ଯ୍ୟ ହୋଇଗଲା। ବାହାଘର ଭାଙ୍ଗିଯିବା ଘଟଣା ନେଇ ସେ ବ୍ୟସ୍ତ ହୋଇଯିବା କଥା। ତା' ଆଖିରୁ ଲୁହ ଝରି ଆସିବା କଥା। ହେଲେ କାହିଁକି ସେମିତି କିଛି ହେଉନି ? କାହିଁକି ମନଟା ତା'ର ସାମାନ୍ୟ ଭାରାକ୍ରାନ୍ତ ବି ହେଉନି ?

ବରଂ ବଡ଼ ନିଶ୍ଚିନ୍ତ ଲାଗୁଛି ତାକୁ।

ଖାଲି ମନେ ହେଉଛି ଯେ ସେ ଯେମିତି ଗୋଟାଏ ବିରାଟ ଜାଲରେ ବାନ୍ଧି ହୋଇ ଯାଉ ଯାଉ ବର୍ତ୍ତି ଯାଇଛି।

ଦେଶର ପରିସ୍ଥିତିରେ ତୀବ୍ର ପରିବର୍ତ୍ତନ ଆସୁଥିଲା। ଭାରତକୁ ପରାଧୀନତାର ଜାଲରେ ବାନ୍ଧି ରଖିଥିବା ଇଂରେଜ ଧୀରେ ଧୀରେ ନିଜ ମୁଠି ହୁଗୁଳା କରିବା ଆରମ୍ଭ କରି ଦେଇଥିଲେ। ଅନିଚ୍ଛାରେ ସେମାନେ ନିଜ ଦେଶକୁ ଫେରି ଯିବାର

ଆୟୋଜନ ଆରମ୍ଭ କରି ଦେଇଥିଲେ।

ସେଦିନ ସନ୍ଧ୍ୟା ହେଉ ହେଉ ଅନୁପମା ରନ୍ଧାରନ୍ଧି ଶେଷ କରି ଦେଇଥିଲା। ଅଫିସ୍‌ରୁ ଫେରି କାହିଁକି କେଜାଣି ଅନିରୁଦ୍ଧ ଆଉ କ୍ଲବ୍‌କୁ ଯିବା କଥା ଉଠେଇଲାନି। ବରଂ ଶୀଘ୍ର ଶୀଘ୍ର ଖାଇ ଦେଇ ଶୋଇବାକୁ ବାହାରି ପଡ଼ିଲା ସେ।

"ତୁମେ ଏତେ ଶୀଘ୍ର ଶୋଇ ପଡ଼ିବ, ଦାଦା? ବୀରେନ୍ କାକାଙ୍କ ଘରକୁ ରେଡ଼ିଓ ଶୁଣିବାକୁ ଯିବନି?"

"ନା। କ'ଣ କରିବି ଶୁଣିକରି?" ବିରକ୍ତିଭରା ସ୍ୱରରେ ଅନିରୁଦ୍ଧ ଜବାବ ଦେଲା।

"ଏତେ ବଡ଼ ଗୋଟାଏ ଘଟଣା ହୋଇଯିବ। ଦେଶ ସ୍ୱାଧୀନର ଘୋଷଣା ହେବ। ପଣ୍ଡିତ ନେହେରୁ ଭାଷଣ ଦେବେ ରେଡ଼ିଓରେ। ଆଉ ତୁମେ କହୁଛ ଯେ ତୁମେ ରେଡ଼ିଓ ଶୁଣିବାକୁ ଯିବନି?"

"ନା, ଯିବିନି। କ'ଣ ମିଳିବ ସେ ଭାଷଣ ଶୁଣି? ଆମ ଦେଶଟାକୁ ଆଉ କେହି ଆଗ ଭଳି କରି ଦେଇ ପାରିବେ କି? ତୁ କହ। ଉମା, ଭାସ୍କର ଦା'ଙ୍କ ଭଳି ଯେଉଁ ଶହ ଶହ ଜୀବନ ବିନା କାରଣରେ ହଜି ଯାଇଛି, ସେସବୁ ଏ ଭାଷଣ ଶୁଣିଲେ ଫେରି ଆସିବ କି? ଫେରି ଆସିବେ କି ସେମାନଙ୍କର ଛୋଟ ଛୋଟ ତିନି ନିରୀହ ପିଲା?"

ଅନୁପମାର ମନ ଖରାପ ହୋଇଗଲା। କିଛି ସମୟ ଆଗରୁ ଯେଉଁ ଆନନ୍ଦ ତା' ମନ ଭିତରେ ଖେଳି ବୁଲୁଥିଲା, ସେସବୁ ଅନିରୁଦ୍ଧର ପଦେ କଥାରେ ହଜିଗଲା। ରାତି ସାଢ଼େ ଏଗାରଟା ବେଳେ ମାଳା ଯେତେବେଳେ ତାକୁ ରେଡ଼ିଓ ଶୁଣିବା ପାଇଁ ଡାକିବାକୁ ଆସିଲା, ସେତେବେଳେ ସେ ବୀରେନ୍ ଘୋଷଙ୍କ ଘରକୁ ଚାଲି ତ ଗଲା, କିନ୍ତୁ ସବୁ ଉତ୍ସାହରେ ତା'ର ଭଟ୍ଟା ପଡ଼ି ସାରିଥିଲା।

ଦେଶ ସ୍ୱାଧୀନ ହେଲା। କିନ୍ତୁ ଦେଶ ସ୍ୱାଧୀନ ହେଉ ହେଉ ଚାରିଆଡ଼େ ଏତେ ବିଭତ୍ସ ଘଟଣାମାନ ଘଟିଗଲା ଯେ ସ୍ୱାଧୀନତାର ଆନନ୍ଦ ଯେମିତି ସେଥିରେ ଧୋଇ ହୋଇ ଯାଇଥିଲା। ଅନୁପମା କାନରେ ଏଠୁ ସେଠୁ ବିଭିନ୍ନ ଖବର ପଡୁଥିଲା ଏବଂ ତା' ମନ ଚାପା ଯନ୍ତ୍ରଣାରେ ଲହୁ ଲୁହାଣ ହୋଇ ଯାଉଥିଲା। ଏମିତି ତ ହେବାର ନ ଥିଲା। ଦେଶ ସ୍ୱାଧୀନ ହେବାର ଉଲ୍ଲାସ ପୃଥିବୀ

ବକ୍ଷକୁ କୁସୁମିତ କରି ଦେବାର କଥା ଥିଲା । ତା'ହେଲେ କାହିଁକି ଏମିତି ସବୁ ହେଲା ? କାହିଁକି ଆରମ୍ଭ ହୋଇଗଲା ଏ ନାରକୀୟତା ?

ଏଣେ ଚାରିଆଡ଼େ ହାଣକାଟ, ଲୁଟତରାଜର ଘଟଣା, ତା' ଉପରେ ପୁଣି ଭିନ୍ନ ଦେଶର ମୋହର ସେମାନଙ୍କ ଉପରେ । ଅନୁପମା ବିବ୍ରତ ହୋଇ ପଡୁଥିଲା ନିଜ ଭିତରେ । ଏବେ ପାକିସ୍ତାନକୁ ନିଜର କରିବାକୁ ହେବ ? ଯେଉଁ ଭାରତକୁ ନିଜ ଦେଶ ବୋଲି ସେ ଏତେ ଦିନ ଭାବି ଆସିଥିଲା, ସେଇ ଦେଶ ସାଙ୍ଗରେ ସମ୍ପର୍କ କାଟିବାକୁ ହେବ ?

''ନା, ସମ୍ପର୍କ କାଟିବାର ପ୍ରଶ୍ନ କେଉଁଠି ଉଠୁଛି ?'' ସେଦିନ ଅଫିସ୍‌ରୁ ଫେରି ଅନିରୁଦ୍ଧ କହିଲା । ''ତୁ କ'ଣ ଭାବୁଛୁ ଆମେ ପାକିସ୍ତାନକୁ ନିଜର କରି ପାରିବା ? ଏ ଦେଶରେ ରହିଯାଇ ପାରିବା ? ନା, ଅସମ୍ଭବ । ଭାରତକୁ ଚାଲିଯିବାକୁ ହେବ । ଆଜି ମୁଁ ଅଫିସ୍‌ରେ କେତେଜଣଙ୍କ ସାଙ୍ଗରେ କଥା କହି ଦେଖିଛି । ଭାରତ ଚାଲିଗଲେ ସେଠି ଚାକିରି ମିଳିବାରେ ଅସୁବିଧା ହେବ ନାହିଁ । ଆମର କଲିକତା ଅଫିସ୍‌ରୁ କେଇ ଜଣ ମୁସଲମାନ ପାକିସ୍ତାନକୁ ଚାଲି ଆସିବାକୁ ଚାହିଁଛନ୍ତି । ସେମାନଙ୍କ ଜାଗାରେ ମୁଁ ଓ ଅନ୍ୟ କେଇ ଜଣ ରହିଯିବୁ ।''

''ପାବ୍‌ନା ଛାଡ଼ିବାକୁ ହେବ ??'' ଶ୍ରଦ୍ଧାଙ୍କ ସ୍ୱରରେ ହାହାକାର ।

''କ'ଣ ଆଉ କରାଯିବ, ମା' ?''

''କେବେ ଯିବା, ଦାଦା ?''

''ଦେଖେ କ'ଣ କେମିତି ହେଉଛି । ଅଫିସ୍‌ରୁ ତିନି ମାସର ଦରମା ଦେବା କଥା ହେଉଛି । ହାତରେ କିଛି ଟଙ୍କା ନ ରହିଲେ, କଲିକତାରେ ଯାଇ ଚଳିବା କେମିତି ? ଅମ୍ଭର ତ କିଛି ଠିକ୍‌ଠିକଣା ନାହିଁ । ଅର୍ଚ୍ଚନା ରହିଛି ଆଉ ଜଣଙ୍କ ଘରେ । ଶେଷରେ ଯାଇ କ'ଣ ବୁନୁ ମାମୁ ଘରେ ଉଠିବାକୁ ହେବ ?''

ହଠାତ୍ ଶ୍ରଦ୍ଧାଙ୍କ ଛାତି ଭିତରେ ଆତଙ୍କ ଖେଳିଗଲା । ''ଯିବା କଥା ଯଦି ତାହେଲେ ଶୀଘ୍ର ଯିବା ବ୍ୟବସ୍ଥା କରରେ, ବାବୁ । ଆଉ ଏଠି ରହି ହେବନି । ବଡ଼ ଭୟ ହେଉଛି ରେ ।''

''ନା ମା', ଭୟ କରିବା ଭଳି କିଛି ନାହିଁ । ଟଙ୍କାଟା ଆସିଯାଉ । ତା'ପରେ ଚାଲିଯିବା ।''

ଅନିରୁଦ୍ଧ ବେଶ୍ ନିଶ୍ଚିନ୍ତ ଭାବରେ କହିଥିଲା ସେଦିନ । କିନ୍ତୁ ଦେଶର ରାଜନୈତିକ

ଅବସ୍ଥାରେ ଯେ ଏଭଳି ଦ୍ରୁତ ଭାବରେ ଅବନତି ଘଟିବ, ସେକଥା ତ ସେ ଆଦୌ ଭାବି ପାରି ନ ଥିଲା।

ସେଦିନ ଖାଇ ପିଇ ଶୋଇ ପଡ଼ିଥିଲେ ସେମାନେ। ଯେମିତି ସବୁଦିନ ଶୁଅନ୍ତି, ଠିକ୍ ସେମିତି। ଦୂରରୁ ପାଟିତୁଣ୍ଡ ଶୁଣାଯାଉଥିଲା କିଛି କିଛି। ତେବେ ସେସବୁ ନେଇ କେହି ଭାବି ହୋଇ ନ ଥିଲେ। ଦେଶ ସ୍ୱାଧୀନ ହୋଇ ଭାରତ, ପାକିସ୍ତାନ ହେବା ପରେ ଏଇମିତି ରାତିର ଗଣ୍ଡଗୋଳ ଦେହସୁହା ହୋଇଯାଇଛି।

ହଠାତ୍ ରାତି ଅଧରେ ଧୀର ଭାବରେ କିଏ ଯେମିତି କବାଟରେ ଠକ୍ ଠକ୍ କଲା। ଖୁବ୍ ଧୀରେ ଧୀରେ। କିନ୍ତୁ କ୍ରମାଗତ ଭାବରେ। ଅନିରୁଦ୍ଧର ନିଦ ଭାଙ୍ଗିଗଲା। ଖଟ ଉପରେ ଚମକି ଉଠି ବସିଲା ସେ। ସତରେ କିଏ ଡାକୁଛି ନା ସେ କୌଣସି ସ୍ୱପ୍ନ ଦେଖୁଛି? ଚୁପ୍ ହୋଇ ସେଇମିତି ବସି ରହିଲା କିଛି ସମୟ।

ପୁଣି ସେଇ ଖଟ୍ ଖଟ୍ ଶବ୍ଦ।

''କିଏ?'' କବାଟ ନ ଖୋଲି ଘର ଭିତରୁ ପଚାରିଲା ଅନିରୁଦ୍ଧ।

''ଶୀଘ୍ର କବାଟ ଖୋଲ, ଅନିରୁଦ୍ଧ ଦାଦା। ମୁଁ ସଫିକ୍।'' ଚାପା ବ୍ୟସ୍ତ ସ୍ୱରଟିଏ କବାଟ ସେପାଖରୁ କହି ପକେଇଲା।

ସଫିକ୍?? ସେ କୁଆଡୁ ଆସିଲା? ସେ ପରା ଚାକିରି ନେଇ ଦିଲ୍ଲୀ ଚାଲିଯାଇଥିଲା? ସେ କ'ଣ ତା'ହେଲେ ଫେରି ଆସିଛି? ଭାରତରେ ଆଉ ରହିବାକୁ ଚାହିଁକି?

ଅର୍ଚ୍ଚନା ଜନ୍ମଦିନର ସେଇ ଘଟଣା ପରେ ଅନିରୁଦ୍ଧ ଥରେ ହେଲେ ସଫିକ୍ ସାଙ୍ଗରେ କଥାବାର୍ତ୍ତା କରିନି। ରାସ୍ତାରେ ବା ଘରୁ ବାହାରିବା ବେଳେ ଦେଖା ହୋଇଗଲେ ନ ଦେଖିବାର ଅଭିନୟ କରି ବାଟ କାଟି ଚାଲିଯାଇଛି ସେ। ସଫିକ୍ ମଧ୍ୟ ଉପରେ ପଡ଼ି କେବେ କିଛି କଥା କହିବାକୁ ଆସିନି। ଆଜି ତେବେ ହଠାତ୍ କାହିଁକି?

ହଠାତ୍ ଗୋଟାଏ ଦୁର୍ଭାବନା ଅନିରୁଦ୍ଧ ଛାତି ଭିତରକୁ ପଶି ଆସିଲା। ପାକିସ୍ତାନ ସୃଷ୍ଟି ହୋଇଯିବାର ଖବର ଶୁଣି ସଫିକ୍‌ର ଦମ୍ଭ ବଢ଼ିଗଲା କି? ସେ ଆଜି ତାକୁ ଅପମାନିତ କରିବା ପାଇଁ ସ୍ଥିର ନିଶ୍ଚିତ ହୋଇ ରାତି ଅଧରେ ବାହାରି ଆସିଲା କି?

‘‘କବାଟ ଖୋଲ, ଅନିରୁଦ୍ଧ ଦାଦା। ଡେରି କରନି।’’ ତ୍ରସ୍ତ ଗଳାରେ ସଫିକ୍ ପୁଣି କହି ପକେଇଲା।

ଯିଏ ଅପମାନିତ କରିବାକୁ ଆଗେଇ ଆସେ, ସେ କ’ଣ ଏଇଭଳି ସ୍ୱରରେ କଥା କହେ ?

ଅନିରୁଦ୍ଧ ଆଉ କିଛି ନ ଭାବି କବାଟଟାକୁ ଖୋଲି ଦେଲା। ‘‘କ’ଣ ହୋଇଛି ? ଏତେ ରାତିରେ କାହିଁକି ?’’ ଗମ୍ଭୀର ଭାବରେ ସେ ପଚାରିଲା।

‘‘ତୁମେ ଆଉ ଡେରି କରନି, ଦାଦା। ଶୀଘ୍ର ବଡ଼ ମା’ ଓ ଅନିକୁ ଧରି ବାହାରି ଆସ। ମୁଁ ଗାଡ଼ି ବ୍ୟବସ୍ଥା କରିଛି। ଆମ ଘର ସେପାଖକୁ ଅନ୍ଧାରରେ ଠିଆ ହୋଇଛି ଗାଡ଼ିଟା।’’

ଅନିରୁଦ୍ଧ ମୁଣ୍ଡରେ କିଛି ପଶୁ ନ ଥିଲା। ମା’ ଓ ଅନିକୁ ଧରି ସେ ରାତି ଅଧରେ ବାହାରି ଯିବ କୁଆଡ଼େ ? ପୁଣି ଗାଡ଼ି କାହିଁକି ?

‘‘ଶୀଘ୍ର କର, ଦାଦା। ସମୟ ଆଉ ଜମା ନାହିଁ। ହଁ, ଏ ବୁର୍ଖା ଦିଇଟା ନିଅ। ବଡ଼ମା’ ଓ ଅନିକୁ କୁହ ପିନ୍ଧି ନେବେ। ତୁମେ ଆଲଖାଲାଟା ଗଳେଇ ନିଅ। ହଁ, ପଇତା ଖୋଲି ରଖି ଦେବ। ଅନିକୁ କହିବ, ମୁଣ୍ଡରୁ ଟିପାଟା ଯେମିତି ପୋଛି ଦିଏ।’’

ସଫିକ୍ କଥା ଶୁଣି ମଧ ଠିକ୍ ବୁଝୁ ନ ଥିଲା ଅନିରୁଦ୍ଧ।

ବୁର୍ଖା ! ଆଲ୍‌ଖାଲା !!

କିଛି ମାସ ଆଗର ଘଟଣା ତା’ ମନ ଭିତରକୁ ପଶି ଆସି ଦୋହଲାଇ ଦେଉଥିଲା। ଉମା, ଭାସ୍କର ଦା’ ଓ ସେମାନଙ୍କର ଛୋଟ ଛୋଟ ତିନି ପିଲାଙ୍କ କଥା ମନେ ପଡ଼ି ଯାଉଥିଲା ତା’ର। ସେ ପାଦେ ଘୁଞ୍ଚି ପାରୁ ନ ଥିଲା।

‘‘କ’ଣ ଏତେ ଭାବୁଛ, ଅନିରୁଦ୍ଧ ଦାଦା। ଡେରି କରନି। ଦଙ୍ଗା ଆରମ୍ଭ ହୋଇଗଲାଣି।’’

‘‘ହେଲେ ଗାଡ଼ିରୁ ଟାଣି ଆଣି ଯଦି...’’

‘‘ନା, କେହି କିଛି ଜାଣି ପାରିବେ ନାହିଁ। ମୁଁ ତୁମମାନଙ୍କୁ ନେଇଯିବି। ଟ୍ରେନ୍‌ରେ ବସେଇ ସାରି ଯାଇ ଫେରିବି। ...ତୁମେ ଜମା ଡେରି କରନି।’’

‘‘ଚାଲିଯିବାକୁ ହେବ ? ଆବିଦ୍ ଚାଚା, ସଲ୍‌ମା ଚାଚୀଙ୍କୁ ଟିକିଏ କହି ଯାଇଥିଲେ...’’

''ନା। ସେସବୁ କରିବାକୁ ବେଳ ଆଦୌ ନାହିଁ। ମୁଁ ପରେ କହି ଦେବି ସେମାନଙ୍କୁ। ତୁମେ ଶୀଘ୍ର ବାହାରି ଆସ, ଦାଦା।''

ବାଟରେ ଆଦୌ ଅସୁବିଧା ହେଲା ନାହିଁ। ସଫିକ୍‌ର ଲେସ୍ ଟୋପି, ଓଠର ଅଛ ଦାଢ଼ି ଦେଖି ସନ୍ଦେହ କରିବାର ପ୍ରଶ୍ନ ହିଁ ନ ଥିଲା। କେହି ଅଟକେଇ ପଚରାପଚିରି କଲେ ନାହିଁ ସେମାନଙ୍କୁ।

ଷ୍ଟେସନ୍ ପାଖରେ ପହଞ୍ଚି ସ୍ୱସ୍ତିର ନିଶ୍ୱାସ ନେଲେ ସେମାନେ। ଏବେ କୌଣସି ମତେ ଗାଡ଼ି ଭିତରେ ପଶିଯିବା କଥା। କିନ୍ତୁ ଏ କି ଭିଡ଼! ସୋରିଷ ବୁଣିବାକୁ ଜାଗା ନାହିଁ।

ଅନିରୁଦ୍ଧ ଶ୍ରଦ୍ଧାଙ୍କ ହାତ ଧରି ଗୋଟାଏ କମ୍ପାର୍ଟମେଣ୍ଟ ଭିତରକୁ ପଶିଗଲା। ଯେମିତି ହେଉ ଜାଗା କରି ମା'ଙ୍କୁ ଟିକିଏ ବସେଇବାକୁ ହେବ। ଶ୍ରଦ୍ଧାଙ୍କ ଆଖି ଦେଖି ସେ ବୁଝି ପାରୁଥିଲା ଯେ ହଠାତ୍ କରି ଏତେ ସବୁ ଘଟଣା ମା'ଙ୍କୁ ଅସୁସ୍ଥ କରିଦେଇଛି। କିନ୍ତୁ କ'ଣ ବା ସେ କରିପାରିବ? ହାତରେ ଥିବା ବଡ଼ ବ୍ୟାଗ୍‌ଟିକୁ ଅନୁପମା ପାଖରେ ରଖିଦେଲା ଅନିରୁଦ୍ଧ। କହିଲା, ''ମୁଁ ଆଗ ମା'ଙ୍କୁ ବସେଇ ଦେଇ ଆସେ। ତୁ ଚେଷ୍ଟା କରି ବ୍ୟାଗ୍‌ଟାକୁ ନେଇ ବସ କୋଉଠି ହେଲେ।''

ବ୍ୟାଗ୍ ଭିତରେ ଅସଜଡ଼ା ହୋଇ ଖୁନ୍ଦା ହୋଇଛି କେତେ ଜିନିଷ। ଘରୁ ବାହାରି ଆସିବା ବେଳେ ଯିଏ ଯାହା ପାରିଲା, ତାକୁ ପୂରେଇ ଦେଇଛି। କେଉଁଟା ମୂଲ୍ୟବାନ, କେଉଁଟା ବା ମୂଲ୍ୟହୀନ - ସେସବୁ ଭାବି ଦେଖିବାକୁ କାହାର ସମୟ ବା ମନର ଅବସ୍ଥା ନ ଥିଲା। ତା'ରି ଭିତରେ ରହିଛି ଶ୍ରଦ୍ଧାଙ୍କର ଠାକୁର ବ୍ୟାଗ୍ ଆଉ ଗହଣା ବାକ୍ସ। ଅନୁପମାର କବିତା ଖାତା। ଅନିରୁଦ୍ଧ କ'ଣ ଭର୍ତ୍ତି କରିଛି କିଏ ଜାଣେ?

ଓଜନିଆ ବ୍ୟାଗ୍‌ଟିକୁ ଲୋକ ଭିଡ଼ ଦେଇ ଭିତରକୁ ଟାଣି ନେଇ ପାରୁ ନ ଥିଲା ଅନୁପମା।

ସଫିକ୍ ଧାଇଁ ଆସି ଉଠେଇ ନେଲା ବ୍ୟାଗ୍‌ଟାକୁ। ''ମତେ ଦେ, ଅନି।''

''ତୁମେ କାହିଁକି ଡବା ଭିତରକୁ ପଶି ଆସିଲ, ସଫିକ୍ ଦାଦା? ଗାଡ଼ି ଯେ କୌଣସି ମୁହୂର୍ତ୍ତରେ ଛାଡ଼ି ଦେବ।''

"ଛାଡ଼ି ଦେଲେ ମୁଁ ଟଟ୍ କରି ଓହ୍ଲେଇ ଯିବିନି ? ତୁ ଆଗ କେଉଁଠି ହେଲେ ଜାଗା କରି ବସ ତା ... ଏଇଠି ଏଇ ଝର୍କା ପାଖରେ ବସିଯା । ... ବୌଦି, ଟିକିଏ ଜାଗା ଦିଅନ୍ତୁ ମୋ ସାନ ଭଉଣୀକୁ ।" ମୁଣ୍ଡରେ ଓଢ଼ଣା ଟାଣି ବସିଥିବା କମ୍ ବୟସର ଜଣେ ବୋହୂଙ୍କୁ ଅନୁରୋଧ କରି ଅନୁପମା ପାଇଁ ଜାଗା କରିଦେଲା ସଫିକ୍ ।

ଆଖି ବୁଲେଇ ନିଜ ଚାରିପଟ ଦେଖିନେଲା ଅନୁପମା । ଓଃ, କି ଭିଡ଼ । ଏ ଭିଡ଼ ଭିତରେ ସେ କୋଉଠି ଖୋଜିବ ତା' ମା' ଓ ଦାଦାଙ୍କୁ ? ପର ମୁହୂର୍ତ୍ତରେ ନିଜକୁ ବୁଝେଇ ଦେଲା ସେ । ଭୟ କ'ଣ ଯେ ? ସମସ୍ତେ ତ ଓହ୍ଲେଇବେ ସେଇ ଏକା ଜାଗାରେ । ସିଆଲ୍‌ଦା ଷ୍ଟେସନ୍ ।

"ତୁମେ ଏଥର ଓହ୍ଲେଇ ଯାଅ, ସଫିକ୍ ଦାଦା ।"

କିଛି ନ କହି ବ୍ୟାଗ୍‌ଟିକୁ ଅନୁପମା ଗୋଡ଼ ପାଖରେ ରଖି ସଫିକ୍ ଡବାରୁ ଓହ୍ଲେଇ ଗଲା । କିନ୍ତୁ ଷ୍ଟେସନ୍‌ରୁ ବାହାରି ଚାଲିଗଲା ନାହିଁ । ଚୁପ୍‌ଚାପ୍ ଆସି ଅନୁପମା ବସିଥିବା ଝର୍କା ସେପାଖରେ ଠିଆ ହେଲା ସେ । କ'ଣ ଯେମିତି ପଚାରିବ ପଚାରିବ ହେଉଛି, କିନ୍ତୁ ପାଟିରୁ ଭାଷା ହଜି ଯାଇଛି ତା'ର ।

ତାକୁ ଦେଖି ଅନୁପମାକୁ ହଠାତ୍ କାହିଁକି ଭାରି କାନ୍ଦ ଲାଗିଲା । ସମସ୍ତଙ୍କୁ ଛାଡ଼ି ଚାଲି ଯିବାକୁ ହେବ ? ଆବିଦ୍ ଚାଚା, ସଲ୍‌ମା ଚାଚୀ - ଏ ସମସ୍ତଙ୍କୁ ? ଜଳି ଯାଉଥିଲା ତା' ଆଖି । ପତା ସେପାଖରେ ଲୁହମାନେ ଭିଡ଼ ଜମେଇ ସାରିଥିଲେ । ହେଲେ ସେ ଆଖିରୁ ଲୁହ ବୋହି ଯିବାକୁ ଦେଲା ନାହିଁ । କାନ୍ଦିବା ପାଇଁ, ପଛ କଥା ମନେ ପକାଇ ଝୁରି ହେବା ପାଇଁ ପରେ ବହୁତ ବେଳ ମିଳିବ । ସେ ମନରେ ଜୋର୍ ଆଣିଲା ।

ସେଇମିତି ଏକା ଭାବରେ ଠିଆ ହୋଇ ରହିଥିଲା ସଫିକ୍ ।

"ଅନି..."

"କ'ଣ, ସଫିକ୍ ଦାଦା ?"

"... ନା ... କିଛି ନୁହଁ ... ଭଲରେ ଥିବୁ ।"

ହଠାତ୍ ଯେମିତି ସଫିକ୍ ମନ ତଳର ପ୍ରଶ୍ନ ପଢ଼ି ନେଲା ଅନୁପମା । କହିଲା, "ଦିଦି ଏବେ କଲିକତାରେ ଅଛି, ସଫିକ୍ ଦାଦା ।"

ସଫିକ୍ ଜାଣେ ଏକଥା । ତା' ମାଉସୀ ମୁହଁରୁ ଶୁଣିଛି । ହେଲେ ଅନୁପମା

ମୁହଁରୁ ଏକଥା ଶୁଣି ତାକୁ ବଡ଼ ନିଶ୍ଚିନ୍ତ ଲାଗିଲା । ଯେତେ ଯାହା ହେଲେ ତା' ଅର୍ଚ୍ଚନାର ଭଉଣୀ ତ !

ତା' ଅର୍ଚ୍ଚନା ?? ନା, ଆଉ ସେ ସେମିତି ଭାବିବନି । ଅର୍ଚ୍ଚନା । କେବଳ ଅର୍ଚ୍ଚନା । ଧୀରେ ଧୀରେ ସଫିକ୍ ପଚାରିଲା, ''ଭଲ ଅଛି ଅର୍ଚ୍ଚନା ?''

''ଭଲ ଆଉ କ'ଣ ? ସେଇମିତି । ଆଜିକାଲି ଖଦଡ଼ ପିନ୍ଧି, ସୂତା କାଟି ଦିନ କଟି ଯାଉଛି ତା'ର ।''

ଏକଥା ବି ଶୁଣିଛି ସଫିକ୍ ତା' ମାଉସୀଠୁଁ । ସଲମା ମୁହଁ ଶୁଖେଇ ଦିନେ ତାକୁ କହିଥିଲେ, ''କ'ଣ ହେଲା କେଜାଣି ଏଇ ଆମ ଅର୍ଚ୍ଚନାଟାର । କାହିଁକି ଏମତି ସନ୍ୟାସିନୀ ଭଳି ହୋଇଗଲା ? ଶ୍ରଦ୍ଧା ଦିଦି କହୁଥିଲେ ସେ ବାହାହେବାକୁ ରାଜି ହେଉନି । ଏତେ ସୁନ୍ଦରୀ ଝିଅ । ସାରା ଜୀବନ ଏକା ରହିଯିବ ?''

ସେଦିନ ସଫିକ୍ ମୁହଁ ଘୂରାଇ ନେଇ ଚାଲି ଯାଇଥିଲା । ଆଖିରେ ଫୁଟି ଉଠିଥିବା ତା' ମନ ତଳର ଯନ୍ତ୍ରଣା ଆଉ କାହାକୁ ପଢ଼ିବାକୁ ଦେଇ ନ ଥିଲା । ହେଲେ ଷ୍ଟେସନ୍‌ରେ ଅନୁପମାର କଥା ଶୁଣି ସେ ଆଉ ନିଜକୁ ଜମା ସମ୍ଭାଳି ପାରିଲା ନାହିଁ । ତା' ଆଖିରେ ଲୁହ ଭରି ହୋଇଗଲା । ''ଅନି... ଅନି ... ଅର୍ଚ୍ଚନାକୁ କହିବୁ ...''

ହଠାତ୍ ଗାଡ଼ି ଛାଡ଼ିଦେଲା । ଗାଡ଼ି ସାଙ୍ଗରେ ଚାଲିଥିଲା ସଫିକ୍ । ଟ୍ରେନ୍‌ର ଗତି ବଢ଼ୁଛି । ତଥାପି ସଫିକ୍ କିଛି କହୁନି ।

ଅନୁପମା ବିବ୍ରତ ଭାବରେ ପଚାରି ଉଠିଲା, ''ଦିଦିକୁ କ'ଣ କହିବି, ସଫିକ୍ ଦା' ?''

''କହିବୁ ... କହିବୁ ଯେ ...''

ଟ୍ରେନ୍‌ର ଗତି ବଢ଼ିବାକୁ ଲାଗିଲାଣି । ଆଉ ଟ୍ରେନ୍ ସାଙ୍ଗରେ ତାଳ ଦେଇ ଦୌଡ଼ି ପାରୁନି ସଫିକ୍ । ଟ୍ରେନ୍‌ର ଶବ୍ଦ ସାଙ୍ଗରେ ଗୋଳେଇ ହୋଇଯାଇଛି ଯାତ୍ରୀଙ୍କ ପାଟି ତୁଣ୍ଡ ।

''ଅନି...''

''କୁହ ସଫିକ୍ ଦାଦା, କ'ଣ କହିବି ?''

ହଠାତ୍ ପ୍ରବଳ ଗତିରେ ଟ୍ରେନ୍‌ଟି ଧାଇଁବାକୁ ଆରମ୍ଭ କରିଦେଲା । ପ୍ଲାଟ୍‌ଫର୍ମ ଉପରେ ଝୁଣ୍ଟି ପଡ଼ି ସଫିକ୍ ରହିଗଲା କାହିଁ ପଛରେ ।

"ସଫିକ୍ ଦା' ..." ଅନୁପମାର ଡାକ ସଫିକ୍ ପାଖରେ ପହଞ୍ଚି ପାରିଲା ନାହିଁ। ତଥାପି ଭିଜା ଭିଜା ଆଖି ନେଇ ସେ ଚାହିଁ ରହିଥିଲା ବାହାରକୁ।

ସଫିକ୍ କ'ଣ କହିବାକୁ ଯାଉଥିଲା ? କେଉଁ କଥା ଅର୍ଚ୍ଚନାକୁ କହିବାକୁ ସେ ଚାହୁଁଥିଲା ?

ନା। ସେକଥା ଆଉ କୌଣସି ଦିନ ଜାଣି ପାରିବ ନାହିଁ ଅନୁପମା।

କଲିକତାରେ ପହଞ୍ଚି ଅନିରୁଦ୍ଧକୁ ଶେଷରେ ତା' ବୁନୁ ମାମୁ ଘରକୁ ଆସିବାକୁ ହେଲା।

ବିନୟ ପ୍ରତି ଅନିରୁଦ୍ଧର ଯେ ସ୍ନେହ ନ ଥିଲା ତା' ନୁହଁ, କିନ୍ତୁ ପର ହାତ ଟେକାରେ ସାରା ଜୀବନ ଚଳି ଆସିଥିବା ତା'ର ଏକମାତ୍ର ମାମୁଙ୍କୁ ସେ ସମ୍ମାନ ଜମା କରି ପାରି ନ ଥିଲା। ବୋଧହୁଏ ସେଥିପାଇଁ ବାବା ଚାଲିଯିବା ପରେ ସେ ମାମୁଙ୍କ ସାଙ୍ଗରେ କଲିକତା ଯାଇ ତାଙ୍କ ଦୟାରେ ପାଠ ପଢ଼ିବାକୁ ଚାହିଁ ନ ଥିଲା। ଅବଶ୍ୟ ମା' ଓ ଭାଇ ଭଉଣୀଙ୍କ ଚିନ୍ତା ବି ରହିଥିଲା ସେତେବେଳେ ତା' ମୁଣ୍ଡରେ।

ହେଲେ ଏବେ ତ ଉପାୟ ନାହିଁ। ମାମୁଙ୍କ ପାଖକୁ ଆସିବା ଛଡ଼ା ଅନ୍ୟ କିଛି ବାଟ ନାହିଁ। ଏଣେ କପର୍ଦ୍ଦକ ଶୂନ୍ୟ। ତେଣେ ଅସୁସ୍ଥ ମା'। ସାଙ୍ଗରେ ପୁଣି ଅଠର ବର୍ଷର ସାନଭଉଣୀ। ଏମାନଙ୍କୁ ନେଇ ସେ କ'ଣ ରିଫ୍ୟୁଜି କ୍ୟାମ୍ପରେ ଉଠିଥାଆନ୍ତା ନା ଧର୍ମଶାଳାରେ ମୁଣ୍ଡ ଗୁଞ୍ଜି ଥାଆନ୍ତା ? ଅଗତ୍ୟା ମାମୁଙ୍କ ଠିକଣା ଖୋଜି ଖୋଜି ତାଙ୍କରି ଶ୍ୱଶୁର ଘରେ ପହଞ୍ଚିବାକୁ ହେଲା।

କବାଟ ଖୋଲିଥିଲା ଘରର ଚାକର ଜଣେ। ଅନିରୁଦ୍ଧ ଯେ ବିନୟ ବାବୁଙ୍କୁ ଖୋଜୁଛି, ତା' ମଧ୍ୟ ଭଲ କରି ବୁଝି ନେଇ ଥିଲା। କିନ୍ତୁ ସେମାନଙ୍କର ଧୂଳି ଧୂସର ଚେହେରା, ସାଙ୍ଗରେ ଥିବା ପୁରୁଣା ବଡ଼ ବ୍ୟାଗ୍ ଦେଖି କ'ଣ ଭାବିଲା କେଜାଣି ଭିତରକୁ ଯାଇ ଘରର ବଡ଼ କର୍ତ୍ତାଙ୍କୁ ଖବରଟି ଜଣେଇ ଦେଲା। ସରୁ ଅଦି ପଞ୍ଜାବୀ ସାଙ୍ଗରେ ଶାନ୍ତିପୁରୀ ଧୋତି ପିନ୍ଧା ଯେଉଁ ଭଦ୍ରଲୋକ ଭିତରୁ ବାହାରି ଆସିଲେ, ସେ ଯେ ବିନୟର ବଡ଼ ଶଳା ବ୍ରଜେନ୍ଦ୍ର, ସେକଥା

ଅନିରୁଦ୍ଧ କି ଅନୁପମା ଜାଣି ନ ପାରିଲେ ବି ଠିକ୍ ବୁଝି ପାରିଲେ ଶ୍ରଦ୍ଧା। ବିନୟର ବାହାଘର ବେଳେ ସେ ତାଙ୍କୁ ଦେଖିଥିଲେ। ସେତେବେଳେ ସେ ବିନୟ ଶ୍ୱଶୁରଙ୍କ ଡାହାଣ ହାତ ଭଳି ଘୂରି ବୁଲୁଥିଲେ। ବରଯାତ୍ରୀଙ୍କର ଚର୍ଚ୍ଚା କରୁଥିଲେ। କିନ୍ତୁ କେମିତି ଏକ ଅବଜ୍ଞା ଭାବ ସବୁବେଳେ ଖେଳି ବୁଲୁଥିଲା ତାଙ୍କ ମୁହଁରେ, ଯେଉଁଟା କି ଶ୍ରଦ୍ଧା ବା ତାଙ୍କ ସ୍ୱାମୀଙ୍କୁ ସେତେବେଳେ ଜମା ଭଲ ଲାଗି ନ ଥିଲା।

ଏ ସେଇ, ସନ୍ଦେହ ନାହିଁ। ଅବଶ୍ୟ ସେତେବେଳର କୁଞ୍ଚକୁଞ୍ଚିଆ କଳା ବାଳ ଆଉ ନାହିଁ। ଅଧାରୁ ବେଶୀ ଉଠି ଯାଇ ସାରିଛି। ବାକୀ ତକ କଳା ଅଛି, କିନ୍ତୁ ସେତକ ଯେମିତି ଭାବରେ ଚକଚକ କରୁଥିଲା, ସେଥିରୁ ଜଣା ପଡ଼ି ଯାଉଥିଲା ଯେ ବାଳର ରଙ୍ଗତକ ନିହାତି କୃତ୍ରିମ। ବିନୟ ବାହାଘର ବେଳେ ବ୍ରଜେନ୍ଦ୍ରଙ୍କର ପବନରେ ଉଡ଼ିଯିବା ଭଳି ଚେହେରା ଥିଲା। ଏବେ ଅବଶ୍ୟ ତା' ଆଉ ନାହିଁ। ବୟସ ଓ ବିଳାସପୂର୍ଣ୍ଣ ଜୀବନର ଛାପ ମୁହଁରେ, ଦେହରେ ପ୍ରତିଫଳିତ ହେଉଛି ତାଙ୍କର। କିନ୍ତୁ ତାଙ୍କୁ ଚିହ୍ନିବାରେ ଶ୍ରଦ୍ଧାଙ୍କର ତିଳେ ମାତ୍ର ଅସୁବିଧା ହୋଇ ନ ଥିଲା। କାରଣ ବ୍ରଜେନ୍ଦ୍ରଙ୍କ ପାଖରେ ଏବେ ବି ରହିଛି ସେଇ ଔଦ୍ଧତ୍ୟପୂର୍ଣ୍ଣ ଚାଲି ଏବଂ ଓଠର ତାଚ୍ଛଲ୍ୟ କରିବା ଭଳି ବଙ୍କା ହସ ଖଣ୍ଡିକ।

''ଆପଣମାନେ କୋଉଠୁ ଆସିଛନ୍ତି? ରଘୁ କହିଲା ଯେ ବିନୟଙ୍କୁ ଖୋଜୁଛନ୍ତି ବୋଲି...''

ଶ୍ରଦ୍ଧା କିଛି କହିବା ଆଗରୁ ଅନିରୁଦ୍ଧ କହିଲା, ''ମୁଁ ଅନିରୁଦ୍ଧ। ବିନୟ ବାବୁ ମୋ ମାମୁ ହୁଅନ୍ତି। ଆମେ ପାବ୍‌ନାରୁ ଆସିଛୁ।''

''ପାବ୍‌ନାରୁ? ...ଓ, ଶ୍ରଦ୍ଧା ଦିଦି ନା କ'ଣ? କି ଭାଗ୍ୟ! କି ଭାଗ୍ୟ!'' କୃତ୍ରିମ ଆନନ୍ଦରେ ବ୍ରଜେନ୍ଦ୍ର ବିଗଳିତ ହୋଇଗଲେ। ''ଆହା, ଆଜି ଦିନଟି କି ଅପୂର୍ବ! ...ପାଦ ଧୂଳି ଟିକିଏ ଦିଅନ୍ତୁ, ଦିଦି।'' ଶ୍ରଦ୍ଧାଙ୍କ ପାଦରେ ହାତ ନ ଦେଇ ଅଣ୍ଟାଠୁଁ ସାମାନ୍ୟ ବଙ୍କି ଯାଇ ବ୍ରଜେନ୍ଦ୍ର କେବଳ ପ୍ରଣାମ କରିବାର ରୀତିଟିକୁ ଶେଷ କରିଦେଲେ। ''ଆସନ୍ତୁ, ଭିତରକୁ ଆସନ୍ତୁ। ଆରେ ରଘୁ, ବିନୟ ବାବୁଙ୍କ କମରାରେ ଖବର ଦେ ରେ। ଲତା ଦିଦିକୁ କହ ଯେ ତା' ନଣନ୍ଦ ଆସିଛନ୍ତି।''

ଖବର ପାଇ ଭିତରୁ ଧାଇଁ ଆସିଲା ବିନୟ। "ଛୋଟ ଦି'! ସତରେ ଆସିଛୁ ଛୋଟ ଦି'? ଏ କିଏ? ଅନିରୁଦ୍ଧ? ଆଉ ଇଏ? ଇଏ ଆମ ଅନି? ... ଏ କି ଚେହେରା ତୁମମାନଙ୍କର! ଆଗରୁ ଖବର କାହିଁକି ଦେଲନି? ମୁଁ ଆସିଥାଆନ୍ତି ଷ୍ଟେସନ୍। କେତେ ହଇରାଣ ହୋଇଥିବ!" ବିନୟ ଯେମିତି ସବୁ ଅଭିଯୋଗ କରି ପକେଇବ। ସବୁ କହି ଦେବ। ସବୁ ପଚାରି ଦେବ ଏକା ଥରକରେ।

"ଆମକୁ ଯେ ଏମିତି ଭାବରେ ଆସିବାକୁ ହେବ, ତା' କ'ଣ ଆମେ ଜାଣିଥିଲୁ, ମାମୁ?" ଅନିରୁଦ୍ଧ ଶୁଖିଲା ସ୍ୱରରେ କହି ପକେଇଲା।

"ମାନେ?"

"ଆଉ ମାନେ କାହିଁକି ପଚାରୁଛୁ? ଘରଟାଯାକ ଜିନିଷ ଘରେ ପକେଇ ରଖି ପଳାତକ ଆସାମୀ ଭଳି ରାତାରାତି ସେ ଦେଶ ଛାଡ଼ି ଚାଲି ଆସିବାକୁ ହେଲାରେ ବୁନୁ।" ରୁଦ୍ଧ ସ୍ୱରରେ ଶ୍ରଦ୍ଧା କହିଲେ।

"ସବୁ ଛାଡ଼ି ଦେଇ ଆସିବାକୁ ହେଲା??" ବିନୟ ଅବାକ୍। କଲିକତାର ପୂର୍ବ ପଟେ ଏକଦା ପୂର୍ବ ବଙ୍ଗ ଥିବା ଅଞ୍ଚଳରେ କି ଯେ ଅଘଟଣ ସବୁ ଚାଲିଛି, ସେକଥା ତା'ର ଅଜଣା ନ ଥିଲା। କିନ୍ତୁ ଘଟଣା ଯେ ଏତେ ଦୂର ଗୁରୁତର, ତା' ସେ ଅନୁଭବ କରି ନ ଥିଲା। ବୀଭତ୍ସତାର କଳା ବାଦଲ ମୁଣ୍ଡ ଉପରେ କଳା ଛାଇ ନ ଟାଣିବା ପର୍ଯ୍ୟନ୍ତ ମଣିଷ କ'ଣ ତା'ର କାଳିମାକୁ ଅନୁଭବ କରି ପାରେ?

"ଏଇ  ଏଇ ବ୍ୟାଗ୍ ଦେଖୁଛୁ, ବୁନୁ? ଏଇ ଏବେ ଆମର ସର୍ବସ୍ୱ।" ଏତେ ସମୟ ଧରି ଚାପି ରଖିଥିବା ଲୁହଗୁଡ଼ିକ ଶ୍ରଦ୍ଧାଙ୍କ ଦୁଇ ଆଖିରୁ ଝରିବାକୁ ଲାଗିଲା।

"ଛୋଟ ଦି'!" ଧାଇଁ ଆସି ତାଙ୍କୁ ଦୁଇ ହାତରେ ଜାବୁଡ଼ି ଧରିଲା ବିନୟ। "ତୁ ଜିନିଷ ଚାଲିଯିବାର ଶୋକ କରୁଛୁ? ତୁ ଯେ ତୋ ପିଲାଙ୍କୁ ଧରି ସେ ନରକପୁରୀରୁ ଭଲରେ ଭଲରେ ଚାଲି ଆସି ପାରିଲୁ, ସେଥିପାଇଁ ଠାକୁରଙ୍କ ପାଖରେ ହାତ ଯୋଡୁନୁ? ତୋ ପାଇଁ ଜିନିଷ ଏତେ ବଡ଼ ହେଲା?"

"ତା' ନୁହଁରେ, ବୁନୁ। ଜିନିଷ ପାଇଁ ମୋର ଦୁଃଖ ନାହିଁ। ଦୁଃଖ କେବଳ ହଜି ଯାଇଥିବା ଜୀବନ ପାଇଁ। ଯେଉଁ ମାଟିରେ ମୋର ଜନ୍ମରୁ ଏତେ ଗୁଡ଼ାଏ

ବର୍ଷ କଟିଗଲା, ସେଇ ମାଟି ଆଉ ମୋର ହୋଇ ରହିଲା ନାହିଁ। ଆଉ କେବେ ସେଇ ମାଟିରେ ପାଦ ପକେଇ ପାରିବି କି ନାହିଁ କିଏ ଜାଣେ? ଆଉରି ଦୁର୍ଭାଗ୍ୟ ଦେଖ, ମତେ ପୁଣି ଲୁଚି ଲୁଚି ବେଶ ବଦଳାଇ ସେ ଜାଗାରୁ ଚାଲି ଆସିବାକୁ ହେଲା। .. ଏମିତି କାହିଁକି ହେଲା, ବୁନୁ? କାହିଁକି ଏମିତି ସବୁ ବଦଳି ଗଲା?''

ବିନୟ ପାଖରେ ଏହାର ବା କି ଉତ୍ତର ଥିଲା?

ଦୀର୍ଘ ନିଶ୍ୱାସ ନେଇ ସେ କହିଲା, ''ଛାଡ଼୍ ଛୋଟ ଦି', ଯାହା ହେବା କଥା ହୋଇ ଯାଇଛି। ତୁ ଆଉ ମନ ଖରାପ କରନି। ଚାଲ୍, ଗାଧୁଆ ପାଧୁଆ କରି ନେଇ ଆଗ ଖିଆ ପିଆ ଶେଷ କର୍। ବଡ଼ କ୍ଲାନ୍ତ ଦିଶୁଛ ତୁମେମାନେ। ରାତି ଯାକ ଶୋଇନ। ଚାଲ ସବୁ କାମ ସାରି ଶୋଇ ପଡ଼ ଟିକିଏ ଟିକିଏ।'' ଏତେ ବେଳକେ ଭଉଣୀଠୁଁ ମୁହଁ ଫେରାଇ ସେ ଭଣଜା ଭାଣିଜୀଙ୍କୁ ଦେଖିଲା।

''ଅନିରୁଦ୍ଧ ତ ସେତେବେଳେ ଯେମିତି ଥିଲା, ସେଇମିତି ଅଛି। ଅଧିକା ଡେଙ୍ଗା ହୋଇନି କି ମୋଟେଇ ବି ବଢ଼ିନି। ଆଉ ଏ ଆମ ଅନି... ଛୋଟ ଦି' ଲୋ, ଏ ତ ପରୀଟିଏ ହୋଇଯାଇଛି ଆମର। ଆଲୋ ମା', ମୋ ପାଖକୁ ଆ।'' ବିନୟ ଅନୁପମାକୁ କୋଳେଇ ନେଲା।

ତା'ରି ଏକମାତ୍ର ଝିଅ ବନାନୀ ବୟସର ଏଇ ଅନୁପମା। ତାକୁ ପାଖରେ ଦେଖି ଝିଅ କଥା ତା'ର ମନେ ପଡ଼ିଗଲା। ସ୍ତ୍ରୀ ଓ ଶ୍ୱଶୁରଘର ଲୋକଙ୍କ ବାଧବାଧକତାରେ ଦେଢ଼ ବର୍ଷ ତଳେ ତାକୁ ବାହା ଦେଇ ଦେବାକୁ ହେଲା। ଏଡ଼ିକି ଚକଟେ ଝିଅ। ଏବେ ବଡ଼ ପରିବାରର ବଡ଼ ବୋହୂ ହୋଇଛି। ମୁଣ୍ଡରେ ହାତେ ଓଢ଼ଣା ଟାଣି ଘୂରି ବୁଲୁଛି। ଶାରୀରିକ ପରିଶ୍ରମ ସିନା ତାକୁ କରିବାକୁ ହେଉନି, ହେଲେ ଘରଟା ଯାକର ଦାୟିତ୍ୱ ନିଜ କାନ୍ଧକୁ ନେବାକୁ ହୋଇଛି। ସେତିକ କ'ଣ ସହଜ କାମ? କ'ଣ ଦରକାର ଥିଲା ଏତେ ଶୀଘ୍ର ତାକୁ ବାହା ଦେଇ ଦେବା? ସେ ଏଇ ଅନି ଭଳି ତାଙ୍କ ଘରେ ମୁକ୍ତ ଭାବରେ ବୁଲୁଥିଲେ କି କ୍ଷତି ହୋଇଯାଇଥାଆନ୍ତା।

''ତୁ କଲେଜରେ ପଢୁଥିଲୁ ନାରେ ମା'?''

''ହଁ ମାମୁ।''

''ଏବେ ଏଇଠି ପଢ଼ିବୁ। ହେଲା? ଏଠି ଆହୁରି ଭଲ କଲେଜ ଅଛି।''

ବିନୟ ଖୁସି ଖୁସି ହୋଇ କହି ପକେଇଲା ।

ଆହୁରି କ'ଣ ସବୁ କହି ଥାଆନ୍ତା, ପଚାରି ଥାଆନ୍ତା, କିନ୍ତୁ ତା' ଆଗରୁ ଆସି ପହଞ୍ଚିଗଲା ତା' ସ୍ତ୍ରୀ ଲତା । ନଇଁ ପଡ଼ି ଶ୍ରଦ୍ଧାଙ୍କୁ ପ୍ରଣାମ କରୁ କରୁ ତା' ବଡ଼ ଭାଇ ଭଳି ମିଠା ସ୍ନେହର ସ୍ୱରରେ କହିଲା, "ଆଜି କି ଭାଗ୍ୟ ଆମର ଛୋଟ ଦି' । ତୁମମାନଙ୍କ ପାଦ ଏଠି ପଡ଼ିଲା । ଅମରେଶ ଓ ଅର୍ଚ୍ଚନାକୁ ଛାଡ଼ିଦେଲେ ଏତେ ବର୍ଷ ଭିତରେ ମୋ ଶ୍ୱଶୁର ଘରୁ କେହି ହେଲେ ଆସି ନାହାନ୍ତି ଏଠିକି । ଅବଶ୍ୟ ଦରକାର ବି ପଡ଼ିନି କାହାର ଯେ ।"

ଲତାର ଶ୍ଳେଷଭରା ଶେଷ କେଇ ପଦ କଥା ଶ୍ରଦ୍ଧାଙ୍କୁ ଛୁଇଁ ପାରିଲା ନାହିଁ । କାରଣ ତା' ମୁହଁରୁ ଅର୍ଚ୍ଚନା ଓ ଅମରେଶ ନାଁ ଶୁଣି ସେ ଅନ୍ୟମନସ୍କ । ଲୋକମାନଙ୍କ ବିଷୟରେ କିଛି ପଚାରିବାକୁ ଯାଉ ଯାଉ ଅନିରୁଦ୍ଧ ଆଗେଇ ଆସି ପ୍ରଣାମ କରି କହିଲା, "କିଛି ଦିନ ଆପଣମାନଙ୍କୁ ହଇରାଣ କରିବୁ, ମାମିମା' । ମୁଁ କାଲି ଯାଇ ମୋ କମ୍ପାନୀର କଲିକତା ଅଫିସ୍‌ରେ ଖୋଜ୍ ନେବି । ସେଇଠି ଚାକିରି ବାକିରି ହେବା ପର୍ଯ୍ୟନ୍ତ ତ ଏଇଠି ପଡ଼ି ରହିବାକୁ ହେବ ।"

"ସେମିତି କାହିଁକି କହୁଛୁ, ଅନିରୁଦ୍ଧ ? ଏଠି ଯେତେ ଦିନ ଇଚ୍ଛା ସେତେ ଦିନ ରୁହ ତୁମେମାନେ । କେତେ ଭାଗ୍ୟ କରିଥିଲି ବୋଲି ତୁମେମାନେ ଏଠି ମୋ ପାଖରେ ଆସି ପହଞ୍ଚିଲ ।" ବିନୟ ଛଳଛଳ ସ୍ୱରରେ କହିପକେଇଲା ।

ଏତେ ସମୟ ଅନୁପମା କେବଳ ତା'ର ମାଈଁଙ୍କୁ ଦେଖୁଥିଲା । ଶ୍ରଦ୍ଧାଙ୍କ ଆଖି ଠାରରେ ଆଗେଇ ଯାଇ ତାଙ୍କ ପାଦରେ ହାତ ଦେଲା ସେ ।

"ଏ ମା', ଏ କିଏ ?"

"ମୁଁ ଅନୁପମା ।"

"ଅନି ? ... ଏ ମା' ! ଛୋଟ ଦି', ଏପର୍ଯ୍ୟନ୍ତ ଅନିର ବାହାଘର ହୋଇନି ? ଆମ ବନାନୀଟା ବାହା ହୋଇ ଏବେ କୋଳରେ ତା'ର ପାଞ୍ଚ ମାସର ଛୁଆ । ସେ ତ ଅନିଠୁଁ ଦୁମା କେଇ ମାସ ବଡ଼ । ନାହିଁ କି ?"

ବିନୟ ବିରକ୍ତିର ସ୍ୱରରେ କହିଲା, "କ'ଣ ଏମିତି ବୟସ ହୋଇଛି ଯେ ଅନିର ? ଆଜିକାଲି କେତେ କେତେ ବୟସରେ ଝିଅଙ୍କ ବାହାଘର ହେଉଛି । ଝିଅମାନେ ପାଠଶାଠ ପଢ଼ି ବିଦେଶ ଗଲେଣି । ଆଉ ତୁମେ ଯେ ରହିଯାଇଛ

ସେଇ ମାନଧାତା ଅମଳରେ ।''

ଅପ୍ରସନ୍ନ ମୁହଁରେ ଲତା ଉତ୍ତର ଦେଲା, ''କେଜାଣି ବାବା। ମୁଁ ଯାହା ଭଲ ବୁଝେ ସେୟା କହିଲି। କିଛି ଧରିବନି, ଛୋଟ ଦି'। ଅର୍ଚ୍ଚନାକୁ ସ୍ୱଦେଶୀ ସନ୍ୟାସିନୀ ବେଶରେ ଦେଖି ମନଟା ଖରାପ ହୋଇ ଯାଇଥିଲା। ସେଥିପାଇଁ ଅନି ବାହାଘର କଥା କହି ଦେଲି। ତେବେ ତୁମେ ଯାହା ଭଲ ବୁଝିବ, ସେୟା କରିବ। ତୁମେମାନେ ଗାଧୁଆ ପାଧୁଆ କର। ମୁଁ ଏଇ ମାତ୍ର ଗାଧୋଇ ଆସିଲି ତ, ଟିକିଏ ଠାକୁରଙ୍କୁ ମୁଣ୍ଡିଆ ମାରି ଦେଇ ଆସେ।''

ଭିତରକୁ ଚାଲିଗଲା ଲତା।

ବିନୟ କୋମଳ ଭାବରେ କହିଲା, ''ଚାଲ, ଛୋଟ ଦି'। ଆସ ବାବା, ଅନିରୁଦ୍ଧ। ଆ ରେ ମା' ଅନି। ଗାଧୁଆ ପାଧୁଆ କରିନିଅ।''

ନିରବ ଭାବରେ ସାନ ଭାଇ ପଛେ ପଛେ ଚାଲିଲେ ଶ୍ରଦ୍ଧା।

ଦୁଇ ପୁଅ ଝିଅଙ୍କୁ ନେଇ ଶ୍ରଦ୍ଧା ଶୋଇ ପଡ଼ିଲେଣି। ସେମାନଙ୍କ ପାଇଁ ବିନୟ ଛାତ ଉପର ଘରଟା ଖୋଲେଇ ଦେଇଥିଲା ରଘୁ ହାତରେ। ଘରଟି ଦୁଇଟି ବର୍ଷ ତଳେ ତିଆରି ହୋଇଛି। ଲୁଗା ବ୍ୟବସାୟ ଆରମ୍ଭ କରିବା ପରେ ବଡ଼ ଶଳା ବ୍ରଜେନ୍ଦ୍ର କୋଠରିଟି ତିଆରି କରେଇଥିଲେ ତାଙ୍କର ବିଦେଶରୁ ଆସୁଥିବା ବଡ଼ ବଡ଼ ଖରିଦଦାରଙ୍କ ପାଇଁ। ସେଥିପାଇଁ କୋଠରି ତିଆରିରେ ସାମାନ୍ୟତମ କାର୍ପଣ୍ୟ କରି ନ ଥିଲେ। କୋଠରିରେ ବଡ଼ ବଡ଼ ଝରକା। ପୂର୍ବ ପାଖର ଝରକା ଖୋଲି ଦେଲେ ଆଖିରେ ପଡ଼େ ନଡ଼ିଆ ବଗିଚା। ଆକାଶ ଛୁଉଁଥିବା ନଡ଼ିଆ ଗଛମାନେ ଏକାଠି ହୋଇ ଯେମିତି ସମ୍ମିଳନୀ ଚଳେଇଛନ୍ତି ସେଠି! ଦକ୍ଷିଣ ପଟ ଝରକା ଖୋଲି ଦେଲେ ଦୃଷ୍ଟି ପଡ଼େ ବିରାଟ ପୋଖରୀ ଉପରେ। ପୋଖରୀ ଚାରି ଧାରରେ କଳା ମୁଗୁନି ପଥରର ବନ୍ଧ। ହାତକୁ ପଇସା ଆସିବା ପରେ ବ୍ରଜେନ୍ଦ୍ରଙ୍କର ବାପା ନିଜେ ଠିଆ ହୋଇ ପୋଖରୀଟି ଖୋଳେଇ ଥିଲେ। ନିଜେ ମାଛର ଜାଆଁଳ ଛାଡ଼ିଥିଲେ। ପୋଖରୀ ଚାରି ଧାରରେ ଫୁଲ ଗଛ ଲଗାଇଥିଲେ।

ତାଙ୍କ ଅନ୍ତେ ତାଙ୍କ ପୁଅମାନେ ପୋଖରୀର ଯତ୍ନ ନେଇଛନ୍ତି ଆଗ ଭଳି। ଏବେ ତା' ଚାରି ପାଖର ଫୁଲ ଗଛରେ ବିଭିନ୍ନ ଫୁଲର ସମ୍ଭାର। କେତେ

ରକମର ଚଢ଼େଇଙ୍କ କାକଳୀରେ ମୁଖରିତ ସେ ଅଞ୍ଚଳ।

ବ୍ରଜେନ୍ଦ୍ରଙ୍କର ସମ୍ପୂର୍ଣ୍ଣ ବସ୍ତୁବାଦୀ ଖରିଦ୍‌ଦାରମାନେ ମଧ୍ୟ ଅଭିଭୂତ ହୋଇ ଯାଆନ୍ତି। ପ୍ରାକୃତିକ ସୌନ୍ଦର୍ଯ୍ୟରେ ହଜି ଯାଆନ୍ତି।

ଆଉ ଶ୍ରଦ୍ଧା ତ ପ୍ରକୃତି ପାଇଁ ପାଗଳ। ତେଣୁ ଲତାର ମୁହଁ ମୋଡ଼ା ସତ୍ତ୍ୱେ, ବଡ଼ ଶଳାଙ୍କ ଭୃକୁଟୀ ସତ୍ତ୍ୱେ ବିନୟ ସେମାନଙ୍କର ରହିବା ବ୍ୟବସ୍ଥା ସେଇ ଘରେ କରିଥିଲା।

ଶ୍ରଦ୍ଧା ଗାଧୁଆ ପାଧୁଆ ସାରି ଖାଇ ନେବା ପରେ ଆଉ ପାରି ନ ଥିଲେ। ମନ ହେଉଥିଲା ସାନ ଭାଇ ପାଖରେ ବସି ବହୁତ ଗପିବେ। ଅମରେଶ, ଅର୍ଚ୍ଚନା ଖବର ପଚାରି ବୁଝିବେ। ସେମାନଙ୍କୁ ଖବର ପଠେଇବା କଥା କହିବେ। କିନ୍ତୁ ସେ କିଛି କରି ପାରିଲେ ନାହିଁ। ପ୍ରାୟ ଅଜ୍ଞାନ ହୋଇ ପଡ଼ିବା ଭଳି ସେ ଅନିରୁଦ୍ଧ ଓ ଅନୁପମାଙ୍କ ପାଖରେ ଶୋଇ ପଡ଼ିଲେ।

ଛାତ କୋଠରିର କବାଟଟି ଆଉଜେଇ ଦେଇ ବିନୟ ତଳକୁ ନିଜ କୋଠରିକୁ ଚାଲି ଆସିଲା। ସେଇଠି ବଡ଼ ଆଇନା ସାମ୍ନାରେ ବସି ମୁଣ୍ଡ କୁଣ୍ଡାଉଥିଲା ଲତା। ଠିକ୍ କୁଣ୍ଡାଉଥିଲା ବୋଲି କହି ହେବନି। ତେବେ ବାଳରେ ପାନିଆ ଚଳାଉଥିଲା। ଆଉ ପାନିଆରେ ମୁଣ୍ଡରୁ ବାହାରି ଆସୁଥିବା ପୁଳା ପୁଳା ବାଳ ଦେଖି ଛାତି ଫାଟି ଯାଉଥିଲା ତା'ର। ବାଳ ତ ପାଚି ସାରିଥିଲା ସେଇ କେବେଠୁଁ। କୌଣସି ମତେ କଲପ ଲଗାଇ କଳା କରି ରଖି ପାରିଥିଲା ସେ। ଏବେ ବାଳତକ ଉଠିଗଲେ, ସେ କରିବ କ'ଣ? ଶେଷରେ କ'ଣ ଫଲ୍‌ସ ବାଳ ଲଗେଇବାକୁ ହେବ?

ଛି! ଫଲ୍‌ସ ବାଳ ଲଗେଇବା ମାନେ ଲୋକହସା ହେବା କଥା। ଯିଏ ଲଗାଏ, ଜଣା ପଡ଼ିଯାଏ ଯେ ବାଳ ଅସଲ ନୁହଁ, ନକଲି। ଏଇମିତି ନକଲି ବାଳଲଗା ଲୋକଙ୍କୁ ଥଟ୍ଟା କରି ହସି ହସି ଗଡ଼ି ଯାଇଛି ଲତା, ଏବେ ତାକୁ ପୁଣି ଦେଖି ଅନ୍ୟମାନେ ଥଟ୍ଟା କରିବେ? ଛି ଛି।

ଚଉଡ଼ା ସୁନ୍ଦାକୁ ଲୁଚେଇ ଲୁଚେଇ ଲତା ବାକୀତକ ବାଳ ଟାଣି ନେଇ ମୁଣ୍ଡରେ ଖୋସାଟାଏ କରିବାର ଚେଷ୍ଟାରେ ଥିଲା। କିନ୍ତୁ ହେଉଛି କେଉଁଠି? ଏଇ ସୁଉକି ମାପର ଖୋସା କରି ନଣନ୍ଦ ଓ ଭାଣିଜୀ ସାମ୍ନାକୁ ଗଲେ, ତା'ର ମହତ ରହିବ? ନଣନ୍ଦଟି ବଡ଼। ତା' ବରର ବଡ଼ ଭଉଣୀ। ବିଧବା

ଲୋକ। ସେଥିରେ ପୁଣି ଯାବତୀୟ ପରିଶ୍ରମ କରିବାକୁ ହୁଏ। ଦେହ, ହାତ, ବାଳରେ ଯତ୍ନ ନେବାର ସମୟ ନାହିଁ ତାଙ୍କ ପାଖରେ। ଅଥଚ ଦେଖୁଛ, ଏବେ ବି ମୁଣ୍ଡରେ କିଟିକିଟି କଳା ବାଳ। ଅଣ୍ଟା ତଳକୁ ଲମ୍ବିଛି। ଅନି କଥା ଛାଡ଼। ତା'ର ତ ବୟସ ନିହାତି କମ୍। ସେଇ ବୟସରେ ଲତାର କ'ଣ କମ୍ ବାଳ ଥିଲା କି? ହେଲେ ... ନଣନ୍ଦଙ୍କ ମୁଣ୍ଡରେ ଏ ପର୍ଯ୍ୟନ୍ତ ଏତେ ବାଳ ରହିଛି କେମିତି? ଈର୍ଷାରେ ଲତାର ମନଟା ବିଷାକ୍ତ ହୋଇ ଉଠୁଥିଲା। ଏତେ ସମୟ ବାଳ ଖୋଲା ଥିବା ଅବସ୍ଥାରେ ତାଙ୍କ ସାଙ୍ଗରେ କଥାବାର୍ତ୍ତା କରି ଆସିଲା, ସେଥିପାଇଁ ଚଳିଗଲା। ହେଲେ ବାଳ ବାନ୍ଧି ତାଙ୍କ ସାମ୍ନାରେ ଠିଆ ହୋଇଗଲେ ତାଙ୍କ ନିଜ ବାଳ ସାଙ୍ଗରେ ଲତାର ତୁଳନା ହୋଇଯିବନି? ଆଉ ଛୋଟ ହୋଇ ଯିବନି ଲତା?

ରାଗରେ ପାନିଆ, ଖୋସା ବନ୍ଧା କଳା ସୂତା ଫୋପାଡ଼ି ଦେବାକୁ ଇଚ୍ଛା ହେଉଥିଲା ଲତାର।

ଏବଂ ଠିକ୍ ସେତିକି ବେଳେ ଘର ଭିତରକୁ ପଶି ଆସିଲା ବିନୟ।

''କ'ଣ ଭଉଣୀ ଚର୍ଚ୍ଚା ସରିଲା?'' ଦାନ୍ତ ଚିପି କ୍ରୁଦ୍ଧ ସ୍ୱରରେ ଲତା ପଚାରିଲା। ବାଳର ରାଗତକ ସ୍ୱାମୀ ଉପରେ ସୁଝେଇଲା ସେ।

ବିନୟ ଉତ୍ତର ଦେଲାନି। ଏତେ ବର୍ଷ ଭିତରେ ଲତାର କଟା କଟା କଥା ଶୁଣିବା ତା'ର ଅଭ୍ୟାସରେ ପଡ଼ିଯାଇଛି। ସେ ଶୁଣି ନ ଶୁଣିବା ଭଳି ହୋଇ ରହିଯାଏ। ଆଜି ଏତେ ବର୍ଷ ପରେ ଦିଦିକୁ ଦେଖି ସେ କେମିତି କଥାବାର୍ତ୍ତା କଲା? ଛି। ସେସବୁ କଥା ଯଦି ବିନୟ ସହି ଯାଇ ପାରିଲା, ତେବେ ଚାରି କାନ୍ଥ ଭିତରେ ହେଉଥିବା କଥା ଶୁଣି ସେ ତାତିଯିବ ବା କାହିଁକି?

ସେ ଚୁପ୍‌ଚାପ୍ ଝର୍କା ପାଖରେ ପଡ଼ିଥିବା ବେତ ଚୌକିରେ ଦେହଟାକୁ ଲମ୍ବେଇ ଦେଲା। ପାଖ ଷ୍ଟୁଲ୍ ଉପରେ ଓଲଟା ହୋଇ ରହିଥିବା ବହିଟିକୁ ଟାଣି ଆଣିଲା। କିନ୍ତୁ ଗୋଟାଏ ଶବ୍ଦ ତା' ମୁଣ୍ଡ ଭିତରେ ପଶି ପାରୁ ନ ଥିଲା। ବିବ୍ରତ ଭାବରେ କେବଳ ଗୋଟିଏ କଥା ତୁହାଇ ତୁହାଇ ତା' ମନ ଭିତରେ ଉଠୁଥିଲା। ଲତା ଏମିତି କରେ କାହିଁକି? ସବୁବେଳେ ଏମିତି ବିଷୋଦ୍‌ଗାର କରେ କାହିଁକି?

ଲତା କିନ୍ତୁ ସବୁଦିନେ ଏମିତି ନ ଥିଲା। ନୂଆ ନୂଆ ବାହାଘର ପରେ ଆଉ ପାଞ୍ଚଟା ବୋହୂଙ୍କ ପରି ନରମ କଥା କହୁଥିଲା। ଚୁପି ଚୁପି ହସୁଥିଲା। ବିନୟର ବାଟ ଚାହିଁ ରହୁଥିଲା। ହେଲେ କଲିକତା ଚାଲି ଆସି ତା' ବାପ ଘରେ ରହିଯିବା ପରେ କୁଆଡୁ ଯେ ଏତେ ଅହଙ୍କାର ତା' ଭିତରେ ସୃଷ୍ଟି ହୋଇଗଲା, ବିନୟ ବୁଝି ପାରେନି। ସେତେବେଳେ ବିନୟର ମନର ଅବସ୍ଥା ଅନ୍ୟରକମ। ସେ ଠିକ୍ କରିଛି କି ଭୁଲ କରିଛି, ତା' ଭାବି ନୟାନ୍ତ ହୋଇ ଯାଉଥିଲା। ତା' ଉପରେ ପୁଣି ଏମିତି ହାଡ଼ ଜଳା କଥା।

ବିନୟ ରକ୍ତରେ ନିଆଁ ଲାଗି ଯାଉଥିଲା। ସେ ସହି ପାରୁ ନ ଥିଲା। ଜୁଳି ପଡ଼ି ସେ ସବୁ କଥାର ପାଲଟା ଜବାବ ଦେଉଥିଲା ଏକାଭଳି କଡ଼ା ଭାବରେ। କିନ୍ତୁ ଦିନେ ସେ ବୁଝିଗଲା ଯେ ଏ ବଚସାର କୌଣସି ଅନ୍ତ ନାହିଁ। ଏହା କେବଳ କୁହୁଳି କୁହୁଳି ରହିଥିବା ନିଆଁକୁ ହାଓ୍ବା କରିବା ଭଳି କଥା ହେଉଛି। ଦେଖିବାକୁ ଗଲେ, ଶ୍ୱଶୁର ଘରେ ମାନହାନି ହେଉଛି କେବଳ ତା'ର। ଅନ୍ୟମାନଙ୍କ କଥା ଛାଡ଼ିଦିଅ, ଚାକର ଚାକରାଣୀ ମଧ୍ୟ କେମିତି ତୀର୍ଯ୍ୟକ ଦୃଷ୍ଟିରେ ଦେଖୁଛନ୍ତି ତାକୁ।

ସେଇ ଦିନଠୁ ବିନୟ ନିଜକୁ ନିୟନ୍ତ୍ରଣ କରିବାର ଚେଷ୍ଟା କରିବା ଆରମ୍ଭ କରି ଦେଇଥିଲା। ନିହାତି ରାଗି ନ ଗଲେ ସେ ସ୍ତ୍ରୀ କଥାର ଜବାବ ହିଁ ଦେଉ ନ ଥିଲା।

ଆଜି ଭଳି।

ଲତାର କିନ୍ତୁ କଥା ସରି ନ ଥିଲା। ''ଉପର କୋଠରି ଛଡ଼ା ଆଉ ଏ ଘରେ ଜାଗା ନ ଥିଲା? ସେଇଠି ସେମାନଙ୍କୁ ରଖେଇବା କ'ଣ ଦରକାର ଥିଲା?''

''ସେମାନେ ବଡ଼ କ୍ଲାନ୍ତ, ଲତା। କେତେ କଷ୍ଟ ପାଇ କି ମାନସିକ ଯନ୍ତ୍ରଣା ସହି ଏଠିକି ଆସିଛନ୍ତି କହିଲ। ରୁହନ୍ତୁ ସେଇ କୋଠରିରେ। ଖୋଲା ମେଲାରେ ସେମାନଙ୍କର ମନ ଟିକିଏ ଭଲ ଲାଗିବ।''

''ରିଫ୍ୟୁଜିମାନଙ୍କର ପୁଣି ଭଲ ଲାଗିବା, ମନ୍ଦ ଲାଗିବା!!''

''କ...କ'ଣ କହିଲ!'' ବିନୟ କପାଳର ଶିରା ଟାଣି ହୋଇ ଯାଇଥିଲା।

ଲତା ମୁହଁରେ ଅନୁତାପ ନ ଥିଲା। ଆଗର ରୁକ୍ଷ ସ୍ୱରରେ ସେ କହିଲା,

"ସତ କଥାଟା ହିଁ କହିଲି। ପୂର୍ବବଙ୍ଗ ତ ଆଉ ପୂର୍ବବଙ୍ଗ ହୋଇ ନାହିଁ। ପାକିସ୍ତାନ ହୋଇ ସାରିଛି। ସେଠୁ ପ୍ରତିଦିନ ହଜାର ହଜାର, ଲକ୍ଷ ଲକ୍ଷ ଶରଣାର୍ଥୀ ଆସି ପହଞ୍ଚୁଛନ୍ତି। ସମସ୍ତଙ୍କୁ କ'ଣ ତୁମେ ମୁଣ୍ଡରେ ବସେଇଚ ?"

"ଲତା, ମୋ ନିଜ ଭଉଣୀକୁ ତୁମେ ଶରଣାର୍ଥୀ କହି ପାରିଲ !!"

"ରିଫ୍ୟୁଜି ତ ରିଫ୍ୟୁଜି। ତୁମ ଭଉଣୀ ହେଲେ ବୋଲି କ'ଣ ସେ ଭିନ୍ନ ହୋଇଗଲେ ? .. ଯାହା କୁହ, ଏ 'ସର୍ବହରା ସର୍ବହରା' ଚେହେରାର ମଣିଷମାନଙ୍କୁ ମୁଁ ଜମା ସହିପାରେନି।"

"ଚୁପ୍ କର, ଲତା।" ବିନୟ ଚାପା ସ୍ୱରରେ ଚିତ୍କାର କରି ଉଠିଲା।

ଲତା ଚୁପ୍ ହେଲା ନାହିଁ। ମୁହଁଟାକୁ କେମିତି କରି ନେଇ ସ୍ୱାମୀ କଥା ଆଦୌ ଶୁଣି ନ ଥିବାର ଭଙ୍ଗୀରେ କହିଲା, "ଏବେ ଏଠି କେଡ଼େ ସୁନ୍ଦର ଆସ୍ଥାନ ଜମେଇ ବସିଗଲେ ସେମାନେ ! କେତେ ଦିନ ଯେ ଏଠି ସେମାନଙ୍କର ଗୋଗ୍ରାସ ପଡ଼ିବ, ତା'ର ଠିକ୍ ଠିକଣା ନାହିଁ। ସବୁ ଜାଣି ବି ତୁମେ ସେମାନଙ୍କୁ ଉପର ଘରେ ରଖେଇ ଦେଲ ? ଏତେ ଫୁଟାଣି ବାବା କାହିଁକି !!"

ମୁହଁ ମୋଡ଼ି ନେଇ ଲତା ପୁଣି ଯୋଡ଼ିଲା, "ବଡ଼ ଦା' ନିଶ୍ଚୟ ଖୁବ୍ ବିରକ୍ତ ହୋଇଥିବେ ମନେ ମନେ। ତୁମେ ସମ୍ଭାଳିବ ବାବା ତାଙ୍କୁ।"

ବିନୟ ସିଧା ହୋଇ ବସି ତା' ସ୍ତ୍ରୀ ଲତା ମୁହଁକୁ ଚାହିଁଲା। ସ୍ଥିର ଗଳାରେ କହିଲା, "ମତେ ଯେତେବେଳେ ଏଇଠି ରହିବାକୁ ତୁମ ବାବା ବାଧ କରିଥିଲେ, ସେତେବେଳେ କହିଥିଲେ ଯେ ଏଇଟାକୁ ମୁଁ ଯେମିତି ମୋ ନିଜ ଘର ବୋଲି ଭାବେ। ତୁମର ଚାରି ଦାଦା ସେତେବେଳେ ସେଇ କଥାକୁ ସମର୍ଥନ କରିଥିଲେ। ବଡ଼ ଦାଦା ବି। ... ଏତେ ବର୍ଷ ଭିତରେ ମୁଁ କେବେହେଲେ ମୋ ନିଜର ଇଚ୍ଛା ଏଠି ଆଉ କାହା ଉପରେ ଚାପି ଦେଇନି। ଏଇ ଥରକ ଯଦି ସେମିତି କରିଛି, ତେବେ ମୋର ମନେହୁଏ ସେ ଅଧିକାର ମୋର ଅଛି।"

"ଥାଉ ଥାଉ। ଭାଷଣ ଦେବାକୁ ହେବନି। ଅ-ଧି-କା-ର !! ହୁଁ।" ଆଉ ଥରେ ମୁହଁ ମୋଡ଼ି ଦେଇ ଭ୍ୟାନିଟି ବ୍ୟାଗ୍‌ଟା ହାତରେ ଝୁଲେଇ ବାହାରି ଗଲା ଲତା। ଆଜି ତା'ର ଦୁଇ ଭାଉଜଙ୍କୁ ନେଇ ଗହଣା ଦୋକାନକୁ ଯିବାର ଅଛି। ନୂଆ ଡିଜାଇନ୍‌ର କାନଫୁଲ ଚନ୍ଦ୍ରଙ୍କ ଗହଣା ଦୋକାନକୁ ଆସିଛି ବୋଲି ମଝିଆ ଭାଉଜଙ୍କ ଭଉଣୀ ଗତ କାଲି ଆସି କହି ଯାଇଛନ୍ତି। ତା'ପରେ କି

ନ ଯାଇ ରହି ହୁଏ ? ଗହଣା ଦୋକାନକୁ ଯିବା କଥା କାଲିଠୁ ସ୍ଥିର ହୋଇ ରହିଛି। ଆଜି ବିନୟର ଭଉଣୀ ଆସି ପହଞ୍ଚିଗଲେ ବୋଲି କ'ଣ ସେସବୁ ବନ୍ଦ କରିବାକୁ ହୋଇଥାଆନ୍ତା ନା କ'ଣ ?

ସ୍ୱସ୍ତିର ନିଶ୍ୱାସ ନେଲା ବିନୟ। ଯାଉ ଲତା। ଆଜି ତା'କୁ ଏକା ରହିବାକୁ ଦେଉ।

ଆଜି ଏତେ ବର୍ଷ ପରେ ତାକୁ କେମିତି ପୂରିଲା ପୂରିଲା ଲାଗୁଛି। ବଡ଼ ସନ୍ତୁଷ୍ଟ ଲାଗୁଛି। ନିଜ ଲୋକଙ୍କ ପାଇଁ ଟିକିଏ କିଛି କରି ପାରିଛି ବୋଲି କି ? କେଜାଣି ?

ସାରାଟା ଜୀବନ ଚାଲିଗଲା ବିନୟର। ନିଜ କଥା ଛଡ଼ା ଆଉ କାହା କଥା ଭାବିବାର ପ୍ରୟୋଜନ ସେ ଅନୁଭବ କରିଲା ନାହିଁ। ଯେତେବେଳେ ସେମାନଙ୍କୁ ସେ ଏକାନ୍ତ ଭାବରେ ଖୋଜିଲା, ସେତେବେଳେ ସେ ଆବିଷ୍କାର କଲା ଯେ ସେ ତା' ନିଜ ମା', ଭଉଣୀ, ଭଣଜା ଭାଣିଜୀ - ସମସ୍ତଙ୍କ ପାଇଁ ବାହାରର ମଣିଷ ହୋଇ ସାରିଛି। କେହି ତାକୁ ଦୁଇ ହାତ ବଢ଼େଇ ଟାଣି ନେବାକୁ ପ୍ରସ୍ତୁତ ନୁହନ୍ତି। କେହି ସାହାଯ୍ୟ ପାଇଁ ହାତ ପତେଇବାକୁ ପ୍ରସ୍ତୁତ ନୁହନ୍ତି। ସେ ଏକଘରିକିଆ ହୋଇ ସାରିଛି।

ଏ ଆବିଷ୍କାରର ଦୁଃଖ ବିନୟକୁ ସମ୍ପୂର୍ଣ୍ଣ ଭାବରେ ଦୋହଲାଇ ଦେଇଥିଲା। ସେ ନିଜ ଭିତରେ ଅଧିକରୁ ଅଧିକ ବୁଡ଼ି ରହିବାକୁ ଲାଗିଲା।

କିନ୍ତୁ ଏମିତି ହେଲା କାହିଁକି ? ଏମିତି ହେବା କ'ଣ ନିହାତି ଦରକାର ଥିଲା ?

ନା, ବିନୟ ନିଜ ଛଡ଼ା ଆଉ କାହାକୁ ଆଙ୍ଗୁଠି ଦେଖାଇ ପାରିବନି। ଲତାକୁ ବି ନୁହଁ। କାରଣ ଲତାକୁ ବାହା ହେବାର ପ୍ରସ୍ତାବଟି ଆଗ ଆସିଥିଲା ବିନୟ ପକ୍ଷରୁ ! ବିନୟ ହିଁ ଆବେଗ ନେଇ କହିଥିଲା - ଲତାକୁ ନ ପାଇଲେ ତା' ଜୀବନ ବ୍ୟର୍ଥ ହୋଇଯିବ। ମୂଲ୍ୟହୀନ ହୋଇଯିବ। ସେ ପାଗଳ ହୋଇଯିବ।

ମନ ଭିତରେ କିଭଳି ଏକ ଚମକ ଭାବ ଆସିଲା। ସତରେ ଏଇମିତି କଥା ସବୁ କହିଥିଲା ! ଏତେଟା ଆବେଗ ତା' ଭିତରୁ ସେତେବେଳେ ପ୍ରକାଶ ପାଇଥିଲା ? ତା' ପୁଣି ଏଇ ଲତା ପାଇଁ ?

ନା। ବିନୟ ନିଜ ଭାବନାକୁ ସଂଶୋଧିତ କରି ଦେଲା। ଏଇ ଲତା

ପାଇଁ ନୁହଁ। ଯେଉଁ ଲତା ପାଇଁ ତା'ର ଏ ଭାବନା ଆସିଥିଲା, ସେ ଏଇ ମହିଳାର ଅହଙ୍କାରୀ ଚମଡ଼ା ତଳେ କେଉଁଠି ଲୀନ ହୋଇ ଯାଇ ସାରିଛି।

ସେ ଥିଲା ଅନ୍ୟ ଲତା।

ଲତାର ଉପର ଭାଇ ଶୁଭେନ୍ଦୁ ବିନୟ ସାଙ୍ଗରେ ବି.ଏସ୍‌ସି ପଢୁଥିଲା। ଫିଜିକ୍ସରେ ଟିକିଏ ଦୁର୍ବଳ ଥିଲା ସେ। ତେଣୁ ମଝିରେ ମଝିରେ ତା' ପାଖରୁ ପାଠ ବୁଝିବାକୁ ସେ ହଷ୍ଟେଲ୍‌କୁ ଚାଲି ଆସୁଥିଲା। କିନ୍ତୁ ଛୁଟି ଦିନମାନଙ୍କରେ ତା' ସମ୍ଭବ ହେଉ ନ ଥିଲା। କାରଣ ଛୁଟି ହେବା ମାତ୍ରକେ ହଷ୍ଟେଲ୍‌ରେ ହଇଚଇ ଲାଗି ରହୁଥିଲା। ଗୀତର ଆସର, ତାସ୍‌ର ଆଡ୍ଡା ରୁମ୍‌ମାନଙ୍କରେ ଆରମ୍ଭ ହୋଇ ଯାଉଥିଲା। ତା' ଭିତରେ କ'ଣ ବି.ଏସ୍‌ସି.ର ଫିଜିକ୍ସ ପଢ଼ି ହୁଏ ! ସେଥିପାଇ ସେସବୁ ଦିନମାନଙ୍କରେ ଶୁଭେନ୍ଦୁ ବିନୟକୁ ନିଜ ଘରକୁ ଧରି ଆଣୁଥିଲା।

ବିନୟର ଅରାଜି ହେବାର କୌଣସି କାରଣ ନ ଥିଲା। ଘରଠୁଁ ଏତେ ଦୂରରେ ରହି ଘରର ପରିବେଶଟିଏ ଭାରି ଭଲ ଲାଗୁଥିଲା ତାକୁ। ଆଉ ପୁଣି ହଷ୍ଟେଲ୍‌ର ନିହାତି ବାଜେ ଖାଇବା ଖାଇ ଖାଇ ଥୋବରା ହୋଇ ଯାଇଥିବା ପାଟିରେ ସୁଖାଦ୍ୟ ଟିକିଏ ଯୁଟୁଥିଲା। ଅବଶ୍ୟ ଶୁଭେନ୍ଦୁ ଭରିକା ଖାଣ୍ଟି ପଶ୍ଚିମ ବଙ୍ଗର ମଣିଷ। ସେମାନଙ୍କ ଖାଇବା ତାଙ୍କର ପୂର୍ବବଙ୍ଗର ଖାଇବା ଭଳି ଏତେ ରାଗ ନ ଥିଲା। ସାମାନ୍ୟ ମିଠାଳିଆ ଭାବ ରହୁଥିଲା। ତଥାପି ବିନୟକୁ ଅମୃତ ସମାନ ମନେ ହେଉଥିଲା ସବୁ କିଛି। ଶୁଭେନ୍ଦୁ ମା'ଙ୍କର ପରିଚର୍ଯ୍ୟା ଭାରି ଭଲ ଲାଗୁଥିଲା।

ଖାଲି ଶୁଭେନ୍ଦୁ ମା'ଙ୍କର ? ନା, ତାଙ୍କ ସାଙ୍ଗରେ ଛାଇ ଭଳି ଲାଗି ରହୁଥିବା ଝିଅଟିର ଉପସ୍ଥିତି ବି ବହୁତ ଭଲ ଲାଗୁଥିଲା ତାକୁ।

ବି.ଏସ୍‌ସି. ପାସ୍ ପରେ ଲତାକୁ ବାହା ହେବାର ପ୍ରସ୍ତାବ ଶୁଭେନ୍ଦୁ ସାମ୍ନାରେ ବିନୟ ରଖିଥିଲା। ଆଉ ପ୍ରସ୍ତାବଟି ଶୁଣି ଅବାକ୍ ହୋଇ ଯାଇଥିଲା ଶୁଭେନ୍ଦୁ। କେମିତି ମା' ବାବାଙ୍କ ସାମ୍ନାରେ କଥାଟି କହିବ, ସେ ବୁଝି ପାରି ନ ଥିଲା। ପାତ୍ର ହିସାବରେ ବିନୟର ତୁଳନା ହୁଏ ନାହିଁ। ଜାତି, ଗୋତ୍ର, ପରିବାର - କେଉଁଥିରେ ବାରିବାର ନାହିଁ। ତେବେ ଅସୁବିଧାଟା ଥିଲା ଗୋଟିଏ। ସେମାନେ ପଶ୍ଚିମବଙ୍ଗର ଲୋକ। ଆଉ ବିନୟ ହେଉଛି ପୂର୍ବବଙ୍ଗର ମଣିଷ। ଯାହାଙ୍କୁ

ସେମାନେ ଉପେକ୍ଷା କରି କହନ୍ତି 'ବାଙ୍ଗାଲ୍'।

'ବାଙ୍ଗାଲ୍' ପିଲାଟି ସାଙ୍ଗରେ ଝିଅର ବାହାଘର ପ୍ରସ୍ତାବଟିକୁ କେମିତି ଭାବରେ ନେବେ ଶୁଭେନ୍ଦୁର ବାବା ?

ତଥାପି ଶୁଭେନ୍ଦୁ ତା' ବାବାଙ୍କୁ ଏ ବିଷୟରେ ଜଣେଇ ଥିଲା। ସେ ରାଜି ହେବାର ଆଶା ନ ଥିଲା। କିନ୍ତୁ ତା' ବାବା କିଛି ଦିନ ଗଭୀର ଭାବରେ ଚିନ୍ତା କରିବା ପରେ ରାଜି ହୋଇ ଯାଇଥିଲେ।

ମା' ବାବାଙ୍କର ଏକମାତ୍ର ଅଲିଅଳୀ ଝିଅ ଲତା। ଚାହିଁଥିଲେ ତା' ବାପା କୋଉ ବଡ଼ଲୋକ ଘରର ଏକମାତ୍ର ପୁଅ ସାଙ୍ଗରେ ତାଙ୍କ ଝିଅର ବାହାଘର କରେଇ ପାରିଥାଆନ୍ତେ। କିନ୍ତୁ ସେ ବାସ୍ତବବାଦୀ ମଣିଷ। ସେ ବୁଝି ଥିଲେ ଯେ ତାଙ୍କର ସାଧାରଣ ଚେହେରାର ଝିଅ ପାଇଁ ବିନା ଯୌତୁକରେ ବଡ଼ ଘରେ ବା ବଡ଼ ଚାକିରି କରୁଥିବା ପାତ୍ର ସାଙ୍ଗରେ ବାହାଘର କରିବା ସମ୍ଭବ ନୁହଁ। ଆଉ ବେଶୀ ଯୌତୁକ ଦେବାର ସାମର୍ଥ୍ୟ ତାଙ୍କର ବା କେଉଁଠି ଥିଲା ? ଏବେ ବିନୟ ଭଳି ପିଲା ଯେତେବେଳେ ନିଜେ ପ୍ରସ୍ତାବ ଦେଉଛି, ରାଜି ନ ହେବାଟା ମୂର୍ଖାମି।

ପାଠ ସାରି ବିନୟ ଚାକିରି ନେଇ ନ ଥିଲା। ତା' ବାପାଙ୍କର ଜମିଜମା ଖବର ବୁଝୁଥିଲା। କିନ୍ତୁ ତାକୁ ମୂର୍ଖ ଚାଷୀ ପର୍ଯ୍ୟାୟରେ ପକାଇ ହେବନି। ମୁଣ୍ଡରେ ତା'ର ଯଥେଷ୍ଟ ବିଦ୍ୟା ବୁଦ୍ଧି। ସେଥିରେ ପୁଣି କାର୍ତ୍ତିକ ଭଳି ଚେହେରା। ଜ୍ୱାଇଁ ହିସାବରେ ଲତା ବାପାଙ୍କର ଆଉ ଅଧିକ କ'ଣ ଦରକାର ଥିଲା ?

ବାସ୍, ବାହାଘର ପାଇଁ ରାଜି ହୋଇ ଯାଇଥିଲେ ସେ।

ହେଲେ କିଛିଟା ଆପତ୍ତି ଉଠିଥିଲା ବିନୟ ମା'ଙ୍କ ଆଡ଼ୁ।

ଏମିତିରେ ଦେଖିଲେ ପୂର୍ବ ଓ ପଶ୍ଚିମବଙ୍ଗର ଲୋକଙ୍କ ଭିତରେ କୌଣସି ବିଶେଷ ଫରକ ନାହିଁ। କିନ୍ତୁ ଫରକ ରହିଯାଇଛି ଲୋକଙ୍କ ମନରେ। ଦୁଇ ପଟୁ ତାଚ୍ଛଲ୍ୟ ଝରି ପଡ଼େ କଥାରେ କଥାରେ। ନିଜର ଶ୍ରେଷ୍ଠତ୍ୱ ଜାହିର କରିବା ପାଇଁ ଅନ୍ୟ ପଟର ଲୋକଙ୍କୁ କ୍ଷୁଦ୍ର କରି ଦେଖାନ୍ତି ସେମାନେ। ପୂର୍ବବଙ୍ଗ ଲୋକଙ୍କୁ ପଶ୍ଚିମବଙ୍ଗର ଲୋକେ ହତାଦର କରି କହନ୍ତି 'ବାଙ୍ଗାଲ୍' ଆଉ ପଶ୍ଚିମବଙ୍ଗର ଲୋକଙ୍କୁ ପୂର୍ବ ପଟର ଲୋକେ ଅବଜ୍ଞାରେ କହନ୍ତି 'ଘଟି'।

ଏବେ ଗୋଟାଏ 'ଘଟି' ପରିବାର ସହିତ ବାହାଘରର ସମ୍ବନ୍ଧ କରିବାକୁ

ହେବ ବିନୟ ମା'ଙ୍କୁ ? ପାଖ ପଡ଼ିଶା ହରେକ ରକମ କଥା କହିବେ। ମୁହଁ ବଙ୍କେଇ ବଙ୍କେଇ ହସିବେ। ସେମାନଙ୍କୁ ଯଦିବା ସେ ବେଖାତିର କରି ଦେଇ ପାରିବେ, କେମିତି ବୁଝେଇବେ ନିଜ ମନକୁ ?

ବିନୟ ମା' ମୁହଁ ଭାରୀ କରି ରହିଥିଲେ ବେଶ୍ କିଛି ଦିନ। ନିଜର ଏକମାତ୍ର ପୁଅ ପାଇଁ କଲିକତି ବୋହୂ ଆଣିବା କଥା ତାଙ୍କୁ ଜମା ଭଲ ଲାଗି ନ ଥିଲା।

କିନ୍ତୁ ଦିନେ ରାଜି ହେବାକୁ ପଡ଼ିଲା। ପୁଅର ଯେତେବେଳେ ଏତେ ଆଗ୍ରହ, ସେ ନିଷେଧାଜ୍ଞା ଜାରି କରି ରହିଥାଆନ୍ତେ କେମିତି ?

ଶେଷରେ ବାହାଘର ହୋଇ ଯାଇଥିଲା।

ବାହାଘର ପରେ ଲତାକୁ ଗାଁରେ ଆସି ରହିବାକୁ ହୋଇଥିଲା। କଲିକତାର ସ୍ୱାଚ୍ଛନ୍ଦ୍ୟ ଭିତରେ ମଣିଷ ହୋଇଥିବା ଝିଅଟିଏକୁ ଯେ ଗାଁରେ ଚଳିବା ପାଇଁ ନୂଆ ନୂଆ ଅସୁବିଧା ହେବ, ତା' ତ ଜଣାଶୁଣା କଥା। ବିନୟ କ'ଣ ଇଚ୍ଛା କରିଥିଲେ ସ୍ତ୍ରୀକୁ ବୁଝେଇ ସ୍ନେହ, ପ୍ରେମରେ ଭସେଇ ଦେଇ ସେଇ ଗାଁ ପ୍ରତି ତା'ର ଆକର୍ଷଣ ସୃଷ୍ଟି କରେଇ ପାରି ନ ଥାଆନ୍ତା ? କିନ୍ତୁ ସେ ସେମିତି କଲା ନାହିଁ। ସ୍ତ୍ରୀର ଦୃଷ୍ଟିରେ ଗାଁକୁ ଦେଖିବାକୁ ଲାଗିଲା। ଗାଁ ପ୍ରତି, ଗାଁର କାଦୁଅ ପ୍ରତି, ଜମିଜମା ପ୍ରତି କେମିତି ଗୋଟାଏ ବିତୃଷ୍ଣା ଆସିବାକୁ ଲାଗିଲା ତା'ର।

ଲତାର ଜନ୍ମ ସାଧାରଣ ଚାକିରିଆ ମଧ୍ୟବିତ୍ତ ପରିବାରରେ। ଚାରି ଭାଇରେ ଗୋଟିଏ ବୋଲି ସାନ ଭଉଣୀ ବୋଲି ଟିକିଏ ବେଶୀ ଗେହ୍ଲାରେ ବଢ଼ିଥିଲା। କିନ୍ତୁ ତା' ମାନେ ନୁହଁ ଯେ ସୁନାର ଦୋଳିରେ ଝୁଲିଥିଲା। ରୂପା ଗିନାରେ ମୁହଁ ଧୋଇଥିଲା। ଘରେ ବାସନ ମାଜିବାକୁ, ଲୁଗା କାଚିବାକୁ, ମସଲା ମସଲି ବାଟି ଦେବାକୁ ଠିକା ଚାକରାଣୀଟିଏ ଆସୁଥିଲା, କିନ୍ତୁ ବାକୀ ସବୁ କାମ ଲତାର ମା' କରୁଥିଲେ। ଆଉ ବଡ଼ ହେବା ପରେ ଲତା ତା' ମା'ଙ୍କୁ ରୋଷେଇବାସରେ ସାହାଯ୍ୟ କରିବା ଆରମ୍ଭ କରି ଦେଇଥିଲା।

ଲତା ପାଠ ପଢ଼ି ନ ଥିଲା। ସେତେବେଳେ ଝିଅଟିଏ ସ୍କୁଲ ଯାଇ ଭାଇମାନଙ୍କ ଭଳି ବହି ଖାତା ଚଷିବା କଥା କେହି ଭାବି ପାରି ନ ଥିଲେ। ଝିଅକୁ ମୁଣ୍ଡରେ ବସାଉଥିବା ମା' ବାପା ମଧ୍ୟ ନୁହଁ। ସେତେବେଳେ ଲତାର ଲେଖି ପଢ଼ି ନ

ଜାଣିଥିବା ବିଷୟକୁ ଜମା ବଡ଼ କରି ଭାବିନି ବିନୟ। କିନ୍ତୁ ପରେ, ବହୁତ ପରେ ଶ୍ୱଶୁର ଘରେ ଆସି ରହିଯିବାର ବେଶ୍ କିଛି ଦିନ ପରେ ଝାପ୍‌ସା ଭାବରେ ତା' ମନରେ ପ୍ରଶ୍ନଟିଏ ଉଙ୍କି ମାରିଥିଲା। ସେତେବେଳେ ତା' ମନରେ ଉଠିଥିଲା ଯେ ଲତା ଯଦି ଶିକ୍ଷିତା ଝିଅଟିଏ ହୋଇଥାଆନ୍ତା, ତେବେ କ'ଣ ସେ ନିଜ ଆଖିରେ ସ୍ୱାମୀର ଏଭଳି ଅପମାନ ଦେଖି ସହି ପାରିଥାଆନ୍ତା! ଅନ୍ଧ ଭାବରେ ବାପଘରର ଲୋକଙ୍କୁ ସମର୍ଥନ କରି ସେ ନିଜେ କ'ଣ ସ୍ୱାମୀକୁ ଏଭଳି ଅପମାନ କରି ପାରିଥାଆନ୍ତା!

କିଏ ଜାଣେ ?

କିନ୍ତୁ ଏସବୁ ଭାବନାର ଝଲକ ସେମାନଙ୍କ ବାହାଘର ବେଳେ ବିନୟ ମନରେ ଜମା ଉଠି ନ ଥିଲା! ସେତେବେଳେ ଯେଉଁ ସ୍ୱପ୍ନଭରା ଆଖି ନେଇ ସେ ପୃଥିବୀକୁ ଦେଖୁଥିଲା, ସେଥିରେ ଏଭଳି ସମ୍ଭାବନା ବିଷୟରେ ସେ ଭୁଲରେ ବି ଭାବି ପାରି ନ ଥିଲା।

ଲତା ସାଙ୍ଗରେ ବିନୟର ବାହାଘର ହୋଇଯିବା ପରେ ଲତାର ବାବା ନୂଆ ନୂଆ କଥା ଚିନ୍ତା କରିବା ଆରମ୍ଭ କରି ଦେଲେ। ଦିନେ ସରକାରୀ ଚାକିରିରୁ ଇସ୍ତଫା ଦେଇ ସେ ବ୍ୟବସାୟ କରିବାକୁ ଡେଇଁ ପଡ଼ିଲେ। ସେତେବେଳେ କେତେ କିଏ ସାବଧାନ କରେଇ ଦେଇଥିଲେ। ବ୍ରାହ୍ମଣ ହାତରେ ଯେ ବ୍ୟବସାୟ ହେବା ସହଜ ନୁହଁ, ସେକଥା ବି କହିଥିଲେ। କିନ୍ତୁ ଲତାର ବାବା କାହା କଥା ଶୁଣି ନ ଥିଲେ। ନିଜର ସାମାନ୍ୟ ପୁଞ୍ଜି ଦେଇ ସେ ବ୍ୟବସାୟ ଆରମ୍ଭ କରି ଦେଇଥିଲେ। ଛୋଟ କାଟର ବ୍ୟବସାୟ। ତଥାପି ମନ ପ୍ରାଣ ଢ଼ାଳି ଦେଇଥିଲେ ସେ।

ପ୍ରଥମ ମାସଠୁ ହିଁ ବ୍ୟବସାୟରେ ଲାଭ ହୋଇଥିଲା। ବେଶୀ ନ ହେଲେ ମଧ୍ୟ ଚାକିରିରେ ଯାହା ଦରମା ମିଳୁଥିଲା, ସେତିକି ହାତକୁ ଆସି ଯାଉଥିଲା ସ୍ୱଚ୍ଛନ୍ଦରେ। କିନ୍ତୁ ହଠାତ୍ କ'ଣ ଯେ ହେଲା, ହୁ ହୁ ହୋଇ ବଢ଼ିବାକୁ ଲାଗିଲା ତାଙ୍କର ବ୍ୟବସାୟ। ଏକା ଏକା ଚଳାଇବା ଆଉ ସମ୍ଭବପର ହୋଇ ନ ଥିଲା ତାଙ୍କ ପକ୍ଷରେ। ଲତାର ଚାରି ଦାଦା ବାବାଙ୍କୁ ସାହାଯ୍ୟ କଲେ। କିନ୍ତୁ ବ୍ୟବସାୟର ହିସାବ ସମ୍ଭାଳିବା ସେମାନଙ୍କ ଦେଇ ହୋଇ ନ ଥିଲା। ଅଙ୍କର ବୁଦ୍ଧିଟା ସେତେ ପ୍ରଖର ନ ଥିଲା ସେମାନଙ୍କର, ହିସାବ ଭଳି ଜଟିଳ କାର୍ଯ୍ୟ ସେମାନେ କରିଥାଆନ୍ତେ

କେମିତି ?

ସେତିକି ବେଳେ ଲତାର ବାବା ବିନୟକୁ ଡାକି ବ୍ୟବସାୟରେ ସାହାଯ୍ୟ କରିବା ପାଇଁ ଅନୁରୋଧ କରିଥିଲେ। ବିନୟ ଭଳି ବୁଦ୍ଧିମାନ ପିଲା ପଇସାପତ୍ର ଦିଗଟା ସମ୍ଭାଳିଲେ ସେ ଯେ ନିଶ୍ଚିନ୍ତ ହୋଇ ଯିବେ, ଏଇ କଥା ବାରମ୍ବାର କହିଥିଲେ। ତା'ଛଡ଼ା ଖାତାପତ୍ର ଦେଖୁଥିବା ମଣିଷଟିକୁ ଗୁଡ଼ାଏ ଦରମା ଦେବାକୁ ହେଉଛି। କାହିଁକି ସେତିକ ଟଙ୍କା ଘର ବାହାରକୁ ଚାଲିଯିବ ? ଏବେ ଯଦି ବିନୟ ସେଇ କାମଟି କରିଦିଏ, ତା'ହେଲେ କହିବା ବାହୁଲ୍ୟ, ସେତକ ଟଙ୍କା ତା'ର ହୋଇଯିବ।

ବିନୟ ହାତରେ ଯେ କଞ୍ଚା ପଇସାର ସ୍ତୂପ ଗଦା ହୋଇଯିବ, ତା' ବୋଧହୁଏ ଲତା ବାପାଙ୍କର କହିବାର ଆବଶ୍ୟକତା ନ ଥିଲା। କିନ୍ତୁ ସେ କହିଥିଲେ। ଖୋଲା ଖୋଲି ଭାବରେ କହିଥିଲେ। ବିଳାସପୂର୍ଣ୍ଣ ଜୀବନର ସ୍ୱପ୍ନ ଦେଖାଇଥିଲେ।

ବିନୟ ଭାସି ଯାଇଥିଲା। ହାତ ପାଆନ୍ତାରେ ସ୍ୱର୍ଗପୁରୀ କଲିକତା। ମାଟି କାଦୁଅ ଚକଟାରୁ ମୁକ୍ତି। ଆଉ, କେବେ ସ୍ୱପ୍ନରେ ଭାବି ନ ଥିବା ଅର୍ଥ ସୁଖ। ମଣିଷର ଆଉ ଅଧିକ କ'ଣ ଦରକାର ?

ସେ ଅନ୍ୟମାନଙ୍କର 'ନାହିଁ'କୁ ବେଖାତିର କରିଥିଲା। ଭାବି ନେଇଥିଲା ଯେ ସେମାନେ ଈର୍ଷାରେ ଜଳି ଜଳି ଏଇଭଳି କହୁଛନ୍ତି।

ଖାଲି ସେତିକି ନୁହଁ, ବିନୟ ତା' ମା'ଙ୍କର ଆଖି ଲୁହକୁ ଦେଖି ମଧ ନ ଦେଖିବା ଭଳି ରହି ଯାଇଥିଲା। ବାବା ତ ନ ଥିଲେ ସେତେବେଳକୁ। ସେ ଥିଲେ ବୋଧହୁଏ ଅନ୍ୟ ରକମ ହୋଇଥାଆନ୍ତା। ବାବାଙ୍କୁ ମୁହଁ ଉପରେ ଧଡ଼୍ କରି ସେ କହି ପାରି ନ ଥାଆନ୍ତା - 'ମୁଁ କଲିକତା ଚାଲିଯିବି।'

ହେଲେ ମା'ଙ୍କୁ ଏଇ ତିନି ପଦ କଥା ସିଧା ସଳଖ ଭାବରେ ମୁହଁ ଉପରେ କହିବାକୁ ତାକୁ ଜମା କଷ୍ଟ ହୋଇ ନ ଥିଲା। ମା'ଙ୍କ ଲୁହ ତାକୁ ଦୁର୍ବଳ କରି ଦେଇ ପାରି ନ ଥିଲା। ମା'ମାନେ କଥା କଥାକେ ଲୁହ ଗଡ଼ାନ୍ତି, ପିଲାକୁ ପାଖରୁ ନ ଛାଡ଼ିବାର ଜିଦ କରନ୍ତି। ଏ ଏମିତି କି ନୂଆ କଥା ଯେ ?

ବିନୟ ଲତାକୁ ଧରି କଲିକତା ଚାଲି ଆସିଥିଲା। ତା'ର ଇଚ୍ଛା ଥିଲା

ଯେ କିଛି ଦିନ ଶ୍ୱଶୁର ଘରେ ରହିଯିବା ପରେ ସେ ଭଡ଼ା ଘରଟିଏ ଖୋଜି ଉଠିଯିବ। ଶ୍ୱଶୁରଙ୍କ ବ୍ୟବସାୟ ତ ଦେଖିବ। କିନ୍ତୁ ତା'ରି ଭିତରେ ସେ ଓ ଲତା ଗୋଟାଏ ସ୍ୱତନ୍ତ୍ର ସଂସାର ବସେଇବେ। କେହି ଆଉ କହିବେ ନାହିଁ ଯେ ବିନୟଟା ଘରଜ୍ୱୋଇଁ ହୋଇଗଲା।

କିନ୍ତୁ ଭଡ଼ା ଘର ଖୋଜିବା ପାଇଁ ବିନୟର ସମୟ ହେଉ ନ ଥିଲା।

ସତରେ ସମୟ ନ ଥିଲା ନା ତା' ନିଜ ଭିତରେ ସ୍ପୃହାର ଅଭାବ ଥିଲା ? ଏବେ ଏଇ ପ୍ରଶ୍ନଟା ତା' ମନରେ ବେଳେ ବେଳେ ଉଠେ। କିନ୍ତୁ ସେତେବେଳେ ସେଇ ବିଷୟ ନେଇ ବିନୟ କେବେ ତଳେଇ କରି ଭାବି ନ ଥିଲା। ଭାବିବାକୁ ଚାହିଁ ନ ଥିଲା।

ଶ୍ୱଶୁର ଘରେ ରହୁ ରହୁ ସେଇଥିରେ ଅଭ୍ୟସ୍ତ ହୋଇଗଲା ସେ। ବ୍ୟବସାୟ ବଢ଼ିବା ସାଙ୍ଗେ ସାଙ୍ଗେ ଘରର ଅବସ୍ଥାରେ ପରିବର୍ତ୍ତନ ଆସିଲା। ଚାକର ବାକରଙ୍କ ସଂଖ୍ୟା ବଢ଼ିଲା। ବାହାଘର ଆଗରୁ ମା'ଙ୍କ ସାଙ୍ଗରେ ମିଶି ଘରକାମ କରିଥିବା ଲତା ହଠାତ୍ ଏକ ଭିନ୍ନ ପରିବେଶ ଦେଖିଲା। ଗୋଡ଼ ହାତ ଲମ୍ବେଇ ଗପସପ କରିବାର ପ୍ରବଳ ଅବସର ତାକୁ ମିଳିବାକୁ ଲାଗିଲା। ଚାରି ଦାଦାଙ୍କର ବାହାଘର ହୋଇ ବଡ଼ଲୋକ ଘରୁ ଭାଉଜମାନେ ଆସିବା ପରେ ତା' ଦୃଷ୍ଟିଭଙ୍ଗୀ ଆହୁରି ବଦଳିଗଲା। ନୂଆ କିଣା ହୋଇଥିବା ଗାଡ଼ିରେ ଚଢ଼ି ହାୱା ଖାଇ ଯିବା, ଥିଏଟର୍ ଯିବା, ଶାଢ଼ି ଗହଣା କିଣି ଯିବା - ଏସବୁ ତା'ର ଅଭ୍ୟାସରେ ପଡ଼ିଗଲା। ଲତା ଭାବିନେଲା ଯେ ଜୀବନ ମାନେ ଉପଭୋଗ। ଉପଭୋଗର ବାହାରେ ଯେ କର୍ତ୍ତବ୍ୟ ବୋଲି କିଛି ଅଛି, ତା' ସେ ନିଜ ଅଭିଧାନରୁ ବାହାର କରି ଫୋପାଡ଼ି ଦେଲା।

କିନ୍ତୁ ସତରେ କ'ଣ ସବୁ ଦୋଷ ଲତାର ? ବିନୟର କିଛି ଦୋଷ ନାହିଁ ?

ଅଛି। ଯଥେଷ୍ଟ ଦୋଷ ଅଛି। କିନ୍ତୁ ଏବେ ଆଉ ତା' ନେଇ ମୁଣ୍ଡ ବାଡ଼େଇ ହେଲେ କ'ଣ ହେବ ? ନେଡ଼ି ଗୁଡ଼ ତ କହୁଣୀକୁ ବୋହି ଯାଇ ସାରିଛି।

ଦୀର୍ଘନିଶ୍ୱାସ ନେଲା ବିନୟ। କେତେ ସମୟ ସେ ସେଇମିତି ବସିରହିଥିଲା କେଜାଣି ?

ତା'ର ତପସ୍ୟା ଭାଙ୍ଗିଲା ରଘୁର ପାଦ ଶବ୍ଦରେ। ଚାହା ନେଇ ଆସିଛି।

''ଚାହା ଉପରେ ଦେଇଛ, ରଘୁ ?'' ବିନୟ ଚାହା କପ୍‌ଟିକୁ ଓଠ ପାଖକୁ ନେଉ ନେଉ ପଚାରି ଦେଲା ।

''ନା, ମାନେ... ସେମାନେ ଚାହା ପିଅନ୍ତି କି ନାହିଁ ଜାଣିନି ବଡ଼ ଠାକୁର୍ କହିଲେ ...'' ରଘୁ ଅପ୍ରସ୍ତୁତ ଭାବରେ କହି ପକେଇଲା ।

ବଡ଼ ଠାକୁର୍ ଅର୍ଥାତ୍ ଲତାର ବଡ଼ ଦାଦା । ବିନୟର ବଡ଼ ଶଳା, ଯିଏ ଏବେ ଏ ଘରର ମୁଖ୍ୟ । ବ୍ରଜେନ୍ଦ୍ର ।

ବଡ଼ ଦା' କ'ଣ କହିଲେ, ତା' ଶୁଣିବାକୁ ଅପେକ୍ଷା ନ କରି ନିଜ ଓଠ ପାଖରୁ ଚାହା କପ୍‌ଟା ତଳେଇ ସାମ୍ନା ଟେବୁଲ ଉପରେ ରଖିଦେଲା ବିନୟ । ଗଳାରେ ସାମାନ୍ୟ ଜୋର୍ ଦେଇ ରଘୁକୁ କହିଲା, ''ମୁଁ ଉପରକୁ ଯାଉଛି । ଏକାଠି ସମସ୍ତଙ୍କର ଚାହା ଉପରକୁ ନେଇ ଆସ । ହଁ, ପିଲା ଦିଇଟା ଅଛନ୍ତି । ସେମାନଙ୍କ ପାଇଁ କ'ଣ ଟିକିଏ ଜଳଖିଆ ଆଣିଚ ।''

ରଘୁ ମୁହଁକୁ ନ ଚାହିଁ ବିନୟ ଉପର ଘରକୁ ଚାଲିଗଲା ।

ଶ୍ରଦ୍ଧା ଦକ୍ଷିଣ ପଟ ଝର୍କା ଦେଇ ପୋଖରୀର ପଥର ବନ୍ଧରେ ବସିଥିବା ଚଢ଼େଇମାନଙ୍କୁ ଦେଖୁଥିଲେ । ପୁଣି କେତେବେଳେ ମୁହଁ ଫେରାଇ ଦେଖୁଥିଲେ ଭାଦ୍ରବର ଆକାଶକୁ । ଆଉ କେଇଟା ଦିନ କଥା । ଚାଲିଯିବ ଭାଦ୍ରବ । ଚାହୁଁ ଚାହୁଁ ପୁଣି ପୂଜା ଆସିଯିବ । ସବୁ ମଣିଷର ବହୁ ଆକାଂକ୍ଷିତ ଦୁର୍ଗାପୂଜା । ସ୍ୱାଧୀନ ଭାରତର ପ୍ରଥମ ଦୁର୍ଗାପୂଜା । କିନ୍ତୁ ଏଇ କେଇଟା ମାସ ଭିତରେ ଯେଉଁ ରକ୍ତର ନଈ ବହିଗଲା, ତାକୁ ଦେଖି କ'ଣ ମା' ଦୁର୍ଗତିନାଶିନୀ ସନ୍ତୁଷ୍ଟ ଚିତ୍ତରେ ଧରା ବୁକୁରେ ପାଦ ରଖି ପାରିବେ ?

''ଉଠିଲୁଣି, ଛୋଟ ଦି' ?''

ଭାଇର ସ୍ୱରରେ ବୁଲି ଚାହିଁଲେ । ''ଆ ବୁନୁ । ବସ । ... ଅନି ମା', ଉଠି ଯା' ଏଥର । କେତେ ଆଉ ଶୋଇବୁ । ବାବୁରେ, ଉଠ ।'' ଅନିରୁଦ୍ଧ, ଅନୁପମାଙ୍କୁ ଡାକି ଦେଲେ ସେ ।

''ଥାଉ, ଥାଉ । ଶୋଇବେ ଯଦି ଶୁଅନ୍ତୁ ।''

''ନାଇଁ । ଅବେଳରେ ବେଶୀ ଶୋଇଲେ ପୁଣି ଦେହ ଖରାପ ହୋଇଯିବ । ... ତୁ ଏଇଠି ବସ, ବୁନୁ । ଆସିବା ପରଠୁଁ ତ ତୋ ସାଙ୍ଗରେ କଥାବାର୍ତ୍ତା ହୋଇ ପାରିଲା ନାହିଁ ।''

ବିନୟ ଶାଗୁଆନ୍ କାଠର ଭାରୀ ଚୌକିରେ ବସିଲା।

''ବୁନୁ, ଅମୁକୁ କେମିତି ଟିକିଏ ଖବର ଦିଅନ୍ତୁନି? ଆଠ ବର୍ଷ ହେଲା ପିଲାଟାକୁ ଦେଖିନି। ତାକୁ କହିଦେଲେ ଅର୍ଚ୍ଚନାକୁ ଧରି ଆସିଯାଆନ୍ତା ଏଠିକି?''

ବିନୟର ଇଚ୍ଛା ନ ଥିଲା ଅର୍ଚ୍ଚନା କି ଅମରେଶ କଥା ପକେଇବାକୁ। ସେମାନଙ୍କ ବିଷୟରେ କିଛି କହିବାକୁ। କିନ୍ତୁ ତା' କ'ଣ ହୁଏ? ଛୋଟ ଦି'ର ପେଟର ପିଲା ଦିଇଟା ସେମାନେ। ସେମାନଙ୍କ ଖବରାଖବର ଜାଣିବାକୁ ସେ ଉଦ୍‌ଗ୍ରୀବ ହେବ ନାହିଁ?

ବିନୟର କାହିଁକି ସେ ଜାଗା ଛାଡ଼ି ଚାଲିଯିବାକୁ ଦୁର୍ବାର ଇଚ୍ଛାଟିଏ ମୁଣ୍ଡ ଟେକିଲା।

ଆଜିକାଲି ତା'ର ଏମିତି ହୋଇଛି। କୌଣସି ଅସ୍ୱସ୍ତିକର ପରିବେଶ ଦେଖିଲେ ବା ତା' ସାମ୍ନାରେ କୌଣସି ଜଟିଳ ସମସ୍ୟା ମୁଣ୍ଡ ଟେକିଲେ, ସେସବୁର ମୁଖାମୁଖି ନ ହେଇ ସେ ବାଟ ଭାଙ୍ଗି ଚାଲିଯିବାକୁ ଅଧିକ ପସନ୍ଦ କରୁଛି। ପୃଷ୍ଠଭଙ୍ଗ ଦେଉଛି କାପୁରୁଷଙ୍କ ଭଳି।

ଶ୍ୱଶୁର ଘରେ ଆସି ରହିଯିବା ପରେ ଏତିକି ଅର୍ଜନ କରିଛି ବିନୟ। ସେ ଆନମନା ହୋଇ ପଡୁଥିଲା।

କିନ୍ତୁ ଦୁଇ ପୁଅ ଝିଅଙ୍କ ଖବର ଶୁଣିବା ପାଇଁ ଶ୍ରଦ୍ଧା ତଥାପି ଅପେକ୍ଷା କରି ରହିଛନ୍ତି। ମୁହଁ ହାତ ଧୋଇ ନେଇ ତାଙ୍କ ପାଖରେ ଆସି ଠିଆ ହେଲେଣି ଅନିରୁଦ୍ଧ ଓ ଅନୁପମା। ମାମୁଙ୍କ ମୁହଁ ଉପରେ ସେମାନଙ୍କର ଦୃଷ୍ଟି ନିବଦ୍ଧ ହୋଇ ରହିଛି।

ବିନୟ ମୁହଁରେ ହସ ଫୁଟାଇଲା। ଥଟ୍ଟା କରିବା ସ୍ୱରରେ କହିଲା, ''ଏତେ ବର୍ଷ ପରେ ମୋ ପାଖକୁ ଆସିଲୁ। ମୋ ସାଙ୍ଗରେ ପଦେ ମନ, ପ୍ରାଣର କଥା ନାହିଁ। ଖୋଜା ପଡ଼ିଗଲା ପୁଅ ଝିଅଙ୍କୁ?''

''ନାଇଁରେ ବୁନୁ, ସେକଥା ନୁହଁ। କେବେଠୁଁ ଦେଖିନି ସେମାନଙ୍କୁ। ମୋ ମା' ମନ ଯେ କ'ଣ ହେଉଛି, ତୁ କେମିତି ବୁଝିବୁ? ... ଅର୍ଚ୍ଚନା ଯେତେବେଳେ ଚିଠି ଦେଲା ଯେ ସେ ଅମୁ ପାଖକୁ ଚାଲିଯାଇଛି, ସେତେବେଳେ ବଡ଼ ନିଶ୍ଚିନ୍ତ ଲାଗିଥିଲା ମତେ। ଗୌରୀର ପିଉସୀ ଶାଶୂ ମଣିଷ ଭଲ ହୋଇପାରନ୍ତି, ହେଲେ ଯେତେ ଯାହା ହେଲେ ତ ଅନାତ୍ମୀୟ। ଭଲ ହେଲା, ଅମୁ ତାକୁ ପାଖକୁ

ନେଇଗଲା ।''

ବିନୟ ଆଶ୍ଚର୍ଯ୍ୟରେ ଚାହିଁଲା ଶ୍ରଦ୍ଧାଙ୍କ ମୁହଁକୁ। ''ତୁ କ'ଣ ଅର୍ଚ୍ଚନାଠୁଁ ଚିଠି ଫିଠି ପାଇନୁ କି ଛୋଟ ଦି' ?''

''ହଁ, ପାଇଥିଲି। ତେବେ ହୋଇଗଲାଣି ବେଶ୍ କିଛି ଦିନ। ପାଞ୍ଚ ଛଅ ମାସ ହୋଇଯିବ। ହେଲେ ଅମରେଶ ନିୟମ କରି ଘରକୁ ଟଙ୍କା ପଠଉଥିଲା। ମନିଅର୍ଡ଼ର ଫର୍ମ ତଳେ ଗାରେଇ ଦେଉଥିଲା - 'ଏଠି ସବୁ ଭଲ'। ସେଥିପାଇଁ ମନଟା ବୁଝି କରି ଥିଲା। ... କହ ନା ରେ ବୁନୁ, କେମିତି ଅଛନ୍ତି ସେମାନେ ?'' ଉତ୍କଣ୍ଠାଭରା ସ୍ୱରରେ ଶ୍ରଦ୍ଧା ଆଉ ଥରେ ପଚାରି ଉଠିଲେ।

''ଭଲ ଅଛନ୍ତି।'' ବିନୟ ବୁଝିଥିଲା ଆଉ କଥା ଆଡ଼େଇ ଦେଇ ହେବନି। ତେଣୁ ଅସ୍ୱସ୍ତିକର ଅଂଶତକ କାଟଛାଣ୍ଟ୍ କରିଦେଇ କହିଲା, ''ଅର୍ଚ୍ଚନା ଆଉ କଲିକତାରେ ନାହିଁ। ତା'ର ଚାକିରି ହୋଇ ଯାଇଛି କଟକରେ। ସେ ଯିବା ଆଗରୁ ମତେ ଆସି ଦେଖା କରି ଯାଇଥିଲା। ପାବ୍ନାକୁ ଚିଠି ଦେଇଛି ବୋଲି କହୁଥିଲା। ତୁ ପାଇନୁ ? ... ଆଶ୍ଚର୍ଯ୍ୟ।''

''ଆଶ୍ଚର୍ଯ୍ୟ ହେବାର କ'ଣ ଅଛି, ମାମୁ ?'' ଅନିରୁଦ୍ଧ କହିଲା, ''ଏବେ ଦେଶର ଯାହା ଅବସ୍ଥା, ସେ ଚିଠି ଏଠିକା ପୋଷ୍ଟ ଅଫିସ୍‌ର ସରହଦ୍ ଟପିଛି କି ନାହିଁ କିଏ ଜାଣେ।''

ଦେଶର ଆଲୋଚନା ଆଉ କରିବାକୁ କି ଶୁଣିବାକୁ ଶ୍ରଦ୍ଧାଙ୍କର ଧୈର୍ଯ୍ୟ ନ ଥିଲା। ସେ ବ୍ୟସ୍ତ ସ୍ୱରରେ କହିଲେ, ''ଅର୍ଚ୍ଚନା ଏଠି ନାହିଁ ?? କଟକ ଚାଲିଯାଇଛି ? ସେଠି କ'ଣ କରୁଛି ?''

''ସେଠିକାର ଗୋଟାଏ ଭଲ ଝିଅଙ୍କ ସ୍କୁଲ୍‌ରେ ତାକୁ ସିଲେଇ ଶିକ୍ଷୟିତ୍ରୀ ଚାକିରି ମିଳିଯାଇଛି। ଦରମା ଭଲ।''

''କଟକ ଚାଲିଗଲା ! ଏତେ ବାଟ !''

''ଏତେ ବାଟ କ'ଣ ମ ଛୋଟ ଦି' ? ଗୋଟାଏ ରାତିର ବାଟ ଜମା। ... ଆଗ ଏଠି ଟିକେ ଥଇଥାନ ହୋଇଯା। ତା'ପରେ ଦିନେ ସମସ୍ତେ ଯିବା। ଝିଅଟାକୁ ଦେଖି ଆସିବା।''

''ହଉ।   ଆଉ ଅମୁ ଖବର କ'ଣରେ, ବୁନୁ ? ସେ ତ ମୋର ଏମିତିଆ ଅଭିମାନୀ ପୁଅ ଯେ ମା'କୁ ଖଣ୍ଡିଏ ଚିଠି ଦେଲାନି ଭଲ କରି

ଏତେ ବର୍ଷ ଭିତରେ। ସେଇ ଯେ ଘରୁ ଚାଲିଗଲା ଆଉ ଦିନେ ଘର ଆଡ଼େ ବୁଲି ଚାହିଁଲା ନାହିଁ।'' ଶ୍ରଦ୍ଧାଙ୍କ ଗଳା ଧରି ଆସିଲା।

''ଆଉ ତୁ ମନ ଖରାପ କରନି, ଛୋଟ ଦି'।''

''ନା। ଆଉ ଢମା ମନ ଖରାପ କରିବିନି। ଢମା ନୁହଁ।'' ଜୋର୍ କରି ମୁହଁରେ ହସ ଫୁଟାଇଲେ ଶ୍ରଦ୍ଧା, ''କହତ ରେ ବୁନୁ, ଅମୁ ଆମର କେମିତି ଅଛି?''

''ଅମୁ? ଅମୁ ମହାଆନନ୍ଦରେ ଅଛି।'' ତରବର ହୋଇ କହି ଗଲା ଝାଡ଼ିଲା ବିନୟ। ''... ସେ ବହୁତ ପଇସା ରୋଜଗାର କରୁଛି। ବଡ଼ ଲୋକ ହୋଇଗଲାଣି। ନିଜ ହୋଟେଲ୍‌ଟିଏ ଖୋଲିଛି ପରା।''

''ହୋଟେଲ୍? ଭାତ ବିକା ହୋଟେଲ୍?''

''ତୋର ଯାହା କଥା ନା ଦିଦି! ଆଜି କାଲି ଆଉ କ'ଣ ଅଛି ସେଥିରେ? ଆଗରୁ ସିନା ବ୍ରାହ୍ମଣ ଘର ପିଲା ଏସବୁ କାମ କଲେ ଲୋକେ ବାର କଥା କହୁଥିଲେ। ହେଲେ ଏବେ ଯୁଗ ବଦଳିଗଲାଣି।'' କେମିତି ତରବର ହୋଇ କହି ପକେଇଲା ବିନୟ।

''ହଁ, ତା' ନୁହଁ ତ କ'ଣ?'' ଶ୍ରଦ୍ଧା ମାନିନେଲେ। ନ ମାନି ବା ଉପାୟ କ'ଣ?

ତାଙ୍କରି ମୁହଁକୁ ଚାହିଁ ବିନୟ ଭାବି ହେଉଥିଲା। କେମିତି ସହଜ ଭାବରେ ଅମୁର ହୋଟେଲ କରିବା କଥା ଛୋଟ ଦି' ମାନିନେଲା! ହେଲେ ଅମରେଶ ଅନ୍ୟ ଯେଉଁ କାଣ୍ଡଟି କରିଛି, ସେଇଟା ଶୁଣିଲେ ସେ କ'ଣ ଧୈର୍ଯ୍ୟ ଧରି ରହି ପାରିବ? ସେଇଟା କ'ଣ ସେ ମାନି ନେଇ ପାରିବ?

ନା, ବିନୟ ମନେ ମନେ ସ୍ଥିର କରି ନେଲା, ସେ କିଛି କହିବନି। ପାଟି ଖୋଲିବନି। ଯାହା କହିବା କଥା ଅମରେଶ କହୁ। ଯାହା କରିବା କର୍ଥା ସେ କରୁ।

''ଛୋଟ ଦି', ମୁଁ ଖବର ପଠେଇ ଦେଇଛି ଅମୁ ପାଖକୁ।''

''କ'ଣ କହିଲାରେ ସେ? ଆସିବ ତ?''

''ଆସିବରେ ବାବା, ଆସିବ। ଛୋଟ ଦି, ତୋ ଅମୁ ଆସିବ। ତୁମେମାନେ କଲିକତାରେ ଆସି ପହଞ୍ଚିଛ। ଏ ଖବର ପାଇବା ପରେ ସେ ନ ଆସି

କ'ଣ ରହି ପାରିବ ? ତେବେ ଆଜି ରାତିରେ ସେ ଆସି ପାରିବ ନାହିଁ। ତା' ହୋଟେଲ୍ ମ୍ୟାନେଜର୍ ଛୁଟି ନେଇ ଯାଇଛି। ହୋଟେଲ୍ ଛାଡ଼ି ଆଜି ସେ ଆସି ପାରିବ ନାହିଁ ଜମା। ହେଲେ କାଲି ସକାଳୁ ସକାଳୁ ଆସି ପହଞ୍ଚିବ ସେ। କହି ପଠେଇଛି।''

''ସତରେ କହିଛି ? ନା ତୁ ମୋ ମନ ଭୁଲାଇବାକୁ ଏଇମିତି କହି ଦେଉଛୁ ?''

ବିନୟ ଏ କଥାର କୌଣସି ଉତ୍ତର ନ ଦେଇ ଖାଲି ଟିକିଏ ହସି ଦେଲା।

ରାତିଯାକ ଶ୍ରଦ୍ଧାଙ୍କ ଆଖିରେ ପଲକ ପଡ଼ିଲା ନାହିଁ। କଡ଼ ଲେଉଟାଉ ଲେଉଟାଉ ବିରକ୍ତିରେ ସେ ଭାବିଲେ ଯେ ଦିପହରେ ଏତେ ଶୋଇବାର ନ ଥିଲା। ଅବେଳରେ ବେଶୀ ଶୋଇ ଏଇ ଅବସ୍ଥା ହୋଇଛି ତାଙ୍କର।

କିନ୍ତୁ... କିନ୍ତୁ ସତରେ କ'ଣ ନିଦ ନ ହେବାର କାରଣ ସେଇ ଦିବା ନିଦ୍ରା ?

ଶ୍ରଦ୍ଧା ବୁଝୁଥିଲେ ଯେ ଦିପହର ଶୋଇବାଟା ରାତି ଅନିଦ୍ରାର ପ୍ରକୃତ କାରଣ ନୁହଁ। ପ୍ରକୃତ କାରଣ ଅନ୍ୟ କିଛି। ଅମରେଶର ଆସିବା ଖବର ତାଙ୍କ ଛାତି ଭିତରେ ଏଭଳି ଆଲୋଡ଼ନ ସୃଷ୍ଟି କରିଛି ଯେ ସେ ସ୍ଥିର ହୋଇ ରହି ପାରୁ ନାହାନ୍ତି। ଦୀର୍ଘ ସାତ ବର୍ଷ ପରେ ସାନ ପୁଅକୁ ଦେଖିବାର ଆହ୍ଲାଦ, ଆଶଙ୍କାରେ ଛାତି ଉଦ୍‌ବେଳିତ। ଏଭଳି ଅସ୍ଥିର ମନ ନେଇ ବିଛଣାରେ ପଡ଼ିଗଲେ କ'ଣ ନିଦ ହୁଏ ?

ବନ୍ଦ ଆଖି ପତା ତଳେ କେତେ ରକମର ଦୃଶ୍ୟ ଛବି ଭଳି ଆଙ୍କି ହୋଇ ଯାଉଛି। କେତେ କେତେ ଘଟଣା ମନ ଭିତରକୁ ପଶି ଆସୁଛି। ଅନିରୁଦ୍ଧକୁ ଯେତେବେଳେ ତିନି ବର୍ଷ ବୟସ, ସେତିକି ବେଳେ ଜନ୍ମ ହୋଇଥିଲା ଅମରେଶ। ତା' ଜନ୍ମ ବେଳେ ସେ କି ଯନ୍ତ୍ରଣା ନ ଭୋଗିଥିଲେ ! ଯମ ମଣିଷ ସାଙ୍ଗରେ ଜାଣ ଟଣାଟଣି ଲାଗି ଯାଇଥିଲା।

ଧାଈ ରାଧା ମୁହଁ ଶୁଖାଇ କହିଥିଲା, 'ମା' ହୁଏତ କୌଣସି ମତେ ବଞ୍ଚିଯିବ। କିନ୍ତୁ ଛୁଆର ବଞ୍ଚିବା ଆଶା କମ୍।' ହେଲେ ତା' କଥା ମିଛ

ପ୍ରମାଣିତ ହୋଇ ଯାଇଥିଲା । ସୁସ୍ଥ ସବଳ ପୁଅଟି ଜନ୍ମ ହେବା ମାତ୍ରକେ ପ୍ରବଳ ଚିତ୍କାର କରି ଘର କମ୍ପେଇ ଦେଇଥିଲା ।

"ଏ ଟମର ବଡ଼ ମନମୋଟିଆ ପୁଅ ହେବ ଗୋ । ଦେଖୁନ, ତା' ପାଇଁ ଯେ ଏତେ ଗୁଡ଼ାଏ ଲୋକ ଆତଙ୍କିତ ହୋଇ ଭୋଗୁଛନ୍ତି, ସେଥିକି ଟିକିଏ ଖାତିର ନାହିଁ । ...ମା'କୁ ଭୋଗାଇଲା । ଆଉ ଏବେ ଆଇଲା ନିଜ ଖୁସିରେ ।" ସ୍ୱସ୍ତିର ନିଶ୍ୱାସ ନେଇ ଦୁଇପାଟି ପାନଖିଆ କଳା କଳା ଦାନ୍ତ ଦେଖାଇ ରାଧା ଭବିଷ୍ୟତବାଣୀ କରିଥିଲା ।

ତା' ଭବିଷ୍ୟତ ବାଣୀ ସତରେ ନିହାତି ମିଛ ନ ଥିଲା । ପିଲା ଦିନଠୁଁ ଅମରେଶ ଅନ୍ୟ ରକମ ହୋଇ ବଢ଼ିବାକୁ ଲାଗିଲା । କାହା ପାଇଁ ଚିନ୍ତା ନାହିଁ, ଭାବନା ନାହିଁ । କେବଳ ନିଜ କଥା । ନିଜ ଚିନ୍ତା । ସେ ଯାହା ଚାହୁଁଥିଲା, ସେଇଟାକୁ ସେ କଳେବଳେ କୌଶଳେ ଆଦାୟ କରି ନେଉଥିଲା । ଯେମିତି ଖର୍ଚ୍ଚୀ ସେଇମିତି ସଉକିନିଆ ଥିଲା ସେ । ସରଳ ଜୀବନ ଯାପନ କରିବାରେ ବିଶ୍ୱାସୀ ସତ୍ୟପ୍ରିୟ ମୁଖୋପାଧ୍ୟାୟ ବେଳେବେଳେ ବିବ୍ରତ ହୋଇ ପଡୁଥିଲେ । ସାନ ପୁଅଟି ଯେ କାହିଁକି ଏମିତି ସଂକୀର୍ଣ୍ଣମନା ହୋଇ ବଢୁଛି, ତା' ବୁଝି ପାରୁ ନ ଥିଲେ ସେ । ସେ ଥିଲେ ପରୋପକାରୀ ମଣିଷ । ତାଙ୍କରି ପୁଅଟି ଯେ ଏତେ ସ୍ୱାର୍ଥପର ହୋଇ ଯାଉଛି, ସେକଥା ଦୋହଲାଇ ଦେଉଥିଲା ତାଙ୍କୁ ।

ଅନିରୁଦ୍ଧ ସାଙ୍ଗରେ ତା'ର ତୁଳନା କରି ସେ ଭୟ ପାଇଯାଉଥିଲେ ମନେ ମନେ ।

ଅନିରୁଦ୍ଧକୁ ମିଠେଇ ଖାଇବାକୁ ପଇସା ଦେଲେ, ସେ ଭାଇ ଭଉଣୀଙ୍କ ପାଇଁ ଆଗ କିଣି ତା'ପରେ ନିଜ କଥା ଭାବୁଥିଲା । ହେଲେ ସେତିକି ପଇସା ଅମରେଶକୁ ଦେଲେ, ସେ ସେଥିରୁ ଆଉ କାହାକୁ ଭାଗ ଦେବା କଥା କଳ୍ପନା ବି କରି ପାରୁ ନ ଥିଲା । ବରଂ ଛୋଟ ଅନି ହାତରୁ ମିଠେଇ ଛଡ଼େଇ ନେଇ ଯାଉଥିଲା । ଅନି ଚିତ୍କାର କରି କାନ୍ଦି ଉଠିଲେ, ତାଳି ମାରି ହସୁଥିଲା ।

ବିବ୍ରତ ହୋଇ ସତ୍ୟପ୍ରିୟ ଶ୍ରଦ୍ଧାଙ୍କୁ କହୁଥିଲେ, "ଅମୁ କାହିଁକି ଏମିତି କରେ କୁହ ତ ! କାହିଁକି ଏତେ ଅଶାନ୍ତି କରେ ସେ ?"

ସ୍ୱାମୀଙ୍କ କଥା ଶୁଣି ସେତେବେଳେ ଶ୍ରଦ୍ଧା କ'ଣ କରୁଥିଲେ ? ପୁଅକୁ ଗାଳି ଦେଉଥିଲେ ? ଶାସନ କରୁଥିଲେ ?

ନା, ବରଂ ଘଣ୍ଟ ଘୋଡ଼େଇ ରଖି ଦେଉଥିଲେ। ସ୍ୱାମୀଙ୍କୁ କହୁଥିଲେ, "ସବୁ ଠିକ୍ ହୋଇଯିବ। ଏବେ ପିଲାଟା ଟିକେ ବେଶୀ ଗେହ୍ଲା ହୋଇ ଏମିତି ହେଉଛି ନା। ଆଉ ଟିକିଏ ବୁଦ୍ଧି ହେଲେ ଦେଖିବ ରହିଥା କେଡ଼େ ବୁଝିବା ସୁଝିବାର ସେ ହୋଇଯିବ।"

ତା' କିନ୍ତୁ ଆଉ କୌଣସି ଦିନ ହେଲାନି।

ସତ୍ୟପ୍ରିୟ ମୁଖୋପାଧ୍ୟାୟ ଚାଲିଯିବା ପରେ ମଧ୍ୟ ଆଉ ବଦଳିଲା ନାହିଁ ଅମରେଶ। ବରଂ ନିଜ ଦାରିଦ୍ର୍ୟ ନେଇ ଲଜ୍ଜା ପାଉଥିଲା। ଘୃଣା କରୁଥିଲା ଘରର ଅଭାବୀ ପରିବେଶକୁ। ଅନିରୁଦ୍ଧର କମ୍ ଦରମାରେ କାଟଛାଣ୍ଟ୍ କରି ଚଳିବା ବେଳେ ମୁହଁ ଭାରୀ କରି ରହୁଥିଲା ସେ। କଟାକଟା କଥା କହୁଥିଲା ସମସ୍ତଙ୍କୁ। ସୁବିଧା ପାଇଲେ ବଜାର କରିବା ପଇସାରୁ କିଛି ହାତ ସଫେଇ କରି ନେଇ ନିଜର ସଉକ ପୂରଣ କରୁଥିଲା। ଘର ଚଳାଇବାକୁ ଯଥେଷ୍ଟ ଟଙ୍କା ଅଛି କି ନାହିଁ, କେବେ ଥରେ ଭାବିଥିଲା କି ସେ ?

ଯେତେବେଳେ ଆଉ ମନମୋଟିଆ ଭାବରେ ଚଳିବା ସମ୍ଭବ ହେଲାନି, ସେତେବେଳେ ସେ ଘର ଛାଡ଼ି ଚାଲିଗଲା। ଆଉ ମୁହଁ ଫେରାଇଲାନି। ତା'ପରେ କଟିଗଲା ସାତ ବର୍ଷ।

ସାତ ବର୍ଷ !

ଏତେ ଗୁଡ଼ାଏ ବର୍ଷ କେମିତି ସେ ସମସ୍ତଙ୍କଠୁ ଦୂରେଇ ଦୂରେଇ ରହିଗଲା ? କେମିତି ଚିଠି ଖଣ୍ଡିଏ ଭଲରେ ଲେଖିବାକୁ ତା' ମନ ହେଲା ନାହିଁ ?

ଶ୍ରଦ୍ଧାଙ୍କର ଏମିତି ପୁଅ ଉପରେ ଅଭିମାନ କରିବା କଥା। ରାଗିବା କଥା। କିନ୍ତୁ ସେ ମନ ଭିତରେ ତାକୁ କ୍ଷମା ଦେଇ ସାରିଥିଲେ। କେତେଟା ମା' ପିଲା ଉପରେ ରାଗ ରଖି ପାରନ୍ତି ? ନିଜ ରକ୍ତ ମାଂସର ପ୍ରତିମାଠୁଁ କେଇ ଜଣ ମୁହଁ ଘୂରେଇ ନେଇ ପାରନ୍ତି ସବୁଦିନ ପାଇଁ ?

ଶ୍ରଦ୍ଧା କଡ଼ ଲେଉଟାଇ ଦୀର୍ଘ ନିଶ୍ୱାସ ନେଲେ। ତାଙ୍କରି ସେଇ ଅବୁଝା ଅମୁ ଏବେ ବ୍ୟବସାୟ କରୁଛି। ଭଲ ରୋଜଗାର କରୁଛି। ଜୀବନରେ ଯାହା ପାଇବାକୁ ଚାହିଁଥିଲା, ସେଇଟା ଜବରଦସ୍ତି ଆଦାୟ କରି ନେଇଛି।

କିନ୍ତୁ ସୁଖୀ ହୋଇଛି ତ ?

କେତେ ଆଡ଼ର କେତେ କଥା ଭାବୁ ଭାବୁ ରାତିର ଶେଷ ପ୍ରହରରେ

କେଇଟା ମୁହୂର୍ତ୍ତ ପାଇଁ ବୋଧହୁଏ ଶ୍ରଦ୍ଧାଙ୍କର ଆଖି ଲାଗି ଯାଇଥିଲା। ହେଲେ ପୁଣି ତାଙ୍କର ନିଦ ଭାଙ୍ଗିଗଲା ପୂର୍ବ ଆକାଶ ଲାଲ ହୋଇ ଆସିବା ବେଳକୁ।

ନା। ଆଉ ନିଦ ହେବନି। ଶ୍ରଦ୍ଧା ବିଛଣାରୁ ଉଠି ଆସି ମୁହଁ ଧୋଇ ନେଲେ। ନିତ୍ୟକର୍ମ ଶେଷ କରି ଦେଇ ଖୋଲା ଛାତକୁ ଚାଲିଗଲେ ସେ। ସେଇଠି ଠିଆ ହୋଇ ସେ ସାମ୍ନାର ରାସ୍ତାକୁ ଚାହିଁ ରହିଲେ ସତୃଷ୍ଣ ଭାବରେ। କେତେବେଳେ ଆସିବ ତାଙ୍କ ଅମୁ? କେତେବେଳେ? ଏତେ ଡେରି କାହିଁକି କରୁଛି ସେ? ଆସିବନି କି ଆଉ? ଅବୁଝା ପୁଅଟା ତାଙ୍କର ତଥାପି ମୁହଁ ଘୁରାଇ ବସି ରହିବ କି? ଭୟରେ ଶିହରି ଉଠୁଥିଲା ତାଙ୍କ ଦେହ ହାତ।

ସକାଳୁ ଉଠି ମାମୁ ଘର ରାସ୍ତା ଧରି ସାରିଥିଲା ଅମରେଶ। କିନ୍ତୁ ଶ୍ରଦ୍ଧାଙ୍କ ଭଳି ପ୍ରଶ୍ନର ପାହାଡ଼ ଜମି ସାରିଥିଲା ତା' ମନରେ। ଘୋଡ଼ାଗାଡ଼ିରେ ବସି ମାମୁଙ୍କ ଘରକୁ ଆସିବା ବେଳେ ଅଦ୍ଭୁତ ରକମର ଖୁସି ତ ଲାଗୁଥିଲା ତାକୁ, କିନ୍ତୁ ମନ ଭିତରେ ବି କେମିତି ଆଶଙ୍କା ଖେଳି ବୁଲୁଥିଲା। ସାତ ବର୍ଷ ଧରି ଦେଖି ନ ଥିବା ମା', ଦାଦା, ଭଉଣୀ ତାକୁ କେମିତି ଭାବରେ ଗ୍ରହଣ କରିବେ? ଆଉ ତା' ବିଷୟରେ ସବୁ କିଛି ଜାଣି ସାରିବା ପରେ କ'ଣ ଦୁଇ ହାତ ପ୍ରସାରିତ କରି କୋଳେଇ ନେଇ ପାରିବେ ତାକୁ?

"ରଖ ରଖ। ରଖ ଏଇଠି।" ଅମରେଶ ଗଳି ମୁଣ୍ଡରେ ଘୋଡ଼ାଗାଡ଼ିରୁ ଓହ୍ଲେଇ ପଡ଼ି ଭଡ଼ା ଛିଣ୍ଡେଇ ଦେଲା। ଘୋଡ଼ାଗାଡ଼ି ନେଇ ମାମୁ ଘର ଗେଟ୍ ପାଖ ପର୍ଯ୍ୟନ୍ତ ଯିବାକୁ ଅସ୍ୱସ୍ତି ହେଉଛି। ବରଂ ଏଇଠୁ ଚାଲି ଚାଲି ସେ ଯିବ ଘର ପର୍ଯ୍ୟନ୍ତ।

ଗେଟ୍ ଖୋଲିବା ବେଳେ ଅମରେଶ ଆଖିରେ ପଡ଼ିଲା ସରୁ କଳା ଧଡ଼ିର ଧଳା ଥାନ ପିନ୍ଧିଥିବା ଜଣେ ମଧ୍ୟବୟସ୍କା ମହିଳାଙ୍କ ଉପରେ। ଛାତ ଉପରେ ଠିଆ ହୋଇ ଏକା ଦୃଷ୍ଟିରେ ଦେଖୁଥିଲେ ତାକୁ। ସେ କିଏ?? ମା'!!

ମା! ମା' ଗୋ!

ଅମରେଶର ପାଦ ପଥର ହୋଇଗଲା। ସେ ବିହ୍ୱଳ ଦୃଷ୍ଟିରେ ଚାହିଁ ରହିଲା ସେଇ ଶୁଭ୍ର ସ୍ୱଚ୍ଛ ମୂର୍ତ୍ତିକୁ। କେମିତି ଏଇ ମା'ଙ୍କୁ ଛାଡ଼ି ସେ ଏତେ ଦିନ ଦୂରରେ ରହି ପାରିଲା? କେମିତି?

ଶ୍ରଦ୍ଧାଙ୍କ ଆଖିରେ ପଲକ ପଡୁ ନ ଥିଲା। ପଲକ ପକେଇ ଦେଲେ ଯେମିତି ଆଖି ସାମ୍ନାର ମୂର୍ତ୍ତିଟି ହଜିଯିବ। ତାଙ୍କ ସାମ୍ନାରେ ସଜେଇ ହୋଇ ଯାଇଥିବା ସ୍ୱପ୍ନଟି ଉଭେଇ ଯିବ।

ସେ ତାହେଲେ ସ୍ୱପ୍ନ ଦେଖୁଛନ୍ତି ?

ନା। ନା। ନା। ଆସିଛି ତାଙ୍କ ଅମୁ! ଆସିଛି! ମା' ପାଖକୁ ଆସିଛି ତାଙ୍କର ଗଳାମାଳି।

ପାଵ୍ନା ଛାଡ଼ି ଗଲାବେଳକୁ ସେ ଥିଲା ଷୋହଳ ବର୍ଷର ପିଲାଟିଏ। ଏବେ ତେଇଶ ପୂରି ସାରିଛି ତାକୁ। ଆଗର ସେ ହାଉୁଆ ମୁହଁ ନାହିଁ। ଆଖିରେ ଚଞ୍ଚଳ ଭାବ ନାହିଁ। ଆଉ କେତେ ଲମ୍ବା ହୋଇ ଯାଇଛି! ପିଲାଦିନେ ସେ ଡେଙ୍ଗା ଥିଲା। କିନ୍ତୁ ଘର ଛାଡ଼ି ଆସିବା ପରେ ଆହୁରି ବେଶୀ ଡେଙ୍ଗା ହୋଇ ଯାଇଛି ସେ। ଅନିରୁଦ୍ଧଠୁଁ ପ୍ରାୟ ହାତେ ଲମ୍ବା।

ଶ୍ରଦ୍ଧା ଅନିମେଷ ଦୃଷ୍ଟିରେ ନିଜର ସାନ ପୁଅକୁ ଦେଖୁଥିଲେ। ଅମରେଶ କୌଣସି ଦିନ ବିନମ୍ର ନ ଥିଲା। ନମନୀୟ ନ ଥିଲା। କିନ୍ତୁ ଏବେ? ଏବେ ଯେ ନିଜ ଜୀବନକୁ ନିଜ ଚେଷ୍ଟାରେ ଗଢ଼ି ପାରିଥିବାର ଅହଙ୍କାର ଝଲମଲ କରୁଥିଲା ତା' ଚେହେରାରେ। ତଥାପି ତ ସେ ତାଙ୍କରି ଗର୍ଭରୁ ଜନ୍ମ ହୋଇଥିବା ପୁଅ। ତାଙ୍କରି ରକ୍ତମାଂସର ପ୍ରତିମା। ତା' ଉପରେ କ'ଣ ଅଭିମାନ କରି ରହି ହୁଏ? ଅନିରୁଦ୍ଧ ଓ ଅନୁପମାକୁ ଡାକି ଦେଇ ତରତର ହୋଇ ସିଢ଼ି ଦେଇ ତଳକୁ ଓହ୍ଲେଇ ଗଲେ ସେ।

"ଅମୁ ବାବା!!"

"ଛୋଟ ଦା'!"

"ଅମୁ!"

ଏକାଠି ତିନିଟା ସ୍ୱରର ତିନି ରକମର ଡାକ ଅମରେଶକୁ ଛୁଇଁଗଲା। ତିନି ଯୋଡ଼ା ଆଖିର ଲୁହ ଧୋଇ ଦେଲା ସାତ ବର୍ଷର ଫରକକୁ। ସଂଘର୍ଷ କରି ପଥର ହୋଇ ଯାଇଥିବା ତା' ମନଟା ମୁହୂର୍ତ୍ତକ ଭିତରେ ଦ୍ରବୀଭୂତ ହୋଇଗଲା। ଧାଇଁ ଯାଇ ଶ୍ରଦ୍ଧାଙ୍କର କୋଳରେ ମୁହଁ ଗୁଞ୍ଜି ଦେଇ କାନ୍ଦି ପକେଇଲା ସେ।

ପୁଣି ମୁଣ୍ଡ ଟେକି ସେ ଚାହିଁଲା ତା' ବଡ଼ ଭାଇକୁ। ଅନିରୁଦ୍ଧର ଦୁଇ ହାତକୁ ଜାବୁଡ଼ି ଧରି ବିକଳ ଭାବରେ କହି ପକେଇଲା, "ମତେ କ୍ଷମା କରି

ଦିଅ, ଦାଦା।''

''ଯା ପାଗଳା। ଏମିତି କାହିଁକି କହୁଛୁ?''

ଅନୁପମା ଅମରେଶର କାନ୍ଧରେ ମୁଣ୍ଡ ଥାପି ଦେଲା। ଭିଜା ଭିଜା ସ୍ୱରରେ କହିଲା, ''ଛୋଟ ଦା, କେମିତି ତୁ ଥରଟିଏ ବି ଆସିଲୁନି ପାଟ୍ନା? ଆମ କଥା ତୋର ଜମା ମନେ ପଡ଼େନି?''

''ନା ରେ ଅନି, ସେମିତି ନୁହଁ। ତୁମମାନଙ୍କ କଥା ମୋର ସବୁବେଳେ ମନେ ପଡ଼େ। ସବୁବେଳେ ଭାବେ ଚାଲିଯିବି ପାଟ୍ନା। କିନ୍ତୁ ଗୋଡ଼ କେମିତି ବାନ୍ଧି ହୋଇ ଯାଏ। ଯେମିତି ଭାବରେ ଚାଲି ଆସିଥିଲି, ତା'ପରେ...''

''ଘର ପୁଅ ଘରକୁ ଆସିଥାଆନ୍ତୁ। ସେଥିରେ ପୁଣି ତୋର କି ଲଜ୍ଜାରେ ବାବା ଅମୁ।''

ଶ୍ରଦ୍ଧାଙ୍କ କଥାର କୌଣସି ଉତ୍ତର ଦେଇ ପାରିଲା ନାହିଁ ଅମରେଶ। ସତରେ ତ କାହିଁକି ସେ ଥରଟିଏ ବି ପାଟ୍ନା ଯିବା କଥା ଭାବି ପାରିଲା ନାହିଁ? କେବେ କେମିତି କେଇଟା ଟଙ୍କା ପଠେଇ ଦେବା ବ୍ୟତୀତ ଭଲରେ ଚିଠି ଲେଖିବା କଥା କେମିତି ସେ ଭାବି ପାରିଲା ନାହିଁ? ନିଜ ଆଖିରେ ନିଜେ ଛୋଟ ହୋଇ ଯାଉଥିଲା ସେ।

''ଛାଡ଼ ତ ମା'।'' ଅନିରୁଦ୍ଧ ରୁଦ୍ଧ ସ୍ୱରରେ କହିଲା, ''ଆଉ ସେସବୁ ପଛ କଥା କାହିଁକି?''

ସାନ ଭାଇର ମୁଣ୍ଡକୁ ଆଉଁଶି ସେ ପଚାରିଲା, ''ଏବେ ତୁ ରହୁଛୁ କେଉଁଠିରେ ଅମୁ?''

''ମୁଁ ଘରଟେ ଭଡ଼ା ନେଇଛି, ଦାଦା। ହୋଟେଲ୍ ପାଖରେ। ...ମୁଁ ନିଜେ ହୋଟେଲ୍‌ଟିଏ କରିଛି। ମାମୁ କହିନାହାନ୍ତି?''

''ହଁ। ବୁନୁ କହୁଥିଲା। ଭଲ ଚାଲିଛି ପରା?''

''ହଁ ମା'। ତୁମମାନଙ୍କ ଆଶୀର୍ବାଦରୁ ଭଲ ହିଁ ଚାଲିଛି। ମାନିକତଲାରେ ଛୋଟ ଜମିଟେ ବି କିଣିଛି। ସୁବିଧା ହେଲେ ଘର ଖଣ୍ଡିଏ କରିବାର ଇଚ୍ଛା ଅଛି।'' ମୁହଁରେ ହସ ଫୁଟେଇ ଅମରେଶ କହିଲା।

''ନିଜ ଘର!'' ଶ୍ରଦ୍ଧା ଖୁସୀ ହୋଇଗଲେ। କାହିଁ କେବେଠୁ ନିଜ ଘର ଖଣ୍ଡେ କରିବାର ଇଚ୍ଛା ମନ ଭିତରେ ସାଇତି ରଖିଥିଲେ ସେ। ହେଲେ ସ୍ୱାମୀ

ଚାଲିଯିବା ପରେ ସେ ଆଶାକୁ ଜଳାଂଜଳି ଦେଇ ଦେବାକୁ ହୋଇଥିଲା । ଏବେ ତାଙ୍କର ସେ ସ୍ୱପ୍ନ ସାକାର କରିବ ଅମୁ ? ହସି ଦେଇ ଶ୍ରଦ୍ଧା ପଚାରିଲେ, "ମତେ ରଖିବୁଟି ସେଠି ?"

"କି ଯେ କଥା କୁହ ତମେ, ମା' । ଘର କ'ଣ ଏକା ମୋର ବୋଲି ଭାବୁଛ ? ସମସ୍ତଙ୍କର ।"

ଶ୍ରଦ୍ଧା ଯେମିତି ଏଇ କଥା କେଇ ପଦ ଅମରେଶ ମୁହଁରୁ ଶୁଣିବାକୁ ଅପେକ୍ଷା କରି ରହିଥିଲେ । ସେ ଆନନ୍ଦରେ ଗଦ ଗଦ ହୋଇ ଯାଇ କହିଲେ, "ଆଚ୍ଛା ଅମୁ, ଆଜି ତୋ ଘରକୁ ଚାଲିଯିବା ।"

"ଓହୋ ମା', ଘର ଆଗ ତିଆରି ହଉ ।"

"ହଁ, ନିଜ ଘର ଯେବେ ତିଆରି ହେବା କଥା ହେବ । ଏବେ ତୋ ଭଡ଼ା ଘରକୁ ଚାଲିଯିବା । ଛୋଟ ହେଲେ ବି ଚଳିବ । ...ଏଇଟା ଯେତେ ଯାହା ହେଲେ ଆମ ବୁନୁର ଶ୍ୱଶୁର ଘର । ବନ୍ଧୁବାନ୍ଧବ ଘରେ କ'ଣ କିଏ ଅନିର୍ଦ୍ଦିଷ୍ଟକାଳ ପାଇଁ ରହିଯାଇ ପାରେ ?"

ଶ୍ରଦ୍ଧା ଭାବିଥିଲେ ଅମରେଶ ତାଙ୍କରି ଭଳି ଖୁସିରେ ଭାସିଯିବ । କହିବ, "ଏବେ ଚାଲ ମା' । ଚାଲ ଆମ ଘରକୁ ଯିବା ।"

କିନ୍ତୁ ଅମରେଶ ସେମିତି କିଛି କହିଲା ନାହିଁ । କେବଳ କିଭଳି ଏକ ଦୃଷ୍ଟିରେ ବିନୟ ମୁହଁକୁ ଚାହିଁଲା । ବିନୟର ଭାବଲେଶହୀନ ମୁହଁକୁ ଦେଖି ସେ ବୁଝି ପାରୁଥିଲା ଯେ ତା' ମାମୁ କାହାକୁ କିଛି କହି ନାହାନ୍ତି ତା' ବିଷୟରେ । ଅର୍ଥାତ୍ ତାକୁ ହିଁ କହିବାକୁ ହେବ ।

ଠିକ୍ ଅଛି । ଅମରେଶ ସିଧା ହୋଇ ଠିଆ ହେଲା ।

ତା'ପରେ କହିଲା, "ମା', ଗୋଟାଏ କଥା କହିବାର ଅଛି ।"

"ଗୋଟାଏ କଥା କାହିଁକି ରେ ଅମୁ ? ପାଞ୍ଚଟା କଥା କହ ।" ପାଲଟା ଲୁଗାକୁ ଭାଙ୍ଗି କରି ଖଟ ବାଡ଼ାରେ ରଖୁ ରଖୁ ଶ୍ରଦ୍ଧା ହାଲୁକା ଭାବରେ କହିପକେଇଲେ ।

ଅମରେଶ ତାଙ୍କୁ ସ୍ଥିର ଭାବରେ ଚାହିଁଲା ମୁହୂର୍ତ୍ତକ ପାଇଁ । ତା'ପରେ ବିନା ଉପକ୍ରମଣିକାରେ କହିଲା, "ମୁଁ ବାହାହୋଇ ସାରିଛି, ମା' ।"

ଏଇ ଖବର ଏତେ ବେଶୀ ଆକସ୍ମିକ ଥିଲା ଯେ ଅନିରୁଦ୍ଧ ଓ ଅନୁପମା ନ ବୁଝିବା ଆଖିରେ କେବଳ ଚାହିଁ ରହିଲେ ଅମରେଶକୁ ।

ଆଉ ଶ୍ରଦ୍ଧା ?

ଶ୍ରଦ୍ଧାଙ୍କୁ ବୋଧହୁଏ କେହି କାଉଁରୀ କାଠି ଛୁଆଁଇ ପଥର କରି ଦେଇଛି। ଦେହ ହାତ ଅବଶ। ହଲି ପାରୁ ନାହାନ୍ତି। ଶାଢ଼ି ସହିତ ହାତଟା ଅଟକି ଯାଇଛି ଖଟ ବାଡ଼ା ଉପରେ।

ପୃଥିବୀଟା ହଠାତ୍ ଏମିତି ନିସ୍ତବ୍ଧ ହୋଇଗଲା କେମିତି ? ଚଢ଼େଇମାନେ ବି ଗୀତ ଗାଇବା କଥା ଭୁଲିଗଲେ ନା କ'ଣ ?

କ'ଣ ଏମିତି କହି ପକେଇଲା ଅମୁ ? ଏମିତି କିଏ ଥଟ୍ଟା ତାମସା କରି କହେ ?

ଅମରେଶ ଗଳା ଝାଡ଼ି ପୁଣି ଯୋଡ଼ିଲା, ''ଦୁଇ ମାସ ତଳେ ମୁଁ ବାହା ହୋଇଛି, ମା'।''

''ବାହା ହୋଇଛୁ ???'' ଏତେ ବେଳକେ ନିଜ ସ୍ୱର ଫେରି ପାଇଲେ ଶ୍ରଦ୍ଧା, ''ବାହା ହୋଇଛୁ ??'' ତାଙ୍କ ସ୍ୱର ଉଚ୍ଚ ହୋଇ ଯାଇଛି। ''ଏତେ ବଡ଼ କଥାଟେ ହୋଇଗଲା। ଆଉ ତୁ ଆମକୁ ଟିକିଏ ଖବର ବି ଦେଇ ପାରିଲୁନି ?'' ଏଥର ଗଳାରେ ଅଭିମାନ ଝଲମଲ କଲା।

''ମା', ଖବର ଦେବା ସମ୍ଭବ ନ ଥିଲା। ନହେଲେ କ'ଣ ଖବର ଦେଇ ନ ଥାଆନ୍ତି ?''

ଶ୍ରଦ୍ଧା ଉତ୍ତର ଦେଲେ ନାହିଁ। ବୁଲି ଯାଇ ଖଟ ଉପରେ ବସିଗଲେ ସେ।

ପ୍ରଥମ ଧକ୍କାଟା କଟିଯିବା ପରେ ଅନିରୁଦ୍ଧ ସମ୍ବିତ ଫେରି ପାଇଲା। ଖୁସି ଖୁସି ସ୍ୱରରେ ସେ କହିଲା, ''ମା', ବୁଝ ଟିକିଏ। ସେତେବେଳେ ଚାରିଆଡ଼ର ଯାହା ଅବସ୍ଥା, ଅମୁ ଖବର ଦେଇଥାଆନ୍ତା କେମିତି ? ଏବେ ଖବର ପାଇ ଖୁସୀ ନ ହୋଇ ପୁଣି ଅଭିମାନ କରୁଛ ? ଘରକୁ ବୋହୂ ଆସିଛି ପରା ତୁମର। ... ଚାଲ ଚାଲ ବାହାରି ପଡ଼। ବୋହୂ ହାତ ରନ୍ଧା ଖାଇବନି ଆଜି ?''

''ଦାଦା, ଥାଉ।'' ନିରସ ସ୍ୱରରେ ଅମରେଶ କହିଲା।

ଅନିରୁଦ୍ଧର ମୁହଁରୁ ଆହ୍ଲାଦ ହଜିଗଲା। ''ଥାଉ ମାନେ ? ତୁ ମା'ଙ୍କୁ ନେବୁନି ?''

''ନା। ସେକଥା ନୁହଁ।''

''ତା'ହେଲେ ପୁଣି କି କଥା ?''

''ସବୁ କଥା ଜାଣିଲେ ମା' ମୋ ଘର ଦ୍ୱାର ମାଡ଼ିବେନି। ବୋହୂ ହାତ

ରନ୍ଧା ଖାଇବା ତ ଦୂରର କଥା ।''

''କାହିଁକି ?'' ଆତଙ୍କରେ ଅନିରୁଦ୍ଧ ପଚାରି ଉଠିଲା, ''ଏମିତି କାହିଁକି କହୁଛୁ ? କ'ଣ ହୋଇଛି ?''

''ମୁଁ ଯାହାକୁ ବାହା ହୋଇଛି, ସେ - ସେ ହିନ୍ଦୁ ନୁହଁ, ମୁସଲମାନ୍ ।''

''ମୁସଲମାନ୍ !! ତୁ ଏ କ'ଣ କହୁଛୁ ଅମୁ ?'' ଆର୍ତ୍ତନାଦ କରି ଉଠିଲେ ଶ୍ରଦ୍ଧା ।

''ହଁ ମା', ସେଇଥିପାଇଁ ମୁଁ ତୁମମାନଙ୍କୁ ଆଗରୁ ଚିଠି ଦେଲି ନାହିଁ । କାହିଁକି ଅଯଥା କଷ୍ଟ ପାଇଥାଆନ୍ତ ?''

''ଏମିତି ତୁ କାହିଁକି କଲୁ ରେ ଅମୁ ?'' ବିକଳ ଭାବରେ ସେ କହି ପକେଇଲେ ।

''ମା', ସବୁ କାମ କ'ଣ ସମାଜର ବିଧାନ ମାନି କରି ହୁଏ ? ତା'ଛଡ଼ା ସବୁ କିଛି ଏମିତି ଭାବରେ ଘଟିଗଲା...''

ଶ୍ରଦ୍ଧା କିଛି ଶୁଣିବାକୁ ପ୍ରସ୍ତୁତ ନ ଥିଲେ । ମୁହଁ ଘୋଡ଼ାଇ ନେଇ କେବଳ ଗୋଟିଏ କଥା ଦୋହରାଉଥିଲେ ସେ । ''ଏମିତି କାହିଁକି କଲୁ ରେ ଅମୁ ? କାହିଁକି ଏମିତି କଲୁ ?''

''ମା', ଜଣେ ଭାସି ଯାଉଥିବା ମଣିଷକୁ ମୁଁ କୂଳକୁ ଟାଣି ଆଣିଲି, ଆଶ୍ରା ଦେଲି । ସେଇଟା କ'ଣ ପାପ ?''

ଶ୍ରଦ୍ଧା ଉତ୍ତର ଦେଲେ ନାହିଁ । ତାଙ୍କରି ଭଳି ନିଶ୍ଚଳ ହୋଇ ଯାଇଛନ୍ତି ଅନିରୁଦ୍ଧ ଓ ଅନୁପମା ।

ବିନୟ କିଛି ସମୟ ଧରି ଏଇ ନିଶ୍ଚଳ ପ୍ରତିମାମାନଙ୍କୁ ଦେଖିଲା, ତା'ପରେ ଧୀରେ ଧୀରେ ସେଠୁ ବାହାରକୁ ଚାଲିଗଲା । ଅମରେଶ ବିଷୟରେ ସେ ସବୁ କିଛି ଜାଣିଛି । ସେଇ ପ୍ରଥମ ଦିନରୁ ହିଁ ଜାଣିଛି । ତାକୁ ନେଇ ନିଜ ଶ୍ୱଶୁର ଘରେ ସ୍ତ୍ରୀ, ଶଳାମାନଙ୍କ ସାମ୍ନାରେ ତାକୁ କେତେ ଥର ଅପମାନିତ ହେବାକୁ ହୋଇଛି । କିନ୍ତୁ ସେ ଯୁକ୍ତି କରି ନାହିଁ । ଅମରେଶର କାର୍ଯ୍ୟକୁ ସମର୍ଥନ କରି ପାରିନି କି ତାକୁ ବିରୋଧ ମଧ୍ୟ କରି ପାରିନି । ସବୁ ଥର ଭଳି ରାସ୍ତା କଡ଼ରେ ଠିଆ ହୋଇ ରହିଥିବା ଦର୍ଶକଟିଏ ହୋଇ ରହି ଯାଇଛି ସେ ।

ଏବେ ଅମରେଶକୁ କୈଫିୟତ ଦେବାକୁ ହେବ । ସେ ଦୃଶ୍ୟର ଦର୍ଶକ

ହୋଇ ପାରିବ ନାହିଁ ବିନୟ। ସେଇଥିପାଇଁ ବାହାରକୁ ଚାଲିଗଲା ସେ।

ମାମୁ ଚାଲିଯିବା ପରେ ଅମରେଶ ଖଟ ପାଖରୁ ଚାଲି ଯାଇ ଝରକା ପାଖରେ ଠିଆ ହେଲା। ଯେଉଁଠୁ କି ପୋଖରୀଟି ଭଲ ଭାବରେ ଦେଖା ଯାଏ। ଧଳା କଇଁରେ ଭରି ଯାଇଛି ପୋଖରୀଟି। ଆଉ ସେଇଠି ସମ୍ମିଳନୀ ଚଳେଇଛନ୍ତି କେତେ ଅଜଣା ଚଢ଼େଇ। ସେମାନଙ୍କ ଉପରେ ଆଖି ରଖି ଅମରେଶ ଭାବି ହେଉଥିଲା। ଛବି ଭଳି ନିଜ ଜୀବନ କାହାଣୀ ଆଙ୍କି ହୋଇ ଯାଉଥିଲା ତା' ଆଖି ସାମ୍ନାରେ।

ହଠାତ୍ ପୁଣି ଥରେ ଯନ୍ତ୍ରଣା ଭରା ସ୍ୱରରେ ଶ୍ରଦ୍ଧା କହି ଉଠିଲେ, ''ତୁ ଏମିତି କାହିଁକି କଲୁରେ ଅମୁ? ସବୁ ନଷ୍ଟ କରିଦେଲୁ!''

ମା'ଙ୍କ ମୁହଁକୁ ଚାହିଁଲା ଅମରେଶ। ''ସେମିତି କୁହ ନାହିଁ, ମା'।''

''କେମିତି କହିବିନି ରେ। ତୁ ଯଦି ଅବ୍ରାହ୍ମଣ ଝିଅଟିଏକୁ ବାହା ହୋଇ ଥାଆନ୍ତୁ, ତା'ହେଲେ ମାନି ନେବାକୁ ଏତେ କଷ୍ଟ ହୋଇ ନ ଥାଆନ୍ତା। ହେଲେ ମୁ-ସ-ଲ-ମା-ନ!! ହେ ପ୍ରଭୁ!...''

''ମା', ମୁଁ ତୁମମାନଙ୍କୁ କଷ୍ଟ ଦେବା ପାଇଁ ଏମିତି କରିନି। ଏସବୁ ହେବାର ଥିଲା। ନହେଲେ...''

''କ'ଣ ହେବାର ଥିଲା? କ'ଣ?''

ଅମରେଶ ଗୋଟାଏ ମୁହୂର୍ତ୍ତ ପାଇଁ ଆଖି ବନ୍ଦ କରି ନିଜକୁ ପ୍ରସ୍ତୁତ କରି ନେଲା। ସେ ଆଜି ସବୁ କହିଦେବ। ସବୁ କିଛି। ମା', ଦାଦା, ଅନି ସାମ୍ନାରେ କିଛି ଆଉ ଲୁଚେଇ ରଖିବ ନାହିଁ। ସବୁ ଶୁଣିବା ପରେ ଯାହା ଯେମିତି ପଦକ୍ଷେପ ସେମାନେ ନେବେ ନିଅନ୍ତୁ।

ଆଖି ଖୋଲି ଶାନ୍ତ ସ୍ୱରରେ ସେ କହିଲା, ''ମା', କଲିକତାରେ ଆସି ପହଞ୍ଚିବା ପରେ ପରଭେଜ୍ ମୋର ଅତି ଘନିଷ୍ଠ ସାଙ୍ଗ ହୋଇ ଯାଇଥିଲା। ତା'ରି ଯୋଗୁଁ ଜାଣ ମୁଁ ହୋଟେଲ୍ ଖୋଲି ପାରିଲି। ସେତେବେଳେ ବେଶ୍ କିଛି ଟଙ୍କା ସାହାଯ୍ୟ କରିଥିଲା ସେ। ମୁଁ ଦବିଗଲା ବେଳେ ମୋତେ ଭରସା ଦେଇଥିଲା। ହେଲେ ସ୍ୱାଧୀନତାର ଠିକ୍ ଆଗରୁ ଯେଉଁ ଦଙ୍ଗା ହଙ୍ଗାମ ଲାଗିଗଲା, ସେଇଥିରେ ବଳି ପଡ଼ିଗଲା ପରଭେଜ୍। ଆମରି ହିନ୍ଦୁ ଭାଇମାନେ ଏ କାଣ୍ଡଟି କରିଥିଲେ। ତା'ପରେ ବାନୁ...''

"ବାନୁ କିଏ ?" ରୁକ୍ଷ ଭାବରେ ଅନିରୁଦ୍ଧ ପଚାରିଲା । "ପରଭେଜ୍‌ର ଭଉଣୀ ?"

ଝରକାରୁ ମୁହଁ ବୁଲାଇ ନିଜର ବଡ଼ ଭାଇକୁ ଦେଖିଲା ଅମରେଶ ମୁହୂର୍ତ୍ତେ ପାଇଁ । ତା'ପରେ ଅସ୍ପଷ୍ଟ ସ୍ୱରରେ କହିଲା, "ନା, ଭଉଣୀ ନୁହଁ । ସ୍ତ୍ରୀ ।"

"କ'ଣ କହିଲୁ ? କ'ଣ କହିଲୁ ?" ଅନିରୁଦ୍ଧ ଆର୍ତ୍ତନାଦ କରିବା ଭଳି କହି ଉଠିଲା ।

"ବାନୁ ପରଭେଜ୍‌ର ସ୍ତ୍ରୀ । ପରଭେଜ୍‌କୁ ଚଣ୍ଡାଳମାନେ ହାଣି ଦେବା ପରେ ବାନୁକୁ ଓ ସେମାନଙ୍କର ଛୋଟ ଝିଅ ପରଭିନ୍‌କୁ ବି ସେମାନେ ମାରିଦେବା ପାଇଁ ବସିଥିଲେ । କିନ୍ତୁ ଝିଅକୁ ଧରି ବାଡ଼ି କବାଟ ବାଟେ ଲୁଚି ଆସି ମୋ ଘରେ ଆଶ୍ରୟ ନେଲା ବାନୁ । ବଞ୍ଚିଗଲା ସେଥିପାଇଁ ।"

ଜୋରରେ ନିଶ୍ୱାସ ନେଇ ଅମରେଶ ପୁଣି କହିଲା, "ସେତେବେଳେ ମୁଁ ଭାବିଥିଲି ବାନୁକୁ ତା' ବାପଘରକୁ ପଠେଇ ଦେବି । କିନ୍ତୁ କଲିକତାର ଗଳି କନ୍ଦିରେ ଯାହା ଚାଲିଥିଲା, ସେଥିରେ ତାକୁ ବାହାରକୁ ନେବାକୁ ମୋର ସାହସ ହୋଇ ନ ଥିଲା । ତା'ଛଡ଼ା ତା' ବାପଘର ଲୋକେ ବଞ୍ଚିଥିଲେ କି ନାହିଁ, ତା' ବି ସଂଦେହଜନକ । ... କେତେଦିନ ସେମାନଙ୍କୁ ମୁଁ ମୋ ଘରେ ରଖିଥାଆନ୍ତି ? ଶେଷରେ ଭାବିଲି ଏମିତିରେ ନିଜ ଘରେ ବାନୁକୁ ରଖିବା ଅପେକ୍ଷା ବାହା ହୋଇ ପଡ଼ିବାଟା ବେଶୀ ସମ୍ମାନଜନକ । ସେଥିପାଇଁ ଆର୍ଯ୍ୟ ସମାଜରେ ଯାଇ..."

ମୁସଲମାନ୍ ! ବିଧବା ! ପୁଣି ପିଲାଟାଏ ଅଛି !

ଶ୍ରଦ୍ଧା ଯେମିତି ଚେତା ହରେଇ ପଡ଼ିଯିବେ ଆଉ ଟିକକରେ । ଏ କ'ଣ କଲା ଅମୁ ? କ'ଣ କଲା ? ଏତେ ବଡ଼ ବଂଶର ପିଲା ! ବ୍ରାହ୍ମଣ ଘର ପିଲା ! ସେ ପୁଣି ମୁସଲମାନ ବିଧବାଟିଏକୁ ବାହା ହେଇ ପଡ଼ିଲା ! ବଂଶକୁ କଳୁଷିତ କରି ଦେଲା !

ଅନୁପମା ମଧ୍ୟ ପଥର ପାଲଟି ଯାଇଥିଲା ଏସବୁ କଥା ଶୁଣି । ତା'ର ମନେ ହୋଇଥିଲା, ଏସବୁ ଯେମିତି ସତ ନୁହଁ । ହୁଏତ ସ୍ୱପ୍ନ ନ ହେଲେ ବା ଉପନ୍ୟାସର କାହାଣୀ ।

ତଥାପି ତା' ଛୋଟ ଦା' ଯେ ନିହାତି ଗୋଟାଏ ପାପ କାମ କରିଛି, ସେ କଥା ତା' ମନ କାହିଁକି ଜମା ଭାବି ପାରୁ ନ ଥିଲା । ହେଲେ

ମା' କେମିତି ନେବେ ଏ ଘଟଣାକୁ ? ଆଉ ତା' ଦାଦା ?

ଅଚାନକ ଭାବରେ ତା' ମନକୁ ପଶି ଆସିଲା ଅର୍ଚ୍ଚନା କଥା। ତା' ଦିଦି ମନରେ ସଫିକ୍ ଦାଦା ପ୍ରତି ଅନୁରାଗ ଆସିଥିଲା ବୋଲି କି କାଣ୍ଡ ନ କରି ଦେଲା ଦାଦା ! ଦିଦିକୁ ତ୍ରାଣ ପାଦ୍ଗନାରୁ ବହିଷ୍କାର କରି ଦେଲା। ତା' ଜୀବନକୁ ଶୁଷ୍କ ନିରସ କରିଦେଲା। ଆଉ ଏବେ ? ଏବେ ତ ପୁଣି ଛୋଟ ଦା' ମୁସଲମାନ୍ ଝିଅଟିଏ ବାହା ହୋଇ ପଡ଼ିଛି ! ସେ ପୁଣି ବିଧବା।

ଦାଦା ତ ଏବେ ଆକାଶ ପାତାଳ ଏକ କରି ଥୋଇ ଦେବ। ନିଆଁ ଲଗେଇ ଦେବ ପୃଥିବୀରେ। ଛୋଟ ଦା'କୁ ଧକ୍କା ମାରି ନିଜ ଆଖି ସାମ୍ନାରୁ ବାହାର କରି ଦେବ। ବ୍ୟସ୍ତ ହେଇ ଅନିରୁଦ୍ଧ ମୁହଁକୁ ଚାହିଁଲା ଅନୁପମା।

ଅନିରୁଦ୍ଧର ମୁହଁ ଉପରୁ ଅବାକ ଭାବଟା ଏପର୍ଯ୍ୟନ୍ତ କଟିନି। ଏପର୍ଯ୍ୟନ୍ତ ସେ ଘଟଣାର ଭୟାବହତାକୁ ନିଜ ଧମନୀରେ ଅନୁଭବ କରି ପାରିନି।

ନା' କରି ପାରିଛି ? ଏବଂ ବର୍ତ୍ତମାନର ଅବସ୍ଥା ସହିତ ସାଲିସ କରି ଦେବା ପାଇଁ ନିଜ ଭିତରେ ନିରନ୍ତର ଚେଷ୍ଟା ଚଲେଇଛି ?

''ତୁ ଏ କ'ଣ କଲୁରେ ଅମୁ !'' ବିକଳ ଭାବରେ ପୁଣି ଶ୍ରଦ୍ଧା କହି ଉଠିଲେ।

ଅନିରୁଦ୍ଧ ମୁହଁ ଖୋଲିଲା, ''ମା', କ'ଣ ଏମିତି କରି ପକେଇଲା ଯେ ଅମୁ ?''

ଦାଦା କହୁଛି ଏକଥା ! ତା'ରି ବଡ଼ ଦାଦା !! ଅନୁପମା ଆଶ୍ଚର୍ଯ୍ୟରେ ଅନିରୁଦ୍ଧକୁ ଦେଖୁଥିଲା।

''ତୁମେ ତ ଖୁସୀ ହେବା କଥା। ତୁମ ପୁଅ ଯେ ଏତେ ମହନୀୟ କାମଟେ କରି ପାରିଲା, ତା' ନେଇ ଗୌରବ ଅନୁଭବ କରିବା କଥା। ତା' ନ କରି ତୁମେ ବ୍ୟସ୍ତ ହେଉଛ ?''

''ତୁ କେମିତି ଏ କଥା କହୁଛୁ ରେ ବାବୁ। କେମିତି ଆମେ ଅମୁ ଘରେ ରହିବା ? କେମିତି ତା' ସ୍ତ୍ରୀ ହାତ ରନ୍ଧା ଖାଇବା ?''

''ମା', ସେ ପରା ଆର୍ଯ୍ୟ ସମାଜରେ ଦୀକ୍ଷିତ ହୋଇ ହିନ୍ଦୁ ହୋଇ ସାରିଛି। ତା'ହେଲେ ଆଉ ଅସୁବିଧା କ'ଣ ରହିଲା ଯେ ?''

''ହେଲେ ବିଧବା...''

''ଓହୋ ମା', ରାଜା ରାମମୋହନ ରାୟ କ'ଣ ସବୁ କହିଥିଲେ, ଭୁଲିଗଲଣି ?'' ହଠାତ୍ ଅନିରୁଦ୍ଧ ଭୀଷଣ ବୁଝିବା ସୁଝିବାର ହୋଇ ଯାଇଛି।

ଦାଦା ଯଦି ପାଟି କରି ଥାଆନ୍ତା, ଛୋଟ ଦା'ଙ୍କୁ ଗାଳି ମନ୍ଦ କରି ଥାଆନ୍ତା ଏବଂ ପରେ ସମସ୍ତେ ବୁଝେଇବା ପରେ ବୁଝି ଥାଆନ୍ତା, ତାହେଲେ ଅନୁପମାକୁ ଏତେ ଖରାପ ଲାଗି ନ ଥାଆନ୍ତା। କିନ୍ତୁ ପ୍ରଥମରୁ ଯେ ଅନିରୁଦ୍ଧ ଏମିତି ଭାବରେ ସାନ ଭାଇର ତରଫଦାରୀ କରିବା ଆରମ୍ଭ କରିଦେଲା, ସେକଥା ସେ ଜମା ସହି ପାରିଲା ନାହିଁ ଏବଂ ସେଇଥି ପାଇଁ ହିଁ ତା' ରକ୍ତରେ ନିଆଁ ଲାଗିଗଲା।

ଅନୁପମା କାହାକୁ କିଛି ନ କହି ଚୁପ୍‌ଚାପ୍ ଛାତକୁ ଚାଲିଗଲା। ଗାଲରେ ହାତ ଦେଇ ଛାତରେ ତିଆରି ହୋଇଥିବା ପଥର ବେଞ୍ଚରେ ସେ ବସି ରହିଲା ମୂର୍ତ୍ତିଟିଏ ଭଳି।

ବେଶ୍ କିଛି ସମୟ କଟିଗଲାଣି। ଅନୁପମା ଛାତ ଉପରୁ ଦେଖିଛି ଯେ ଗେଟ୍ ଖୋଲି ବାହାରକୁ ଚାଲି ଯାଉଛି ଅମରେଶ। ତଥାପି ସେ ତଳକୁ ଆସିନି। ତଳୁ ଯେ କିଏ କିଏ ତାକୁ ଡାକୁଥିଲେ, ସେ ଶବ୍ଦ ତା' କାନରେ ପଡ଼ିଛି। କିନ୍ତୁ ସେ ଉତ୍ତର ଦେଇ ପାରିନାହିଁ। ଅନୁପମା ସ୍ତବ୍ଧ ହୋଇ କେବଳ ବସି ରହିଛି।

''ଅନି! ତୁ ଏଇଠି ବସି ରହିଛୁ? ମୁଁ ତତେ ଖୋଜି ଖୋଜି ମରୁଛି।'' ଶ୍ରଦ୍ଧା ଛାତ ଉପରକୁ ଚାଲି ଆସି ପାଟି କରି ଉଠିଲେ।

ତାଙ୍କ ପଛେ ପଛେ ଛାତରେ ପାଦ ରଖିଲା ଅନିରୁଦ୍ଧ। ''ଦେଖୁଛ, ମହାରାଣୀ ଏଇଠି ବସି ହାୱା ଖାଉଛନ୍ତି। ଆଉ ମୁଁ ଓ ଅମ୍ମା ତାକୁ ଯାଇ ବଗିଚାରେ ବୋକାଙ୍କ ଭଳି ଖୋଜି ଖୋଜି ହଇରାଣ।''

ତଥାପି କିଛି କହିଲା ନାହିଁ ଅନୁପମା। ସେଇମିତି ଦୂରକୁ ଚାହିଁ ବସି ରହିଲା।

''କ'ଣ ହେଲା ?'' ଏଥର ସାମାନ୍ୟ ବିରକ୍ତ ହୋଇଗଲେ ଶ୍ରଦ୍ଧା। ''ଖଣ୍ଡଟା

ଭଳି ବସି ରହିଲୁ କାହିଁକି ? ଯା । ଜିନିଷ ପତ୍ର ସଜାଡ଼ି ନେ । ଅମୂ ତା' ହୋଟେଲ୍‌କୁ ଯାଇଛି । ଫେରିବା ବେଳେ ଆମକୁ ସମସ୍ତଙ୍କୁ ନେଇଯିବ କହି ଯାଇଛି ।''

ଏଥର ମୁହଁ ବୁଲେଇ ମା' ଓ ଦାଦାଙ୍କୁ ଦେଖିଲା ଅନୁପମା । ବଜ୍ର କଠିନ ସ୍ୱରରେ କହିଲା, ''ମୁଁ ଯିବି ନାହିଁ ।''

''କ... କ'ଣ କହିଲୁ ?''

''କହିଲି, ତୁମର ଯଦି ଯିବା କଥା ଯାଅ । ମୁଁ କିନ୍ତୁ ଛୋଟ ଦା' ଘରକୁ ଯିବି ନାହିଁ ।''

''କାହିଁକି ? ତୋର ଏତେ ଗର୍ଭ କାହିଁକି ?'' ଶ୍ରଦ୍ଧା ଚିଡ଼ି ଯାଇ କହିଲେ ।

''ଯିବିନି ତ । ବାସ୍ ।''

''ଅନି, ତୁ ପରା ଦିନେ ଗାନ୍ଧୀଜୀଙ୍କ ଭାଷଣର ଗୁଣ ଗାଉଥିଲୁ । କହୁଥିଲୁ ଯେ ଧର୍ମ ଧର୍ମର ପାର୍ଥକ୍ୟ ମଣିଷ ସୃଷ୍ଟି କରିଛି । ଯିଏ ରାମ, ସେ ଯୀଶୁ, ସେଇ ଆଲ୍ଲା । ଆଉ ନିଜ ଭାଇ ମୁସଲମାନ ଝିଅଟିଏ ବାହା ହୋଇଛି ଶୁଣିବା ପରେ ସବୁ ଧର୍ମନିରପେକ୍ଷ ଭାବ ହଜିଗଲା ?'' ଥଟ୍ଟା କରିବା ସ୍ୱରରେ ଅନିରୁଦ୍ଧ ସାନ ଭଉଣୀକୁ କହିଲା ।

''ହଜିଗଲା ବୋଲି ଜାଣିଲ କେମିତି ?'' କ୍ଳାନ୍ତ ଗଳାରେ ଅନୁପମା ଉତ୍ତର ଦେଲା ।

''ତା'ହେଲେ ଅମୂ ଘରକୁ ଯିବୁନି ବୋଲି କହୁଛୁ କାହିଁକି ?''

''ନା । ଯିବିନି ।'' ସ୍ଥିର ନିଶ୍ଚିତ ଭାବରେ ଅନୁପମା କହିଲା ।

''ଆଉ ଏଠି ମାଈଁର ବାପ ଘରେ କଥା ଶୁଣି ପଡ଼ି ରହିବୁ ?'' ତିକ୍ତ ଭାବରେ କହି ଉଠିଲେ ଶ୍ରଦ୍ଧା ।

''ଏଠି ପଡ଼ି ରହିବି ବୋଲି କିଏ କହିଲା, ମା' ? କିଛି ଗୋଟିଏ ବ୍ୟବସ୍ଥା ନିଶ୍ଚୟ ହୋଇଯିବ ।'' ଅନୁପମା ଥଣ୍ଡା ସ୍ୱରରେ କହିଲା ।

ଅନିରୁଦ୍ଧ ସତରେ କିଛି ବୁଝି ପାରୁ ନ ଥିଲା । ଅନୁପମା ଯଦି ଖୁବ୍ ରକ୍ଷଣଶୀଳ ପ୍ରକୃତିର ଝିଅ ହୋଇଥାଆନ୍ତା, ତା'ହେଲେ ତା'ର ଏଭଳି ମନୋଭାବର କାରଣଟା ବୁଝି ହୋଇ ଯାଇଥାଆନ୍ତା । କିନ୍ତୁ ତା' ଚିନ୍ତାଧାରା ତ ଭିନ୍ନ । ବିଭିନ୍ନ ସମୟରେ ତା'ର ଯଥେଷ୍ଟ ପ୍ରମାଣ ପାଇଛି ଅନିରୁଦ୍ଧ । ତା'ହେଲେ ଏଇମିତି

ଗୋଟାଏ ଅଭୁତ ଜିଦି ଧରି ବସି ରହିଛି କାହିଁକି ଅନି ?

"କ'ଣ ହେଲା ଅନି ? କାହିଁକି ଯିବୁନି ତୁ ସେଠିକି ? ମତେ କହ।" ନରମ ସ୍ୱରରେ ଅନିରୁଦ୍ଧ ପଚାରିଲା।

ବଡ଼ ଭାଇକୁ ଜ୍ୱଳନ୍ତ ଦୃଷ୍ଟିରେ ଚାହିଁ ରହିଲା ଅନୁପମା। ତା'ପରେ ହିସ୍ ହିସ୍ କରି କହିଲା, "ତୁମକୁ ଗୋଟିଏ ପ୍ରଶ୍ନ କରିବାର ଅଛି, ଦାଦା।"

"କ'ଣ କହ।"

"ଧର, ମୁଁ ଏଇମିତି କରି ଥାଆନ୍ତି। ଧର, ମୁଁ ଆଜି କାହାକୁ କିଛି ନ କହି ମୁସଲମାନ ପୁଅଟିଏ ବାହାହୋଇ ତମମାନଙ୍କ ସାମ୍ନାକୁ ଚାଲି ଆସି ଥାଆନ୍ତି। ... ବାହା ହେବା କଥା ଛାଡ଼। ଧର, ବାହା ହେବାର ଇଚ୍ଛା କେବଳ ମନ ଭିତରେ ରଖି ତୁମ ପାଖରେ ମୁଁ ମୁହଁ ଖୋଲି ଥାଆନ୍ତି। ତା'ହେଲେ ତୁମେ କ'ଣ କରି ଥାଆନ୍ତ ? ତୁମେ କ'ଣ ଏଇମିତି ସମାଦରରେ ମତେ ଗ୍ରହଣ କରି ଥାଆନ୍ତ ?"

ଅନିରୁଦ୍ଧର କ'ଣ ଯେମିତି ମନେ ପଡ଼ି ଯାଉଛି। କୁଟ୍‌କୁଟ୍ କରି ମୁଣ୍ଡ ଭିତରେ ଦଂଶି ଯାଉଛି କିଏ ଯେମିତି।

"କୁହ, ଦାଦା। ଉତ୍ତର ଦିଅ।" ଅନୁପମା ପୁଣି ଥରେ ଗଳାରେ ଜୋର ଦେଇ ପଚାରିଲା।

"ସେମିତି କେମିତି କହି ପାରିବି ? ତୁ ଯଦି ମତେ ଓଲଟା ସିଧା ପ୍ରଶ୍ନ ପଚାରୁ, ତା'ର କି ଉତ୍ତର ଦେବି ମୁଁ ?" ସାନ ଭଉଣୀର ଅସ୍ୱସ୍ତିକର ପ୍ରଶ୍ନ ଆଡ଼େଇ ଯିବା ପାଇଁ ଅନିରୁଦ୍ଧ କହିଲା।

"ଏଇଟା କିଛି ବାଜେ ପ୍ରଶ୍ନ ନୁହେଁ, ଦାଦା। ତୁମେ ମତେ କୁହ, ମୁଁ ଯଦି ଏଇଭଳି ଗୋଟାଏ ପରିସ୍ଥିତି ତୁମ ସାମ୍ନାରେ ଉପୁଜେଇ ଦେଇଥାଆନ୍ତି, ତୁମେ ତା'ହେଲେ କ'ଣ କରିଥାଆନ୍ତ ? ତୁମେ କ'ଣ ମତେ ଆନନ୍ଦରେ ଆଶୀର୍ବାଦ ଦେଇଥାଆନ୍ତ ?"

ଅନିରୁଦ୍ଧ ଢୋକ ଗିଳିଲା। ଅନୁପମା ତା' ସାନ ଭଉଣୀ ନା ? ସେ ଏମିତି ଚଢ଼ି ଚଢ଼ି କଥା କହୁଛି, ଅଥଚ କାହିଁକି ସେ ଗୋଟାଏ ଧମକ ଦେଇ ଚୁପ୍ କରେଇ ଦେଇ ପାରୁନି ତାକୁ ?

ଆଉ... ଆଉ ଅନୁପମା ଭିତରେ ଏତେ ଦମ୍ଭ, ଏତେ ଶକ୍ତି ଆସିଲା

କୁଆଡୁ ?

"ଉତ୍ତର କାହିଁକି ଦେଉନ, ଦାଦା ? ଜବାବ ଦିଅ। ମତେ ଆଶୀର୍ବାଦ କରିଥାଆନ୍ତ ତୁମେ ?"

ଅନିରୁଦ୍ଧ ସତ କହିବାକୁ ବାଧ୍ୟ ହେଲା। ମୁଣ୍ଡ ହଲେଇ ଦେଇ କହିଲା, "ନା। ବୋଧହୁଏ ନା।"

"କାହିଁକି ? କୁହ କାହିଁକି ?"

"ଦେଖ୍ ଅନି, ଅମରେଶ ପୁଅ ପିଲା। ତା' ଦୋଷ ସମାଜ ଏତେ ଧରିବନି। ହେଲେ ତୁ ଝିଅଟିଏ ହୋଇ ଯଦି ଏମିତି କରି ଥାଆନ୍ତୁ, ତେବେ ତୋ ଜୀବନ ଦୁର୍ବିସହ କରି ଦେଇଥାଆନ୍ତା ସମାଜ। ଆମେ କାହାକୁ ମୁହଁ ଦେଖାଇ ପାରି ନ ଥାଆନ୍ତୁ ଏ ସମାଜରେ।"

"କି ସମାଜ କଥା କହୁଛ ତୁମେ ଦାଦା ? ତମମାନଙ୍କୁ ନେଇକରି ତ ଏ ସମାଜ। ତମରି ଭଳି ପୁରୁଷମାନେ ହିଁ ତ ତିଆରି କରିଛନ୍ତି ଏ ସମାଜ। ଏଠି ଗୋଟାଏ ଆଇନ୍ ପୁରୁଷମାନଙ୍କ ପାଇଁ। ଆଉ ଗୋଟାଏ ଆଇନ୍ ଆମ ଝିଅମାନଙ୍କ ପାଇଁ ? କାହିଁକି ? କାହିଁକି ଦି' ରକମର କାନୁନ୍ ?"

ଅନିରୁଦ୍ଧ ଚୁପ୍ ହୋଇ ରହିଲା।

ଏଥର ଶ୍ରଦ୍ଧା ମୁହଁ ଖୋଲିଲେ। "ତୁ କି ବାଜେ ଯୁକ୍ତି ନେଇ ବସି ଯାଇଛୁ, ଅନି। କ'ଣ ହୋଇଥାଆନ୍ତା କ'ଣ ନ ହୋଇ ଥାଆନ୍ତା, ତା' ନେଇ ଯୁକ୍ତି କରିବାର ଏଇଟା ସମୟ ?"

"ହଁ। ଏଇଟା ହିଁ ଠିକ୍ ସମୟ। ତୁମେ ବୁଝିବନି ମା'। ହେଲେ ଦାଦା ଠିକ୍ ବୁଝିଛନ୍ତି, ମୁଁ ଯେଉଁ କଥା କହିବାକୁ ଚାହିଁଛି। ଏଇଟା ଯେ କେବଳ ବାଜେ କଥାର ଯୁକ୍ତି ନୁହଁ, ତା' ସେ ଭଲ ଭାବରେ ଅନୁଭବ କରିଛନ୍ତି।"

ଅନିରୁଦ୍ଧ ମୁଣ୍ଡ ତଳକୁ କଲା। ହଁ, ସେ ଅନିର ପରୋକ୍ଷ କଥା ଠିକ୍ ବୁଝିଛି। ଅନି କେଉଁ ବିଷୟରେ ଇଙ୍ଗିତ କରୁଛି, ତା' ସେ ଠିକ୍ ଜାଣି ପାରୁଛି। କିନ୍ତୁ ବୁଝିଲେ ବି ତା'ର ଆଉ କରିବାର କିଛି ନାହିଁ। ସମୟକୁ ଫେରାଇ ନେଇ ପାରିବ ନାହିଁ ସେ। ସ୍ଥାନ, କାଳ, ପାତ୍ରକୁ ସେ ବଦଳେଇ ଦେଇ ପାରିବ ନାହିଁ।

ସେ ନାଚାର। ମୁଣ୍ଡ ତଳକୁ ପୋତି ବସି ରହିଲା ଅନିରୁଦ୍ଧ।

''କ'ଣ ହେଲା ? ତୁମେମାନେ ସବୁ ଏଠି କାହିଁକି ବସି ରହିଛ ?'' ହଠାତ୍ ଛାତ କବାଟ ଠେଲି ପଶି ଆସିଲା ବିନୟ।

''ବୁନୁ, ଦେଖ ତ ଏ ଝିଅକୁ।''

''କ'ଣ କଲା ଅନି ?''

''କହୁଛି ଯିବନି ଅମୁ ଘରକୁ।''

''କାହିଁକି ଯିବୁନି ଅନି ? ମୁଁ ଶୁଣିଛି ଅମୁ ବୋହୂଟି କୁଆଡ଼େ ଭାରି ଭଲ। ଭାରି ରୁଚିବନ୍ତ। ଅତି ସୁନ୍ଦରୀ ବି।''

''ମାମୁ, ସେକଥା ନୁହଁ। ... ତୁମେ ବୁଝିବନି। ... ମୁଁ ଯିବିନି। ବାସ୍।''

ବିନୟ ଏଭଳି କଥାର କି ପ୍ରତିବାଦ କରିବ ବୁଝି ପାରିଲା ନାହିଁ। ''ଛୋଟ ଦି', ସେ ଯିବାକୁ ନ ଚାହୁଁଛି ତ ନ ଯାଉ। ବାଧ କାହିଁକି କରୁଛ ? ଅନି ଏବେ ରହୁ କିଛି ଦିନ ମୋ ପାଖରେ। ପରେ ଦେଖାଯିବ।''

ପଥରର ବେଞ୍ଚରୁ ଉଠି ଯାଇ ଛାତର ପାଚିରି ପାଖରେ ଠିଆ ହେଲା ଅନୁପମା। ନିଜ କଥା ଭାବି ହେଉଥିଲା ବୋଧହୁଏ। କିଛି ସମୟ ସେଇଠି ଠିଆ ହୋଇ ରହିବା ପରେ ଧୀରେ ଧୀରେ ବୁଲି ସମସ୍ତଙ୍କୁ ଥରେ ଥରେ ଦେଖିଲା ସେ। ତା'ପରେ ବିନୟକୁ ଲକ୍ଷ୍ୟ କରି କହିଲା, ''ମାମୁ, ମୋ ପାଇଁ ଗୋଟାଏ କାମ କରି ଦେବାକୁ ହେବ।''

''କ'ଣରେ ମା' ?''

''ମୋ ପାଇଁ ଗୋଟିଏ ଚାକିରି ବୁଝି ଦେଇ ପାରିବନି ? ତୁମର ଏଠି କେତେ ଜଣାଶୁଣା ଲୋକ। ନିଶ୍ଚୟ କେଉଁଠି ହୋଇଯିବ।''

''ତୁ ଚାକିରି କରିବୁ, ଅନି ? ପାଠ ଏମିତି ଅଧାରୁ ଛାଡ଼ିଦେବୁ ?''

''ଉପାୟ କ'ଣ ମାମୁ ? ... କୁହ ଯୋଗାଡ଼ କରି ଦେବ ତ ?''

ବିନୟ କିଛି ନ କହି ଚୁପ ହେଇ ଠିଆ ହୋଇ ରହିଲା। ତା'ର କିଛି ନ କହିବାଟାକୁ ମୌନ ସମ୍ମତି ମନେ କରି ଛାତରୁ ଓହ୍ଲେଇ ଆସିଲା ଅନୁପମା।

ସେଦିନର ସେ ଘଟଣା ପରେ ଆଉ କାହାର ଅମରେଶ ଘରକୁ ଚାଲି ଯିବା ହୋଇନି। ଅବଶ୍ୟ ସାନ ପୁଅର ବାଧବାଧକତାରେ ଶ୍ରଦ୍ଧା ଥରେ ଯାଇ ବୋହୂକୁ ଦେଖି ଆସିଥିଲେ। ଆଶୀର୍ବାଦ କରି ନିଜର ହାରଟିଏ ପିନ୍ଧେଇ ଦେଇଥିଲେ।

କିନ୍ତୁ ସେଠି ଯାଇ ରହିବା କଥା ଆଉ ହୋଇନି।

ଅମରେଶ ବୋଧହୁଏ ଆଶଙ୍କା କରିଥିଲା ଯେ ଏଇମିତି କିଛି ହୋଇପାରେ। ତେଣୁ ସେ ବି କାହାକୁ ବେଶୀ ବାଧ କରିନି। ଫଳରେ ଇତାର ମୁହଁମୋଡ଼ା ସତ୍ତ୍ୱେ, ବ୍ରଜେନ୍ଦ୍ରଙ୍କ ଅପ୍ରସନ୍ନତା ସତ୍ତ୍ୱେ ଶ୍ରଦ୍ଧାଙ୍କୁ ସେଇଠି ରହିବାକୁ ହେଲା ପ୍ରାୟ ଦୁଇ ସପ୍ତାହ।

ଏହାରି ଭିତରେ ଦିନେ ଅନିରୁଦ୍ଧର ଚାକିରି ହୋଇଗଲା। ସେଇ ପୁରୁଣା କମ୍ପାନୀର କଲିକତା ଅଫିସ୍‌ରେ। ଯେଉଁଠିକି ତା'ର ବଦଳି ହେବାର କଥା ଥିଲା, ସେଇଠିକି। ଦେଶର ଅବସ୍ଥା ଦେଖି କମ୍ପାନୀର ମାଲିକମାନେ ଅନିରୁଦ୍ଧକୁ ଘରଟିଏ ଦେବାର ମଧ୍ୟ ବ୍ୟବସ୍ଥା କରିଛନ୍ତି। ମା' ଓ ଅନୁପମାକୁ ଧରି ଅନିରୁଦ୍ଧ ସେଇ ଘରକୁ ଉଠି ଆସି ସାରିଛି। ଚାକିରି ଆରମ୍ଭ କରିବା ପରେ ଓ ନିଜ ଘରକୁ ଆସିବା ପରେ ଅନିରୁଦ୍ଧ ଅନୁପମା ସହିତ ସାଲିସ କରିବା ପାଇଁ କଲେଜରେ ଆଡ୍‌ମିଶନ୍ କରେଇ ଦେବା କଥା କହିଥିଲା। କିନ୍ତୁ ଜମା ରାଜି ହୋଇନି ଅନୁପମା।

ସେଦିନ ସେ ଛାତ ଉପରେ ଯାହା କହି ଦେଇଥିଲା, ସେସବୁ ଯେ କେବଳ ଗୋଟାଏ ମୁହୂର୍ତ୍ତର ରାଗ ମୁଣ୍ଡର କଥା ନୁହଁ, ତା' ସେ ପ୍ରମାଣ କରି ଦେଇଛି। ମାମୁଙ୍କର ସାହାଯ୍ୟ ନେଇ ଅନୁପମା କେଇଟା ସ୍କୁଲ୍‌ରେ ଯାଇ ଚାକିରିର ଦରଖାସ୍ତ ଦେଇ ଆସିସାରିଥିଲା। ଏହା ଭିତରେ ତା'ର ଯେ କୋଉଠି ହେଲେ ଚାକିରି ହୋଇଯିବ, ସେ ବିଷୟରେ କାହାର ସନ୍ଦେହ ନ ଥିଲା।

ଅନିରୁଦ୍ଧ ବେଳେ ବେଳେ ଭାବେ ସାନ ଭଉଣୀକୁ ବୁଝେଇବ। ପୁଣି ପର ମୁହୂର୍ତ୍ତରେ ଏକ ଦୁର୍ବାର ଅଭିମାନ ଆସି ମାଡ଼ି ବସେ ତା' ସତାକୁ। କାହିଁକି ତାକୁ ବୁଝିପାରିବନି ଅନି? ସମାଜ ଭିତରେ ଘର କରି ରହି ସେ ଯଦି ସମାଜର ଲାଲ ଆଖିକୁ ସମୀହ କରି ଚଳିଲା, ତା'ହେଲେ କ'ଣ ବିରାଟ ଗୋଟାଏ ଦୋଷ କରି ଦେଲା? ଅମରେଶ ସାଙ୍ଗରେ ପରୋକ୍ଷରେ ଅର୍ଚ୍ଚନାର ତୁଳନା କରୁଛି ତ ଅନି। ହେଲେ ସେମିତି କ'ଣ ହୁଏ? ପୁରୁଷ ପିଲା ସୁନା ମୁଣ୍ଡି। ଘଷି ମାଜି ଦେଲେ ନୂଆ ଚକ୍‌ଚକ୍। ଆଉ ଝିଅ ପିଲା ତ ମାଟି ହାଣ୍ଡି। ଥରେ ମାରା ହୋଇଗଲେ ସରିଗଲା। ତା'ହେଲେ କେମିତି ସେ ଅର୍ଚ୍ଚନାକୁ ସମର୍ଥନ କରି ଥାଆନ୍ତା? ତାକୁ ଆଗେଇ ଯିବାକୁ କେମିତି ଅନୁମତି ଦେଇ

ଥାଆନ୍ତା ?

ଏତିକି କଥା ଅନି ବୁଝି ପାରିଲା ନାହିଁ।

ସେଦିନ ଅଫିସ୍‌ରୁ ଫେରିବା ବେଳେ ଅନିରୁଦ୍ଧର ମନ ଭାରାକ୍ରାନ୍ତ ହୋଇଯାଇଥିଲା। ପୃଥିବୀଯାକର ଚିନ୍ତା ଆସି ସବାର ହୋଇ ବସିଥିଲା ତା' ମୁଣ୍ଡରେ। ଦାଣ୍ଡଘରେ ପଡ଼ିଥିବା ଚୌକିରେ ବସି ଯାଇ ସେ କ୍ଲାନ୍ତ ଭାବରେ କହିଲା, ''ମା', ଚାହା କପେ ଦେବ।''

ଅନୁପମା ନୁହଁ, ଶ୍ରଦ୍ଧାଙ୍କୁ ହିଁ ସେ କହିଲା। ଆଜିକାଲି ସାନ ଭଉଣୀକୁ ଦରକାରଠୁଁ ଅଧିକା କଥା କହିବାକୁ ତା'ର ଇଚ୍ଛା ହୁଏ ନାହିଁ। କିଛି ମାଗିବାକୁ ଇଚ୍ଛା ହୁଏ ନାହିଁ। ସେଥିପାଇଁ ସେ ମା'ଙ୍କୁ ହିଁ ଚାହା ମାଗିଲା।

ଡାହାଣ ହାତରେ ଚାହା କପ୍ ଧରେଇ ଦେଇ ବାଁ ହାତକୁ ଚିଠିଟିଏ ବଢ଼େଇ ଦେଲେ ଶ୍ରଦ୍ଧା। ''ଆଜି ଡାକରେ ଆସିଛି।''

''କାହା ଚିଠି ?''

''ଅର୍ଚ୍ଚନାର।''

''କ'ଣ ଲେଖିଛି ?''

''ତୁ ନିଜେ ପଢ଼ି ଦେଖ।''

ଅର୍ଚ୍ଚନା ଲେଖିଥିଲା,

ମା', ତୁମ ଚିଠିରୁ ସବୁ ଜାଣିଲି। ଅନି ପଢ଼ା ଛାଡ଼ି ଦେଇ ଯେ ଚାକିରି ଖୋଜୁଛି, ଏକଥା ଶୁଣି ବଡ଼ ଦୁଃଖ ଲାଗିଲା। ଆମ ଭାଇ ଭଉଣୀଙ୍କ ଭିତରେ ସେ ଏକା ବାବାଙ୍କ ସ୍ୱପ୍ନକୁ ସାକାର କରିବାର ଅବସ୍ଥାରେ ଅଛି। ଅଥଚ ଗୋଟାଏ ଜିଦ୍‌ରେ ଯେ ସେ ପାଠ ଛାଡ଼ି ଦେବାକୁ ବସିଛି, ତା' ମୁଁ ଜମା ମାନି ନେଇ ପାରୁନି। ମୋର ଗୋଟାଏ ଅନୁରୋଧ, ମା'। ତୁମେ ଅନିକୁ ଏଇଠି ମୋ ପାଖକୁ ପଠେଇଦିଅ। ମୁଁ ତ ଏକା ରହୁଛି। ମୋ ପାଖରେ ଅନି ରହିଲେ, ମତେ ବହୁତ ଭଲ ଲାଗିବ। ଆଉ ଏଠି ରେଭେନ୍ସା କଲେଜ୍‌ରେ ମୁଁ ଅନିର ଆଡ୍‌ମିଶନ୍ କରେଇ ଦେଇ ପାରିବି। ତା'ର ଏତେ ଭଲ ରେଜଲ୍ଟ ହୋଇଛି, ଜମା କିଛି ଅସୁବିଧା ହେବନି।

ତୁମେ ଦାଦା ସାଙ୍ଗରେ କଥାବାର୍ତ୍ତା କରି ଯେତେ ଶୀଘ୍ର ପାରିବ ଅନିକୁ ମୋ ପାଖକୁ ପଠେଇ ଦେବ। ପଠେଇବା ଆଗରୁ ଟେଲିଗ୍ରାମ୍‌ଟିଏ କରିଦେଲେ

ମୁଁ ତାକୁ ଷ୍ଟେସନ୍‌ରୁ ନେଇ ଆସିବି। ତୁମେ ଆଉ ଦାଦା କ'ଣ ନିଷ୍ପତ୍ତି ନେଲ, ଶୀଘ୍ର ଜଣେଇବ। ରହୁଛି।

ଇତି

ଅର୍ଚ୍ଚନା

ଚିଠିଟିକୁ ପଢ଼ି ସାରି ମୋଡ଼ି ଲଫାପା ଭିତରେ ପୂରେଇ ଦେଲା ଅନିରୁଦ୍ଧ।

"ହୁଁ।" କେବଳ ଏଇ ଗୋଟାଏ ଶବ୍ଦ ତା' ପାଟିରୁ ବାହାରିଲା।

"କ'ଣ ଭାବୁଛୁ, ବାବୁ?" ଶ୍ରଦ୍ଧା ପଚାରିଲେ।

ଅନିରୁଦ୍ଧ ମା'ଙ୍କୁ ଓଲଟା ପ୍ରଶ୍ନ ପଚାରିଲା, "ତୁମେ କ'ଣ ଭାବୁଛ, ମା'?"

"ମୁଁ ଆଉ କ'ଣ ଭାବିବି?" ଦୀର୍ଘ ନିଶ୍ୱାସ ନେଇ ଶ୍ରଦ୍ଧା କହିଲେ। "ବୋଧହୁଏ ଏଇ ଭଲ। ଯଦି ଅର୍ଚ୍ଚନା ପାଖରେ ରହି ଅନି ପଢ଼ାପଢ଼ି କରି ପାରିବ, ତେବେ ଭଲ ନିଶ୍ଚୟ। ଦୁଇ ଭଉଣୀ ଏକାଠି ରହିଲେ, ମୋର ଚିନ୍ତା ବି କମିବ।"

"ଅନି କ'ଣ କହୁଛି?"

"ତାକୁ ମୁଁ ପଚାରିନି। ଅର୍ଚ୍ଚନା ପାଖକୁ ଯିବାରେ ପୁଣି ସେ ଆପତ୍ତି କରିବ?"

ଅନିରୁଦ୍ଧ କିଛି ନ କହି ଚାହା ପିଇଲା ନୀରବ ଭାବରେ। ତାକୁ ବଡ଼ ବିଚଳିତ ଲାଗୁଥିଲା। ବାବା ଚାଲିଯିବା ପରେ ନିଜର ସବୁ ସୁଖ, ଉଚ୍ଚ ଆଶା - ସବୁକୁ ଜଳାଞ୍ଜଳି ଦେଇ ସେ ଭାଇ ଭଉଣୀଙ୍କୁ ମଣିଷ କରିବାକୁ ବସିଲା। ହେଲେ କ'ଣ ସେଥିରେ ସଫଳ ହୋଇ ପାରିଲା ସେ? ନିଜର ସୁଖଟକ ଗଲା। ଆଉ ତିନି ଭାଇ ଭଉଣୀ ଅସନ୍ତୁଷ୍ଟ ହୋଇ ପଡ଼ିଲେ ତା' ଉପରେ।

କାହିଁକି ଏମିତି ହେଲା? ତା'ର କ'ଣ କେଉଁଠି ଭୁଲ ରହିଗଲା କି? ନା ତା' ମନ ତଳେ କୌଣସି ଅସନ୍ତୋଷ ରହି ଯାଇଥିଲା?

ବୋଧହୁଏ।

ଏତେ ବର୍ଷ ପରେ ନିଜ ପାଖରେ ସ୍ୱୀକାର କଲା ଅନିରୁଦ୍ଧ। ବୋଧହୁଏ ସେୟା। ଏତେ ଦିନ ଧରି ସେ ଯେଉଁ ସ୍ୱାର୍ଥ ତ୍ୟାଗ କରି ଆସିଛି, ତା' ଭିତରେ ମିଶାମିଶି ହୋଇ ନିଶ୍ଚିତ ଭାବରେ କିଛିଟା ଅସନ୍ତୋଷ ରହି ଯାଇଥିଲା।

ଏବଂ ପୁଣି କିଛି ଅହଙ୍କାର। ନିଜ ଆଖିରେ ନିଜର ମହାନତା ନେଇ ବୋଧହୁଏ ତା'ର ଗର୍ବ ହୋଇ ଯାଇଥିଲା। ସେ ଗର୍ବର ଛିଟା ଭିନ୍ନ ଉପାୟରେ, ଭିନ୍ନ ଭାବରେ ଖିଏ ଖିଏ ହୋଇ ଅପର ମଣିଷମାନଙ୍କ ପାଖରେ ପହଞ୍ଚି ଯାଇଛି। ସେମାନେ ତାକୁ ହତାଦାର କରିଛନ୍ତି ମନେ ମନେ। କିଛିଟା ଘୃଣା ନେଇ ଦେଖିଛନ୍ତି ବି। ଆଉ ପୁଣି କ୍ରମେ କ୍ରମେ ଦୂରେଇ ଯାଇଛନ୍ତି ତା' ପାଖରୁ।

କାହାକୁ ଦୋଷ ଦେବ ଅନିରୁଦ୍ଧ? ତା' ନିଜ ଆଖିରେ ଯେ ସେ ନିଜେ ହିଁ ଦୋଷୀ। ଦଣ୍ଡ ପାଇବାର ଯୋଗ୍ୟ।

ଅନିରୁଦ୍ଧର ମୁଣ୍ଡ ଫାଟି ଯାଉଛି। ହତାଶା, ଲୁହ, ପରାଜୟ - ସବୁ ଗୋଳେଇ ହୋଇ ଯାଇ ଆଖି ଦିଇଟା ତା'ର ଲାଲ ହୋଇ ଯାଇଛି। ଭାଗ୍ୟ ଭଲ, ଅନ୍ଧାର ଭିତରେ ମା'ଙ୍କ ଆଖିରୁ ଉହ୍ୟ ରହିଯିବ ତା' ମନର ପ୍ରତିବିମ୍ବ। ନହେଲେ ଯେ ପୁଣି ହଜାରେ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିଥାଆନ୍ତା ତାକୁ।

ଅନିରୁଦ୍ଧ ମୁଣ୍ଡ ଉପରକୁ ଉଠାଇଲା। ଧୀର ସ୍ୱରରେ କହିଲା, "ମା', ମୁଁ ଟ୍ରେନ୍ ଟିକେଟ୍ ବ୍ୟବସ୍ଥା କରୁଛି। ଅନିକୁ ଛାଡ଼ି ଦେଇ ଆସିବି ଅର୍ଚ୍ଚନା ପାଖରେ। ଠିକ୍ ତ?" ପୁଣି ଟିକିଏ ଭାବିବା ଭଳି ହୋଇ କହିଲା, "ତୁମେ ବି ଚାଲନା ମା', ମୋ ସାଙ୍ଗରେ। ଅନିକୁ ଛାଡ଼ି ଜଗନ୍ନାଥ ଦର୍ଶନ କରି ଫେରି ଆସିବା ଆମେ ମା' ପୁଅ ଦି'ଜଣ। କ'ଣ କହୁଛ?"

କିଛି ନ କହି ମୁଣ୍ଡ ଟୁଙ୍ଗାରିଲେ ଶ୍ରଦ୍ଧା। ତାଙ୍କ ମନର ଅବସ୍ଥା ଯାହା, ସେଥିରେ ପାଟିରୁ କଥା ସ୍ଫୁରିବ କେମିତି?

ଜଗନ୍ନାଥ ଦର୍ଶନ! କିଛି ବର୍ଷ ତଳେ ଏକଥା ଶୁଣିଥିଲେ ଶ୍ରଦ୍ଧାଙ୍କ ମନ, କାନ ତୃପ୍ତ ହୋଇ ଯାଇଥାଆନ୍ତା। କିନ୍ତୁ ଏବେ...

ଜୀବନର ଏତେ ଗୁଡ଼ାଏ ବର୍ଷ ଠାକୁରଙ୍କ ସାହାରାରେ କଟେଇ ଦେଲେ ସେ। ପିଲାଏ ଦେଖିଛନ୍ତି, ଜାଣିଛନ୍ତି ସେମାନଙ୍କ ମା'ର ଈଶ୍ୱର ଭକ୍ତି। ସେଥିପାଇଁ ଜଗନ୍ନାଥ ଦର୍ଶନ କଥା କହିଲା ଅନିରୁଦ୍ଧ। ହେଲେ ଶ୍ରଦ୍ଧା କେମିତି ପୁଅକୁ କହିବେ ଯେ ବର୍ତ୍ତମାନ ଜଗନ୍ନାଥ ଦର୍ଶନ ଅପେକ୍ଷା ଅର୍ଚ୍ଚନାକୁ ଦେଖିବାକୁ ମନ ତାଙ୍କର ବିକଳ ହୋଇ ଯାଉଛି! ଏଇ ମୁହୂର୍ତ୍ତରେ ଯେ ସନ୍ତାନ ମୋହ ଈଶ୍ୱର ପ୍ରାପ୍ତିଠୁଁ ଅଧିକ ବଡ଼ ହୋଇ ଯାଉଛି ତାଙ୍କ ଆଖିରେ!

ଅର୍ଚ୍ଚନା। ତାଙ୍କର ଲବଣୀ ପିତୁଳା ଝିଅ ଅର୍ଚ୍ଚନା। କାହିଁକି ତା' ଭାଗ୍ୟରେ

ଏଭଳି ସଂଗ୍ରାମମୟ ଜୀବନ ଲେଖା ହୋଇ ରହିଥିଲା ? ସେ ଭାବିଥିଲେ ଯେ ତା' ଭଳି ସୁନ୍ଦରୀ ଝିଅକୁ ବୋହୂ କରିବା ପାଇଁ ଲୋକେ ଆଗେଇ ଆସିବେ। ତା'ପରେ ସେ ବାଛିବୁଛି ଭଲ ଘର, ଭଲ ବର ଦେଖି ତାକୁ ଟେକି ଦେବେ। ଶାଶୂ ଘରେ ଯାଇ ସମସ୍ତଙ୍କର ମଥାର ମଣି ହୋଇ ବସିବ ସେ। ତା'ର ଭଲ ବୋହୂ ପଣିଆର ପ୍ରଶଂସା ଶୁଣି ଶ୍ରଦ୍ଧାଙ୍କର ଛାତି ପୂରି ଉଠିବ।

ହେଲେ କ'ଣ ସବୁ ହୋଇଗଲା ତା' ଜୀବନରେ ? କାହିଁକି ସେ ବାହା ହେବାକୁ ମନା କରି ଦେଲା ? ସେଇ ରାଗରେ ସିନା ତାକୁ ଚାକିରି କରିବାକୁ ପଠେଇ ଦେଲା ଅନିରୁଦ୍ଧ। ଆଉ ଚାକିରି କରୁ କରୁ ଅର୍ଚ୍ଚନା ବି କେମିତି ଅନ୍ୟ ରକମର ହୋଇଗଲା। ପରୋକ୍ଷ ଭାବରେ ହେଉ ପଛକେ ସ୍ୱଦେଶୀ ଆନ୍ଦୋଳନ ପ୍ରତି ଢ଼ଳିଗଲା। ଦେଶ ସେବା, ପିଲାଙ୍କୁ ପଢ଼େଇବା - ଏ ସବୁ ତା' ପାଇଁ ମୁଖ୍ୟ ହୋଇଗଲା। ନହେଲେ କି ସେ ଜୋର୍ ଦେଇ କହି ଦେଇଥାଆନ୍ତା ଯେ ସେ କେବେ ବାହା ହେବନି !

ଶ୍ରଦ୍ଧା ଚାପା ଦୀର୍ଘନିଶ୍ୱାସ ନେଲେ। ସେଇ ଯେଉଁ ଥର ଦେଖା ହେବା ବେଳେ ବାହା ନ ହେବା କଥା କହିଥିଲା ଅର୍ଚ୍ଚନା, ତା' ପରଠୁଁ ଆଉ ତାକୁ ସେ ଦେଖି ନାହାନ୍ତି। ଏତେ ଦିନ ଝିଅଟା ତାଙ୍କର ନିଜ ଦମ୍ଭରେ ଚଳି ଯାଉଛି। ସୁବିଧା ଅସୁବିଧାରେ ପରର ସାହାଯ୍ୟ ନେଇଛି ସିନା, ମା', ଭାଇଙ୍କ ପାଖରେ ଥରେ ବି ହାତ ପତାଇନି।

କାହିଁକି ?

କାହିଁକି ଏଭଳି ଭାବରେ ଦୂରେଇ ଗଲା ସୁନା ଝିଅଟି ତାଙ୍କର ?

ସେଦିନ କାନ୍ଥକୁ ଆଉଜି ବହୁତ ସମୟ ଚୁପ ହୋଇ ବସି ରହିଥିଲେ ଶ୍ରଦ୍ଧା।

ଅର୍ଚ୍ଚନା କଟକ ସହରଟିର ନାଁ ଶୁଣିଥିଲା। କିନ୍ତୁ ଦିନେ ଯେ ତାକୁ ଆସି ସେଇ ଅଚିହ୍ନା ସହରକୁ ନିଜର କରି ନେବାକୁ ହେବ, ସେଠି ଏକା ରହିଯିବାକୁ ହେବ, ତା' ସେ କେବେହେଲେ ସ୍ୱପ୍ନରେ ବି ଭାବି ନ ଥିଲା।

ତଥାପି ଆସିବାକୁ ହେଲା। ଅର୍ଚ୍ଚନା ଜୀବନରେ ଏଇମିତି ଅଭାବନୀୟ ଘଟଣା ବହୁତ ଘଟିଲାଣି। ସେଥିପାଇଁ ସେ ସବୁବେଳେ ନିୟତିର ମୋଡ଼କୁ ବିନା ପ୍ରତିବାଦରେ, ଅବିଚଳିତ ଭାବରେ ମାନି ନେଇଛି।

ଉମାକାନ୍ତ ଘୋଷାଲଙ୍କ ଘରୁ ଆସିବା ପରେ ସେ ଭାବି ନେଇଥିଲା ଯେ ମା' ଓ ଦାଦା ଆସିବା ପର୍ଯ୍ୟନ୍ତ ଛୋଟ ଦା' ପାଖରେ ରହିଯିବ। କିନ୍ତୁ ବାନୁ ସହିତ ଅମରେଶର ଘନିଷ୍ଠତାର ପ୍ରମାଣ ପାଇ ଯିବା ପରେ ପ୍ରତିଟି ଦିନ ଅସହ୍ୟ ହୋଇ ପଡ଼ିଥିଲା ତା' ପାଇଁ। ଦିନର ଚବିଶ ଘଣ୍ଟା କଟୁ ନ ଥିଲା। ମନେ ହେଉଥିଲା ଯେମିତି ସାହାରା ମରୁଭୂମିର ବାଲି ଚଦର ଭିତରେ ଗୋଡ଼ ପୋତି ହୋଇ ଯାଉଛି। ପାଦଟିଏ ପକାଇ ପୁଣି ଅନ୍ୟ ପାଦ ଉଠେଇ ପାରୁ ନାହିଁ ସେ। ଅଥଚ ଧୂ ଧୂ ଖରାର ଛାତ ତଳେ ଚାଲି ଚାଲି ମରୁଭୂମି ଅତିକ୍ରମିବାକୁ ହେବ ତାକୁ। ଅର୍ଚ୍ଚନା ବାରମ୍ବାର ମୁଣ୍ଡ ଉଠେଇ ଆକାଶର ନୀଳିମାକୁ ଦେଖୁଥିଲା ଏବଂ ତା'ରି ଭିତରେ ସ୍ନିଗ୍ଧ, କୋମଳ ମେଘର ସନ୍ଧାନ କରୁଥିଲା। କିନ୍ତୁ ନା, ବାରମ୍ବାର ହତାଶ ହେବାକୁ ପଡୁଥିଲା ତାକୁ। ଆଶାର ମେଘ ତ ଦୂର ସ୍ଥାନ, ଓଏସିସ୍‌ର ମରିଚୀକାଟିଏ ମଧ୍ୟ ଆଖିରେ ପଡୁ ନ ଥିଲା ତା'ର। କି ଦୁର୍ବିସହ ଜୀବନ !!

ସେଦିନ ସ୍କୁଲ୍‌ରେ ବସି ଅର୍ଚ୍ଚନା ଏଇମିତି କେତେ କ'ଣ ଭାବି ହେଉଥିଲା। ପ୍ରଥମ ଦୁଇ ପିରିୟଡ୍ କ୍ଲାସ୍ ନାହିଁ ତା'ର। ଘରୁ ଟିକିଏ ଡେରିରେ ବାହାରିଥିଲେ ହୋଇଥାଆନ୍ତା। କିନ୍ତୁ ଆବଶ୍ୟକତାଠାରୁ ଗୋଟାଏ ମୁହୂର୍ତ୍ତ ଅଧିକ ସେ ଅମରେଶ ଘରେ କଟାଇ ପାରୁ ନ ଥିଲା। ବାହାରର ସ୍ୱଚ୍ଛ ପବନ, ଅନାବିଳ ଆଲୁଅ ପାଇଁ ନିଜ ଭିତରେ ଛଟପଟ ହୋଇ ଯାଉଥିଲା।

କାହିଁକି ଏମିତି ହୁଏ ?

ନିବିଷ୍ଟ ଚିତ୍ତରେ ସାମ୍ନାର ଅଜଣା ବହିଟିକୁ ଚାହିଁ ଚାହିଁ ସେ କେବଳ ଭାବି ହେଉଥିଲା।

ହଠାତ୍ କରି ଅର୍ଚ୍ଚନା ପ୍ରାଣରେ ପୂର୍ଣ୍ଣ ଜୁଆରର ଢେଉଟିଏ ଉଠି ଆସି ପୁଣି ପର ମୁହୂର୍ତ୍ତରେ ଅପ୍ରାପ୍ତିର ବେଳାଭୂମିରେ ଲୀନ ହୋଇଗଲା। ଚାପା ଯନ୍ତ୍ରଣାରେ ବିକଳ ହୋଇ ଉଠିଲା ତା' ସତ୍ତା।

ସଫିକ୍। କୁଆଡ଼େ ହଜିଗଲା ସଫିକ୍।

ଆଖି ବନ୍ଦ କରି ଦେଲା ଅର୍ଚ୍ଚନା। ଆଜି ବି ନାଁଟି ମନକୁ ଆସିବା କ୍ଷଣି ଇନ୍ଦ୍ର ଆଲୁଅରେ କୁସୁମିତ ହୋଇ ଯାଉଛି ତା' ଅନ୍ତରାତ୍ମା। ଟିକିଟିକି ତାରା ଫୁଲର ଚୁପି ଚୁପି ହସରେ ଭରି ଯାଉଛି ତା' ହୃଦୟ। ଆଃ, ଏଭଳି ଅମୂଲ୍ୟ ପଦାର୍ଥଟିଏକୁ ସ୍ୱେଚ୍ଛାରେ ହଜେଇ ଦେବାକୁ ହେଲା? ଆଡ଼େଇ ଦେବାକୁ ହେଲା?

ଅର୍ଚ୍ଚନା ଦୀର୍ଘନିଶ୍ୱାସ ନେଲା।

ଏଇ ଅପ୍ରାପ୍ତିର ଯନ୍ତ୍ରଣା କ'ଣ ବଦଳେଇ ଦେଇଛି ତାକୁ? ତା' ଭିତରେ କ'ଣ ଈର୍ଷାର ଦୁର୍ଗଟିଏ ତିଆରି କରି ଦେଇଛି?

ନା। ଆଦୌ ନୁହଁ। ଅର୍ଚ୍ଚନା ଜାଣେ କଥାଟି ସତ ନୁହଁ। ଏବେ ବି ତା' ଭିତରେ ସବୁଦିନିଆ ନରମ ମନଟି ରହିଛି। କିନ୍ତୁ ନୈତିକତାର ଯେଉଁ ଚଦରଟି ତା' ଭିତରେ ଚାପି ହୋଇ ରହି ଯାଇଛି, ସେଇଟିକୁ ସେ ଆଦୌ ଫୋପାଡ଼ି ଦେଇ ପାରି ନାହିଁ। ସେଇଥିପାଇଁ ତା' ଭିତରେ ଏଭଳି ଅସ୍ଥିରତା।

ଯଦି ମନ ଭିତରର ଉଦ୍‌ବେଳନକୁ ଅର୍ଚ୍ଚନା ଆଉ କାହା ସାଙ୍ଗରେ ବାଣ୍ଟି ନେଇ ପାରି ଥାଆନ୍ତା, ତା'ହେଲେ ବୋଧହୁଏ ହାଲୁକା ଲାଗିଥାଆନ୍ତା ତାକୁ। କିନ୍ତୁ କିଏ ଅଛି ତା' ନିଜର? ମନ କଥା କହି ପାରିବା ଭଳି ଆଉ ତ କେହି ନାହିଁ ତା'ର। ଆଃ, ଅନିତା ଯଦି ଏତେ ବେଳକୁ ତା' ପାଖରେ ଥାଆନ୍ତା ନା, ଅର୍ଚ୍ଚନା ଏ ଅସ୍ୱସ୍ତିରୁ ମୁକ୍ତି ପାଇ ଯାଇ ଥାଆନ୍ତା। ମନର ବୋଝକୁ ହାଲୁକା କରି ନେଇ ପାରିଥାଆନ୍ତା।

ଷ୍ଟାଫ୍ କମନ୍ ରୁମ୍‌ରେ ବସି ଅନି କଥା, ପାର୍ଥନା କଥା ଭାବି ହେଉଥିବା ବେଳେ ହଠାତ୍ ଦୁମ୍ କରି ଆସି ପାଖ ଚୌକିରେ ବସିଲା ମଧୁମିତା ସରକାର। ହାତର ବହି ଖାତାତକ ନିଜ ସାମ୍ନାରେ ରଖିଦେଇ ମନକୁ ମନ ଗୁଣୁ ଗୁଣୁ ହୋଇ କହିଲା, "ଯାଃ, କିଛି ଭଲ ଲାଗେନି।"

"କ'ଣ ହେଲା ମଧୁମିତା ଦି'?" ନିଜ ସମସ୍ୟା ମୁହୂର୍ତ୍ତକ ପାଇଁ ଭୁଲି ଯାଇ ଅର୍ଚ୍ଚନା ପଚାରିଲା।

"ହେଡ୍ ମିଷ୍ଟ୍ରେସ୍ ଡକାଇଥିଲେ। ... ଏଠୁ ଚାଲିଯିବାକୁ ହେବ।"

"ମାନେ?"

"ମୁଁ ତ ଲିଭ୍ ଭେକେନ୍‌ସିରେ ରହିଥିଲି। ଆମର ଯେଉଁ ଶ୍ୟାମା ଦିଦି,

ସେ ଚାରି ମାସ ଛୁଟିରେ ଗଲେ ବୋଲି ତାଙ୍କ ସୁପାରିଶରେ ମତେ ଏଇ ଚାକିରି ମିଳିଲା। ଏବେ ଖବର ଆସିଛି ଆସନ୍ତା ମାସ ଆସି ଜଏନ୍ କରିବେ ଶ୍ୟାମା ଦିଦି। ଏଥର ଚାଲି ଯିବାକୁ ହେବ। ... ଧେତ୍!''

''ଆଉ କେଉଁଠି ଚେଷ୍ଟା କରିନ ମଧୁମିତା ଦି'?''

''ଚେଷ୍ଟା ପୁଣି କରିନି? ସବୁଠି। କଲିକତାର ସବୁ ସ୍କୁଲ୍‌ରେ ଚକ୍କର ଲଗା ସରିଛି ମୋର। ସବୁଠି ସେଇ ଏକା କଥା। ଚାକିରି ନାହିଁ। ମୋର ଯେ ଚାକିରିଟା କେତେ ଦରକାର, ତା' କେମିତି କାହାକୁ ବୁଝେଇବି?''

ଅର୍ଚ୍ଚନା କିଛି କହିଲା ନାହିଁ।

ମଧୁମିତା ସରକାରର ଜୀବନ କାହାଣୀ ସେ ଭଲ ଭାବରେ ଜାଣେ। ତା'ରି ମୁହଁରୁ ହିଁ ଶୁଣିଛି ବାରମ୍ବାର। ଏକଥା ବି ଜାଣିଛି ଯେ ତା' ଚାକିରି ଉପରେ ନିର୍ଭର କରି ରହିଛନ୍ତି ମା' ଓ ପାଞ୍ଚ ଭାଇ ଭଉଣୀ।

ନା - ନିଜ ମା' ନୁହଁ। ନିଜ ଭାଇ ଭଉଣୀ ନୁହଁ। ସାବତ ମା'। ସାବତ ଭାଇ, ଭଉଣୀ। ପ୍ରଥମ ଯେଉଁ ଦିନ ଅର୍ଚ୍ଚନା ଏକଥା ଶୁଣିଲା, ସେ ଅବାକ ହୋଇ ଯାଇଥିଲା। ନିଜ ମା', ଭାଇ ଭଉଣୀଙ୍କ ଆଡ଼କୁ ତ ଆଡ଼ ଆଖିରେ ଚାହୁଁ ନାହାନ୍ତି ଅନେକ, ଆଉ ଏ ଝିଅ ଏମିତି ଜଣେ ଯେ ସାବତ ମା'ର ସୁଖ ପାଇଁ, ସାବତ ମା'ର ପିଲାଙ୍କୁ ମଣିଷ କରିବା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଛି!

ମଧୁମିତାର ନିଜ ଜନ୍ମ କଲା ମା' ତା' ଜନ୍ମର କେଇ ମାସ ପରେ ହିଁ ମରି ଯାଇଥିଲେ। ସେତେବେଳେ କ୍ଷୀରଖିଆ ପିଲାଟିକୁ ତା' ମାଉସୀ ଆସି ନେଇ ଯାଇଥିଲେ ଶ୍ୟାମବଜାର। ତାଙ୍କ ଶ୍ୱଶୁର ଘରକୁ। ମଧୁମିତାର ବାପା ବେଣୁମାଧବ ସରକାର ଆପତ୍ତି କରି ନ ଥିଲେ, ବରଂ ସ୍ୱସ୍ତିର ନିଶ୍ୱାସ ନେଇଥିଲେ। ଏଡ଼େ ଟିକିଏ ପିଲାକୁ ତାଙ୍କର ସମ୍ଭାଳିବ କିଏ? ତା'ଛଡ଼ା ଘରେ ମାତୃହରା ଶିଶୁ ରହିବ ମାନେ ପାଦରେ ବେଡ଼ି। ବେଣୁ ସରକାର ସେ ବେଡ଼ି ନିଜ ପାଦରେ ବାନ୍ଧିବା ଭଳି ମଣିଷ ନ ଥିଲେ।

ସ୍ତ୍ରୀ ମରିବାର ଛଅ ମାସ ପରେ ଆଉ ଥରେ ବାହା ହୋଇଥିଲେ ବେଣୁମାଧବ। ଦୂର ଗାଁର ସୁନ୍ଦରୀ ଝିଅଟିଏକୁ। ସେତେବେଳେ ଇଚ୍ଛା କରିଥିଲେ ମଧୁମିତାକୁ ସେ ନେଇ ଆସି ପାରି ଥାଆନ୍ତେ। ନୂଆ ସ୍ତ୍ରୀ ବନଲତା ସେଥିପାଇଁ ପ୍ରସ୍ତୁତ

ମଧ୍ୟ ଥିଲେ। କିନ୍ତୁ ସେକଥା ଭୁଲରେ ବି ଥରେ ଉଠେଇଲେ ନାହିଁ ବେଣୁମାଧବ। ମନରେ ଭୟ ଥିଲା ତାଙ୍କର। ନୂଆ ସ୍ତ୍ରୀ ହଠାତ୍ କରି ଯଦି ମା'ର ସ୍ଥାନକୁ ଚାଲିଯାଏ, ତେବେ ଉପଭୋଗ ଓ ସମ୍ଭୋଗର ପୃଥିବୀ ହଜି ଯିବାକୁ ବେଶୀ ବେଳ ଲାଗିବ ନାହିଁ।

ମଧୁମିତା ରହି ଯାଇଥିଲା ମାଉସୀ ଘରେ।

ଏଇମିତି ରହୁ ରହୁ କଟି ଯାଇଥିଲା ସତର୍ ବର୍ଷ। ତା' ଭିତରେ ବେଣୁ ସରକାରଙ୍କ ସୁନ୍ଦରୀ ସ୍ତ୍ରୀ ବନଲତା ପାଞ୍ଚ ପାଞ୍ଚଟା ପିଲାଙ୍କୁ ଜନ୍ମ ଦେଇ ପୂର୍ବର ଲାଳିତ୍ୟ, ଯୌବନ ହରାଇ ସାରିଛନ୍ତି। ବେଣୁ ମାଧବଙ୍କ ମନ ଘରୁ ଓ ପରିବାରରୁ ଦୂରେଇ ଯାଇ ସାରିଛି।

ଏମିତିରେ ବେଣୁମାଧବ ସରକାର ବେଶ୍ ଖାନଦାନୀ ପରିବାରର ଦାୟାଦ। ପାରିବାରିକ ସମ୍ପତ୍ତିରୁ ରୋଜଗାର ସିନା ହେଉ ନ ଥିଲା, କିନ୍ତୁ ପାଖରେ ଥିଲା ପ୍ରାସାଦ ଭଳି ଘରଟିଏ। ଆଉ ଘର ଭର୍ତ୍ତି ଦାମୀ ଆସବାବପତ୍ର। ତା'ଛଡ଼ା ବାପାଙ୍କ ଜୋର୍‌ରେ ପଢ଼ାଶୁଣା ବେଶ୍ କରିଥିଲେ ବୋଲି ଭଲ ଚାକିରିଟିଏ ମଧ୍ୟ ମିଳିଥିଲା। କିନ୍ତୁ ଚାକିରିର ସବୁତକ ଟଙ୍କା ପରିବାର ଉଦ୍ଦେଶ୍ୟରେ ଢାଳି ଦେବା କଥା ସେ ଆଦୌ ଚିନ୍ତା କରି ପାରୁ ନ ଥିଲେ। ମାସ ଆରମ୍ଭରୁ କେଇଟା ଟଙ୍କା ଫୋପାଡ଼ି ଦେଇ ସେ ଭାବୁଥିଲେ ଯେ ତାଙ୍କ କର୍ତ୍ତବ୍ୟ ଶେଷ। ବାକୀ ଟଙ୍କାରେ କେବଳ ନିଜର ତତ୍ତ୍ୱାବଧାନ। ମଦ, ଜୁଆ, ବାଈଜୀ - କୋଉଟା ବାଦ୍ ଯାଏନି ତାଙ୍କର। ଏଣେ ପିଲାମାନେ ଯେ ଓଳିଏ ଖାଇ ଓଳିଏ ପେଟରେ ଓଦା କନା ପକେଇ ଗଡୁଛନ୍ତି, ତା' ତାଙ୍କ ଆଖିରେ ପଡ଼େ ନାହିଁ।

ଏଇମିତି ଗୋଟିଏ ସମୟରେ ବନଲତାଙ୍କର ପେଟକୁ ଆସିଲା ଷଷ୍ଠ ସନ୍ତାନ। କିନ୍ତୁ ଏଇ ସନ୍ତାନ ହେଲା କାଳ। ଏକେ ତ ବୁଭୁକ୍ଷିତ ଶରୀର। ତା' ଉପରେ ପୁଣି ମାନସିକ, ଶାରୀରିକ ଯନ୍ତ୍ରଣା। ସେ ସହି ପାରିଲେ ନାହିଁ। ଦିନେ ହଠାତ୍ କରି ତାଙ୍କ ଶରୀରରୁ ବିଦାୟ ନେଇଗଲା ଷଷ୍ଠ ସନ୍ତାନଟି। ଘଟଣାର ଆକସ୍ମିକତା ବନଲତାଙ୍କ ମନକୁ ଯେତେ ବେଶୀ ଆଘାତ ନ ଦେଲା, ତା'ଠାରୁ ବେଶୀ ଆଘାତ ଦେଲା ତାଙ୍କ ଶରୀରକୁ। ଆଉ ବିଛଣାରୁ ତଳକୁ ଓହ୍ଲେଇ ପାରିଲେ ନାହିଁ ସେ।

ପାଞ୍ଚ ପାଞ୍ଚଟା ନାବାଳକ ସନ୍ତାନ। ସେମାନେ ନିଜ କଥା ବୁଝିବାକୁ ଅକ୍ଷମ।

ମା' କଥା, ଘର କଥା ବା କ'ଣ ବୁଝି ଥାଆନ୍ତେ ?

ଏଇ ଘଟଣା ବେଣୁମାଧବଙ୍କ ଜୀବନରେ ବିରାଟ ଧକ୍କା ପହଞ୍ଚେଇ ଦେଲା। ଏତେ ବର୍ଷ ଧରି ସୁରୁଖୁରୁରେ ଗଡ଼ି ଚାଲିଥିବା ସଂସାରର ଚକ ହଠାତ୍ ଅକାମୀ ହୋଇ ପଡ଼ିଲା।

ସେତିକି ବେଳେ ମଧୁମିତା କଥା ପ୍ରଥମ କରି ମନକୁ ଆସିଲା ତାଙ୍କର। ଗତ ସତର ବର୍ଷ ଭିତରେ ସେ ମଝିରେ ମଝିରେ ଯାଇ ଝିଅକୁ ଦେଖି ଆସୁଥିଲେ। କିନ୍ତୁ ପ୍ରତ୍ୟେକ ଥର ନିଜ ଚେହେରାର ପ୍ରତିଛବି ଦେଖିବା ପରେ ମନଟି ବିଷେଇ ଯାଉଥିଲା ତାଙ୍କର। ତାଙ୍କୁ ହିଁ ଆଙ୍ଗୁଠି ଦେଖାଇବା ଭଳି ଯେମିତି ଯୋଜନା କରିଥିଲା ନିୟତି।

ମଧୁମିତାର ରଙ୍ଗ କଳା। କଳା ରଙ୍ଗରେ ଯେଉଁ ମାଧୁର୍ଯ୍ୟ ସଚରାଚର ଦେଖାଯାଏ, ତା'ର କୌଣସି ଚିହ୍ନ ନ ଥିଲା ମଧୁମିତାର ଦେହରେ। ଛୋଟ ଆଖି। ଚେପ୍ଟା ନାକ। ତଳକୁ ଓହଳି ଆସିଥିବା ଓଠ। ତା' ତଳେ ଦୁଇ ଧାଡ଼ି ଅଙ୍କାବଙ୍କା ବଡ଼ ବଡ଼ ଦାନ୍ତ। କେଉଁଠି ବି ସୌନ୍ଦର୍ଯ୍ୟର ଛିଟା ମାତ୍ର ନ ଥିଲା। ବାପର ସବୁତକ ଶାରୀରିକ ଅବିଗୁଣ ପାଇଥିଲା ମଧୁମିତା। କହିବା ବାହୁଲ୍ୟ, ବେଣୁମାଧବଙ୍କର ହୃଦୟରେ ବାତ୍ସଲ୍ୟ ଅପେକ୍ଷା ଘୃଣା ହିଁ ଅଧିକ ସ୍ଥାନ ଅଧିକାର କରି ବସିଥିଲା।

କିନ୍ତୁ ପାରିବାରିକ ପରିସ୍ଥିତିରେ ପରିବର୍ତ୍ତନ ଆସିବା କ୍ଷଣି ସେ ମୁହଁ ବୁଲାଇଥିଲେ ମଧୁମିତା ଆଡ଼କୁ। ସ୍ୱାର୍ଥପର ମଣିଷଟି ନିଜ ସ୍ୱାର୍ଥର ସାମାନ୍ୟତମ ବ୍ୟାଘାତ ଆଉ ସହି ପାରି ନ ଥିଲେ।

ଏତେ ବର୍ଷ ଧରି ନିଜ ଝିଅ ଭଳି ମଧୁମିତାକୁ ପାଳି ଆସିଥିଲେ ତା' ମଉସା, ମାଉସୀ। ସେଥିପାଇଁ ବେଣୁମାଧବ ଶ୍ୟାମବଜାରରେ ପହଞ୍ଚି ଝିଅକୁ ନିଜ ପାଖକୁ ନେଇଯିବାର ପ୍ରସ୍ତାବ ଦେବା ମାତ୍ରକେ ସେମାନେ ଆନନ୍ଦରେ ସମ୍ମତି ଦେଇ ପାରିଲେ ନାହିଁ। ହଠାତ୍ କରି ଦାୟିତ୍ୱହୀନ, ଚରିତ୍ରହୀନ ମଣିଷଟି ସାଙ୍ଗରେ କେମିତି ବା ସେମାନେ ଝିଅଟିକୁ ପଠେଇ ଦେଇ ଥାଆନ୍ତେ ?

କିନ୍ତୁ ବେଣୁ ସରକାର କି ଛାଡ଼ିବା ମଣିଷ। ପାଟି କରି ଗଗନ ପବନ କମ୍ପେଇଲେ। ପାଖ ପଡ଼ିଶା ଡାକି ଆଣି ଜୁଟେଇଲେ। ସେମାନଙ୍କ ଆଗରେ ମଧୁମିତା ମଉସା ମାଉସୀଙ୍କର ଝିଅକୁ ନ ଛାଡ଼ିବା ଘଟଣାନେଇ ନାଟକୀୟତା

ଆରମ୍ଭ କଲେ ।

ଶ୍ୟାମବଜାରର ଭଦ୍ରପଡ଼ାର ମଣିଷମାନେ ଭଲି ଯାଉଥିଲେ । ବୁଝେଇ ଥିଲେ ମଧୁମିତାର ମଉସା ମାଉସୀଙ୍କୁ । ଉପଦେଶ ଦେବା ସ୍ୱରରେ କହୁଥିଲେ ଯେ ବେଣୁ ସରକାର କିଛି ଭୁଲ କଥା କହି ନାହାନ୍ତି । ବାପ ଯେତେବେଳେ ଝିଅକୁ ନେବାକୁ ଆସିଛି, କେମିତି ମନା କରି ଦେବ ? ଯେତେ ପାଳିଥାଅ, ଯାହା ବା କରି ଥାଅ - ବାପର ଅଧିକାର ମାଉସୀର ଅଧିକାରଠୁଁ ଅଧିକ । ଏକଥା ନଜାଣେ କିଏ ?

ସାଇ ପଡ଼ିଶାଙ୍କ ଉପଦେଶ ଅମାନ୍ୟ କରି ହେଲା ନାହିଁ । ମଉସା, ମାଉସୀ ଅଧିକ ଅସମ୍ମାନ ନ ମୁଣ୍ଡେଇ ନିଜ ସମ୍ମତି ଦେଇଦେଲେ । ଆଉ ଅନିଚ୍ଛା ସତ୍ତ୍ୱେ ମଧୁମିତା ନିଜର ସବୁ ଜିନିଷ ପତ୍ର ଧରି ବାପାଙ୍କ ସାଙ୍ଗରେ ଚାଲି ଆସିଲା ।

ମଉସାଙ୍କ ଶ୍ୟାମ ବଜାରର ଖାନ୍ଦାନି କୋଠିରୁ ଆସି ମାନିକତଲାର ରଙ୍ଗ ଛଡ଼ା ଜୀର୍ଣ୍ଣ ପ୍ରାସାଦ ଭିତରେ ମଧୁମିତା ଖୁବ୍ ଶୀଘ୍ର ନିଜକୁ ଅଭ୍ୟସ୍ତ କରି ନେଲା । ସେ ବାପାର ଶାରୀରିକ ରୂପ ରେଖ ପାଇଥିଲା ସିନା, କିନ୍ତୁ ତା' ତଳେ ଥିଲା ତା' ମା'ର ନିଷ୍ଠାବାନ ଚରିତ୍ର ଓ ଦାୟିତ୍ୱଶୀଳ ହୃଦୟ । ସେ ସାବତ ମା' ଓ ବାପାଙ୍କ ପରିବାରରେ ପାଦ ଦେବା କ୍ଷଣି ବିନା ପ୍ରତିବାଦରେ ପରିବାରର ସମସ୍ତ ଦାୟିତ୍ୱ ନିଜ କାନ୍ଧକୁ ଉଠେଇ ନେଲା । ସଂସାର ପୁଣି ଆଗ ଭଳି ସୁରୁଖୁରୁରେ ଗଡ଼ି ଚାଲିଲା ।

ଏଥର ସ୍ୱସ୍ତିର ନିଶ୍ୱାସ ନେଇ ବେଣୁମାଧବ ଆଖି ଫେରାଇଲେ ବାହାରକୁ । ନିଜର ନିଜସ୍ୱ ସୁରା ସାକିର ପୃଥିବୀକୁ ।

ମଧୁମିତା ବାପାଙ୍କର ଅମାର୍ଜିତ, ଅଶାଳୀନ ବ୍ୟବହାର ସହିତ ପୂର୍ବରୁ ପରିଚିତ ଥିଲା । କିନ୍ତୁ ତା' ବାପାଙ୍କ ଚରିତ୍ରହୀନତା, ଦାୟିତ୍ୱହୀନତା ସମ୍ପର୍କରେ ସେ କିଛି ବି ଜାଣି ନ ଥିଲା । ଥରେ ଯେତେବେଳେ ଏସବୁ ସେ ନିଜ ଆଖିରେ ଦେଖିନେଲା, ସେତେବେଳେ ନିଆଁ ଲାଗିଗଲା ତା' ଦେହରେ । ଏତେବେଳେକେ ଯାଇ ଘରର ପ୍ରକୃତ ସ୍ୱରୂପ ଦେଖି ପାରିଲା ସେ ।

ପୂର୍ବପୁରୁଷଙ୍କ ତିଆରି ବିରାଟ ଘର । ଏକଦା ଏଇଟି ମଉସାଙ୍କ ଶ୍ୟାମ ବଜାର ଘରଠୁଁ କୌଣସି ଗୁଣରେ କମ୍ ନ ଥିଲା । କିନ୍ତୁ ଏବେ କଙ୍କାଳସାର ହୋଇ ରହି ଯାଇଛି କେବଳ । ପଞ୍ଜରାହାଡ଼ ଉପରେ ପଳାଏ ମାଂସ ଆଉ

ବାକୀ ନାହିଁ। ପାଞ୍ଚ ପାଞ୍ଚଟା ସାବତ ଭାଇ ଭଉଣୀଙ୍କ ଦେହରେ ବୁନିଆଦୀ ରକ୍ତ ପ୍ରବାହିତ ହୋଇ ଥାଇ ପାରେ, କିନ୍ତୁ ଶରୀରରେ ତା'ର ଛାପ ମାତ୍ର ନ ଥିଲା। ଶିକ୍ଷା ଦୀକ୍ଷା ନାହିଁ। ସବୁବେଳେ ଅଭାବରେ ବଢ଼ି ବଢ଼ି ବାରବୁଲା ଭିକାରୀଠୁଁ ବଳି ସେମାନଙ୍କର ଚେହେରା। ମନର ଦୈନ୍ୟ।

ସବୁ ବୁଝୁଥିଲା ମଧୁମିତା। ଜଣେ କେମିତି ସ୍ୱେଚ୍ଛାରେ ନିଜ ବଂଶକୁ ତଳିତଳାନ୍ତ କରି ଦିଏ, ତା' ଦେଖୁଥିଲା। କି ସମ୍ପତ୍ତି ବାଡ଼ି ଥିଲା ଏ ସରକାର ପରିବାରର। ବସି ଖାଇଥିଲେ ବି ଆହୁରି ପାଞ୍ଚ ପୁରୁଷ କଟି ଯାଇଥାଆନ୍ତା। ଅଥଚ ସବୁ କିଛି କେଇଟା ବର୍ଷରେ ଉଡ଼େଇ ଦେଲା ଜଣେ ମଣିଷ।

ମଧୁମିତା ବାପାଙ୍କୁ କହିବ କହିବ ବୋଲି ହୁଏ, ପୁଣି ଚୁପ୍ ରହେ। ବେଣୁମାଧବ ଆଗ ଭଳି ଧ୍ୱଂସ ପଥରେ ଆଗେଇ ଚାଲନ୍ତି ନିର୍ବିବାଦରେ। ମଧୁମିତା ଆଖି ଘୂରେଇ ନିଏ।

ହେଲେ ଦିନେ ଆଉ ପାରିଲା ନାହିଁ। ନିଜ ଆଖିରେ ଜନ୍ମଦାତା ପିତାର ଲମ୍ପଟତା ଦେଖି ଆଉ ନୀରବ ରହି ପାରିଲା ନାହିଁ ସେ। ବାପା ସାଙ୍ଗରେ ଭଲ କରି ପଟାଏ କଳି କରି ସେ ଚାକିରି ଖୋଜିବାକୁ ବାହାରି ଗଲା। ଆଉ ଟିକିଏ ବେଶୀ ପାଠ ପଢ଼ିଥିଲେ ବା ସହଜେ ଚାକିରି ମିଳି ଯାଇଥାଆନ୍ତା, କିନ୍ତୁ ଏଣେ ବିଦ୍ୟା କମ୍, ତେଣେ କାହାର ସୁପାରିଶ ନାହିଁ। ତାକୁ କେବଳ ଟେମ୍ପରାରୀ ଚାକିରି ମିଳୁଥିଲା। ଏଇଠିକା ଭଳି।

ଏବେ ପୁଣି ତାକୁ ଏଠୁ ଚାଲି ଯିବାକୁ ହେବ? ଅର୍ଚ୍ଚନାକୁ ଖରାପ ଲାଗିଲା।

ମଧୁମିତା କିନ୍ତୁ ହାରି ଯିବାର ଝିଅ ନୁହଁ। ସେ ପର କ୍ଲାସ୍‌କୁ ବାହାରି ଯାଉ ଯାଉ ଅଣ୍ଟାରେ କାନିଟା ଜୋରରେ ଗୁଡ଼େଇ ନେଇ କହିଲା, ''ମୁଁ ଛାଡ଼ିବିନି। କଲିକତାରେ ସିନା ଚାକିରି ନାହିଁ। କିନ୍ତୁ ଅନ୍ୟ କୋଉଠି ତ ହେବ। ଦରକାର ପଡ଼ିଲେ ମଫସଲକୁ ଯିବି। ନହେଲେ କୋଉ ଦୂର ସହରକୁ ଚାଲିଯିବି। ମୋ ମାଉସୀ ଝିଅ ଭଉଣୀ ବାହା ହୋଇ କଟକରେ ଅଛି। ସେ ଆଶା ଦେଇଛି ଯେ କଟକରେ ହୋଇ ଯାଇ ପାରେ। ସେ ନିଜେ ଚେଷ୍ଟା କରିବ। ତା' ବରକୁ ଦେଇ ଚେଷ୍ଟା କରେଇବ।''

ସେଇ ପ୍ରଥମ କଟକ କଥା ଶୁଣିଲା ଅର୍ଚ୍ଚନା ଏବଂ ସହରର ନାଁଟା ଶୁଣି ତା' ମନରେ ନୂଆ ରକମର ଭାବନାଟିଏ ଉଙ୍କି ମାରିଲା। ଛୋଟ ସମ୍ଭାବନାଟିଏ

ଆଖି ସାମ୍ନାରେ ଖେଳି ବୁଲିଲା ।

ପରଦିନ ଖେଳ ଛୁଟି ବେଳେ ଆଗତୁରା ଯାଇ ମଧୁମିତା ପାଖରେ ବସି ପଡ଼ି ଅର୍ଚ୍ଚନା ବିନା ଉପକ୍ରମଣିକାରେ ପଚାରିଲା, ''ମଧୁମିତା ଦି', କଟକରେ ମତେ ଚାକିରି ମିଳିବ ନାହିଁ ?''

''କଟକରେ ? ତୁମକୁ ? କାହିଁ, ତୁମର ଏଠି ପୁଣି ଅସୁବିଧା କ'ଣ ହେଲା ଯେ ?''

''ନା, ମାନେ, ମତେ ନୂଆ ନୂଆ ଜାଗା ଦେଖିବାକୁ ଭଲ ଲାଗେ । ଆଉ ପୁରୀଠୁଁ ଏତେ ପାଖରେ ଯେତେବେଳେ ... ଜଗନ୍ନାଥଙ୍କ ପାଖରେ ରହିବାକୁ ସୁଯୋଗ ମିଳିବ ଯେତେବେଳେ ...'' କ'ଣ କହିବ ବୁଝି ନ ପାରି ଯାହା ତା' ମୁଣ୍ଡକୁ ପଶିଲା ସେଇଭଳି ଗୋଟାଏ କୈଫିୟତ ଅର୍ଚ୍ଚନା ଦେଇଦେଲା ।

ଭାଗ୍ୟ ଭଲ, ବେଶୀ ପ୍ରଶ୍ନ କଲା ନାହିଁ ମଧୁମିତା । ଖାଲି ଏକା ଦୃଷ୍ଟିରେ ତାକୁ ଚାହିଁ ପଚାରିଲା, ''ତୁମେ ସତରେ ଏକଥା ପଚାରୁଛ ନା ମୋ ସାଙ୍ଗରେ ଥଟ୍ଟା ଖେଳୁଛ ?''

''ଥଟ୍ଟା ! ଥଟ୍ଟା କାହିଁକି କରିବି ?''

''ଜାଣିନ ? ତୁମେ ଯଦି ତୁମର ପର୍ମାନେଣ୍ଟ୍ ଚାକିରି ଛାଡ଼ି ଚାଲିଯାଅ, ତେବେ ମୋତେ ଚାକିରିଟା ମିଳିଯିବ । ସେକଥା ଜାଣିଛ ବୋଲି ମତେ ଥଟ୍ଟା କରୁନ ତ ?''

''ନା, ମଧୁମିତା ଦି', ନା । ମୁଁ ସତରେ ଜାଣିବାକୁ ଚାହୁଁଛି, ମତେ କଟକରେ ଚାକିରି ମିଳିବ କି ନାହିଁ । ଯେତେ ଯାହା ହେଲେ ଅନ୍ୟ ପ୍ରଦେଶ । ଅବଙ୍ଗାଳୀ ପ୍ରଦେଶ ।'' ଅର୍ଚ୍ଚନା ବ୍ୟସ୍ତ ଭାବରେ କହି ପକେଇଲା ।

''ହଁ, ଅବଙ୍ଗାଳୀ ରାଜ୍ୟ ନିଶ୍ଚୟ । କିନ୍ତୁ କଟକ ସହରରେ ବୁଦ୍ଧିଜୀବୀ ବଙ୍ଗାଳୀ ଲୋକଙ୍କ ସଂଖ୍ୟା ନିହାତି କମ୍ ନୁହଁ । ତା'ଛଡ଼ା ସେ ସହରର ଲୋକଙ୍କ ସାଙ୍ଗରେ ଆମ ଚାଲିଚଳଣ, ରୀତି ନୀତିର ଯଥେଷ୍ଟ ସାମଞ୍ଜସ୍ୟ ଅଛି । ମୋ ମାଉସୀ ଝିଅ ଭଉଣୀ କାଞ୍ଚନ ଦି' ମତେ କହିଥିଲା ଥରେ । ନହେଲେ କ'ଣ ମୋ ପାଇଁ ସେଠି ଚାକିରି ଖୋଜିବା କଥା ସେ ଉଠେଇ ଥାଆନ୍ତା ?''

''ମତେ ସତରେ ଯଦି ଚାକିରି ମିଳିଯାଏ, ତେବେ ମୁଁ ଚାଲିଯିବି, ମଧୁମିତା ଦି' । ସତ କହୁଛି । ଆଉ ମୋ ଜାଗାରେ ଯଦି ତୁମ ଚାକିରିଟା ପକ୍କା ହୋଇ

ଯାଏ, ତା'ହେଲେ ବେଶୀ ଖୁସି ଲାଗିବ ମତେ।''

''ତୁମର ଚାକିରି ହେବାରେ ଅସୁବିଧା କ'ଣ ଯେ ଅର୍ଚ୍ଚନା? ତୁମେ ମୋ ଭଳି ଅଧା ପାଠ ପଢ଼ିଥିବା ଶିକ୍ଷୟିତ୍ରୀ ନୁହଁ। ତୁମେ ମ୍ୟାଟ୍ରିକ୍ ପାସ୍ କରିଛ। ଭଲ ସିଲେଇ ଜାଣିଛ। ତୁମକୁ ତ ଯେଉଁଠି ଇଚ୍ଛା ସେଇଠି ଚାକିରି ମିଳିଯିବ।''

ଚଟ୍ କରି ମଧୁମିତାର ହାତ ଦିଇଟା ଧରି ନେଲା ଅର୍ଚ୍ଚନା। ବିକଳ ସ୍ୱରରେ କହି ଉଠିଲା, ''ତା'ହେଲେ ମୋ ପାଇଁ ଏତିକି ଚେଷ୍ଟା କରି ପାରିବ, ଦିଦି? ଜନ୍ମ ଜନ୍ମାନ୍ତର ପାଇଁ ଋଣୀ ହୋଇ ରହିବି। ମତେ କଲିକତାରୁ ମୁକ୍ତି ଦେଇ ପାରିବ?''

ମଧୁମିତା ଅବାକ ହେଲା। କହିଲା, ''ମୁଁ ଆଜି କାଞ୍ଚନ ଦି'କୁ ଚିଠି ଦେଉଛି। ତା' ବର ସେଠି ନାମଜାଦା ଓକିଲ। ସେ ନିଶ୍ଚୟ କିଛି ସୁବିଧା କରେଇ ଦେବେ।''

ନିଜ ଚାକିରି ପାଇଁ ହେଉ ବା ଅନ୍ୟ ଯେ କୌଣସି କାରଣରୁ ହେଉ ଅର୍ଚ୍ଚନାର କଟକ ଚାକିରି ପାଇଁ ଲାଗି ପଡ଼ିଥିଲା ମଧୁମିତା। ଘନ ଘନ ଚିଠି ଯାଉଥିଲା ଏପାଖରୁ। ସେପାଖରୁ ଆଶା ଦେଇ ଉତ୍ତରମାନ ଆସୁଥିଲା।

ତା'ରି ଭିତରେ ଦିନେ ଅର୍ଚ୍ଚନାର ଚାକିରି ହୋଇଗଲା କଟକର ଗୋଟାଏ ଗାର୍ଲ୍‌ସ ସ୍କୁଲ୍‌ରେ।

ଚାକିରି ହୋଇଯିବାର ଚିଠି ପାଇବା କ୍ଷଣି ସେ ନିଜ ଟ୍ରଙ୍କ୍ ସଜାଡ଼ି ବାହାରିଲା। ଅମରେଶ ଦେଖିଲା। ସବୁ ଶୁଣିଲା। କିନ୍ତୁ କିଛି ପ୍ରଶ୍ନ କଲା ନାହିଁ। ଯିବା ଆଗରୁ ଅର୍ଚ୍ଚନା ଦିନେ ଯାଇ ମାମୁଙ୍କୁ କହି ଆସିଲା। ଯେତେ ଯାହା ହେଲେ ଗୁରୁଜନ ସେ। ତାଙ୍କୁ ନ କହି ତ ସେ କଲିକତା ଛାଡ଼ି ଯାଇ ପାରିବନି।

ଭାଣିଜୀର ଏଇଭଳି ଗୋଟାଏ ନିଷ୍ପତ୍ତି ଶୁଣି ବିନୟ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲା। କିନ୍ତୁ ତାକୁ ଅଟକାଇ ରଖିବା ଭଳି ଅଧିକାର ତ ତା'ର ନ ଥିଲା। ତା'ଛଡ଼ା ଅନିରୁଦ୍ଧର କାର୍ଯ୍ୟକଳାପ ନେଇ ଉଡ଼ା ଖବର ତା' କାନରେ ପଡ଼ିଥିଲା। ସେସବୁ ଘଟଣାରୁ ଯେ ଅର୍ଚ୍ଚନା ଏଠୁ ଚାଲି ଯାଉନି, ତା' କିଏ କହିବ? ବିନୟ ଜବରଦସ୍ତି ଭାଣିଜୀ ହାତରେ ନୂଆ ଶାଢ଼ି ଆଉ କିଛି ଟଙ୍କା ଗୁଞ୍ଜି ଦେଇ ଆଗ ଭଳି ନିଜ କୋରଡ଼ ଭିତରକୁ ପଶି ଯାଇଥିଲା।

ମାମୁଙ୍କୁ ଯିବା କଥା ଜଣେଇବା ପରେ ଅର୍ଚ୍ଚନା ଦିନେ ଯାଇ ଚମ୍ପା ଓ

ଉମାକାନ୍ତ ଘୋଷାଲଙ୍କୁ ବି ଖବର ଦେଇ ଆସିଲା। ସେମାନେ କେହି ତାକୁ ଅଟକାଇଲେ ନାହିଁ। ଅଟକାଇବା ପାଇଁ କାହା ପାଖରେ କୌଣସି ଯୁକ୍ତି ନ ଥିଲା ବୋଧହୁଏ। ଏତେ ଦୂରକୁ ଚାଲିଯିବାର କାରଣ ପଚାରିବା ଭଳି ଆତ୍ମୀୟତା ଶେଷ ହୋଇ ଯାଇଥିଲା ବୋଧହୁଏ।

ପ୍ରଶ୍ନ ପଚାରିବାର ଥିଲେ ପଚାରି ଥାଆନ୍ତେ ଦୀପେନ୍। କିନ୍ତୁ ସେ ବୋକା ଲୋକ୍ ନୁହନ୍ତି। ଅର୍ଚ୍ଚନାର ହାବଭାବ ଦେଖି ତାଙ୍କର ଆଉ ଜାଣିବାର ବାକୀ ନ ଥିଲା ଯେ ତାଙ୍କ ସାଙ୍ଗରେ ଅଧିକ ସମ୍ପର୍କ ଯୋଡ଼ିବାରେ ସେ ଅନାଗ୍ରହୀ। ଦୀପେନ୍ ଫେରି ଯାଇଥିଲେ ତାଙ୍କର ବହିର୍ଗ ପୃଥିବୀକୁ।

ତା'ପରେ ଦିନେ ଅର୍ଚ୍ଚନା ଚାଲି ଆସିଲା କଟକ। ଏକା ଏକା। ପ୍ରଥମେ ଆସି ସେ ଉଠିଲା ମଧୁମିତାର ମାଉସୀ ଝିଅ ଭଉଣୀ ଘରେ। କିନ୍ତୁ ସବୁ ଦିନ ପାଇଁ ସେଠି ରହିବା ତ ସମ୍ଭବ ନ ଥିଲା। ସେ ତେଣୁ ତାଙ୍କୁ ସ୍କୁଲ୍‌ର ଅନ୍ୟ କେତେ ଜଣ ଶିକ୍ଷୟିତ୍ରୀଙ୍କୁ ଭଡ଼ା ଘର ଖୋଜି ଦେବା ପାଇଁ ଅନୁରୋଧ କଲା।

ଦିନେ ଭଡ଼ା ଘରର ଖବର ଦେଲେ ନିହାରୀକା ମହାନ୍ତି। ସ୍କୁଲ୍‌ର ଆସିଷ୍ଟାଣ୍ଟ ହେଡ୍ ମିଷ୍ଟ୍ରେସ୍। "ଅର୍ଚ୍ଚନା, ଘରଟିଏ ଅଛି। କିନ୍ତୁ ଛୋଟ। ମାତ୍ର ଦି ବଖରା। ରହିବ ?"

"ଛୋଟ ହେଲେ ଚଳିବ, ନିହାରୀକା ଦି'। ... ହେଲେ ଘର ମାଲିକ କେମିତି ? ମାଲିକାଣୀ କେମିତି ? ମୁଁ ଏକା ରହିବି ତ..."

"ଘର ମାଲିକ ? ମାଲିକାଣୀ ?" ଓଠରେ ହସ ଖେଳାଇ ଓ ଆଖି ନଚେଇ ନିହାରୀକା କହିଥିଲେ, "ସେ ବିଷୟରେ ତୁମକୁ ତିଳେ ମାତ୍ର ଚିନ୍ତା କରିବାକୁ ହେବନି। ତୁମେ ଯଦି ମୋତେ ବିଶ୍ୱାସ କରୁଛ, ତା'ହେଲେ ସେମାନଙ୍କୁ ଅବିଶ୍ୱାସ କରିବାର ପ୍ରଶ୍ନ ନାହିଁ।"

ଅର୍ଚ୍ଚନା ଅବୁଝା ଚାହାଣିରେ ଚାହିଁ ରହିଥିଲା।

ଫିକ୍ କରି ହସି ଦେଇ ନିହାରୀକା ଉତ୍ତର ଦେଇଥିଲେ, "ମୁଁ ମୋ ବଡ଼ ଭାଇ, ଭାଉଜଙ୍କ ଘରେ ତୁମ ରହିବା କଥା କହୁଛି।"

ନିହାରୀକା ମହାନ୍ତିଙ୍କର ବଡ଼ ଭାଇ ନରହରି ପଟ୍ଟନାୟକ ତଳ ତେଲେଙ୍ଗା

ବଜାରରେ ରହନ୍ତି। ବିରାଟ ଘର। ଘରକୁ ବେଢ଼ି ଅନେକ ଜାଗା। କିନ୍ତୁ ବଗିଚା ଫଗିଚା କରିବାର ବିଶେଷ ସଉକ ନା ଥିଲା ନରହରିଙ୍କର ନା ତାଙ୍କ ସ୍ତ୍ରୀ ହେମଲତାଙ୍କର। ସେଥିପାଇଁ ଜଙ୍ଗଲିଆ ହୋଇ ପଡ଼ି ରହିଥିଲା ବେଶ୍ କିଛି ଦିନ। ଚାକିରିରୁ ଅବସର ନେବା ପରେ ସେସବୁ ଜାଗା ପରିଷ୍କାର କରେଇ ନରହରି ଦୁଇ ବଖରିଆ ଘରଟିଏ ତିଆରି କରେଇ ନେଇଥିଲେ। ଇଚ୍ଛା ଥିଲା, ପ୍ରେସ୍‌ଟିଏ ପକେଇ ଦେବେ ସେଇଠି। କିନ୍ତୁ ତା' ଆଉ କୌଣସି ଦିନ ସମ୍ଭବ ହେଲା ନାହିଁ। ଥରେ ହାର୍ଟ ଆଟାକ୍ ହୋଇଯିବା ପରେ ଅଧିକ ଦାୟିତ୍ୱ ନେବାକୁ ଆଉ ସାହସ ହେଲା ନାହିଁ। ହେମଲତା ବି ରାଣ ନିୟମ ପକେଇ ତାଙ୍କୁ ନିବୃତ୍ତାଇଲେ ସେଥିରୁ।

ଖାଲି ପଡ଼ି ରହିଲା ଦୁଇ ବଖରା ଘରଟି। ହଠାତ୍ ସେଦିନ ଆସି ତାଙ୍କ ସାନ ଭଉଣୀ ନିହାରୀକା ପଚାରିଲେ, ''ଭାଇ, ତୁମେ ଏ ଘର ଭଡ଼ା ଦେବ ?''

''ଭଡ଼ା !'' ଅଳ୍ପ ଭାବି ନରହରି କହିଲେ, ''ହଁ, ଦେଲେ ହେବ। ଖାଲି ପଡ଼ିଛି ଯେତେବେଳେ।''

''ଆମ ସ୍କୁଲ୍‌କୁ ଜଣେ ନୂଆ ସିଲେଇ ଶିକ୍ଷୟତ୍ରୀ ଆସିଛି। କଲିକତାରୁ। ତା'ର ଏଠି କେହି ଜଣାଶୁଣା ନାହାନ୍ତି। ଏବେ ତ ରହିଛି ଜଣଙ୍କ ଘରେ। ହେଲେ ତାଙ୍କର ବଡ଼ ପରିବାର। ସେଠି ସବୁଦିନେ ରହିଯିବାକୁ ଜାଗା ନାହିଁ। ସେଥିପାଇଁ ସେ ଅନୁରୋଧ କରିଛି ଯଦି କେଉଁ ଗୃହସ୍ଥ ଘରେ ଭଡ଼ାରେ ରହିବାର ସୁବିଧା କରି ହୁଏ।''

''କଲିକତାର ଝିଅ !!'' ନରହରି କିଛି କହିବା ଆଗରୁ ହେମଲତା ମାଡ଼ି ବସି କହିଥିଲେ, ''ହୋଇ ପାରିବନି। ଅଭିଆଡ଼ୀ ଝିଅ। ପୁଣି କଲିକତାରୁ ଆସିଛି। ନାଇଁ, ନାଇଁ। ଆମର ଝାମେଲା ମୁଣ୍ଡାଇବା ଦରକାର ନାହିଁ।''

''ତୁମେ ଥରେ ଝିଅଟିକୁ ଦେଖ, ଭାଉଜ। ତା' ସାଙ୍ଗରେ କଥାବାର୍ତ୍ତା କର। ଯଦି ତୁମକୁ ଭଲ ନ ଲାଗେ, ତା'ହେଲେ ମନା କରି ଦେବା। ତା' ପାଇଁ ମୁଁ ଅନ୍ୟ କୋଉଠି ବ୍ୟବସ୍ଥା କରିବି।'' ନିହାରୀକା କହିଥିଲେ।

ସାନ ନଣନ୍ଦଙ୍କ କଥା ଭାଙ୍ଗି ପାରିବେନି ବୋଲି ବଡ଼ ଅନିଚ୍ଛାରେ ରାଜି ହୋଇଥିଲେ ହେମଲତା।

ଆଉ ନିହାରୀକା ପର ଦିନ ସ୍କୁଲ୍ ଛୁଟି ପରେ ଅର୍ଚ୍ଚନାକୁ ନେଇ ତଳ

ତେଲେଙ୍ଗା ବଜାର ଚାଲି ଆସିଥିଲେ।

ଏ କଲିକତୀ ଝିଅ !! ଅବାକ ଆଖିରେ ଦେଖୁଥିଲେ ନରହରି ଓ ହେମଲତା। ମନର ପର୍ଦ୍ଦାରେ ଯେଉଁ ସହରୀ, ଅହଙ୍କାରୀ, ଫେସନ୍‌ବାଜ୍ ଝିଅର ଛବି ଆଙ୍କି ହୋଇ ଯାଇଥିଲା, ସେଇଟି ଧୀରେ ଧୀରେ ମିଳେଇ ଯାଉଥିଲା। ଅର୍ଚ୍ଚନା ଦେହରେ କଳା ବର୍ଡ଼ର ଥିବା ପରିଷ୍କାର ଧଳା ଖଦଡ଼ ଶାଢ଼ି। ମୁଣ୍ଡର ଲମ୍ବା ବାଳରେ ବେଣୀ ହୋଇଛି। କପାଳରେ ଛୋଟ କଳା ଟିପାଟିଏ। ଆଉ କୌଣସି ଆଡ଼ମ୍ବର ନାହିଁ।

ଆହା, ଏ ସୁନ୍ଦରୀ ଝିଅଟିକୁ କେମିତି ତା' ମା' ବାପା ଏତେ ଦୂରକୁ ପଠେଇ ଦେଲେ ? ହେମଲତାଙ୍କ ମା' ମନ ନରମ ହୋଇ ଯାଇଥିଲା।

ନରହରି କଥା ଆରମ୍ଭ କରିବାକୁ ପଚାରିଲେ, "ତୁମ ବାପା କ'ଣ କରନ୍ତି, ଝିଅ ?"

ଅର୍ଚ୍ଚନାର ଆଖି ଛଳ ଛଳ ହୋଇଗଲା। ଧୀର ସ୍ୱରରେ ବଙ୍ଗଳା ମିଶା ଭଙ୍ଗା ଭଙ୍ଗା ଓଡ଼ିଆରେ କହିଲା, "ବାବା ନାହାନ୍ତି, ମଉସା। ଆଠ ବର୍ଷ ତଳେ ଚାଲିଯାଇଛନ୍ତି। ଦାଦା ମାନେ ମୋ ବଡ଼ ଭାଇ ଆମକୁ ମଣିଷ କରିଛନ୍ତି।..."

ସଂକ୍ଷେପରେ ନିଜ କଥା କହିଲା ଅର୍ଚ୍ଚନା।

ହେମଲତା ଆଶ୍ଚର୍ଯ୍ୟ ହେଲେ। "ନିହାରୀକା ଯେ କହିଲେ ତୁମେ କଲିକତାର ଝିଅ !"

"ମୁଁ ପୂର୍ବବଙ୍ଗର ଝିଅ। ଦେଶରେ ଅଶାନ୍ତି ଆରମ୍ଭ ହେଲା ବୋଲି ମୁଁ କଲିକତା ଚାଲି ଆସିଥିଲି। କିଛି ଦିନ ସେଠି ଚାକିରି ବି କରିଥିଲି। କିନ୍ତୁ କଟକରେ ଚାକିରି ହୋଇଗଲା ପରେ ଚାଲି ଆସିଲି।"

"ତୁମ ମା' ? ଅନ୍ୟ ଭାଇ ଭଉଣୀ ?"

ନିଜ ଛୋଟ ଦା'ର କଥା ସମ୍ପୂର୍ଣ୍ଣ ଭାବରେ ବାଦ୍ ଦେଇ ଅର୍ଚ୍ଚନା ଉତ୍ତର ଦେଲା, "ସେମାନେ ଏବେ ରହିଯାଇଛନ୍ତି ସେଇ ପାବ୍‌ନାରେ। କିନ୍ତୁ ଦାଦା ଲେଖିଥିଲେ ଯେ ତାଙ୍କ ଚାକିରି ହୋଇଗଲେ ସେ କଲିକତା ଚାଲି ଆସିବେ।"

ଅର୍ଚ୍ଚନାକୁ ଯେତେ ଦେଖୁଥିଲେ ସେତେ ଭଲ ଲାଗୁଥିଲା ହେମଲତାଙ୍କୁ। ତା' ସାଙ୍ଗରେ ଯେତେ ବେଶୀ କଥାବାର୍ତ୍ତା କରୁଥିଲେ, ସେତେ ବେଶୀ ଆକର୍ଷିତ ହୋଇ ଯାଉଥିଲେ ସେ ତା' ପ୍ରତି। ଏହାପରେ କ'ଣ ତାକୁ ଘର ଭଡ଼ା

ଦେବା ନେଇ ତାଙ୍କ ମନରେ ଆପତ୍ତି ରହିଥାଆନ୍ତା ?

ଅର୍ଚ୍ଚନା ନିଜର ଅଳ୍ପ ଜିନିଷ ନେଇ ଚାଲି ଆସିଥିଲା ସେଠିକି। ନିଜେ ହେମଲତା ଜୋର୍ କରି ତା' ପାଇଁ ନିଜ ଘରୁ ଗଦି, ଖଟ ପଠେଇ ଦେଇଥିଲେ। ବେଳ ଅବେଳରେ ତାକୁ ତରକାରି ପତ୍ର ଟିକିଏ ଦେଇ ଆସୁଥିଲେ। ଅର୍ଚ୍ଚନା ବି ଛୁଟି ଦିନମାନଙ୍କରେ ଆସି ହେମଲତାଙ୍କୁ ବିଭିନ୍ନ କାମରେ ସାହଯ୍ୟ କରୁଥିଲା। ତାଙ୍କ ସାଙ୍ଗରେ ବସି ଗପସପ କରୁଥିଲା। ପ୍ରବାସରେ ରହୁଥିବା ତାଙ୍କ ପୁଅ ଝିଅଙ୍କ ଗପ ଆଗ୍ରହରେ ଶୁଣୁଥିଲା।

ପଟ୍ଟନାୟକ ଘରର ଝିଅଟିଏ ଯେମିତି ସେ ହୋଇ ଯାଇଥିଲା।

ଥରେ ରହି ନ ପାରି ହେମଲତା କହିଥିଲେ, ''ତୁ କ'ଣ ଏମିତି ରହିଯିବୁ, ମା'? ତୋ ଭାଇ, ମା' ତୋ ବାହାଘର ନେଇ ବୁଝାବୁଝି କରୁଛନ୍ତି ଟି ?''

ତଳକୁ ମୁହଁ ପୋତି ଅର୍ଚ୍ଚନା କହିଲା, ''ନା ମାଉସୀ। ସେସବୁ ମୁଁ ମନା କରି ଦେଇଛି।''

ବେଶୀ ଖୋଳାତାଡ଼ା କରି ନ ଥିଲେ ହେମଲତା। ବୁଝି ପାରିଥିଲେ ଯେ ଏ ଝିଅଟି ନିଶ୍ଚୟ ଜୀବନରେ ଚୋଟ ଖାଇଛି। ସେଥିପାଇଁ ଏଇମିତି ନିସ୍ପୃହ ହୋଇ ଯାଇଛି। ନିଜ ଅଞ୍ଚଳ ଛାଡ଼ି ଏକା ଏକା ଚାଲି ଆସିଛି ଏତେ ଦୂରକୁ।

ଆହାରେ !!

ତା'ପରେ କଟି ଯାଇଥିଲା କେତେ ମାସ।

ଦିନେ ଖୁସି ଖୁସି ଭାବରେ ହେମଲତାଙ୍କ ପାଖକୁ ଧାଇଁ ଆସି ଅର୍ଚ୍ଚନା କହିପକେଇଲା, ''ମାଉସୀ, ମୋ ଭଉଣୀ ଆସୁଛି ଏଠି ମୋ ପାଖରେ ରହିବାକୁ।''

ତା' ମୁହଁରେ ଏତେ ଆନନ୍ଦ ହେମଲତା ଆଗରୁ କେବେ ଦେଖି ନ ଥିଲେ। ଭାରି ଭଲ ଲାଗୁଥିଲା ତାଙ୍କୁ। ''ସତରେ ? କେବେ ଆସୁଛି ମ ?''

ହାତର ଚିଠିଟାକୁ ହଲେଇ ଦେଲା ଅର୍ଚ୍ଚନା। ''ଆଉ କେଇଟା ଦିନ ପରେ। ମକର ସଂକ୍ରାନ୍ତି ଦିନ ଆସି ପହଞ୍ଚୁଛନ୍ତି।''

''ଯାହେଉ। ଭଲ ହେଲା। ଏକା ଏକା ରହୁଥିଲୁ। ଏବେ କଥା କହିବାକୁ ପାଖରେ ଜଣେ ରହିବ।''

''ଖାଲି ମୋ ଭଉଣୀ ଆସୁନି ମ ମାଉସୀ। ତାକୁ ଛାଡ଼ିବାକୁ ପରା

ମୋ ବଡ଼ ଭାଇ ଓ ମା' ବି ଆସୁଛନ୍ତି। ସେମାନେ ଆସିଲେ ଆମେ ଏକାଠି ପୁରୀ ଯିବୁ। ତା'ପରେ ଅନିକୁ ମୋ ପାଖରେ ଛାଡ଼ି ମା' ଓ ଦାଦା ଫେରିଯିବେ କଲିକତା।'' ଖୁସିରେ ଅର୍ଚ୍ଚନାର ପାଦ ତଳେ ପଡୁ ନ ଥିଲା।

ତା'ପରେ ତା'ର ଆରମ୍ଭ ହୋଇଗଲା କାମ। ସକାଳୁ ଉଠିବା କ୍ଷଣି ସ୍କୁଲ୍ ଯିବା ପର୍ଯ୍ୟନ୍ତ ଲାଗି ପଡ଼ି ଘର ସଫା କରୁଥିଲା ସେ। ଘରର ପର୍ଦ୍ଦା, ଚଦର, ତକିଆ ଖୋଳ ସବୁ କାଚିଲା। ମା'ଙ୍କ ଖିଆ ପିଆରେ ଯେମିତି ଅସୁବିଧା ନ ହୁଏ, ସେଥିପାଇଁ ଆଉ ଗୋଟାଏ ଚୁଲି ତିଆରି କରେଇ ନେଲା। ଅଲଗା କରି ହାଣ୍ଡି ବାସନ ପତ୍ର ରଖିଲା। ଦାଦା ପାଇଁ ନଡ଼ିଆ ଲଡୁ, ନିମିକି ତିଆରି କରି ଡବା ଭର୍ତ୍ତି କରି ରଖିଲା। ଯାଉଣୁ ଆସୁଣୁ ଗୋଟାଏ ଦିଇଟା ଜିନିଷ ପାଟିରେ ପକେଇବା ଦାଦାର ଅଭ୍ୟାସ। ସେ ଅଭ୍ୟାସ କ'ଣ ସତେ ଚାଲି ଯାଇଥିବ ?

ଅନି କଥା ଅଲଗା। ତା'ର ଏସବୁ ପାଟି ଟକଳା ଜିନିଷ ସାଙ୍ଗରେ ପଡ଼େନି। ସେ ଭାତ ମାଛ ଝୋଳର ଭକ୍ତ। ସେସବୁ ତ ଆଉ ଆଗରୁ ରାନ୍ଧି ରଖି ହେବନି। ତଥାପି ମାଛବାଲୀ ନାରଣା ମା'କୁ କହି ରଖିଥିଲା ଅର୍ଚ୍ଚନା। ସେମାନେ ଆସିବା ଦିନ ଯେମିତି ଭଲ ଭଲ ମାଛ ଦେଇ ଯାଏ, ସେଥିପାଇଁ ଆଗରୁ ତାଗିଦା କରେଇ ଦେଇଥିଲା ସେ। ଦାଦାର ଅତି ପ୍ରିୟ ମାଛର ମୁଢ଼ିଘଣ୍ଟ। ସେଥିପାଇଁ ବଡ଼ ଭାକୁଡ଼ ମାଛର ବରାଦ ଦେଇ ରଖିଥିଲା ସେ।

ଆସିଲା ସେଇ ବହୁ ପ୍ରତୀକ୍ଷିତ ଦିନଟି। ଅର୍ଚ୍ଚନାର ମା', ଦାଦା ଓ ସାନ ଭଉଣୀ ଅନି ଆସିବାର ଦିନ। ସକାଳୁ ସକାଳୁ ଅର୍ଚ୍ଚନାର ନିଦ ଭାଙ୍ଗିଗଲା। ତରବର ହୋଇ ବିଛଣା ସଜାଡ଼ି ଶୀଘ୍ର ଶୀଘ୍ର ଗାଧୋଇ ପାଧୋଇ ନେଲା ସେ। ଗତ ରାତିଠୁ ଆଲଣାରେ ଝୁଲେଇ ରଖିଥିବା ମଣ୍ଡଦିଆ ସଫା ଶାଢ଼ିଟି ପିନ୍ଧିବା ବେଳେ ନିଜ ଆଚରଣରେ ସେ ନିଜେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲା। ରକ୍ତର ଆକର୍ଷଣ ବୋଧହୁଏ ଏଇମିତି। ସବୁ ଅଭିମାନ ଭୁଲି ହୋଇଯାଏ କ୍ଷଣକ ଭିତରେ। ଯେତେ ଅଭିଯୋଗ ଥାଉ ପଛକେ କ୍ଷମା ଦେଇ ଦେଇ ହୁଏ ଅତି ସହଜରେ।

ଓଲଟା ପଥରେ ଧାଇଁ ଚାଲିଥିଲେ ପଶ୍ଚିମବଙ୍ଗର ଗଛ, ଚାଷ ଜମି ଆଉ ଛୋଟ ଛୋଟ ଗାଁର କୁଡ଼ିଆମାନ। ଝରକାରେ ମୁହଁ ମାଡ଼ି ଦେଇ ଏକାଗ୍ର ଚିତ୍ତରେ ଦେଖୁଥିଲା ଅନୁପମା।

ପୁଣି ସେଇ ଟ୍ରେନ୍ ଯାତ୍ରା। ପୁଣି ସେଇ ଦେଶାନ୍ତରର ସମୟ।

ଫରକ ଅଛି ଅବଶ୍ୟ।

ସେଦିନର ସେ ଟ୍ରେନ୍‌ଯାତ୍ରା !! ଅନୁପମା ତା' ନିଜ ଅଜାଣତରେ ଥରିଗଲା ଟିକିଏ। ମନେ ପଡ଼ିଗଲା ସେଦିନର କାଳ ରାତ୍ରି। ସେଦିନ ପାବ୍‌ନାକୁ ପଛରେ ପକେଇ ପୂର୍ବବଙ୍ଗରୁ ସେମାନେ ଭାରତକୁ ଧାଇଁ ଆସିଥିଲେ। ଛଦ୍ମ ବେଶରେ। ସେଦିନର ଭୟ, ଆତଙ୍କ ଓ ଅନିଶ୍ଚିତତା ଗୋଳିଆ ଗୋଳି ହୋଇ ପଥର ହେଇ ଯାଉଥିଲା ତା' ଦେହ ହାତ। ସେ ଚାଲୁଥିଲା, କଥା କହୁଥିଲା ଚାବିଦିଆ କଣ୍ଢେଇଟିଏ ଭଳି।

ଆଉ ଆଜି? ଆଜିର ଏ ନିର୍ବାସନ ତା'ର ସ୍ୱେଚ୍ଛାକୃତ। ତାକୁ କେହି ଜୋର୍ ଦେଇ ତଡ଼ି ଦେଇ ନାହାଁନ୍ତି। ତାକୁ କେହି ଭୟ ଦେଖାଇ କଲିକତା ଛାଡ଼ିବାକୁ ବାଧ୍ୟ କରିନାହାଁନ୍ତି। ତଥାପି ସେ ଦେଶାନ୍ତରୀ ହେବାର ନିଷ୍ପତ୍ତି ନେଇ ସାରିଛି। ଗୋଟାଏ ଅଜଣା ଅଶୁଣା ସହରକୁ ନିଜର କରି ନେବାର ଆଶାଟିଏ ମନ ଭିତରେ ବାନ୍ଧି ରଖିଛି। ସ୍ୱାଧୀନ ଭାରତରେ ନିଜ ପାଇଁ ସ୍ଥାନଟିଏ ଖୋଜି ନେବାର ପ୍ରଚେଷ୍ଟାରେ ଅଛି।

ଏଇଭଳି ଗୋଟାଏ ସମ୍ଭାବନାର କଥା କହି ଉତ୍ତେଜିତ ହୋଇ ଯାଉଥିଲେ ଦିନେ ବୀରେନ୍ କାକା। ତାଙ୍କ ପାବ୍‌ନାର ବୀରେନ୍ କାକା। କେବେ କୌଣସି ସ୍ୱାଧୀନତା ସଂଗ୍ରାମରେ ସେ ଭାଗ ନେଇ ନାହାନ୍ତି, କେବେ କୋଉ ସଭା ସମିତିରେ ଠିଆ ହୋଇ ଭାଷଣ ଦେଇ ନାହାନ୍ତି। ତଥାପି କେତେ ଆଶା ନେଇ ସେ ଅପେକ୍ଷା କରିଥିଲେ। କେତେ ଅଭିଳାଷର ଚିତ୍ର ନିଜ ସାମ୍ନାରେ ନିଜେ ଆଙ୍କି ନେଇ ସେ କହୁଥିଲେ, 'ଦେଶ ସ୍ୱାଧୀନ ହେବ। ଆମ ଦେଶର ଶାସନ ଭାର ଆମ ହାତକୁ ଆସିବ। ଆମକୁ କେହି ନିକୃଷ୍ଟ ବୋଲି ମନେ କରିବେ ନାହିଁ। ହେୟ ଦୃଷ୍ଟିରେ ଦେଖିବେ ନାହିଁ।'

ସେଇ ବୀରେନ୍ କାକା ପୁଣି ଦେଶ ସ୍ୱାଧୀନ ହୋଇଯିବା ପରେ ପରେ ହିଁ ପାବ୍ନା ଛାଡ଼ି ଚାଲିଗଲେ। ନିହାତି ଅନିଚ୍ଛାରେ। ଯେତେବେଳେ କାକିମା' ଓ ମାଳା ଜିନିଷ ପତ୍ର ବନ୍ଧାବନ୍ଧି କରୁଥିଲେ ଏବଂ ସେମାନଙ୍କୁ ଟିକିଏ ଟିକିଏ ସାହାଯ୍ୟ କରୁଥିଲା ଅନୁପମା, ସେତେବେଳେ ଖାଲି ଦେହରେ ଘର ଭିତରେ ଏମୁଣ୍ଡରୁ ସେମୁଣ୍ଡ ବ୍ୟସ୍ତ ଭାବରେ ବୁଲୁ ବୁଲୁ ଗୁଣୁ ଗୁଣୁ ହେବା ଭଳି ସେ କହିଲେ, ''ନା, ଏଇଟା ଭଲ ହେଲାନି। ଜମା ଭଲ ହେଲାନି।''

''କ'ଣ ଭଲ ହେଲାନି, ବାବା ?'' ମାଳା ମୁହଁ ବୁଲାଇ ପଚାରିଥିଲା।

''ନା। ଗାନ୍ଧିଜୀ ଜମା ଭଲ କାମ କଲେ ନାହିଁ।''

ଗାନ୍ଧିଜୀଙ୍କ ବିରୁଦ୍ଧରେ କଥା ପଦେ ଶୁଣି ଅନୁପମାର ଦେହ ଭିତର ଗୋଳେଇ ହୋଇ ଯାଇଥିଲା। ରହି ନ ପାରି ସେ କହି ପକେଇଥିଲା, ''ସେମିତି କାହିଁକି କହୁଛନ୍ତି, ବୀରେନ୍ କାକା। ଗାନ୍ଧିଜୀଙ୍କ ଯୋଗୁଁ ସବୁ। ତାଙ୍କରି ଚେଷ୍ଟାରେ ସ୍ୱାଧୀନତା। ଆଉ ଆପଣ କହୁଛନ୍ତି ଯେ ସେ ଭଲ କାମ କଲେନି !''

ବୀରେନ୍ ପାଲିତ ହଠାତ୍ ଠିଆ ହୋଇ ଯାଇ ଅଣ୍ଟାରେ ହାତ ଦେଇ ଅନୁପମାକୁ ଚାହିଁଥିଲେ ତୀକ୍ଷ୍ଣ ଦୃଷ୍ଟିରେ। ତା'ପରେ କହିଥିଲେ, ''ତୁ କ'ଣ ଏଇ ସ୍ୱାଧୀନତା ଚାହିଁଥିଲୁ ? ଯୋଉ ସ୍ୱାଧୀନତାର ସର୍ତ୍ତ ହେଉଛି ଦେଶ ବିଭାଜନ !''

ଅନୁପମା ପାଖରେ ସେତେବେଳେ ଏ ପ୍ରଶ୍ନର ଉତ୍ତର ନ ଥିଲା। ସେ ଆଖି ତଳକୁ କରି ଚୁପ୍ ହୋଇ ରହିଥିଲା। ଆଗ ଭଳି ପୁଣି ବିଭ୍ରାନ୍ତ ଦୃଷ୍ଟି ନେଇ ଘର ଭିତରେ ଏପାଖ ସେପାଖ ହୋଇଥିଲେ ବୀରେନ୍ କାକା। ଆହୁରି କହିଥିଲେ, ''ଗାନ୍ଧିଜୀଙ୍କର ଜମା ରାଜି ହେବାର ନ ଥିଲା। ସେ ଯଦି ଜିଦ୍ ଧରି ବସି ଯାଇଥାଆନ୍ତେ, ତେବେ କ'ଣ ଇଂରେଜ ସରକାର ଦେଶ ଭାଙ୍ଗି ଦେବାର ପଦକ୍ଷେପ ନେଇ ପାରିଥାଆନ୍ତା ! ଜମା ନୁହଁ। ଜମା ନୁହଁ।''

ସେଦିନ ଅନୁପମାକୁ ବୀରେନ୍ କାକାଙ୍କ କଥା କଷ୍ଟ ଦେଇଥିଲା। ଅନ୍ୟମନସ୍କ କରି ଦେଇଥିଲା। ତା'ପରେ ବୀରେନ୍ ପାଲିତ ସ୍ତ୍ରୀ କନ୍ୟାକୁ ଧରି ଚାଲି ଯାଇଥିଲେ ଭାରତ। ସେମାନେ ଚାଲି ଯିବା ପରେ ଅନୁପମା ମଝିରେ ମଝିରେ ତାଙ୍କ କଥା ମନେ ପକାଇଥିଲା ଆଉ ଭାବିଥିଲା ସତେ କ'ଣ ଗାନ୍ଧିଜୀ ଭୁଲ କଲେ ?

ସ୍ୱାଧୀନତାର ଚମକ ମ୍ଳାନ ହୋଇ ଯାଇଥିଲା ତା' ଆଖିରେ।

ତା'ପରେ ପାବ୍ନା ଛାଡ଼ିବାର ସେ ଭୟଙ୍କର ଘଟଣା। ସେତେବେଳେ ଅନୁପମା

ବୀରେନ୍ ପାଲିତଙ୍କ ଭଳି ଭାବିଥିଲା - ସବୁ ମୂଲ୍ୟହୀନ। ଗାନ୍ଧିଜୀଙ୍କ ଅହିଂସା ନୀତିରେ ଯଦି ଏଭଳି ରକ୍ତପାତ, ଭୟାବହତା ଗୋଳେଇ ହୋଇ ଯାଇ ପାରିଲା, ତେବେ କି ମୂଲ୍ୟ ସେ ସ୍ୱାଧୀନତାର।

କିନ୍ତୁ ଟ୍ରେନ୍‌ରେ କଲିକତାରୁ କଟକ ଗଲା ବେଳେ ପ୍ରଥମ ଥର ପାଇଁ ସ୍ୱାଧୀନତାର ମୂଲ୍ୟ ବୁଝିଲା ସେ। ପ୍ରଥମ ଥର ପାଇଁ ସ୍ୱାଧୀନ ଭାରତର ସନ୍ତାନ ହିସାବରେ ତା'ର ଗର୍ବ ହେଲା। ନିଜ ଦେଶ ଭିତରେ ସେ ଯେଉଁଠିକି ଇଚ୍ଛା, ସେଇଠିକି ଯାଇ ପାରିବ। ତାକୁ କେହି ଅଟକେଇବେ ନାହିଁ। କେହି ତା' ଉପରେ ବିଭିନ୍ନ ରକମର କଟକଣା ଜାରୀ କରିବେ ନାହିଁ।

କିନ୍ତୁ ତା' ନିଜ ମନ ଯଦି ତାକୁ ଶୃଙ୍ଖଳାବଦ୍ଧ କରିଦିଏ ? ନିରାଶ୍ରିତ କରି ଦିଏ ? ତେବେ କ'ଣ ହେବ ? କୁଆଡ଼େ ଯିବ ଅନୁପମା ?

ଏତେ ଦିନ ଧରି ଆଶ୍ରା ପାଇବା ପାଇଁ କୂଳଟିଏ ଖୋଜି ଚାଲିଛି ସେ। କେବେ ମିଳିବ ତାକୁ ସେ ନିର୍ଭରଶୀଳ ସ୍ଥାନ ?

ଅନୁପମା ମୁହଁ ବୁଲେଇ ତା' ମା'ଙ୍କୁ ଦେଖିଲା। ଆଖି ବନ୍ଦ କରି ନେଇ ମା' ଜପ କରୁଛନ୍ତି। ଓଠ ଦିଇଟା ନିଃଶବ୍ଦରେ ହଲି ଦୋହଲି ଯାଉଛି ତାଙ୍କର। ଆଉ ଦାଦା ?

ଅନୁପମା ଅପଲକ ଦୃଷ୍ଟିରେ ଅନିରୁଦ୍ଧକୁ ଚାହିଁ ରହିଲା।

କ୍ଳାନ୍ତ ଅନିରୁଦ୍ଧ ଗୋଡ଼ ଟେକି ନେଇ ଖାଲି ସିଟ୍‌ରେ ଲମ୍ବା ହୋଇ ନିଦରେ ଶୋଇ ପଡ଼ିଛି। କିନ୍ତୁ ଅସ୍ୱସ୍ତିର ନିଦ୍ରା ଏ। ମୁହଁରେ ଶାନ୍ତିର ଚିହ୍ନ ନାହିଁ। କପାଳରେ ଦୁଇ ଚାରିଟା ଭାଙ୍ଗ। ମଝିରେ ମଝିରେ ଓଠ ଦେଇ କ'ଣ ସବୁ ଅସ୍ପଷ୍ଟ ଶବ୍ଦ ଝରି ଆସୁଛି ଏବଂ ସେ ବ୍ୟସ୍ତ ଭାବରେ କଡ଼ ଲେଉଟାଇ ଚାଲିଛି।

ଅନୁପମା ଆଖି ଫେରାଇଲା। ସେ ଜାଣେ ଦାଦାର ଏ ଅସ୍ୱସ୍ତି ଓ ଅଶାନ୍ତିର କାରଣ ସେ ନିଜେ। ତା'ର ସ୍ପଷ୍ଟବାଦିତା ଅନିରୁଦ୍ଧକୁ କଷ୍ଟ ଦେଇଛି। ଧକ୍କା ପହଞ୍ଚେଇଛି। କିନ୍ତୁ ଅନୁପମାର ଯେ କରିବାର କିଛି ନ ଥିଲା। ପିଲା ଦିନରୁ ହିଁ ସେ ଏଇମିତି। ଯେତେବେଳେ ଯାହା ଠିକ୍ ବୁଝିଛି, ଭଲ ବୁଝିଛି, ତା' କହି ଦେଇଛି। ଝିଅ ପିଲା ରୂପେ ଜନ୍ମ ହୋଇଛି ବୋଲି ଅନ୍ୟମାନଙ୍କ ଭଳି ସବୁ ଅବିଚାରକୁ ମାନି ନେଇ ନିଜ କୋରଡ଼ରେ ମୁହଁ ଗୁଞ୍ଜି ପଡ଼ି ନାହିଁ କେବେହେଲେ। ସବୁବେଳେ ସିଧା ଭାବରେ ଠିଆ ହୋଇଛି। ସ୍ପଷ୍ଟ ଭାବରେ

ନିଜ ମତ ଦେଇଛି।

ଆଉ ଏବେ ହଠାତ୍ କରି ସେ ବଦଳି ଯାଇଥାଆନ୍ତା କେମିତି? ନିଜ ଆଖିରେ ଜଣେ ମଣିଷର ଦୁଇ ଜଣଙ୍କ ପାଇଁ ଦୁଇ ଭିନ୍ନ ରୂପ ଦେଖିବା ପରେ ସେ ପାଟି ବନ୍ଦ କରି ରହିଥାଆନ୍ତା କେମିତି?

ଅନୁପମା ଦୀର୍ଘନିଶ୍ୱାସ ନେଇ ଆଖି ବନ୍ଦ କଲା। ନିଦ ଟିକିଏ ହୋଇ ଯାଆନ୍ତା ନାହିଁ? ମୁକ୍ତି ପାଇ ଯାଆନ୍ତା ସେ ଆଜ୍ଞେବାଜ୍ଞେ ଚିନ୍ତାରୁ।

ନିଦକୁ ଝୁରୁ ଝୁରୁ ସତରେ ନିଦ ଆସି ବସିଗଲା ତା' ଆଖି ପତା ତଳେ। ଚାଲିଗଲା ବେଶ୍ କିଛି ସମୟ।

ହଠାତ୍ କେଉଁ ଗୋଟାଏ ଅଜଣା ଷ୍ଟେସନ୍‌ରେ ଝୁଣ୍ଟି ପଡ଼ିବା ଭଳି ଟ୍ରେନ୍‌ଟା ରହିଗଲା। ଟ୍ରେନ୍ ନ ରହୁଣୁ ଆରମ୍ଭ ହୋଇଗଲା ବିଭିନ୍ନ ରକମର କୋଳାହଳ। ଅନୁପମାର ନିଦ ଭାଙ୍ଗିଗଲା। ଆଖି ମକଚି ନେଇ ସିଧା ହୋଇ ବସି ସେ ବାହାରକୁ ଚାହିଁଲା। ଛୋଟ ଷ୍ଟେସନ୍। ଦୂରରେ ବଙ୍ଗ ପ୍ରଦେଶ ଭଳି ଚିହ୍ନା ମାଟିର ବାସ୍ନା। ଚିହ୍ନା ଚିହ୍ନା ଗଛର ଛାଇ। କିନ୍ତୁ କାନରେ ବାଜୁଥିବା ଭାଷାରେ ଫରକ ଅଛି।

ଓଡ଼ିଶାର ସୀମା ଭିତରେ ଟ୍ରେନ୍ ପଶି ସାରିଛି ତା'ହେଲେ?

ସେପାଖରେ ବସିଥିବା ମଧ୍ୟ ବୟସ୍କ ବଙ୍ଗାଳୀ ଭଦ୍ରଲୋକ ଜଣକ ଅନୁପମା ଉଦ୍ଦେଶ୍ୟରେ କହି ଉଠିଲେ, "ଆଉ ଟିକକରେ କଟକରେ ପହଞ୍ଚି ଯିବ ଟ୍ରେନ୍। ତୁମ ମା' ଆଉ ଦାଦାଙ୍କୁ ଉଠେଇ ଦିଅ।"

ଅନୁପମାର ମନ ଚଞ୍ଚଳ ହୋଇ ଉଠିଲା। ଆଉ ଟିକକରେ କଟକ!!

ଏବଂ ତା'ପରେ ତା' ଦିଦି। ଇସ୍ ...। ମନର ଆନନ୍ଦକୁ ଧରି ରଖି ପାରୁ ନ ଥିଲା ସେ।

ଅନିରୁଦ୍ଧକୁ ମାତ୍ର ଅଳ୍ପ କେତେ ଦିନ ପାଇଁ ଛୁଟି ମିଳିଥିଲା। ଦିଇଟା ଦିନ ମା' ଓ ଦି' ଭଉଣୀଙ୍କୁ ନେଇ ପୁରୀ ବୁଲି ଆସିବା ପରେ କଟକରେ ମାତ୍ର ତିନି ଦିନ ରହିବାର ସୁଯୋଗ ମିଳିଲା ତାକୁ। ଶ୍ରଦ୍ଧାଙ୍କର ଇଚ୍ଛା ନ ଥିଲା ଏତେ ଶୀଘ୍ର ଫେରି ଯିବାକୁ। ଅର୍ଚ୍ଚନା ମଧ୍ୟ ବାଧ କରୁଥିଲା ମା'ଙ୍କୁ ଆଉ କିଛି ଦିନ ତା' ପାଖରେ ରହି ଯିବାକୁ। କିନ୍ତୁ ଶ୍ରଦ୍ଧା ରାଜି ହୋଇ

ପାରିଲେ ନାହିଁ।

ସେ ତାଙ୍କ ବଡ଼ ପୁଅକୁ ଭଲ ଭାବରେ ବୁଝନ୍ତି। ତା' ମନରେ ଯେଉଁ ବିରାଟ ଧକ୍କା ଲାଗିଛି, ସେକଥା ସେ ମୁହଁ ଖୋଲି ନ କହିଲେ ବି ସେ ଜାଣନ୍ତି। ସେଥିପାଇଁ ତାକୁ ଏକା ଛାଡ଼ି ଦେବା ପାଇଁ ତାଙ୍କର ଜମା ଇଚ୍ଛା ହେଲା ନାହିଁ। ଘରଟା ଭିତରେ ଏକା ରହିଲେ ପିଲାଟା ମନରେ କି ସବୁ ବାଜେ ଚିନ୍ତା ଯେ ବାରମ୍ବାର ମୁଣ୍ଡ ପିଟିବ, ତା' କିଏ ଜାଣେ ?

ଶ୍ରଦ୍ଧା ଅନିରୁଦ୍ଧ ସାଙ୍ଗରେ ଫେରିଗଲେ।

ମା' ଚାଲି ଯିବା ପରେ ହଠାତ୍ କେମିତି ନିଃସ୍ୱ ଲାଗିଲା ଅନୁପମାକୁ। ଏତେ ବର୍ଷ ଭିତରେ ଏଇ ପ୍ରଥମ ଥର ପାଇଁ ସେ ମା'ଙ୍କ ପାଖରୁ ଦୂରେଇ ରହିଲା। ସେ ଆଗରୁ କେବେ ମା'ଙ୍କୁ ଛାଡ଼ି କୁଆଡ଼େ ଯାଇନି। କେବଳ ସ୍କୁଲ୍, କଲେଜ ଛାଡ଼ି ଦେଲେ। ତା' ବି ଯଦି ସେ ସ୍କୁଲରୁ ଫେରି ଦେଖୁଥିଲା ଯେ ଘରେ ମା' ନାହାନ୍ତି, ଗପସପ କରିବା ପାଇଁ କୋଉ ପଡ଼ିଶା ଘରକୁ ଚାଲି ଯାଇଛନ୍ତି, ତା'ହେଲେ କାନ୍ଦି କାଟି ଗଗନ ପବନ କମ୍ପେଇ ଦେଉଥିଲା ସେ। ସେଇଥିପାଇଁ କି କ'ଣ ଶ୍ରଦ୍ଧା ଘର ଛାଡ଼ି ଆଉ କାହା ଘରକୁ ଯିବା କଥା କେବେ ହେଲେ ଭାବି ପାରୁ ନ ଥିଲେ।

ଏବେ ମା'ଙ୍କୁ ଛାଡ଼ି ରହିବାକୁ ହେବ।

''କ'ଣ ହେଲା, ଅନି ? ମନ ଖରାପ ଲାଗୁଛି ? ମନ ଖରାପ କରନା। ଆଉ ତ କେଇଟା ମାସ କଥା। ତୋ ଆଇ.ଏ.ପରୀକ୍ଷା ସରିଲେ, ତତେ କଲିକତା ପଠେଇ ଦେବି ମା'ଙ୍କ ପାଖକୁ।'' ଅର୍ଚ୍ଚନା ସାନ ଭଉଣୀକୁ ବୁଝେଇଲା।

ଅନୁପମା ଅର୍ଚ୍ଚନାକୁ ଦେଖିଲା। ତା' ମୁହଁକୁ ଚାହିଁ ଭରସା ପାଇଲା। ଦିଦି ଏବେ ତା'ର ଗୁରୁଜନ। ତା'ରି କଥା ଶୁଣିବାକୁ ହେବ। କଲିକତାଠୁଁ ଦୂରେଇ ଆସିବାର ନିଷ୍ପତ୍ତି ତା'ର। ଏବେ ସେଇ ନିଷ୍ପତ୍ତିକୁ ପ୍ରଶ୍ନ କରିବା ଠିକ୍ ହେଉନି। ନିଜ ମନକୁ କଠିନ କଲା ଅନୁପମା। ଏବେ ତାକୁ କେବଳ ପଢ଼ାପଢ଼ି କଥା ଭାବିବାକୁ ହେବ। ଆଉ କିଛି ନୁହଁ।

ଅର୍ଚ୍ଚନା ମଧ୍ୟ ଏସବୁ ବିଷୟରେ ଆଗରୁ ଚିନ୍ତା କରିଥିଲା। କାହା କାହା ସାଙ୍ଗରେ ଆଗରୁ କଥାବାର୍ତ୍ତା କରି କ'ଣ କେମିତି କରିବାକୁ ହେବ, ତା'

ବୁଝି ନେଇଥିଲା । ଶ୍ରଦ୍ଧା ଓ ଅନିରୁଦ୍ଧ ଚାଲିଯିବା ପରେ ସ୍କୁଲ୍‌ରୁ ଦିନଟାଏ ଛୁଟି ନେଇ ସେ ଦିନେ ରେଭେନ୍‌ସା କଲେଜ ଚାଲିଗଲା । ସାନ ଭଉଣୀର କଲେଜ ଆଡ୍‌ମିଶନ କଥା ବୁଝିବାକୁ ପଡ଼ିବ । ତା' ସାଙ୍ଗରେ ଯାଇଥିଲା ଅନୁପମା । ଅଫିସ୍ ଭିତରେ ଯାଇ ଅର୍ଚ୍ଚନା ଆଡ୍‌ମିଶନ କଥା ବୁଝିବା ବେଳେ ଅନୁପମା ଆଖି ବୁଲେଇ ବୁଲେଇ ରେଭେନ୍‌ସା କଲେଜ୍ ଦେଖୁଥିଲା । ଦେଖୁଥିଲା ଯାତାୟାତ କରୁଥିବା ଛାତ୍ରଛାତ୍ରୀମାନଙ୍କୁ ।

ଧାଡ଼ି ଧାଡ଼ି ହୋଇ ଦି' ମହଲା ଘର ସବୁ । ଚାରିପଟେ ପାଚିରି ଘେରା । କେତେ ବଡ଼ କଲେଜ୍ ! ଯା ସାଙ୍ଗରେ ପାଟ୍‌ନାର ଛୋଟିଆ କଲେଜ୍‌ର ତୁଳନା ହୁଏ ? ସମସ୍ତେ କହନ୍ତି ଏଠିକାର ପଢ଼ାପଢ଼ି ମଧ୍ୟ ବହୁତ ଭଲ । କୁଆଡୁ କୁଆଡୁ ପିଲାମାନେ ଆସନ୍ତି ଏଠି ପାଠ ପଢ଼ିବାକୁ । ଅନୁପମାର ବି କ'ଣ ଏଠି ପଢ଼ିବାର ସୌଭାଗ୍ୟ ହେବ !

''ଚାଲ, ଯିବା ଅନି ।'' ଅର୍ଚ୍ଚନା ଫେରି ଆସିଲା ଭିତରୁ ।

''କ'ଣ ହେଲା, ଦିଦି ?'' ଅର୍ଚ୍ଚନାର ଶୁଖିଲା ମୁହଁ ଦେଖି ଅନୁପମା ଆତଙ୍କିତ ଭାବରେ ପଚାରିଲା ।

ମୁଣ୍ଡ ହଲେଇ ଦେଲା ଅର୍ଚ୍ଚନା ।

''ହେଲାନି ??''

''ନା ।''

''ଆଡ୍‌ମିଶନ୍ ଦେବେନି ??''

''ନା ।''

''କାହିଁକି ? ମୋର ତ ଭଲ ମାର୍କ ଅଛି...''

''ନା' ରେ ଅନି । ସେକଥା ନୁହଁ । ଆଡ୍‌ମିଶନ୍ ଦେବା ପାଇଁ ସେମାନଙ୍କର ଆପତ୍ତି ନାହିଁ । କିନ୍ତୁ ସେକେଣ୍ଡ ଇଅର୍‌ରେ ଦେବେ ନାହିଁ । ତତେ ପୁଣି ଥରେ ପ୍ରଥମ ବର୍ଷରେ ଆଡ୍‌ମିଶନ୍ ନେବାକୁ ହେବ ।''

''ପୁଣି ଥରେ ଫାଷ୍ଟ ଇଅର୍ !! କାହିଁକି, ଦିଦି ?''

''କାହିଁକି ପୁଣି କ'ଣ । ତୁ ଯେ ଫାଷ୍ଟ ଇଅର୍ ପାଶ୍ କରିଛୁ ତା'ର ତ କୌଣସି ପ୍ରମାଣ ନାହିଁ ।''

ସତ କଥା । ସେମାନେ ଯେମିତି ଭାବରେ ପାଟ୍‌ନା ଛାଡ଼ିଲେ, ସେଥିରେ

ଯେ ସେ ତା' ମ୍ୟାଟ୍ରିକ୍ ସାର୍ଟିଫିକେଟ୍ ନେଇ ଆସି ପାରିଥିଲା, ତା' କେତେ ବଡ଼ କଥା। ସେଇଟା ଛଡ଼ା ଆଉ କିଛି କାଗଜପତ୍ର ତା' ପାଖରେ ନାହିଁ। ସେତେବେଳେ ଯାହା ଅବସ୍ଥା, ସେଥିରେ ପୁଣି ପାବ୍ନା କଲେଜ୍‌ରୁ ଟି.ସି. ଭଗିକା ସେ ଆଣି ଥାଆନ୍ତା କେମିତି ?

"ଦିଦି, ଚିଠି ଲେଖି ଯଦି ମୁଁ ମଗାଏ..."

"ଚିଠି ! କେତେ ଦିନରେ ତୋ ଚିଠି ସେଠି ପହଞ୍ଚିବ କିଏ ଜାଣେ ? ମୋଟ ଉପରେ ପହଞ୍ଚିବ କି ନାହିଁ, ତା' ନେଇ ବି ମୋର ସନ୍ଦେହ ଅଛି। .. ଯଦିବା ଚିଠି ସେଠି ପହଞ୍ଚିଲା, ତେବେ ସେମାନେ ଯେ ସାଙ୍ଗେ ସାଙ୍ଗେ ସବୁ କାଗଜ ପତ୍ର ଖୋଜାଖୋଜି କରି ଏଠିକି ସମୟ ଅନୁସାରେ ପଠେଇବେ, ସେ ବିଶ୍ୱାସ ମୋର ନାହିଁ।" ହତାଶ ସ୍ୱରରେ ଅର୍ଚ୍ଚନା ଉତ୍ତର ଦେଲା।

ବଡ଼ ଭଉଣୀର ନିରାଶା ଅନୁପମାକୁ କାବୁ କରି ଦେଲା। ସେ ଦବିଲା ସ୍ୱରରେ ପ୍ରାୟ କାନ୍ଦ କାନ୍ଦ ହୋଇ କହିଲା, "ଏବେ କ'ଣ ହେବ, ଦିଦି ? ମୋର ବର୍ଷଟାଏ ପୁଣି ନଷ୍ଟ ହେବ ?"

"ନା।" ଅର୍ଚ୍ଚନା ମନରେ ଜୋର୍ ସାଉଁଟିଲା। ତା'ପରେ ଦୃଢ଼ ଭାବରେ କହିଲା, "କଲେଜ୍‌ରେ ଆଡ଼୍‌ମିଶନ୍ ନ ମିଳିଲା ତ କ'ଣ ହେଲା, ଅନି ? ପ୍ରାଇଭେଟ୍ ଭାବରେ ତ ତୁ ଆଇ.ଏ. ପରୀକ୍ଷା ଦେଇ ପାରିବୁ। ତା'ପରେ ଆଇ.ଏ.ରେ ଭଲ ରେଜଲ୍‌ଟ କଲେ, କିଏ ତତେ ବି.ଏ.ରେ ଆଡ଼୍‌ମିଶନ୍ ନ ଦେବ, ତା' ମୁଁ ଦେଖିବି। ତୁ ଚିନ୍ତା କରନା। ମନ ଦେଇ ପଢ଼ାପଢ଼ି ଆରମ୍ଭ କରିଦେ।"

ଅନୁପମା ମୁଣ୍ଡ ଟୁଙ୍ଗାରିଲା। କିନ୍ତୁ କଟକ ଆସିବାର ଆନନ୍ଦରେ ତା'ର ଭଟା ପଡ଼ି ଯାଇ ସାରିଥିଲା।

ତା' ପର ଦିନଠାରୁ ଅର୍ଚ୍ଚନା ସ୍କୁଲ ଚାଲି ଯିବା ପରେ ବହି ଖାତା ମେଲାଇ ଅନୁପମା ପଢ଼ିବାକୁ ବସୁଥିଲା ଠିକ୍, କିନ୍ତୁ ତା'ର ମନ ପଢ଼ାରେ ଜମା ଲାଗୁ ନ ଥିଲା। କାହିଁକି କେଜାଣି, ହଜାରେ ଦୁଶ୍ଚିନ୍ତା ଆସି ତା' ମୁଣ୍ଡରେ ବୋଝେଇ ହୋଇ ବସି ଯାଉଥିଲା। ମନକୁ ସେ ବୁଝାଉଥିଲା ବହୁତ ପ୍ରକାରେ। ନିଜ ଉପରେ କଟକଣା ଲଗାଉଥିଲା ହଜାର ରକମର। ତଥାପି କ'ଣ ଯେ ତା'ର ହୋଇ ଯାଉଥିଲା...!

ସେଦିନ ସକାଳୁ ଖାଇ ପିଇ ଅର୍ଚ୍ଚନା ସ୍କୁଲ୍ ବାହାରି ଗଲା । ସେ ଚାଲି ଯିବା ପରେ ନିୟମ କରିବା ଭଳି ଅନୁପମା ବହି ଖାତା ମେଲାଇ ବସିଲା । ଇଂରାଜୀ କବିତାଟିଏର ସାରାଂଶ ଲେଖିବାକୁ ଚେଷ୍ଟା କରୁ କରୁ କିଛିଟା ସଫଳ ମଧ୍ୟ ସେ ହୋଇଗଲା ।

କିନ୍ତୁ ହଠାତ୍ ସେତିକି ବେଳେ କବାଟଟା କିଏ ଖଡ଼ ଖଡ଼ କରି ପକେଇଲା । ଏତେ ବେଳେ କିଏ ? ପୁଣି ଏମିତି ବ୍ୟସ୍ତ ଭାବରେ କବାଟରେ କାହିଁକି ଡାକୁଛି ? ନୂଆ ଜାଗାରେ ଏପର୍ଯ୍ୟନ୍ତ ଅଭ୍ୟସ୍ତ ହୋଇ ନାହିଁ ଅନୁପମା । ଏଠାକାର ଭାଷା ମଧ୍ୟ କହି ଶିଖିନି । କବାଟ ଖୋଲିବ ନା ନାହିଁ ?

"ଅନି .. ଅନି ... କବାଟ ଖୋଲ ଅନି ..." ବାହାରୁ ଅର୍ଚ୍ଚନାର ବିବ୍ରତ ସ୍ୱର ଭାସି ଆସିଲା ।

ଦିଦି ! ଆଉ ଟିକିଏ ଆଗରୁ ପରା ସେ ସ୍କୁଲ୍ ଗଲା । ହଠାତ୍ ଫେରି ଆସିଲା କାହିଁକି ? ଦେହ ଖରାପ ନା କ'ଣ ? ତରବର ହୋଇ କବାଟ ଖୋଲିଦେଲା ଅନୁପମା ।

ବାରଣ୍ଡାରେ ବିଧ୍ୱସ୍ତ ଚେହେରା ନେଇ ଠିଆ ହୋଇଥିଲା ଅର୍ଚ୍ଚନା ।

"ଦିଦି, କ'ଣ ହେଲା ଦିଦି ? ତୋ ଦେହ ଭଲ ନାହିଁ ? ଏଁ ? କଥା କାହିଁକି କହୁନୁ ଦିଦି ?" ବ୍ୟସ୍ତ ଭାବରେ ଅନୁପମା ପଚାରି ପକେଇଲା ।

ଖଟ ଉପରେ ଫାଁ ମାରି କେବଳ ବସି ରହିଥିଲା ଅର୍ଚ୍ଚନା । କେତେବେଳକେ ସମ୍ବିତ ଫେରି ପାଇ ଛଳ ଛଳ ଆଖିରେ କହିଲା, "ବଡ଼ ଖରାପ ଖବର, ଅନି ।"

ଖରାପ ଖବର !! କି ଖରାପ ଖବର ? ଅନୁପମାର ଛାତି ଧଡ଼ଧଡ଼ ହେଇ ଉଠିଲା ।

ରହି ରହି ଅର୍ଚ୍ଚନା ପୁଣି କହିଲା, "ସ୍କୁଲ୍ ଛୁଟି ହୋଇଗଲା । କାହିଁକି ଜାଣିଛୁ, ଅନି ? ମହାତ୍ମା ଗାନ୍ଧୀଙ୍କୁ ମାରିଦେଲେ । ଆମ ବାପୁଜୀ ଆଉ ନାହାନ୍ତିରେ ।" ସକ ସକ ହୋଇ ଅର୍ଚ୍ଚନା କାନ୍ଦି ପକେଇଲା ।

ମହାତ୍ମା ଗାନ୍ଧୀ ଆଉ ନାହାନ୍ତି ! ତାଙ୍କୁ ପୁଣି କିଏ ମାରି ଦେଲା ? ତାଙ୍କ ଭଳି ଦେବତାଙ୍କୁ କେହି ମାରି ପାରିଲା ! କେମିତି ହାତ ଗଲା ତା'ର ? କେମିତି ?

କାନ୍ଦି କାନ୍ଦି ସ୍କୁଲରୁ ଶୁଣି ଆସିଥିବା ସବୁ ଘଟଣା ଖୋଲି କହିଲା ଅର୍ଚ୍ଚନା ।

ସବୁଦିନ ଭଳି ପ୍ରାର୍ଥନା ସଭାକୁ ଯାଉଥିଲେ ବାପୁଜୀ। ପ୍ରାର୍ଥନା ସଭାରେ ସବୁ ଦିନ ଭଳି ନାହିଁ ନ ଥିବା ଭିଡ଼। ଭିଡ଼ କାଟି କାଟି ପଛରୁ ଆଗକୁ ଆଗେଇ ଆସିଲା ଜଣେ। ପ୍ରଥମେ ଦୁଇ ହାତ ଯୋଡ଼ି ଭକ୍ତି ସହକାରେ ସେ ମହାତ୍ମାଙ୍କୁ ପ୍ରଣାମ ଜଣେଇଲା। ଆଉ ପର ମୁହୂର୍ତ୍ତରେ ହିଁ ପୋଷାକ ଭିତରୁ ବନ୍ଧୁକଟିଏ କାଢ଼ି ନେଇ ତାଙ୍କୁ ହିଁ ଲକ୍ଷ୍ୟ କରି ଗୁଳି ଚଳେଇ ଦେଲା। ଅର୍ଚ୍ଚନା ତକିଆରେ ମୁହଁ ମାଡ଼ି ବିକଳ ହୋଇ କାନ୍ଦି ପକେଇଲା। ଯେମିତି ତା'ର ସର୍ବସ୍ୱ ଚାଲିଯାଇଛି। ଜୀବନର ଆଉ କିଛି ମୂଲ୍ୟ ହିଁ ନାହିଁ।

ଅନୁପମାର ଆଖି କିନ୍ତୁ ଅସମ୍ଭବ ଭାବରେ ଶୁଖିଲା। ମୁହଁର ସବୁତକ ରଙ୍ଗ ଉଡ଼ି ଯାଇଛି। କାଠ ହୋଇ ଯାଇଛି ଗୋଡ଼ ହାତ। ତଥାପି ସ୍ୱପ୍ନ ଭଳି ବୀରେନ୍ କାକାଙ୍କ ସ୍ୱର ଶୁଣା ଯାଉଥିଲା ତାକୁ।

'ନା, ଗାନ୍ଧିଜୀ ଜମା ଭଲ କାମ କଲେ ନାହିଁ।'

ଏଇ ସ୍ୱର ତା'ହେଲେ ପ୍ରତିଧ୍ୱନିତ ହୋଇଥିଲା ଆହୁରି ଅନେକଙ୍କ ହୃଦୟରେ। ଗାନ୍ଧିଜୀଙ୍କୁ ସମ୍ମାନ ଜଣାଉଥିବା ମଣିଷମାନଙ୍କ ଭିତରେ ବି ତାଙ୍କୁ ଇ ନେଇ ଆଶଙ୍କା ସୃଷ୍ଟି ହୋଇ ଯାଇଥିଲା। ନହେଲେ କ'ଣ ତାଙ୍କୁ ପ୍ରଣାମ କରିଥିବା ହାତଟି ସ୍ଥିର ଭାବରେ ବନ୍ଧୁକ କାଢ଼ି ନେଇ ପାରିଥାଆନ୍ତା? ପୂଜ୍ୟ ଦେବତାଙ୍କୁ ଲକ୍ଷ୍ୟ କରି ଗୁଳି ଚଳେଇ ପାରିଥାଆନ୍ତା?

ଅନୁପମା ଆଖିରେ ଅବାସ୍ତବ ଘଟଣାଟିଏ ଶୁଣିବାର ପ୍ରତିଛବି। ସେ କିଛି ଦେଖି ପାରୁ ନ ଥିଲା। କିଛି ଶୁଣି ପାରୁ ନ ଥିଲା।

ଧୀରେ ଧୀରେ ମୁଣ୍ଡ ଉପରକୁ ଟେକିଲା ଅର୍ଚ୍ଚନା। ଶାଢ଼ି କାନିରେ ଆଖି ଲୁହ ପୋଛି ନେଇ ଧସି ଯାଇଥିବା ସ୍ୱରରେ କହିଲା, ''ଜାଣିଛୁ, ଅନି, ଟଳି ପଡ଼ିବା ବେଳେ ବାପୁ ଚିତ୍କାର କରି ନ ଥିଲେ। ବିକଳ ହୋଇ ଯାଇ ନ ଥିଲେ। ସତେ ଯେମିତି ସେ ଜାଣିଥିଲେ ଯେ ଏଇମିତି ଘଟଣାଟିଏ ଘଟିବା ଅବଶ୍ୟମ୍ଭାବୀ। .. ଆମ ନିହାରୀକା ଦି' ସେଇ କଥା କହି ହେଉଛନ୍ତି ବାରମ୍ବାର। ତାଙ୍କର କହିବା କଥା, ବାପୁଜୀ ନିଶ୍ଚେ ଜାଣିଥିଲେ ଯେ ଏଇଭଳି ଭାବରେ ତାଙ୍କ ଜୀବନ ଅନ୍ତ ହେବ। ଯେମିତି ଶ୍ରୀକୃଷ୍ଣ ଜାଣିଥିଲେ ଯେ ଜରା ଶବରର ତୀରରେ ସେ ଇହଧାମ ତ୍ୟାଗ କରିବେ। ସେଇମିତି।''

ଟିକିଏ ରହିଯାଇ ଅର୍ଚ୍ଚନା ପୁଣି କହିଲା, ''ନିହାରୀକା ଦି' ସତ କଥା

କହିଛନ୍ତି। ନହେଲେ ଟଳି ପଡ଼ିବା ପରେ ପରେ କେମିତି ପ୍ରଶାନ୍ତିର ଢେଉ ଖେଳି ଯାଇଥାଆନ୍ତା ତାଙ୍କ ମୁହଁ ଉପରେ? ନା, ଯନ୍ତ୍ରଣାରେ ତାଙ୍କ ଶରୀର, ମୁହଁ ବିବର୍ଣ୍ଣ ହୋଇ ଯାଇ ନ ଥିଲା। ତାଙ୍କ ପାଟିରୁ କେବଳ ଦୁଇଟି ଶବ୍ଦ ବାହାରିଥିଲା- 'ହେ ରାମ'। ଯୀଶୁ ଖ୍ରୀଷ୍ଟ ଯେମିତି ମୃତ୍ୟୁ ବେଳେ ତାଙ୍କ ଶତ୍ରୁମାନଙ୍କୁ କ୍ଷମା କରି ଦେଇ ଯାଇଥିଲେ, ଠିକ୍ ସେଇମିତି ଏଇ ଦୁଇଟି ଶବ୍ଦରେ ମହାତ୍ମା ସମସ୍ତଙ୍କୁ କ୍ଷମା କରି ଦେଇଥିଲେ ଯେମିତି ...।'' ପୁଣି ଥରେ ଶୋକର ଲହରୀ ମାଡ଼ି ବସିଲା ତାକୁ।

ଅନୁପମା ସ୍ଥିର ଆଖିରେ ଚାହିଁ ରହିଥିଲା ଅର୍ଚ୍ଚନାକୁ। କିନ୍ତୁ କିଛି ଦେଖି ପାରୁ ନ ଥିଲା। କିଛି ଶୁଣି ପାରୁ ନ ଥିଲା। ମୁଣ୍ଡ ଭିତରେ ଦୁମ୍ ଦୁମ୍ କରି କେହି ଯେମିତି ହାତୁଡ଼ି ପିଟି ଚାଲିଛି। ବୋଧଶକ୍ତି, ଚିନ୍ତାଶକ୍ତିକୁ କେହି ଯେମିତି ନିଥର କରି ଦେଇଛି।

କେବଳ ଦୁଇଟି ଶବ୍ଦ ଘୂରି ଘୂରି ବୁଲୁଛି ତା' ଭିତରେ।

ମାରି ଦେଲେ?

ମାରି ଦେଲେ? ମହାତ୍ମା ଗାନ୍ଧୀଙ୍କୁ ମାରି ଦେଲେ?? ଯେଉଁ ମଣିଷ ତାଙ୍କ ଜୀବନର ସବୁତକ ସମୟ, ସବୁ ଆନନ୍ଦ ଅନ୍ୟ ପାଇଁ ଉତ୍ସର୍ଗ କରି ଦେଲେ, ତାଙ୍କୁ ମାରି ଦେଲେ? କାହାର କ'ଣ କ୍ଷତି କରି ଥିଲେ ସେ? ହାତରେ ଅସ୍ତ୍ର ନ ଧରି ଅହିଂସା ମାର୍ଗରେ ଗୋଟାଏ ପରାଧୀନ ଦେଶକୁ ସ୍ୱାଧୀନତା ଆଣି ଦେଲେ। ତଥାପି ତାଙ୍କୁ ଗୁଳି କରି ଦେଲେ?

ଧିକ୍ - ଏଇଥିପାଇଁ 'ସ୍ୱାଧୀନତା, ସ୍ୱାଧୀନତା' ହୋଇ ପାଗଳ ହୋଇ ଯାଉଥିଲେ ସମସ୍ତେ! କି ମୂଲ୍ୟ ରହିଲା ଏଭଳି ସ୍ୱାଧୀନତାର। ସ୍ୱାଧୀନତାର ମାତ୍ର ଛଅ ମାସ ଭିତରେ ଭାରତ ଯାହା ହରେଇ ବସିଲା, ତାକୁ ଯେ ଶତ ସ୍ୱାଧୀନତା ପୂରଣ କରି ପାରିବ ନାହିଁ।

ଏତେ ସମୟ ମୂର୍ତ୍ତିଟିଏ ଭଳି ଠିଆ ହୋଇ ରହିଥିବା ଅନୁପମା ଆଉ ପାରିଲା ନାହିଁ। ସେଇଠି ମାଟିଟା ଉପରେ ଥପ୍ କରି ବସିଗଲା ସେ। ମୁଣ୍ଡଟା ଘୁରୁଛି ଖାଲି। ଦେହ ଘୋଳେଇ ହୋଇ ଯାଉଛି। ମନେ ହେଉଛି ସବୁ ଚାଲିଗଲା। ସବୁ ସରିଗଲା।

ମହାତ୍ମା ଗାନ୍ଧୀଙ୍କ ହତ୍ୟା ଘଟଣା ସମଗ୍ର ଦେଶକୁ ଦୋହଲାଇ ଦେଇଥିଲା। ବିବଶ କରି ଦେଇଥିଲା ସମସ୍ତଙ୍କୁ। ଯେଉଁଠିକି ଗଲେ ସେଇ ଏକା ଆଲୋଚନା। ଏକା ଉତ୍ତେଜନା। ନାଥୁରାମ ଗଡ୍‌ସେ ବିରୁଦ୍ଧରେ ବିକ୍ଷୋଦ୍‌ଗାର। ତାକୁ ପୃଥିବୀର ସବୁଠାରୁ କଠୋର ଶାସ୍ତି ଦେବାର ଯୋଜନା।

ଏତେ ବଡ଼ ଗୋଟାଏ ଘଟଣାକୁ ସହଜେ ଭୁଲି ପାରୁ ନ ଥିଲେ ଭାରତବାସୀ। କିନ୍ତୁ ସମୟ ପୁଣି ଧୀରେ ଧୀରେ ସବୁ ଠିକ୍ କରି ଦେଲା। ଦେଶର ଭାବୀ ଶାସକଗୋଷ୍ଠୀ ମନକୁ କଠିନ କରି ନୂଆ ସ୍ୱାଧୀନତା ପାଇଥିବା ଦେଶର ଭବିଷ୍ୟତ ବିଷୟରେ ଚିନ୍ତା କରିବା ଆରମ୍ଭ କରିଦେଲେ।

ଅନୁପମା ମଧ୍ୟ ଫେରି ଯାଇଥିଲା ନିଜର ସବୁଦିନିଆ ରୁଟୀନକୁ। କିନ୍ତୁ ସବୁ ଭିତରେ ଗୋଟାଏ ବିରାଟ ଶୂନ୍ୟ ସ୍ଥାନ ରହି ଯାଇଥିଲା ତା'ର।

ଏଇଭଳି ମାନସିକତା ନେଇ ପ୍ରାଇଭେଟ୍ ଭାବରେ ଆଇ.ଏ. ପରୀକ୍ଷା ଦେଲା ସେ। ସେ ଯେ ପାସ୍ କରିଯିବ, ତା' ନେଇ କାହା ମନରେ ସନ୍ଦେହ ନ ଥିଲା। କିନ୍ତୁ ଆଶାତୀତ ଫଳ ହେଲା ନାହିଁ। ସେ ସେକେଣ୍ଡ ଡିଭିଜନ୍‌ରେ ଆଇ.ଏ. ପାସ୍ କରିଲା। ଫାଷ୍ଟ ଡିଭିଜନ୍ ପାଇ ପାରିଲା ନାହିଁ।

ଅନୁପମା ଜାଣିଥିଲା ଯେ ଏଥିପାଇଁ ସେ ନିଜ ଛଡ଼ା ଆଉ କାହାକୁ ଦୋଷ ଦେଇ ପାରିବ ନାହିଁ। ନିଜେ ଯଦି ମନ ଦେଇ ପଢ଼ାଶୁଣା କରିଥାଆନ୍ତା, ତା'ହେଲେ କ'ଣ ଫାଷ୍ଟ ଡିଭିଜନ୍‌ଟା ବଳେଇ ଯାଇଥାଆନ୍ତା ?

ସାନ ଭଉଣୀର ପରୀକ୍ଷା ଫଳ ଦେଖି ଅର୍ଚ୍ଚନା କିଛି କହିଲା ନାହିଁ। ବୋଧହୁଏ କଲେଜ୍‌ରେ ଆଡ୍‌ମିଶନ କରେଇ ନ ପାରିବା ଯୋଗୁଁ କିଛିଟା ଦୋଷୀ ଭାବ ତା' ମନରେ ରହି ଯାଇଥିଲା। ସେ ଥରଟିଏ ବି ଅନୁପମା ଉପରେ ବିରକ୍ତ ହେଲା ନାହିଁ କି ତାକୁ ସମାଲୋଚନା କରିଲା ନାହିଁ। ଚୁପ୍‌ଚାପ୍ କେବଳ ସାନ ଭଉଣୀର କଲେଜ୍‌ରେ ଆଡ୍‌ମିଶନ୍ ପାଇଁ ଚେଷ୍ଟା କଲା। ଆଡ୍‌ମିଶନ୍ ମଧ୍ୟ ମିଳି ଗଲା। ରେଭେନ୍‌ସା କଲେଜ୍‌ରେ ଇଂରାଜୀ ଅନର୍ସ ନେଇ ବି.ଏ.ରେ ଆଡ୍‌ମିଶନ୍ ନେଲା ଅନୁପମା।

କଟକ ଆସିବା ପରେ ଯେଉଁ ଏକାକୀତ୍ୱର କୋଠରି ଭିତରେ ଅନୁପମା ବାନ୍ଧି ହୋଇ ଯାଇଥିଲା, ସେଥିରୁ ତାକୁ ମୁକ୍ତି ମିଳିଗଲା। କିନ୍ତୁ ସେ ସହଜ ହୋଇ ପାରୁ ନ ଥିଲା। ଭିନ୍ନ ପରିବେଶ, ଭିନ୍ନ ସାଙ୍ଗ ସାଥୀ। ଏସବୁ ଭିତରେ ସହଜ ହେବାକୁ ସମୟ ନିଶ୍ଚୟ ଲାଗି ଥାଆନ୍ତା। କିନ୍ତୁ ଅନୁପମା ଆଦୌ ନିଜକୁ ସହଜ କରି ନେବାର ପ୍ରବୃତ୍ତିଟି ହିଁ ଚାଲିଯାଇଥିଲା। ତା' ଉପରେ ପୁଣି ଗତ କେଇ ମାସ ଭିତରେ ଘଟି ଯାଇଥିବା ମାରାତ୍ମକ ଘଟଣାମାନଙ୍କର ଚାପ। ସେ ଅଧିକାଂଶ ବେଳ ନିଜ ଭିତରେ ହିଁ ସୀମିତ ରହି ଯାଉଥିଲା।

ହଜି ଯାଇଥିଲା ଆଗର ହସଖୁସିଆ ଅନୁପମା। ତା'ର ସ୍ଥାନ ନେଇଥିଲା ଭୀଷଣ ଗମ୍ଭୀର ଓ ଆନମନା ଝିଅଟିଏ।

ସେଦିନ ଅନୁପମାର କଲେଜ ଛୁଟି ଥିଲା। ଛୁଟି ଦିନ ବୋଲି ଗଡ଼ି ଗଡ଼ି ବେଶୀ ସମୟ ବିଛଣାରେ ଶୋଇ ରହିବାର ଅଭ୍ୟାସ ତା'ର କୌଣସି ଦିନ ନ ଥିଲା। ତେଣୁ ସେ ସବୁ ଦିନ ଭଳି ସକାଳୁ ଉଠି ଗାଧୁଆ ପାଧୁଆ କରି ନେଇଥିଲା। ଦିଦି ରଖିଥିବା ଠାକୁରମାନଙ୍କ ପାଖରେ ଟିକିଏ ମୁଣ୍ଡ ନୁଆଁଇ ନେଇ ସେ ହାତରେ ବହିଟିଏ ଧରି ଖଟରେ ବସିଗଲା। ଆଖି କିନ୍ତୁ ବହି ଉପରେ ନ ଥିଲା, ଥିଲା ପାଖ ଘର ବାରଣ୍ଡାରେ ବସି ଚିତା ପକାଉଥିବା ହେମ ମାଉସୀଙ୍କ ଉପରେ।

ବଙ୍ଗଳା ଦେଶରେ ବି ଚିତା ଦିଆ ହେବାର ରୀତି ଅଛି। କିନ୍ତୁ କିଛିଟା ଭିନ୍ନ। ଝରକା ସେପାଖରୁ ଅନୁପମା ଚୁପଚାପ ଲକ୍ଷ୍ୟ କରୁଥିଲା ସବୁ କିଛି। ଅଳ୍ପ ସମୟ ଆଗରୁ ହେମ ମାଉସୀ ନିଜ ହାତରେ ଦାଣ୍ଡ ଧୋଇ ଥିଲେ। ଆଉ ଏବେ ଅଧା ଭିଜା ଦାଣ୍ଡ ବାରଣ୍ଡାରେ ଚାଉଳ ବଟା ଦେଇ କେଡ଼େ ସୁନ୍ଦର ଚିତା ଆଙ୍କୁଛନ୍ତି! ଲତା, ପତ୍ର, ଲକ୍ଷ୍ମୀ ପାଦ। ପୁଣି ସୂର୍ଯ୍ୟ, ଚନ୍ଦ୍ର, ତାରା। ହେଇଟି ସେପାଖରେ ପତାକା ଭଳି ଚିତା ଅଙ୍କା ଆରମ୍ଭ କଲେଣି ସେ। ପୂରା ବାରଣ୍ଡା ଘେରି ପତାକାର ଧାଡ଼ି।

ନିଜ ହାତ କାମକୁ କଳାକାରର ତୀକ୍ଷ୍ଣ ଦୃଷ୍ଟି ନେଇ କେଇ ମିନିଟ୍ ଦେଖିବା ପରେ ଘର ଭିତରକୁ ଚାଲିଗଲେ ହେମ ମାଉସୀ। ରୋଷେଇ ଘରକୁ ବୋଧହୁଏ। ରନ୍ଧାରନ୍ଧି କରିବା ପାଇଁ।

ଠିକ୍। ଅନୁପମା ଠିକ୍ ଅନୁମାନ କରିଥିଲା। ଭିତରେ କିଛି ସମୟ କଟାଇବା

ପରେ ପୁଣି ବାହାରକୁ ବାହାରି ଆସିଲେ ହେମ ମାଉସୀ। ସେଇଠି ବାରଣ୍ଡା ଉପରୁ ଠିଆ ହୋଇ ପାଟି କରି ଉଠିଲେ, ''ଆଲୋ ଅର୍ଚ୍ଚନା, ନେଲୁ ଏଇ ଥାଳିଆଟା।'' ବେଳ ଅବେଳରେ ଭଲ ଭଲ ଜିନିଷ ରାନ୍ଧିଲେ ହେମଲତା ଅର୍ଚ୍ଚନା, ଅନୁପମା ପାଇଁ ଟିକିଏ ପଠେଇ ଦିଅନ୍ତି। ସେମାନଙ୍କୁ ଖୁଆଇ ପ୍ରବାସରେ ଥିବା ନିଜ ପୁଅ ଝିଅଙ୍କୁ ଖୁଆଇବାର ସନ୍ତୋଷ ପାଆନ୍ତି ବୋଧହୁଏ।

''ନେଉଛି, ମାଉସୀ।'' ଅର୍ଚ୍ଚନା ଭିତରୁ ବାହାରି ଆସିଲା। ଗାଧୋଇ, ସଫା ଶାଢ଼ି ପିନ୍ଧି ସ୍କୁଲ ଯିବା ପାଇଁ ପ୍ରସ୍ତୁତ। ''ଆଜି କ'ଣ କରିଛ କି, ମାଉସୀ ?'' ହେମଲତା କିଛି କହିବା ଆଗରୁ ଥାଳିଆ ଉପରେ ଘୋଡ଼ା ହେଇଥିବା ଝାଳର ଲଗା କନା ଖଣ୍ଡିକ ବାଁ ହାତରେ ଉଠେଇ ନେଲା ଅର୍ଚ୍ଚନା ଏବଂ ଆଶ୍ଚର୍ଯ୍ୟରେ କହି ଉଠିଲା, ''ଇଏ କ'ଣ ମାଉସୀ, ଏତେ ? ଆମେ ଦି' ଭଉଣୀ ଖାଇ ଶେଷ କରିବୁ କେମିତି ?''

''ମଲା, ଏବେ ଦେଲି ବୋଲି କ'ଣ ସବୁ ଏବେ ଖାଇବାକୁ ହେବ କି ? ଯେତିକି ଖାଇ ପାରିବ ଖାଇବ ଦି' ଭଉଣୀ। ବାକୀତକ ରଖି ଦେବୁ ଡବା ଭିତରେ। ଆରିସା ପିଠା କ'ଣ ଦିନକରେ ପଚି ଯାଉଛି ନା କ'ଣ।''

ଅର୍ଚ୍ଚନା ଥାଳି ଧରି ଘର ଭିତରେ ପାଦ ଦେବା କ୍ଷଣି ଅନୁପମା ହାତ ବଢ଼େଇ ପିଠାଟିଏ ଉଠେଇ ନେଲା। ସେଥିରେ ଛୋଟ କାମୁଡ଼ ଦେଇ କହିଲା, ''ଇସ୍, କି ବଢ଼ିଆ ହୋଇଛି, ଦିଦି। ହେମ ମାଉସୀ ସତରେ ଚମତ୍କାର ପିଠା କରନ୍ତି। ଆଜି କ'ଣ କିଛି ବିଶେଷ ପର୍ବ ଫର୍ବ କି ?''

''କେଜାଣି ହୋଇଥିବ। ମୁଁ ସ୍କୁଲ ଯାଉଛି, ଅନି। ତୁ ପିଠାତକ ଗୋଟାଏ ଡବାରେ ରଖି ନେଇ ଥାଳିଆଟା ମାଉସୀଙ୍କୁ ଫେରାଇ ଦେବୁ। ସେତିକି ବେଳେ ତାଙ୍କଠୁଁ ବୁଝି ନେବୁ ଆଜି କି ପର୍ବ। ଆଚ୍ଛା ତା'ହେଲେ...।'' ଖଦଡ଼ର ଝୁଲା ବ୍ୟାଗ୍‌ଟି ନେଇ ବାହାରି ଗଲା ଅର୍ଚ୍ଚନା।

ଅନୁପମା ଧୀରେ ଧୀରେ ପିଠାଟା ଖାଇ ଶେଷ କଲା। ତା'ପରେ ଲୋଭୀଙ୍କ ଭଳି ଉଠେଇ ନେଲା ଆଉ ଗୋଟିଏ।

ପିଠା ଖିଆ ଶେଷ କରି ବାକୀତକ ପିଠା ଗୋଟାଏ ଡବାରେ ରଖି ନେଇ ସେ ଥାଳିଆଟା ମାଜି ନେଲା। ତା'ପରେ ଦାଣ କବାଟଟା ବାହାରୁ କେବଳ ଆଉଜେଇ ଦେଇ ସେ ସିଧା ଚାଲିଗଲା ହେମଲତାଙ୍କ ରୋଷେଇ

ଘରକୁ। ଘରର ଝିଅ ଭଳି ଥାଳିଆଟିକୁ ଯଥା ସ୍ଥାନରେ ରଖି ଦେଇ ହେମଲତାଙ୍କ ପାଖରେ ପିଢ଼ାଟାଏ ଟାଣି ଆଣି ବସିଗଲା ସେ।

"ଆହୁରି କ'ଣ କରୁଛ, ମାଉସୀ ?"

"ତୋ ମଉସାଙ୍କ ପାଇଁ ଦିଇଟା ସାଦା ଏଣ୍ଡୁରୀ କରିବି। କାଲିଠୁ ସବୁ ବତୁରା ବତୁରି କରି ରଖିଥିଲି। ସେ ତ ଆଉ ଘିଅ ସରସର ଆରିସା ପିଠା ଖାଇ ପାରିବେନି।"

"ଓ..."

"ସୁଜି କ୍ଷୀରି ଟିକିଏ ଖାଇବୁ କିଲୋ, ଝିଅ ?" ଅନୁପମାର ଉତ୍ତର ପାଇଁ ଅପେକ୍ଷା ନ କରି ହେମଲତା ଛୋଟ ଗିନାରେ କ୍ଷୀରି ବାଢ଼ିବା ଆରମ୍ଭ କଲେ।

ଆଙ୍ଗୁଠିରେ ଚାଟି ଚାଟି କ୍ଷୀରି ଖାଇବା ବେଳେ ଅନୁପମା ପଚାରିଲା, "ଆଜି କ'ଣ କି ? ସକାଳୁ ଏତେ ଆୟୋଜନ।"

ହେମଲତା ଅବଶ୍ୟ ଅଧିକାଂଶ ଦିନ ପିଠା କରନ୍ତି। ତେବେ ତା' ପ୍ରାୟ ରାତିରେ ଏବଂ ଏତେ ରକମର କେବେ ନୁହଁ। ହୁଏତ ସରୁ ଚକୁଳି ବା ଚିତଉ। କେବେ କେମିତି ମଣ୍ଡା ପିଠା। ସାଙ୍ଗରେ ସନ୍ତୁଳାଟାଏ। କ୍ଷୀର ବାଟିଏ। ତେବେ ପର୍ବପର୍ବାଣି କଥା ଅଲଗା। ବାହାଘର ପରେ ପରେ ଶାଶୂ ଶିଖେଇ ଦେଇଥିବା ଧରା ବନ୍ଧା ନିୟମରୁ ହେମଲତା କେବେ ବାହାର ହୁଅନ୍ତି ନାହିଁ। ଯେଉଁ ପର୍ବରେ ଯେଉଁ ପିଠା କରିବା କଥା, ତା' ସେ ବିଧି ରକ୍ଷା କରି କରନ୍ତି। ଯଦିଓ ସେମାନେ କେବଳ ଦୁଇ ଜଣ ମଣିଷ ଏବଂ ଖାଇବାରେ ହଜାରେ କଟକଣା, ତଥାପି ବିଧି ଛାଡ଼ି ପାରନ୍ତି ନାହିଁ ସେ।

କଟକ ଆସି ଦିଦି ପାଖରେ ରହିଯିବା ପରେ ହେମଲତାଙ୍କୁ ଦେଖି ଦେଖି ଅନୁପମା ନୂଆ ଅଞ୍ଚଳର ରୀତି ନୀତି କିଛି କିଛି ବୁଝି ଗଲାଣି। ନିହାତି ଯେ ପୃଥକ ସଂସ୍କୃତି, ତା' ଅନ୍ତତଃ କହି ହେବନି। ସେଇ ମାଛ ଝୋଳ, ଭାତ। ସେଇ ଦୁର୍ଗାପୂଜା, କାଳୀପୂଜା। ସେଇ ଶଙ୍ଖ ହୁଳହୁଳି। ବଙ୍ଗଳା ଦେଶରେ ଯେମିତି ବିଭିନ୍ନ ପର୍ବପର୍ବାଣିରେ ପିଠାପଣା ହୁଏ, ଏଠି ବି ସେଇମିତି। ଫରକ କେବଳ ପିଠାର ନାମକରଣରେ, ପିଠା ତିଆରି ପ୍ରଣାଳୀରେ।

ଏସବୁ ବିଷୟ ଏଇ କେତେ ମାସ ଭିତରେ ଭଲ କରି ବୁଝି ଯାଇଛି ଅନୁପମା। ସେଥିପାଇଁ ପଚାରିଦେଲା, "ଆଜି କ'ଣ କି ?"

ତା' ମୁହଁକୁ ଅବାକ ଭାବରେ ଚାହିଁ ରହି ହେମଲତା କହିଥିଲେ, ''ଏତେ ଶୀଘ୍ର ସବୁ ଭୁଲି ଗଲୁ ଲୋ ଝିଅ ? .. ଆଜି ପରା ଅଗଷ୍ଟ ପନ୍ଦର।''

ଆଜିର ତାରିଖଟି ଭଲ କରି ମନେ ଥିଲା ଅନୁପମାର। ୧୯୪୮ ମସିହା ଅଗଷ୍ଟ ମାସ ପନ୍ଦର ତାରିଖ। ଭାରତର ସ୍ୱାଧୀନତା ଦିବସ। ସେଇଥିପାଇଁ ତ ସକାଳୁ ସକାଳୁ ତା' ଦିଦି ସ୍କୁଲ୍ ଚାଲିଗଲା। ପତାକା ଉତ୍ତୋଳନ, ଜାତୀୟ ସଙ୍ଗୀତ ଗାନ। ଏମିତି କେତେ କ'ଣର ଆୟୋଜନ। କିନ୍ତୁ ସେଥିପାଇଁ ଘରେ ଚିତା ପକାଇବା ବା ପିଠାପଣା କରିବାର କ'ଣ ପ୍ରୟୋଜନ ଅଛି ତା' ଅନୁପମା ବୁଝୁ ନ ଥିଲା।

ଡେକ୍‌ଚିରେ ବନ୍ଧା ହୋଇଥିବା ପତଲା କନା ଉପରେ ଡଙ୍କିଏ ଡଙ୍କିଏ ପିଠଉ ଢାଳୁ ଢାଳୁ ବାମ୍ଫୁଆ ସ୍ୱରରେ ହେମଲତା କହିଲେ, ''ମୋ ବି' ଭାଇ ସ୍ୱାଧୀନତା ସଙ୍ଗ୍ରାମରେ ଜେଲ୍ ଭୋଗି ଭୋଗି ଶେଷରେ ନିଜ ଜୀବନ ହରେଇଲେ। ସ୍ୱାଧୀନ ଭାରତ ଦେଖିବାର ସୁଯୋଗ ହେଲାନି ସେମାନଙ୍କର। ଆଉ ମୋ ଶ୍ୱଶୁରଘର କଥା କ'ଣ କହିବି। ତୋ ମଉସାଙ୍କ ବାପା, ମାନେ ମୋ ଶ୍ୱଶୁରଙ୍କର ଜମିଦାରୀ ଥିଲା। ଏମିତି ସେମିତି ଜମିଦାରୀ ନୁହଁ। ରାଜାର ରାଜ୍ୟ ଭଳି ଜମିଦାରୀ। ଅଥଚ ଇଂରେଜ ସରକାରର ଗୋଲାମୀ କରି ପାରିବେନି ବୋଲି ସବୁ ପାଦରେ ଆଡ଼େଇ ଦେଇଥିଲେ। ମୋ ଦେଢ଼ଶୁର ପୋଲିସ୍ ଲାଠିମାଡ଼ ଖାଇ ଜୀବନ ହରେଇଥିଲେ। ... ଏବେ ସେମାନଙ୍କର ବହୁ ଆକାଙ୍କ୍ଷିତ ସ୍ୱାଧୀନତା ଆସିଛି। ସେମାନେ ସିନା ଦେଖିବାକୁ ନାହାନ୍ତି। ହେଲେ ମୋ ପାଇଁ ଏଇଟା କୋଉ ଉତ୍ସବରୁ କମ୍ ନୁହଁ ଲୋ ମା'।''

ଅନୁପମା କିଛି ନ କହି ଚୁପ୍ ହୋଇ ବସି ରହିଲା। ମନଟା ତା'ର ଚାଲି ଯାଉଥିଲା ପଛକୁ ପଛକୁ। ମନ ଭିତରେ ବୁଡ଼ି ରହିଥିବା ଫିକା ଫିକା ଛବିମାନ ତା' ଚାରିପଟେ ବୁଦ୍‌ବୁଦ୍ ହେଇ ମୁଣ୍ଡ ଟେକିବାର ଉପକ୍ରମ କରୁଥିଲା।

ସ୍ୱାଧୀନତା ଦିବସ। ସେମାନଙ୍କ ଭାରତର ସ୍ୱାଧୀନତା ଦିବସ। ଦିନେ ଏଇ ସ୍ୱାଧୀନତା ପାଇବା ପାଇଁ ସ୍ୱପ୍ନ ଦେଖୁଥିଲେ ତା' ବାବା। ସୁଭାଷ ବୋଷ, ସୂର୍ଯ୍ୟ ସେନ୍। ଆହୁରି ପୁଣି କେତେ କିଏ। ତା' ନିଜର ବି କିଛି କମ୍ ଆଗ୍ରହ ଥିଲା ସ୍ୱାଧୀନତା ପାଇଁ? ଅଣୁ ମାତ୍ର ସମ୍ବାଦ ପାଇବା ପାଇଁ କେମିତି ଘଣ୍ଟା ଘଣ୍ଟା ବୀରେନ୍ କାକାଙ୍କ ଘରେ ରେଡ଼ିଓରେ କାନ ଲଗେଇ ବସି ରହୁଥିଲା!

କେମିତି ଖବର କାଗଜର ଛପା ସମ୍ବାଦ ଭିତରୁ ସ୍ୱାଧୀନତା ସଙ୍ଗ୍ରାମୀଙ୍କର ସଙ୍ଗ୍ରାମର ଛାୟା ଖୋଜି ବୁଲୁଥିଲା ! କେତେ ଦିନ ତଳର ଘଟଣା ସେସବୁ ? ମନେ ହେଉଛି ଯେମିତି ଯୁଗ ଯୁଗ କଟି ଗଲାଣି ତା'ପରେ ।

ଏବେ ସେଇ ସ୍ୱାଧୀନତା ମିଳି ଯାଇଛି । ହେଲେ କେଉଁଠି ହଜିଗଲା ତା' ଆକର୍ଷଣ !

ହେମ ମାଉସୀ କହି ଚାଲିଥିଲେ ତଥାପି । ଅନୁପମା କାନ ଦେଲା ।

"... ବୁଝିଲୁ ଲୋ ମା', ସବୁ ଦିନ ଆମ ଘରେ ଚରଖା ଚାଲୁଥିଲା । କେତେ କିଏ ଆସି ଭିଡ଼ ଜମାଉ ଥିଲେ । ନିୟମ କରି ସୂତା କଟା ହେଉଥିଲା । ଆମେ ସବୁ ଝିଅମାନେ ଖଦି ଛଡ଼ା ଆଉ କିଛି ପିନ୍ଧୁ ନ ଥିଲୁ । ଏଇ ଅର୍ଚ୍ଚନା ଭଳି । ବାହାଘର ପରେ ସଂସାରର ନାନା ଜଂଜାଳରେ ମୁଁ ସିନା ମୋ ପ୍ରତିଜ୍ଞାରୁ ଓହରି ଗଲି ପିଲାଛୁଆ ନେଇ ମିଲ୍ ଶାଢ଼ିକୁ ଆଦିରି ନେଲି ... ହେଲେ ମନଟା ତ ଏବେ ବି ସେଇ ଆଗ ଭଳି ।" ଅନ୍ୟମନସ୍କ ହୋଇ ପଡ଼ିଥିଲେ ମାଉସୀ ।

କିଛି ସମୟ ଚୁପ୍ ହୋଇ ତାଙ୍କ ପାଖରେ ବସିବା ପରେ ପୁଣି ନିଜ ଘରକୁ ଫେରି ଆସିଥିଲା ଅନୁପମା ଏବଂ ଶୂନ୍ୟ ଘରେ ଖଟ ଉପରେ ଏକା ଏକା ଶୋଇ ରହି କେବଳ ଭାବି ହୋଇଥିଲା ।

ଅର୍ଚ୍ଚନା ସ୍କୁଲ୍‌ରୁ ଫେରୁ ଫେରୁ ସାଢ଼େ ବାରଟା ।

"ଯେ କ'ଣ, ଶୋଇ ରହିଛୁ କାହିଁକି ? ଦେହ ଭଲ ଲାଗୁନି ?" ବ୍ୟସ୍ତ ଭାବରେ ସାନ ଭଉଣୀର କପାଳରେ ହାତ ଦେଲା ସେ ।

"ଧେତ୍, ଦେହ କାହିଁକି ଖରାପ ଲାଗିବ ? କିଛି କରିବାର ନ ଥିଲା, ସେଥିପାଇଁ ଗଡୁଥିଲି ।"

"ଏମିତି ଅବେଳରେ କିଏ ଗଡ଼େ ? ମତେ ଭୟ ଦେଖାଇ ଦେଲୁ ତୁ ।" ଅର୍ଚ୍ଚନା ଶାଢ଼ି ପାଲଟିବାକୁ ଚାଲିଗଲା ।

ବିଛଣାରୁ ଉଠିଯାଇ ଅନୁପମା ରୋଷେଇ ଘରେ ପଶିଲା । ଭାବିଥିଲା ଦିଦି ଆସିବା ପୂର୍ବରୁ ସବୁ ରନ୍ଧା ସାରି ଦେବ । ହେଲେ ଆଜେ ବାଜେ ଚିନ୍ତା କରୁ କରୁ କୁଆଡ଼େ ଯେ ସମୟତକ ଚାଲିଗଲା, ଜଣା ବି ପଡ଼ିଲାନି । ଅବଶ୍ୟ ଦୁଇ ଜଣିଆ ରୋଷେଇ । କିଛି ଜଞ୍ଜାଳ ନାହିଁ । ସାଙ୍ଗେ ସାଙ୍ଗେ ହୋଇଯିବ ।

ଚୁଲି ଲଗାଇଲା ସେ।

ଅର୍ଚ୍ଚନା ଶାଢ଼ି ବଦଳାଉ ବଦଳାଉ ପାଟି କରି ଉଠିଲା, "ଯେ କ'ଣ, ରୋଷେଇ ଘରେ ପଶିଲୁ କାହିଁକି? ଯାହା କରିବା କଥା ମୁଁ କରିବି। ତୁ ଗଲୁ। ଯା, ଯାଇକରି ପଢ଼ାପଢ଼ି କର।"

ଦିଦି ଆକଟରେ ରୋଷେଇ ଘରେ ବେଶୀ ସମୟ ରହି ପାରିଲା ନାହିଁ ଅନୁପମା। କଟାବଟାର ସାମାନ୍ୟ ଆୟୋଜନ କରି ନେଇ ସେ ବାହାରି ଆସିଲା। ହେଲେ ପଢ଼ାପଢ଼ି! ଧେତ୍! ତକିଆକୁ ଆଉଜି ହୋଇ ବସି ଅଦେଖା ଭାବରେ ବହିଟିଏର ପୃଷ୍ଠା ଓଲଟାଇଲା ସେ। ନା, ଜମା ମନ ଲାଗୁନି। ବହିଟିକୁ କଡ଼େଇ ରଖି ସେ ମୁଣ୍ଡ ଉପରର ଥାକରୁ ପୁରୁଣା ବଙ୍ଗଳା ପତ୍ରିକାଟିଏ ଟାଣି ଆଣିଲା। ତକିଆରେ ଆରାମ କରି ମୁଣ୍ଡଟାକୁ ଥାପି ଦେଇ ଆଗରୁ ଦୁଇ ଥର ପଢ଼ି ସାରିଥିବା ପତ୍ରିକାଟି ଖୋଲିଲା ସେ।

ପତ୍ରିକା ପଢୁ ପଢୁ ଅନୁପମାର ଆଖି ଯେ କେତେବେଳେ ଲାଗିଗଲା, ତା' ସେ ଆଦୌ ଜାଣି ପାରିଲାନି। ରନ୍ଧା ସାରି ତାକୁ ଆସି ଉଠେଇ ଦେଲା ଅର୍ଚ୍ଚନା। କୌଣସି ମତେ ଭାତଟା ଖାଇ ନେଇ ଅନୁପମା ପୁଣି ଶୋଇ ପଡ଼ିଲା। ଆଗରୁ ଦି'ପହରେ ଶୋଇବା ଅଭ୍ୟାସ ତା'ର ନ ଥିଲା। କିନ୍ତୁ ଆଜିକାଲି ଛୁଟି ଦିନ ମିଳିଲେ ସେ ଆରାମରେ ଘଣ୍ଟାଏ ଦି' ଘଣ୍ଟା ଶୋଇ ପଡ଼େ। ବଡ଼ ବଦଅଭ୍ୟାସ। ଛାଡ଼ିବାକୁ ହେବ। ଅଧା ନିଦରେ ନିଜକୁ ନିଜେ କହିଲା ସେ, କିନ୍ତୁ ପୁଣି ବାଁ କଡ଼ ମାଡ଼ି ଆରାମରେ ଶୋଇ ପଡ଼ିଲା।

ଚାରିଟା ବେଳେ ଯାଇ ଅନୁପମାର ନିଦ ଭାଙ୍ଗିଲା। ମୁହଁ ହାତ ଧୋଇ ନେଇ ଚାହା ପାଣି ଚୁଲିରେ ବସେଇଲା ସେ। ଛୁଟି ଦିନର ଦିବା ନିଦ୍ରା ଭଳି ଏଇ ଅଭ୍ୟାସଟି ମଧ୍ୟ କଟକ ଆସିବା ପରେ ଅନୁପମା ଆଦରି ନେଇଛି। ଚାହା ପ୍ରତି ତା'ର କୌଣସି ଦିନ ବିଶେଷ ପ୍ରୀତି ନ ଥିଲା। ଦାଦାକୁ ଦେବା ବେଳେ, ବା ଅତିଥି ଅଭ୍ୟାଗତଙ୍କୁ ଦେବା ବେଳେ ଟିକିଏ ଅଧିକା ହୋଇଗଲେ ଦି' ଢୋକ ପାଟିରେ ପକେଇ ଦେଉଥିଲା। କିନ୍ତୁ ଅଭ୍ୟାସ ହୋଇ ନ ଥିଲା କୌଣସି ଦିନ। କଟକ ଆସିବା ପରେ ଯେଉଁ କେତେ ମାସ ସେ କଲେଜ ନ ଯାଇ ଘରେ ରହିଲା, ସେତିକି ବେଳେ ସମୟ କଟାଇବା ପାଇଁ ସେ ଜାଣିଶୁଣି ଏ ଅଭ୍ୟାସ କରି ନେଇଥିଲା। ଚୁଲି ଲଗା, ଚାହା କରା, ପୁଣି

ଧୀରେ ଧୀରେ ଚାହା ପିଆ - ବେଶ୍ କିଛି ସମୟ ବରବାଦ କରାଯାଇ ପାରେ ଏ ସବୁରେ। ଅର୍ଚ୍ଚନା ବିରକ୍ତ ହୋଇ କହିଥିଲା, ''ଜାଣି ଜାଣି କାହିଁକି ବାଜେ ଅଭ୍ୟାସ ସବୁ କରୁଛୁ, ଅନି ?''

ଅନୁପମା ତା' ଦିଦିକୁ ଆଶ୍ୱାସନା ଦେଇ କହିଥିଲା, ''ଅଭ୍ୟାସ ନା ଚୋପା। ଏବେ ସିନା ବେଳ କାଟିବା ପାଇଁ ଚାହା କରି ପିଉଛି। ଥରେ କଲେଜରେ ଆଡ୍‌ମିଶନ୍ ନେଇଗଲେ, ଆଉ ଏସବୁ ପାଇଁ ଆଗ୍ରହ ରହିବ ଭାବୁଛୁ ?''

''କୋଜାଣି, ବାବା। ଏଇଥିରୁ ଯଦି ଅଭ୍ୟାସ ହୋଇଯାଏ, ତେବେ ରହିଯିବ ସାରା ଜୀବନ ପାଇଁ। ଭୋଗୁଥିବୁ।''

''ଯା ମ, ଖାଲି ଅଭ୍ୟାସ ହୋଇ ଯାଉଥିଲା ! ଆଉ ମୁଁ ଖାଲି ଭୋଗି ଯାଉଥିଲି ! ତୋର ଯାହା କଥା ନା, ଦିଦି, ଶୁଣିଲେ ହସ ଲାଗେ।'' ଦିଦିର ଆଶଙ୍କାକୁ ଫୁଟ୍‌କି ମାରି ଉଡ଼େଇ ଦେଇଥିଲା ଅନୁପମା।

ହେଲେ ଅର୍ଚ୍ଚନାର ଭୟ ଅମୂଳକ ନ ଥିଲା। ଦିଦିକୁ ହଜାର ଆଶ୍ୱାସନା ଦେଲେ ବି ଚାହାର ଅଭ୍ୟାସ ହୋଇ ଯାଇଥିଲା ଅନୁପମାର। ବି.ଏ.ରେ ଆଡ୍‌ମିଶନ୍ ନେବା ପରେ ମଧ ସେ ସକାଳ ସନ୍ଧ୍ୟା ଦି' ବେଳା ଚାହା ପିଆ ଛାଡ଼ି ପାରି ନ ଥିଲା।

ଏକା ଏକା ରୋଷେଇ ଘରେ ବସି ଚାହା ପିଉ ପିଉ ଅନୁପମା ରାତି ପାଇଁ ପରିବାପତ୍ର କାଟି ରଖି ଦେଲା। ରାନ୍ଧିଲେ ପୁଣି ଦିଦି ପାଟି କରିବ। ଅନ୍ୟ ଦିନେ ଦିଦିର ପାଟି ଶୁଣି ନ ଶୁଣିଲା ଭଳି ଢଙ୍ଗ କରି ଅନୁପମା ଭଜା ବା ତରକାରିଟାଏ ବସେଇ ଦିଏ। ହେଲେ ଆଜି ତା' ନିଜର ହିଁ କିଛି କରିବାକୁ ଇଚ୍ଛା ହେଉନି। କେଜାଣି କାହିଁକି, ମନ ବଡ଼ ଦବିଲା ଦବିଲା ଲାଗୁଛି।

ରୋଷେଇ ଘର କବାଟ ଆଉଜେଇ ନେଇ ଅନୁପମା ଶୋଇବା ଘରକୁ ଆସିଲା। ଦିଦି ଝରକା ପାଖରେ ବସି କ'ଣ ସିଲେଇ କରୁଛି ନିବିଷ୍ଟ ମନରେ। ସ୍କୁଲ୍‌ରେ ନିଶ୍ଚୟ କେହି ତାକୁ କରିବାକୁ ଦେଇଛନ୍ତି। ବିନା ମଜୁରୀରେ କାମ ଆଦାୟ କରି ନେବାର ଲାଳସାରେ। ଅନ୍ୟ ଦିନେ ଯାକୁଇ ନେଇ ଦୁଇ ଭଉଣୀଙ୍କର ବେଶ୍ ବଚସା ହୁଏ। ଅର୍ଚ୍ଚନା ଯେ କାହିଁକି କାହାକୁ କୌଣସି ବିଷୟରେ ମନା କରି ପାରେ ନାହିଁ, ତା' ନେଇ ଅନୁପମା ରଗାରଗି କରେ।

ହେଲେ ଆଜି ଆଉ କିଛି କହିଲା ନାହିଁ ସେ। ଅନ୍ୟମନସ୍କ ଭାବରେ

ଦାଣ୍ଡ କବାଟ ଖୋଲି ସେ ବାରଣ୍ଡାକୁ ବାହାରି ଆସିଲା। କଡ଼ିକିଆ ଉଚ୍ଚ ବାରଣ୍ଡା। ଠିଆ ହେଲେ ରାସ୍ତାରୁ ଦେଖାଯାଏ ନାହିଁ। କିନ୍ତୁ ହେମ ମାଉସୀଙ୍କ ଘର ଭିତରଟା ଦେଖି ହୁଏ। ଆଉ ଦେଖି ହୁଏ ଦୂରର କାଠଯୋଡ଼ୀ ନଈ।

ନିର୍ବିଷ୍ଟ ଭାବରେ କାଠଯୋଡ଼ୀ ନଈ ଦେଖୁ ଦେଖୁ କେତେ ସମୟ ଯେ କଟିଗଲା, ଅନୁପମା ଜାଣି ପାରିଲା ନାହିଁ। ତା'ର ହୋସ୍ ଆସିଲା ଅର୍ଚ୍ଚନାର ଡାକରେ। ଭିତର ଘରୁ ସେ କହି ଉଠିଲା, "ବାହାରେ ଦୀପଟା ଦେଇ ଦେ ତ, ଅନି। ସନ୍ଧ୍ୟା ହେଲାଣି।"

"ଦେଉଛି, ଦିଦି।"

ଦୀପରେ ଘିଅ, ସଳିତା ଦେଇ ବାହାରେ ରଖୁ ରଖୁ ଅନୁପମା ଅବାକ ହୋଇଗଲା। ହେମ ମାଉସୀଙ୍କର ସ୍ୱାଧୀନତା ଉତ୍ସବ ପାଳନ ସରିନି ଆହୁରି! ସକାଳୁ ପିଠାପଣା କରି ମନ ଯେମିତି ସନ୍ତୁଷ୍ଟ ହୋଇ ନ ଥିଲା ତାଙ୍କର। ଏବେ ସନ୍ଧ୍ୟା ହୋଇ ଆସିବା ବେଳକୁ ଦୀପାବଳୀ ଭଳି ବାହାରେ ଦୀପ ସଜେଇ ଦେଲେଣି ମାଉସୀ। ମଉସା ବି ସେଇଠି। ମଝିରେ ମଝିରେ ଲିଭି ଯାଇଥିବା ଦୀପ ପୁଣି ଜଳେଇ ଦେଉଛନ୍ତି। କେତେବେଳେ କେଉଁଟାର ସଳିତା ଟେକି ଦେଉଛନ୍ତି। ପୁଣି ଯାଇ ମାଉସୀଙ୍କୁ ଚୁପ୍‌ଚୁପ୍ କ'ଣ ସବୁ କହୁଛନ୍ତି। ଆଉ ଉଜ୍ଜ୍ୱଳ ହୋଇ ଉଠୁଛି ମାଉସୀଙ୍କ ମୁହଁ।

ଅନୁପମା ସବୁ ଦେଖୁଥିଲା। କିନ୍ତୁ ମନଟା ତା'ର କାହିଁକି କେଜାଣି ଭୀଷଣ ଅନାସକ୍ତ ହୋଇ ଯାଇଥିଲା।

କ'ଣ ଦରକାର ଏତେ ସବୁ ଆୟୋଜନର? ଏଇଭଳି ସ୍ୱାଧୀନତା ପାଇଁ କି ଏମିତି ବିକଳ ହୋଇ ଯାଇଥିଲେ ସମସ୍ତେ? ପରାଧୀନ ଥିବାବେଳେ ସ୍ୱାଧୀନତାର ରଙ୍ଗୀନ ସ୍ୱପ୍ନ ସମସ୍ତଙ୍କୁ ବିଭୋର କରି ଦେଇଥିଲା। ତାକୁ ବି। ଅନ୍ୟମାନଙ୍କ ଭଳି ଅନୁପମା ଭାବି ନେଇଥିଲା ଯେ ଇଂରେଜ୍ ସରକାର ଭାରତର ସୀମା ପାର ହେଉଣୁ ନ ହେଉଣୁ ରାମରାଜ୍ୟ ସୃଷ୍ଟି ହୋଇଯିବ ଭାରତରେ। ତାଙ୍କ ଦେଶ 'ସୁଜଳା ସୁଫଳା ଶସ୍ୟ ଶ୍ୟାମଳା' ହୋଇ ଉଠିବ। କିନ୍ତୁ କାହିଁ, ସେମିତି ତ କିଛି ହେଲା ନାହିଁ।

ସ୍ୱାଧୀନତା ପରେ ପରେ ଆରମ୍ଭ ହୋଇ ଯାଇଥିଲା ଦେଶ ବିଭାଜନର ବିଭୀଷିକା। ସେ ବିଭୀଷିକା ତା' ମନରୁ ସବୁ ସୁଖ, ସବୁ ଆନନ୍ଦ ପୋଛି

ଦେଇଥିଲା। କିନ୍ତୁ ସେପର୍ଯ୍ୟନ୍ତ ଅନାସକ୍ତ ହୋଇ ନ ଥିଲା ଅନୁପମା। କଲିକତା ଚାଲି ଆସିବା ପରେ ପାରିବାରିକ ସମସ୍ୟା ନେଇ ତା' ମନ ନିରାଶାର ଭଉଁରୀରେ ପଡ଼ି ଯାଇଥିଲା, କିନ୍ତୁ ମନର ଗଭୀରତମ କଣରେ ତଥାପି ଆଶାର କିରଣଟିଏ ଛପି ରହି ଯାଇଥିଲା। କିଏ ଯେମିତି ତାକୁ ଠେଲି ଠେଲି କହୁଥିଲା - ମୁଣ୍ଡ ଉପରେ ଅଛନ୍ତି ବାପୁଜୀ। ସବୁ ଠିକ୍ ହୋଇଯିବ। ନିଶ୍ଚୟ ସବୁ ଠିକ୍ ହୋଇଯିବ।

କି ବୃଥା ଆଶା!! ରହିଲେ ଆଉ କୋଉଠି ବାପୁଜୀ? ଶିହରି ଉଠିଲା ଅନୁପମାର ଦେହ ହାତ। ସେ ଯେଉଁ କାଳ ବାର! କି ନାରକୀୟ ହତ୍ୟାକାଣ୍ଡ ଘଟିଗଲା ସେଦିନ! ପ୍ରାର୍ଥନା ସଭାରେ ନାଥୁରାମ ଗଡ୍‌ସେ କେମିତି ମହାତ୍ମା ଗାନ୍ଧୀଙ୍କୁ ଗୁଳି କରି ମାରି ଦେଇ ପାରିଲା, ତା' ଆଜିଯାଏଁ ସେ ବୁଝିଲା ନାହିଁ। କ'ଣ ନା, ମୁସଲମାନଙ୍କ ପ୍ରତି ଅଧିକ ଦୁର୍ବଳତା ପ୍ରକାଶ କରି ପକେଇଲେ ସେ! ଗାନ୍ଧିଜୀଙ୍କ ଉପରେ ଏତେ ବଡ଼ ଲାଞ୍ଛନା! କେମିତି ଗଡ୍‌ସେର ହାତ ବନ୍ଧୁକ ଚଳେଇ ପାରିଲା? କମ୍ପି ଉଠିଲା ନାହିଁ ତା' ହାତ!

ନା। ହାତ ତା'ର କମ୍ପିଲା ନାହିଁ। ଗୁଳି ତା'ର ଲକ୍ଷ୍ୟଭ୍ରଷ୍ଟ ହେଲାନାହିଁ। ଟଳି ପଡ଼ିଲେ ଗାନ୍ଧିଜୀ।

ଆଉ ସେଇ ଦିନ ହିଁ ଅନୁପମାର ମନ ସମ୍ପୂର୍ଣ୍ଣ ଭାବରେ ଭାଙ୍ଗି ଯାଇଥିଲା।

ଗାନ୍ଧିଜୀଙ୍କ ହତ୍ୟା ପରେ ଯଦି ଦେଶ ଶାସନରେ ସେ ଦକ୍ଷତା ଦେଖିଥାଆନ୍ତା, ତା'ହେଲେ ବୋଧହୁଏ ଅନୁପମାର ମନ ସମୟ ସହିତ ତାଳ ଦେଇ ସ୍ୱାଭାବିକ ହୋଇ ଯାଇଥାଆନ୍ତା। କିନ୍ତୁ ସେ ଖୁବ୍ ଶୀଘ୍ର ବୁଝି ଯାଇଥିଲା ଯେ ଦେଶର ପରିସ୍ଥିତିରେ କୌଣସି ପରିବର୍ତ୍ତନ ଆସିନି। ଗୋରା ସରକାରଙ୍କଠୁଁ ଶାସନ ଚାଲିଯାଇଛି ସତ, କିନ୍ତୁ ତା' ଯାଇଁ ଧରା ଦେଇଛି ସ୍ୱାର୍ଥଲୋଭୀ, କ୍ଷମତାଲୋଭୀ ଲୋକଙ୍କ ହାତରେ। ଯେଉଁ କେତେ ଜଣ ପ୍ରକୃତ ଦେଶପ୍ରେମୀ ରହିଥିଲେ, ସେମାନେ କେବଳ ବିବଶ, ନାଚାର ହୋଇ ପଡୁଥିଲେ। ବାନ୍ଧି ହୋଇ ଯାଇଥିଲା ସେମାନଙ୍କର ହାତ ପାଦ।

ଅନୁପମା ଆଖିରେ ସବୁ ପଡୁଥିଲା। କିନ୍ତୁ ମନ ଖରାପ କରିବା ଛଡ଼ା ତା'ର ଆଉ କରିବାର କିଛି ନ ଥିଲା। ବେଳେ ବେଳେ ସେ ଦବିଲା ମନ ନେଇ ଖଟରେ ଶୋଇ ରହୁଥିଲା। ଆଉ ପୁଣି କେତେବେଳେ ଅନ୍ୟମନସ୍କ ଭାବରେ ଦୂରରେ ଚିକିଚିକି କରୁଥିବା କାଠଯୋଡ଼ୀର ପାଣିକୁ ଚାହିଁ ରହି ସେ

ଭାବି ହେଉଥିଲା । ଆଜି ଭଳି ।

କୁଆଡ଼େ ଯାଉଛି ଏ ଦେଶ ? କ'ଣ ତା'ର ଭବିଷ୍ୟତ ? କେହି କ'ଣ ବାପୁଜୀଙ୍କ ସ୍ୱପ୍ନର ଭାରତକୁ ସାକାର କରି ପାରିବେ ନାହିଁ ? କୋଟି କୋଟି ଲୋକଙ୍କ ଭିତରେ ଏମିତିଆ ମଣିଷ କ'ଣ ଜଣେ କେହି ନାହିଁ ?

ଦେଶର ଭବିଷ୍ୟତ ଚିନ୍ତା କରୁ କରୁ ଅନୁପମାର ଭାବନା ମୁହାଁଇଲା ନିଜ ଆଡ଼କୁ । ଯେମିତି ହୁଏ ଆଜିକାଲି । ଦେଶର ଭବିଷ୍ୟତ ଭଳି ତା' ଜୀବନ ତ ବହି ଚାଲିଛି ଲକ୍ଷ୍ୟହୀନ ଭାବରେ । ଅଜଣା ଗତିପଥରେ ।

କୁଆଡ଼େ ମୁହାଁଇଛି ତା' ଜୀବନର ସ୍ରୋତ ? ଏଇମିତି ବହି ବହି କ'ଣ କେଉଁ ଅନ୍ଧାରୀ ଗହ୍ୱରରେ ଲୀନ ହୋଇଯିବ ! ନା କେବେ ପୁଣି ମୁହାଣରେ ପହଞ୍ଚିବାର ସୁଯୋଗ ତା'ର ହେବ ?

କେଜାଣି !

କ୍ଲାନ୍ତ ଆଖି ଉପରେ ହାତ ବୁଲେଇ ଆଣିଲା ସେ । ସାମ୍ନାରେ ଅଜଣା ଅସରନ୍ତି ରାସ୍ତା । ଅନୁପମା ବିବଶ ହୋଇ ଯାଉଛି । ଅତଳ ଭଉଁରୀ ଭିତରେ ପଡ଼ି ଯାଉଛି ।

ଜୋରରେ ନିଶ୍ୱାସ ନେଇ ସେ ବର୍ତ୍ତମାନକୁ ଫେରି ଆସିଲା ।

ତାକୁ ଏମିତି ବାହାରେ ଅନ୍ୟମନସ୍କ ହୋଇ ଠିଆ ହେଇ ରହିବାର ଦେଖିଲେ ଦିଦି ବିରକ୍ତ ହେବ । ଆଇ.ଏ.ର ସେକେଣ୍ଡ ଡିଭିଜନ୍ ପରେ ସବୁବେଳେ ତାକୁ ପଢ଼ାପଢ଼ି କରିବାକୁ ଜୋର ଦିଏ ଅର୍ଚ୍ଚନା । କିନ୍ତୁ ଅନୁପମା କେମିତି ବୁଝେଇବ ତା' ଦିଦିକୁ ଯେ ଆଜିକାଲି ସବୁବେଳେ ତା' ମନ ଭାରାକ୍ରାନ୍ତ ରହୁଛି । ସେ ଭାବିଥିଲା ଯେ କଟକ ଚାଲି ଆସିଲେ ସବୁ ଠିକ୍ ହୋଇଯିବ । ତା' ହେଲା ନାହିଁ । ସେତେବେଳେ ସେ ଭାବୁଥିଲା ଯେ ଥରେ ନିୟମିତ କଲେଜ୍ ଆରମ୍ଭ ହୋଇଗଲେ, ସବୁ ଠିକ୍ ହୋଇଯିବ । ନୂଆ ନୂଆ ସାଙ୍ଗ ପାଇଲେ ମନ ପ୍ରଫୁଲ୍ଲିତ ହୋଇଯିବ ।

ନା, ତା' ମଧ୍ୟ ହେଲାନାହିଁ । ଏଯାଏଁ ଖୁବ୍ ଭଲ ସାଙ୍ଗଟିଏ ବି ପାଇଲା ନାହିଁ ଅନୁପମା ।

ଦୀର୍ଘନିଶ୍ୱାସ ନେଇ ସେ ଦୂରକୁ ଚାହିଁଲା। ଚାପା ଅନ୍ଧାରରେ କାଠଯୋଡ଼ୀ ଠିକ୍ ଦେଖି ହେଉନି। ମଝିରେ ମଝିରେ କେବଳ କଳା ଧାରଟାଏ ଝଲସି ଉଠୁଛି ନିଜର ଅବସ୍ଥିତି ଜାହିର କରିବା ଭଳି। ହଠାତ୍ ଶିହରିତ ହୋଇ ଉଠିଲା ଅନୁପମାର ଶରୀର। ଏ କ'ଣ?? ଏ କ'ଣ?? ସେ ଯେ ପରିଷ୍କାର ଭାବରେ କାଠଯୋଡ଼ୀ ପାଣିରେ ଇଚ୍ଛାମତୀର ଝଲକ ଦେଖି ପାରୁଛି!

ଇଚ୍ଛାମତୀ! କାହିଁ ଗଲା ଇଚ୍ଛାମତୀ! କୁଆଡ଼େ ହଜିଗଲା ତା'ର ପ୍ରିୟ ପାବ୍ନା!

ଦୂର ପାଣିର କଳା ଧାର ଚହଲି ଗଲା ଟିକିଏ। ଆଉ ତା'ରି ଭିତରେ ଚିକିଚିକି କରିବା ଭଳି ଭାସି ଉଠିଲା ବିଭିନ୍ନ ମୁହଁର ପ୍ରତିଛବି। ବାବା, ନାରଣ କାକା, ଗୁନି, ଉମା ଦି, ସଲମା ଚାଚୀ, ସଫିକ୍ ଦା', ବୀରେନ୍ କାକା, ମାଳା... ଆଉ... ଆଉ... ପୁଣି ପୁଲକ।

ଅନୁପମାର ଦେହ କାଠ ହୋଇଗଲା। ଛି!! ଆଉ ମଣିଷ ମିଳିଲେନି, ଆଜି ଭଳି ଦିନର ସନ୍ଧ୍ୟା ବେଳଟାରେ ମେରୁଦଣ୍ଡହୀନ ପୁଲକ ଚକ୍ରବର୍ତ୍ତୀ କଥା ତା' ମନକୁ ପଶି ଆସିଲା। ଛି! ଏଭଳି ଜଣଙ୍କର ନାଁ ଟି ବା କେମିତି ମନେ ଅଛି ଆଜି ପର୍ଯ୍ୟନ୍ତ ତା'ର! ଛି! ଛି! ଛି!

ବଡ଼ ବଡ଼ ପାଦ ପକେଇ ଘର ଭିତରକୁ ପଶିଗଲା ଅନୁପମା ଏବଂ ଶବ୍ଦ କରି ଚୌକିଟା ଟାଣି ଆଣି ପଢ଼ା ଟେବୁଲ ପାଖରେ ସେ ବସି ଗଲା। ତା'ପରେ ନିଜ ସାମ୍ନାରେ ଗଦା ହୋଇ ରହିଥିବା ଖାତାଗୁଡ଼ିକୁ ସେ ଓଲଟ ପାଲଟ କରି ଦେଖିବାକୁ ଆରମ୍ଭ କଲା। ପ୍ରଥମ ଥର ଦେଖିବା ଭଳି।

ଆରେ ଆରେ ... ହଠାତ୍ କାଗଜଟିଏ ଗତ ବର୍ଷର ଇତିହାସ ଖାତା ଭିତରୁ ବାହାରି ଯାଇ ଉଡ଼ିଗଲା ତଳକୁ। ଏଇଟା ପୁଣି କ'ଣ? କୌତୁହଳରେ ତଳୁ କାଗଜଟିକୁ ଉଠେଇ ଆଣିଲା ସେ ଏବଂ ଅବାକ ହେଇଗଲା।

କୋଉ ଯୁଗ ତଳର ଅଧାଲେଖା କବିତାଟିଏ ତା'ର।

ଧୀରେ ଧୀରେ ଆବୃତ୍ତି କଲା ଭଳି ପଢ଼ିଲା ସେ ସେଇଟିକୁ। ପଢ଼ିବା ଶେଷ କରି ପୁଣି ପ୍ରଥମରୁ ...। ପୁଣି ଆଉ ଥରେ...।

ଅନୁପମା ଭିତରୁ ଠେଲି ହୋଇ ଭାବନାର ନଈଟିଏ ବହି ଆସିଲା। ବହୁତ ଦିନର ଅବ୍ୟବହୃତ କଲମ ଉଠେଇ ନେଲା ସେ।

ପୁଣି ସେଇ ଆଶ୍ୱିନ ମାସ। ପୁଣି ସେଇ ଦଶହରା।

ଶ୍ରଦ୍ଧା ଚିଠି ପରେ ଚିଠି ଲେଖି ବହୁତ ଆଗରୁ ଦୁଇ ଝିଅଙ୍କୁ କହି ରଖିଥିଲେ ଯେ ସେମାନେ ଯେମିତି ବେଶୀ ଦିନ ପାଇଁ କଲିକତା ଆସନ୍ତି। ଖରା ଛୁଟି ଭଳି 'ନମଃ ନମଃ' କରି ଦେଇ ଯେମିତି ଚାଲି ନ ଯାଆନ୍ତି।

ଖରା ଛୁଟିରେ ଅର୍ଚ୍ଚନା ଓ ଅନୁପମା ଯାଇଥିଲେ, କିନ୍ତୁ ସେ ଯିବା ନ ଯିବା ସାଙ୍ଗରେ ସମାନ। ଏଣେ ଆଇ.ଏ. ରେଜଲ୍ଟ ବାହାରିବା ଚିନ୍ତା ମୁଣ୍ଡ ଉପରେ, ପୁଣି ତା' ପରେ ପରେ ଆଡ୍‌ମିଶନ୍‌ର ବୋଝ। କେମିତି ସେମାନେ ନିଶ୍ଚିନ୍ତ ଭାବରେ ମା'ଙ୍କ ହାତ ରନ୍ଧା ଖାଇ କଲିକତାରେ ରହିଯାଇଥାଆନ୍ତେ ? ଫେରି ଆସିବାକୁ ହୋଇଥିଲା।

ସେଇଥିପାଇଁ ପୂଜାର ଢେର ଆଗରୁ ତାଗିଦା କରେଇ ଦେଇଥିଲେ ଶ୍ରଦ୍ଧା।

ଟିକେଟ୍ କାଟି, ଟ୍ରଙ୍କ୍‌ରେ ଜିନିଷପତ୍ର ସଜାଡ଼ି ଦୁଇ ଭଉଣୀ ଟ୍ରେନ୍‌ରେ ବସିଥିଲେ। କିନ୍ତୁ ଅଳ୍ପ କେଇ ମାସର ବ୍ୟବଧାନରେ ପୁଣି କଲିକତା ଯିବାକୁ ନା ଅର୍ଚ୍ଚନାର ଇଚ୍ଛା ନା ଅନୁପମାର।

କଲିକତା ସହର ପ୍ରତି ବିଶେଷ ସ୍ନେହ ବା ଘୃଣା ଅନୁପମାର ନ ଥିଲା। କିନ୍ତୁ ଗୋଟାଏ ଅଦ୍ଭୁତ ଅସ୍ୱସ୍ତି ଭାବ ତାକୁ ମାଡ଼ି ବସୁଥିଲା ସବୁବେଳେ। ଅନୁପମା ସମସ୍ତଙ୍କ ଭିତରେ ରହି ମଧ୍ୟ କାହା ପାଖରେ ରହି ପାରୁ ନ ଥିଲା। ପାଟ୍‌ନାରୁ ଆସି କଲିକତାରେ ପହଞ୍ଚୁ ପହଞ୍ଚୁ ତା'ର ଅନିରୁଦ୍ଧ ସାଙ୍ଗରେ ଯେଉଁ ଅଶାନ୍ତିର ନାଟକ ଅଭିନୀତ ହୋଇ ଯାଇଥିଲା, ସେଥିରୁ ସେ ଆଦୌ ମୁକୁଳି ପାରୁ ନ ଥିଲା। ଅନିରୁଦ୍ଧ ବି ସାନ ଭଉଣୀ ସାଙ୍ଗରେ ଜମା ସ୍ୱାଭାବିକ ହୋଇ ପାରୁ ନ ଥିଲା।

ଖରା ଛୁଟିରେ କଲିକତା ଆସିଥିବା ବେଳେ ଅନୁପମା ସେ ତିକ୍ତତାକୁ ପୋଛି ଦେବାକୁ ଚାହିଁଥିଲା। କେଇ ମାସ ତଳର ଅସ୍ୱସ୍ତିକର ଘଟଣାକୁ ଲିଭେଇ ଦେବାର ଚେଷ୍ଟା କରିଥିଲା। ଆଉ ପୁଣି ନିଜ ତରଫରୁ ସାଲିସ କରି ଦାଦା ସାଙ୍ଗରେ ପୂର୍ବ ସମ୍ପର୍କ ଫେରାଇ ଆଣିବାକୁ ପାଦ ବଢ଼େଇ ଥିଲା।

ବଡ଼ ଭାଇ ପାଖରେ କ୍ଷମା ପ୍ରାର୍ଥନା କରି ନ ଥିଲା ଅବଶ୍ୟ। କିନ୍ତୁ ସେ ଏଭଳି କଥାବାର୍ତ୍ତା କରିଥିଲା, ଯେମିତିକି ପୂର୍ବର ତିକ୍ତ ଘଟଣା କେବେ ଘଟି ନ ଥିଲା। ଅନିରୁଦ୍ଧ ମଧ୍ୟ ସାନ ଭଉଣୀ ସାଙ୍ଗରେ ସ୍ୱାଭାବିକ କଥାବାର୍ତ୍ତା କରିବାର ଚେଷ୍ଟା କରୁଥିଲା, ଆଗ ଭଳି ଚିଡ଼େଇବା, ଥଟ୍ଟା କରିବା ଆରମ୍ଭ କରି ଦେଇଥିଲା। କିନ୍ତୁ ସବୁ ଭିତରେ କିଛିର ଅଭାବ ରହି ଯାଉଥିଲା ସବୁବେଳେ। କେଇ ମାସ ଭିତରେ ଯେ ଅୟୁତ ଯୁଗର ବ୍ୟବଧାନ ସୃଷ୍ଟି ହୋଇ ଯାଇ ସାରିଛି, ଗୋଟାଏ ବିରାଟ ଛନ୍ଦ ପତନ ହୋଇ ଯାଇ ସାରିଛି, ତା' କେହି ନ କହିଲେ ବି ଦୁଇ ଭାଇ ଭଉଣୀ ବେଶ୍ ବୁଝିପାରିଥିଲେ।

ଏଭଳି କିଛିର ସମ୍ଭାବନା ସମ୍ପର୍କରେ ଅନୁପମାର କିଛି କିଛି ସନ୍ଦେହ ଥିଲା। କିନ୍ତୁ ସେଇ ସନ୍ଦେହ ସତ ବୋଲି ପ୍ରମାଣିତ ହୋଇ ଯିବା ପରେ ନିଜ ଭିତରେ ନିଜେ ଦୋହଲି ଗଲା ସେ। ରକ୍ତ ସମ୍ପର୍କର ମୂଳଦୂଆ ଏଇମିତି ଏତେ ସହଜରେ ଭୁଷୁଡ଼ି ଯାଇପାରେ ?

ଅନୁପମା କଲିକତା ଯିବା ପାଇଁ ଭିତରେ ଭିତରେ ଅନାଗ୍ରହୀ ହୋଇ ପଡ଼ିଥିଲା।

ଆଉ ଅର୍ଚ୍ଚନା କଥା ବା କାହିଁକି ?

କଲିକତାରେ ଅର୍ଚ୍ଚନାର ଗୁଡ଼ାଏ ବିଷାଦମୟ ସ୍ମୃତି। କିଛି ତିକ୍ତ, ପୁଣି କିଛି ଲଜ୍ଜାକର। ସମ୍ପୂର୍ଣ୍ଣ ବ୍ୟକ୍ତିଗତ ସେ ସ୍ମୃତି ସମୂହ। ସ୍ମୃତି ଯେତେବେଳେ ବାସ୍ତବ ହୋଇ ତା' ସାମ୍ନାରେ ରହିଥିଲା, ସେତେବେଳେ ଅର୍ଚ୍ଚନା ଭାବିଥିଲା ଯେ ପାଖରେ ଅନି ଥିଲେ, ସେସବୁ ନିରାଶମୟ ଅନୁଭୂତି ସେ ତା' ସାଙ୍ଗରେ ବାଣ୍ଟି ନେଇ ଥାଆନ୍ତା। ହୁଏତ କରି ଥାଆନ୍ତା ବି। କିନ୍ତୁ ଦିନ, ମାସ, ବର୍ଷ କଟି ଯିବା ପରେ ସେସବୁ କାହିଁ କେତେ ଗଭୀରକୁ ଚାଲି ଯାଇ ବସା ବାନ୍ଧି ବସି ଯାଇଛି। ଅର୍ଚ୍ଚନା ଆଉ ସେଗୁଡ଼ିକୁ ଉପରକୁ ଟାଣି ଆଣିବାର ସାହସ କରି ପାରିନାହିଁ। ଏଭଳି ଅପ୍ରିୟ ଘଟଣାମାନ ଅନ୍ୟ ଜଣଙ୍କ ସାଙ୍ଗରେ ବାଣ୍ଟି ନେବା ପାଇଁ ଯେଉଁ ଦୃଢ଼ ମନୋବଳ ଦରକାର, ତା' ଆଉ ଆଜି ପର୍ଯ୍ୟନ୍ତ ସେ ନିଜ ଭିତରେ ସାଉଁଟି ପାରି ନାହିଁ।

ସେଥିପାଇଁ ପୂଜା ଛୁଟିରେ ସେ ଯେଉଁ କଲିକତା ଆସିଲା, ସେତେବେଳେ ତା'ର ଅଧିକାଂଶ ସମୟ କଟୁଥିଲା ଘର ଭିତରେ। ମା'ଙ୍କ ସାଙ୍ଗରେ ସାଙ୍ଗରେ।

ଶ୍ରଦ୍ଧାଙ୍କର ସନ୍ଦେହ କରିବାର କିଛି ନ ଥିଲା। ଅର୍ଚ୍ଚନା ତ ସବୁଦିନେ ଏଇମିତି ଥିଲା। ଶାନ୍ତଶିଷ୍ଟ, ଘରୁଆ। ଅବଶ୍ୟ ପିଲା ଦିନେ ନିଜ ସିଲେଇ ନେଇ ପଡ଼ି ରହୁଥିଲା। ଏବେ ଏତେ ଦିନ ପରେ ମା'ଙ୍କୁ ପାଇଛି ଯେତେବେଳେ ମା' ପଛେ ପଛେ ବୁଲିବା ସ୍ୱାଭାବିକ। ମା' କାନି ତଳେ ଲୁଚି ରହିବାକୁ ଚାହିଁବା ନିହାତି ସ୍ୱାଭାବିକ।

ଝିଅର ଏଭଳି ଆଚରଣ ଦେଖି ବେଳେ ବେଳେ ଶ୍ରଦ୍ଧା ମନେ ମନେ ଖୁସୀ ହୋଇ ଯାଉଥିଲେ। ପୁଣି ବେଳେ ବେଳେ ଆଖି ଛଳେଇ ଯାଉଥିଲା ତାଙ୍କର।

କାହିଁକି ବା କିଏ ଜାଣେ ?

ଅର୍ଚ୍ଚନା ମନଯୋଗ ଦେଇ କିଛି କାମ କରିବା ବେଳେ ଶ୍ରଦ୍ଧା ଆଖିର ପଲକ ନ ପକେଇ ତାକୁ ଚାହିଁ ରହୁଥିଲେ। କ'ଣ ଭାବୁଥିଲେ ସେ ଏକା ଜାଣନ୍ତି। କେବେହେଲେ ମୁହଁ ଖୋଲି କିଛି କହୁ ନ ଥିଲେ ସେ।

ତା' ନିଜ ଉପରେ ଯେ ମା'ଙ୍କର ଦୃଷ୍ଟି ଏଭଳି ଲାଖି ରହୁଛି, ସେକଥା ନ ଦେଖି ମଧ୍ୟ ଅନୁଭବ କରି ପାରିଥିଲା ଅର୍ଚ୍ଚନା। ବେଳେବେଳେ ଭାବେ ମା'ଙ୍କୁ ଏହାର କାରଣ ପଚାରି ଦେବ। ତାଙ୍କ ଦୀର୍ଘ ନିଶ୍ୱାସ ତଳେ କି ଘଟଣା ଛପି ରହିଛି, ତା' ପଚାରି ବୁଝି ନେବ। କିନ୍ତୁ ସାହସ ହୁଏ ନାହିଁ। ଅର୍ଚ୍ଚନାର ଅନ୍ତରାତ୍ମା ବୋଧହୁଏ ଜାଣିଥିଲା ମା'ଙ୍କର ଚିନ୍ତାର କାରଣ। ତାଙ୍କ ନୀରବ ଦୀର୍ଘ ନିଶ୍ୱାସର ଉପଲକ୍ଷ୍ୟ। ସେଥିପାଇଁ ଚୁପ୍ ହୋଇ ରହି ଯାଉଥିଲା ସେ।

ଦିନେ କିନ୍ତୁ ପାରିଲା ନାହିଁ ଅର୍ଚ୍ଚନା। ଚଟ୍ କରି ଆଖି ଉପରକୁ ଉଠେଇ ନେଇ ଶ୍ରଦ୍ଧାଙ୍କୁ ସିଧାସଳଖ ଭାବରେ ପଚାରି ଦେଲା, ''କ'ଣ ଏତେ ଦେଖୁଛ, ମା' ?''

''ନା, କିଛି ଦେଖୁନି।'' ଶ୍ରଦ୍ଧା ଜୋରରେ ନିଶ୍ୱାସ ନେଇ ଆଖି ଅନ୍ୟ ଆଡ଼କୁ ବୁଲେଇ ନେଇଥିଲେ। ''ଖାଲି ଭାବୁଛି।''

''କ'ଣ ଭାବୁଛ ?''

''ଭବିଷ୍ୟତ କଥା ଭାବୁଛି।''

''କାହା ଭବିଷ୍ୟତ, ମା' ?''

''କାହାର ଆଉ ? ମୋର ଏଇ ସୁନା ଝିଅର।''

''ବାଃ ରେ, ମୋ ଭବିଷ୍ୟତ ନେଇ ଭାବିବାର କ'ଣ ଅଛି? ଭଲ ଚାକିରି। ପର୍ମାନେଣ୍ଟ ଚାକିରି। ଏତେ ଭଲ ସ୍କୁଲରେ ପୁଣି। ତା' ଉପରେ ଆହୁରି ଚିନ୍ତା କରୁଛ?''

''ଚାକିରି ତ କରୁଛୁ ରେ ମା'। ହାତକୁ ପଇସା ଆସୁଛି ନିଜେ ଚଳିବା ଭଳି। ସାନ ଭଉଣୀକୁ ପଢ଼େଇବା ଭଳି। କିନ୍ତୁ ତୋ ଜୀବନ କ'ଣ ଏଇମିତି ନୀରସ ଭାବରେ ଗଡ଼ି ଚାଲିବ?''

ଅର୍ଚ୍ଚନା ଶୁଖିଲା ହସ ହସିଥିଲା। କହିଥିଲା, ''ତୁମେ ଯାହା କୁହ ନା ମା'! ନୀରସ ପୁଣି କ'ଣ? ପିଲାଙ୍କ ମେଳରେ ମୋ ଦିନ ଯେ କି ସୁନ୍ଦର କଟି ଯାଏ, ତା' ତୁମେ ନ ଦେଖିଲେ ବୁଝି ପାରିବ ନାହିଁ।''

''ହଁ, କହିବୁନି କାହିଁକି? ସେଇମିତି ତ କଟେଇ ଦେଲୁ ଏତେ ଗୁଡ଼ାଏ ବର୍ଷ। ହେଲେ ମା'ରେ, ତୁ କ'ଣ ଆଉ ବାହା ସାହା ହେବୁ ନାହିଁ?'' ରହି ରହି ଶେଷରେ ନିଜ ମନ କଥା ଝିଅ ପାଖରେ ଖୋଲି କହିଥିଲେ ଶ୍ରଦ୍ଧା।

ଅର୍ଚ୍ଚନା ଜାଣିଥିଲା ଯେ ତା' ମା'ଙ୍କ ମନରେ ଏଇ ଗୋଟିଏ କଥା ଖେଳୁଛି। ଏଇ ଗୋଟିଏ ଚିନ୍ତା ତାଙ୍କୁ ଖାଇ ଯାଉଛି। ତଥାପି ଯେ ସେ କାହିଁକି ଚମକି ଗଲା, ସେ ଏକା ଜାଣେ।

ଆଖି ତଳକୁ କରି ନେଇ, ସ୍ୱରକୁ ଯଥାସମ୍ଭବ ସ୍ୱାଭାବିକ କରି ନେଇ ସେ ଉତ୍ତର ଦେଲା, ''କି ଯେ ବାଜେ କଥା!''

ଶ୍ରଦ୍ଧା ବାହାଘର କଥା ଉଠେଇ ଦେଇ ଚମକି ଯାଇଥିଲେ। ଛାତିରେ ଚଟ୍ କରି ଅଜଣା ଭୟଟିଏ ବସା ବାନ୍ଧି ଯାଇଥିଲା। ଯଦି ଆଗ ଭଳି ମୁହଁ ଉପରେ ମନା କରି ଦିଏ ଝିଅ? କିନ୍ତୁ ଅର୍ଚ୍ଚନାର - 'କି ଯେ ବାଜେ କଥା'ର ଉତ୍ତର ଶୁଣି ଶ୍ରଦ୍ଧା ସାହସ ପାଇଲେ। ମନରୁ ଆତଙ୍କ କଟି ଯାଇଥିଲା।

ସ୍ୱରରେ ଅନେକ ଆଶା ନେଇ ଶ୍ରଦ୍ଧା କହିଥିଲେ, ''ବାଜେ କଥା ପୁଣି କ'ଣ? ... ତୁ ରାଜି ହେଲେ ମୁଁ ଏଠି ଦେଖା ଦେଖି କରନ୍ତି।''

ଦୀର୍ଘ ନିଶ୍ୱାସ ନେଇ ଅର୍ଚ୍ଚନା ଉତ୍ତର ଦେଇଥିଲା, ''ଆଉ ପୁଣି ସେସବୁ କାହିଁକି, ମା'? ଏତେ ଗୁଡ଼ାଏ ବର୍ଷ ଚାଲିଗଲାଣି। କଟିଯିବ ବାକୀ କେଇଟା ବର୍ଷ। ବାସ୍-''

ହାଁ କରି ଝିଅ ମୁହଁକୁ ଚାହିଁ ରହିଲେ ଶ୍ରଦ୍ଧା। ''ଏକୋଇଶ ବର୍ଷ ବୟସଟା

ପୁଣି କେତେଠୁ ବେଶୀ ହେଲାଣି। ତୋ ସାମ୍ନାରେ ଯେ ସାରା ଜୀବନଟା ପଡ଼ିଛି।''

ଅର୍ଚ୍ଚନା ଯୁକ୍ତି କଲା ନାହିଁ। ଆଗ ଭଳି ଆଖି ତଳକୁ କରି ନେଇ କେବଳ ଚୁପ୍ ହୋଇ ରହିଲା।

ତା' ନୀରବତାରେ ବୋଧହୁଏ ଭରସା ପାଇଲେ ଶ୍ରଦ୍ଧା। ବୁଝେଇବା ସ୍ୱରରେ ଗଳାରେ ଉତ୍ସାହ ନେଇ କହିଲେ, ''ଦେଖ ମା', ଅନି ବାହାଘର ପାଇଁ ଆମେ ସମସ୍ତେ ଆଖି ରଖିଛୁ। ତୋ ଦୁଇ ଦାଦା ବି ଏଠି ସେଠି କଥାବାର୍ତ୍ତା ଚଲେଇଛନ୍ତି। ହଠାତ୍ କରି ଯେ ତା' ବାହାଘର ଠିକ୍ ହୋଇ ନ ଯିବ, ତା' ତ କେହି କହି ପାରିବେ ନାହିଁ। ଆଉ ଯଦି ସତରେ ଚଟ୍ କରି ବାହାଘରଟା ହେଇଯାଏ, ତୁ ଆମର ପୂରା ଏକା ହୋଇଯିବୁ। ଭାବି ଦେଖିଛୁ, କେତେ ଏକା ହୋଇଯିବ ତୋ ଜୀବନ? କେମିତି କଟିବ ତୋର ଏତେ ଗୁଡ଼ାଏ ବର୍ଷ? ମୁଁ ତ ଶୁଖିଲା ପତ୍ର। ଆଉ ତୋ ଦାଦାମାନଙ୍କର ବା କି ଭରସା। ସେମାନଙ୍କ ଜୀବନ ସେମାନଙ୍କର ସ୍ତ୍ରୀମାନେ ହୁଏତ ନିୟନ୍ତ୍ରଣ କରିବେ। ଏମିତିରେ ତୋର ନିଜର ଗୋଟାଏ ପରିବାର ରହିଲେ କେତେ ଭଲ ହେବ କହିଲୁ।''

ଅର୍ଚ୍ଚନା ଶାନ୍ତ ଆଖି ଉପରକୁ ଟେକି ମା'ଙ୍କୁ ଦେଖିଲା। ଦେଖିଲା ଜନ୍ମଦାତ୍ରୀ ମୁହଁର ଦୁଶ୍ଚିନ୍ତାର ଝଲକ। ଅନୁଭବ କଲା ଜନନୀ ଆଖିରେ ଭାସି ଉଠିଥିବା ଯନ୍ତ୍ରଣା। ସବୁ ତା' ପାଇଁ। କେବଳ ତାକୁ ଇ ନେଇ। ତା'ରି ଭବିଷ୍ୟତ ନେଇ।

ଆଗରୁ ବହୁତ ଥର କହି ସାରିଥିବା ଉତ୍ତର ଗୁଡ଼ିକ ଠେଲି ହେଇ ଅର୍ଚ୍ଚନାର ଓଠ ପାଖକୁ ଚାଲିଆସିଥିଲା। କିନ୍ତୁ ସେ ସେଗୁଡ଼ିକୁ ଓଠ ଦେଇ ଝରି ଯିବାକୁ ଦେଲା ନାହିଁ। ସ୍ଥିର ଭାବରେ କେବଳ ମା'ଙ୍କର ଚିନ୍ତାର କାରଣ ବୁଝିବାର ଚେଷ୍ଟା କରୁଥିଲା ସେ। ନିଜ ଭବିଷ୍ୟତର ଆଶଙ୍କା ଯେ ତା' ମନକୁ ଆଦୌ କେବେ ଛୁଇଁ ନ ଥିଲା, ତା' ବି କହି ହେବ ନାହିଁ। ଯେତେବେଳେ କ୍ଳାନ୍ତ ହୋଇ ଖାଲି ଘରର ତାଲା ଖୋଲି ଭିତରେ ପଶେ ଅର୍ଚ୍ଚନା ବା ଯେତେବେଳେ ଅସୁସ୍ଥ ଶରୀର ନେଇ ବିଛଣାରେ ସେ ପଡ଼ି ରହି ଅନିର କଲେଜରୁ ଫେରିବାକୁ ଅପେକ୍ଷା କରେ, ସେତେବେଳେ ଏଇମିତି କେତେ ଆଡ଼ର କେତେ ଦୁଶ୍ଚିନ୍ତା ଆସି ତା' ମୁଣ୍ଡରେ ସବାର ହୋଇ ବସନ୍ତି। ତାକୁ ବିବ୍ରତ କରି ଦିଅନ୍ତି।

ନିଜ ପାଖରେ ସେକଥା ଅନ୍ତତଃ ଅସ୍ୱୀକାର କରି ପାରିବ ନାହିଁ ଅର୍ଚ୍ଚନା।

ମା'ଙ୍କ ମୁହଁ ଉପରୁ ଆଖି ଫେରାଇ ନେଇ ସେ ଚୁଲିରେ କଡ଼େଇ ବସେଇଲା। ଗରମ ତେଲରେ କଳା ଜିରା, ଶୁଖିଲା ଲଙ୍କା ଫୁଟଣ ଦେଇ ଆଗରୁ କାଟି ରଖିଥିବା ପରିବାତକ ଛାଡ଼ି ଦେଲା ସେ।

ଶ୍ରଦ୍ଧା ତଥାପି ଉତ୍ତର ପାଇଁ ଅପେକ୍ଷା କରି ରହିଥିଲେ।

ଭଜାର ସେଁ ସେଁ ଶବ୍ଦ ଭିତରେ ପ୍ରାୟ ଅସ୍ପଷ୍ଟ ଭାବରେ ଅର୍ଚ୍ଚନା ଶେଷରେ କହିଲା, "ତୁମେ ଯାହା ଭଲ ବୁଝୁଛ କର, ମା'। ହେଲେ ଯାଉ ଏବେ କିଛି ଦିନ।"

ଶ୍ରଦ୍ଧାଙ୍କ ଆଖି ସାମ୍ନାରେ ଯେମିତି ସାତ ରାଜ୍ୟର ଗନ୍ତାଘର କୁହ୍ଳେଇ ହୋଇଗଲା। ଆନନ୍ଦରେ ଚକ୍‌ଚକ୍ କରୁଥିବା ଆଖି ଓ ଉତ୍ସାହିତ ସ୍ୱର ନେଇ ସେ କହି ପକେଇଲେ, "ହଁ ହଁ ଯାଉ କିଛି ଦିନ। ଏବେ ମାନେ କ'ଣ କାଲିକି ତୋ ବାହାଘର ଠିକ୍ ହୋଇ ଯାଉଛି?"

ଅର୍ଚ୍ଚନା ଆଉ କିଛି କହି ନ ଥିଲା। ଅସ୍ପଷ୍ଟ ଭାବରେ କହି ଦେଇଥିବା କେଇ ପଦ କଥା ଯେମିତି ତାକୁ ବିବଶ କରି ଦେଇଥିଲା। ସେ କାଠୁଆ ମୁହଁ ନେଇ ଭଜାକୁ ଚାହିଁ ରହିଥିଲା ଏକାଗ୍ରତା ସହକାରେ। ହାତ ହଲେଇ ହଲେଇ ଶ୍ରଦ୍ଧା ଯେ କି କଥା ଗପି ଚାଲିଥିଲେ, ସେଥିରୁ ଗୋଟାଏ ଅକ୍ଷର ବି ତା' କାନରେ ପଶୁ ନ ଥିଲା।

କେବଳ ଅର୍ଚ୍ଚନା ନୁହଁ, ରୋଷେଇ ଘର ବାହାରେ ଆଉ ଜଣେ ମଧ୍ୟ ପଥର ହୋଇ ଯାଇଥିଲା। ସେ ଅନୁପମା।

ରୋଷେଇ ଘର ବାହାର ବାରଣ୍ଡାରେ ଆସନଟିଏ ପକାଇ ଉପନ୍ୟାସଟିଏ ପଢୁ ପଢୁ ଅନୁପମାର ଅବଚେତନ ମନରେ ବାଜୁଥିଲା ମା' ଓ ଦିଦିଙ୍କର ବାର୍ତ୍ତାଳାପ। ସେ କିନ୍ତୁ ସେଥିପ୍ରତି ବିଶେଷ ଆଗ୍ରହ ଦେଇ ନ ଥିଲା। ହେଲେ ଅର୍ଚ୍ଚନାର ଅସ୍ପଷ୍ଟ ସ୍ୱରର ଶେଷ କେଇ ପଦ କଥା ଠିକ୍ ପହଞ୍ଚି ଯାଇଥିଲା ତା' ପାଖରେ ଏବଂ ତା' ଶରୀର ଭିତର ଅଦ୍ଭୁତ ଭାବରେ କମ୍ପି ଉଠିଥିଲା।

ଏ କ'ଣ ଶୁଣିଲା ସେ? ବାହା ହେବା ପାଇଁ ଏତେ ସହଜରେ ରାଜି ହୋଇଗଲା ଦିଦି? କେମିତି ରାଜି ହୋଇଗଲା?

ଅର୍ଚ୍ଚନାର ସମ୍ମତିରେ ଯେମିତି ଅବସାଦର ଗହ୍ୱରରେ ପଡ଼ି ଯାଇଥିଲା ଅନୁପମା।

କାନ ଭିତରେ ଗରମ ତେଲ ଢାଳି ହୋଇ ଯାଇଥିଲା ଯେମିତି।

ରାଜି ହୋଇଗଲା ଦିଦି ? ବାହା ହେବା ପାଇଁ ରାଜି ହୋଇଗଲା ? ଅବିଶ୍ୱାସରେ ନିଜକୁ ନିଜେ କେବଳ ଏଇ ଗୋଟାଏ ପ୍ରଶ୍ନ ପଚାରୁଥିଲା ସେ।

ତା'ହେଲେ ଏତେ ବର୍ଷ ଧରି ଅର୍ଚ୍ଚନା ଯେଉଁ ତପସ୍ୟା କରୁଥିଲା, ସେସବୁ କ'ଣ ମୂଲ୍ୟହୀନ ? କେବଳ ନିଜକୁ ନିଜେ ଦେଖାଇବା ପାଇଁ ଏମିତି ଅଭିନୟ ସେ କରୁଥିଲା ! ନିଜକୁ ପ୍ରତାରଣା କରୁଥିଲା !

କଥାଟି ମନକୁ ଆସିବା କ୍ଷଣି ଅନୁପମା ନିଜେ ଚମକି ପଡ଼ିଲା। ଛି ଛି ! ଏମିତି ସବୁ କି ବାଜେ କଥା ସେ ଭାବୁଛି ତା' ଦିଦି ସମ୍ପର୍କରେ ! ଦିଦି ଆଉ ପ୍ରତାରଣା !

ହେଲେ ... ହେଲେ ... ଯେଉଁ ଦିଦି ତପସ୍ୟା କରିବା ଭଳି ତା' ଦିନଗୁଡ଼ିକ କଟେଇ ଦେଉଥିଲା, ସେଇ ଦିଦିର ମନ ଟହଲି ଗଲା କାହିଁକି ? କେମିତି ?

ଅନୁପମାର ମନ ଦବି ଯାଉଥିଲା। ସେ ମନେ ମନେ ଏତେ ଦିନ ଧରି ତା' ଦିଦିକୁ ଦେବୀଙ୍କ ସିଂହାସନ ଉପରେ ବସେଇ ରଖିଥିଲା। ଆଜି ମନେ ହେଉଛି ଦିଦି ଯେମିତି ସେଇ ରତ୍ନଖଚିତ ସିଂହାସନ ଉପରୁ ଓହ୍ଲେଇ ଆସିଛି। ପୁଣି ହୋଇ ଯାଇଛି ରକ୍ତ ମାଂସର ମଣିଷଟିଏ।

ଧଡ଼୍ କରି ରୋଷେଇ ଘର ବାରଣ୍ଡାରୁ ଉଠି ଛାତ ଉପରକୁ ଚାଲିଗଲା ଅନୁପମା। ଆଉ ଟିକକରେ ଦାଦା ଅଫିସ୍‌ରୁ ଫେରିବ। ତାକୁ ଏମିତି ଏକା ଏକା ଛାତରେ ବୁଲୁଥିବାର ଦେଖିଲେ ନିଶ୍ଚୟ ବିରକ୍ତ ହେବ। ପାଟିତୁଣ୍ଡ କରିବ। କଲେ କରୁ। କିନ୍ତୁ ଅନୁପମା ତଳେ ଆଉ ରହି ପାରିବ ନାହିଁ। ରୋଷେଇ ଘର ବାରଣ୍ଡାରେ ବସି ରହି ସେ ମା' ଆଉ ଦିଦିଙ୍କର କଥାବାର୍ତ୍ତା ଆଦୌ ଶୁଣି ପାରିବ ନାହିଁ। ହତାଶାରେ ଯେ ତା' ନିଶ୍ୱାସ ରୁଦ୍ଧ ହୋଇ ଯାଉଛି ! ତା'ର ଏତେ ଦିନର ବିଶ୍ୱାସ ଯେ ଭାଙ୍ଗି ରୁଜି ଯାଉଛି !

ଅନୁପମା ଆକାଶକୁ ଚାହିଁଲା। ଧୂସର ଆକାଶ। ଶରତ ଆକାଶର ଚିହ୍ନ ବି ନାହିଁ।

ପ୍ରେମ ତା'ହେଲେ ଏଇମିତି ! କେଇ ଦିନର ସ୍ୱପ୍ନ। କେଇ ଦିନର ତପସ୍ୟା। ତା'ପରେ ପୁଣି ଶୂନ୍ୟ କ୍ୟାନ୍‌ଭାସ। ରଙ୍ଗହୀନ ତୁଳୀ। ବିନା ଦ୍ୱିଧାରେ ଜଣେ

ନୂଆ ରଙ୍ଗରେ ତୁଳୀକୁ ବୁଡ଼େଇ ଦେଇ ପାରିବ। ନୂଆ କରି ଧଳା କ୍ୟାନ୍‌ଭାସ୍ ଉପରେ ନୂଆ ସ୍ୱପ୍ନ ଆଙ୍କି ପାରିବ। ଏଇ ତା'ହେଲେ ପ୍ରେମ !! ତା'ହେଲେ କାହିଁକି ସମସ୍ତେ କହନ୍ତି ଯେ ପ୍ରେମ ଚିରନ୍ତନ। କଥାଟି କ'ଣ ମିଛ? ପ୍ରେମର କ'ଣ କୌଣସି ମୂଲ୍ୟ ନାହିଁ?

କେଜାଣି।

ଏମିତି ବି ହୋଇପାରେ ଯେ ଦିଦିର ଭଲ ପାଇବା କେବଳ ଅଳୀକ ସ୍ୱପ୍ନ ହିଁ ଥିଲା। ପ୍ରକୃତ ପ୍ରେମର ଚିହ୍ନ ହିଁ ନ ଥିଲା ସେଥିରେ।

ନା ନା। ଆଦୌ ନୁହଁ। ଶିହରି ଉଠିବା ଭଳି ନିଜକୁ ତାଗିଦା କରିଦେଲା ଅନୁପମା।

ଅର୍ଚ୍ଚନାର ଅନ୍ତର ଚିହ୍ନିବାରେ ତା'ର କେବେହେଲେ ଭୁଲ ହୋଇ ନ ପାରେ। ତା' ଦିଦିର ସ୍ୱଚ୍ଛ, ନିର୍ମଳ ହୃଦୟରେ ଭଲ ପାଇବାର ଯେଉଁ ଅମୂଲ୍ୟ ପ୍ରାସାଦଟିଏ ଗଢ଼ି ହୋଇ ରହି ଯାଇଥିଲା, ତା' ଚିର ଦିନ ସେଇଭଳି ଅତୁଟ ରହିବ। ତା' ଭିତରେ ଦପ୍ ଦପ୍ ହୋଇ ଜଳୁଥିବା ଉଜ୍ଜ୍ୱଳ ବତୀଟି ଦିଦିର ଅନ୍ତରକୁ ସବୁଦିନ ଉଦ୍ଭାସିତ କରି ରଖିବ। ବଞ୍ଚିଥିବା ଯାଏଁ ସେ ଭଲ ପାଇବାର ସ୍ମୃତି ମଳିନ ହେବ ନାହିଁ।

କିନ୍ତୁ ଦିଦିକୁ ତ ବଞ୍ଚିବାକୁ ହେବ। କ'ଣ ନେଇ ସେ ଜୀବନର ବାକୀତକ ବର୍ଷ କଟେଇବ? ସ୍କୁଲ୍, ସିଲେଇ ଆଉ ପୂଜା ଆରାଧନା?

ଅନୁପମାର ଉଦ୍‌ବେଳିତ ହୃଦୟ ଧୀରେ ଧୀରେ ଶାନ୍ତ ହୋଇ ଆସୁଥିଲା। ସେ ମା'ଙ୍କ କଥାର ସତ୍ୟତା ନିଜ ଭିତରେ ଅନୁଭବ କରି ପାରୁଥିଲା। ହଁ, ମା' ସତ କହିଛନ୍ତି। ଦିଦି ପକ୍ଷରେ ଏକା ଏକା ବାକୀ ଜୀବନ କଟେଇ ଦେବା ଏକ ବିରାଟ ଶାସ୍ତି। ବିନା ଦୋଷରେ ଅର୍ଚ୍ଚନା କାହିଁକି ସେ ଶାସ୍ତିର ଭାର ବୋହି ବୋହି ଚାଲିବ?

ହଠାତ୍ କରି ଅନୁପମା ମନକୁ ପଶି ଆସିଲା ସଫିକ୍ କଥା।

ସେଦିନ ଟ୍ରେନ୍‌ରେ ସେମାନଙ୍କୁ ବସେଇ ଦେଇ କ'ଣ ଜାଣ କହିବାକୁ ଯାଉଥିଲା ସଫିକ୍। ଆଖପାଖର କୋଳାହଳ ଏବଂ ଚାପା ମାନସିକ ଦୁଶ୍ଚିନ୍ତା ନେଇ ଅନୁପମା ସଫିକ୍‌ର କଥା ଠିକ୍ ଶୁଣି ପାରି ନ ଥିଲା।

କିନ୍ତୁ କ'ଣ କହିବାକୁ ଚେଷ୍ଟା କରୁଥିଲା ସଫିକ୍?

ଅନୁପମାର କାନରେ କେବଳ ପଡ଼ିଥିଲା.. 'ଅର୍ଚ୍ଚନାକୁ କହିବୁ କହିବୁ ...''

କ'ଣ କହି ଥାଆନ୍ତା ସେ ? କ'ଣ ?

ହଠାତ୍ ଦମକାଏ ପବନ ଭାସି ଆସିଲା ପୂର୍ବ ଆଡୁ ଏବଂ ଅନୁପମା ପରିଷ୍କାର ଭାବରେ ଶୁଣି ପାରିଲା ସଫିକ୍‌ର ହଜି ଯାଉଥିବା ସ୍ୱର ।

ସଫିକ୍ ଏଥର ପରିଷ୍କାର ଭାବରେ କହୁଥିଲା, ''ଅନି ... ଅର୍ଚ୍ଚନାକୁ କହିବୁ ... କହିବୁ, ପୁଣି ଥରେ ନୂଆ କରି ଜୀବନ ଆରମ୍ଭ କରିବା।''

ଅର୍ଚ୍ଚନା ସାଙ୍ଗରେ କଟକ ଫେରି ଆସିଲା ଅନୁପମା ।

କଟକ ଷ୍ଟେସନ୍‌ରେ ଟ୍ରେନ୍‌ରୁ ଓହ୍ଲେଇବା କ୍ଷଣି କାହିଁକି କେଜାଣି ମନଟା ତା'ର ଆନନ୍ଦିତ ହୋଇ ପଡ଼ିଥିଲା । ଆଗର ନିରାଶ ଭାବ ସମ୍ପୂର୍ଣ୍ଣ ଭାବରେ ଦୂରେଇ ଯାଇଥିଲା ତା' ମନରୁ । ଏଇମିତି ବୋଧହୁଏ ହୁଏ । ଥରେ ନିଜ ମନକୁ ପ୍ରସାରିତ କରି ଦେଲେ, ଜୀବନର ପରିପାର୍ଶ୍ୱ ମଧ୍ୟ ସୁବିସ୍ତୃତ, ଉଜ୍ଜ୍ୱଳ ହୋଇ ଉଠେ । ନିବୁଜ ଘରର କବାଟ ନିଃଶବ୍ଦରେ ଖୋଲି ଯାଏ ନିଜ ଆଖି ସାମ୍ନାରେ ।

ଅନୁପମାକୁ କଟକ ସହର ଭଲ ଲାଗୁଥିଲା । ତା'ଠାରୁ ଆହୁରି ବେଶୀ ଭଲ ଲାଗୁଥିଲା ରେଭେନ୍‌ସା କଲେଜ୍‌ର ପରିବେଶ ।

ନିଜେ ବେଳେ ବେଳେ ଆଶ୍ଚର୍ଯ୍ୟ ହେଉଥିଲା ସେ । କେମିତି ଏତେ ଶୀଘ୍ର ତା' ମନୋଭାବ ବଦଳିଗଲା ! ମନେ ପଡ଼ି ଯାଉଥିଲା ନୂଆ ନୂଆ ରେଭେନ୍‌ସା କଲେଜ ଯିବା ବେଳ କଥା । ସେତେବେଳେ ତାକୁ ସବୁ କିଛି ଖରାପ ଲାଗୁଥିଲା । ମନେ ହେଉଥିଲା କଲେଜ ଯିବାଟା ଏକ ଶାସ୍ତି । ହାତ ଟଣା ରିକ୍ସାରେ ବସି ଗଲାବେଳେ ମନ ଦବି ଦବି ରହୁଥିଲା ତା'ର । କାହିଁ କେତେ ଦୂରରେ ଛାଡ଼ି ଆସିଥିବା ପାବ୍‌ନାର ସେଇ ଛୋଟ କଲେଜ ସାଙ୍ଗରେ ସବୁ ବିଷୟରେ ତୁଳନା କରି ବସୁଥିଲା ସେ । ଅବଶ୍ୟ ଅବାସ୍ତବ ଏ ତୁଳନା, କିନ୍ତୁ ଅନୁପମା ନିଜକୁ ଜାଣି ଜାଣି ଯନ୍ତ୍ରଣା ଦେଉଥିଲା । ଅଯଥା ମନ ଖରାପ କରୁଥିଲା ।

କିନ୍ତୁ ହଠାତ୍ କରି ସବୁ ବଦଳି ଗଲା ! ରେଭେନ୍ସା କଲେଜ୍ ହୋଇଗଲା ତା'ର ନିଜ କଲେଜ୍ !

ବି.ଏ.ରେ ଆଡ୍‌ମିଶନ୍ ନେବାର ପ୍ରଥମ କେଇ ମାସ ଅନ୍ୟ ଝିଅମାନଙ୍କ ସାଙ୍ଗରେ ଅନୁପମା ଭଲ କରି ମିଶି ପାରି ନ ଥିଲା । ଭାଷାର ସମସ୍ୟା ଥିଲା ଅବଶ୍ୟ, କିନ୍ତୁ ସେଇଟା ପ୍ରକୃତ କାରଣ ନୁହଁ । କଲେଜର ଝିଅମାନଙ୍କ ଭିତରେ ବେଶ୍ କେତେଜଣ ବଙ୍ଗାଳୀ ଥିଲେ । ଚାହିଁଥିଲେ ସେମାନଙ୍କ ସାଙ୍ଗରେ ସେ ଗପସପ କରି ପାରିଥାଆନ୍ତା । ବନ୍ଧୁତ୍ୱ ଯୋଡ଼ି ପାରି ଥାଆନ୍ତା । କିନ୍ତୁ ସେ କରି ପାରି ନ ଥିଲା ।

ହେଲେ ସକାଳର ନରମ ଖରାରେ ଦୁଃସ୍ୱପ୍ନ ହଜି ଯିବା ଭଳି ଦିନେ ଏକାକୀ ଦିନଗୁଡ଼ିକ ଉଭାନ ହୋଇଗଲା ତା' ଜୀବନରୁ । କଲିକତାରେ ପୂଜା କଟେଇ ଫେରି ଆସିବା ପରେ ତା' ଭିତରେ ବହୁତ ପରିବର୍ତ୍ତନ ହୋଇ ଯାଇଥିଲା । ଆଉ ଯେଉଁ ଟିକକ ଅସ୍ୱଚ୍ଛନ୍ଦ ଭାବ ତା' ମନ ତଳେ ଲୁଚି ରହିଥିଲା, ସେତକ ପୋଛି ଦେଲା ମୀରା ।

ଅନୁପମା ଓଠରେ ସରୁ ହସଟିଏ ଖେଳିଗଲା ।

ମୀରା, ଅର୍ଥାତ୍ ମୀରା ଆବ୍ରାହାମ୍ । ତାଙ୍କରି କଲେଜ୍‌ରେ ଫିଜିକ୍ସ ଅନର୍ସ ନେଇ ପଢ଼େ ସେ । ରେଭେନ୍ସା କଲେଜ୍‌ର ହାତ ଗଣନ୍ତା କେତୋଟି ଝିଅଙ୍କ ଭିତରେ ଅନୁପମା ମୀରାକୁ ବି ଦେଖିଥିଲା । କିନ୍ତୁ ବେଶୀ କଥାବାର୍ତ୍ତା କରିବାକୁ ଆଗେଇ ଯାଇ ନ ଥିଲା । ଦିନେ ଆଗେଇ ଆସିଥିଲା ମୀରା ନିଜେ । ଧୂମ୍ କରି ତା' ପାଖରେ ବସି ଯାଇ ପଚାରିଥିଲା, ''ଆଚ୍ଛା, ତୁମେ ସବୁବେଳେ ଛାଡ଼ି ଛାଡ଼ି ହୋଇ ରୁହ କାହିଁକି କୁହତ ?''

ଅପ୍ରସ୍ତୁତ ଭାବରେ ଅନୁପମା ଉତ୍ତର ଦେଇଥିଲା, ''ନା ନା, ଛାଡ଼ି ଛାଡ଼ି ହୋଇ ରହିବି କାହିଁକି? ...ମୁଁ ଭଲ ଓଡ଼ିଆ କହି ପାରେନି ତ... ଅନ୍ୟମାନେ ହସିବେ... ସେଇଥିପାଇଁ...''

''ହସିବେ !! କିଏ ହସିବ ଏଠି ? ତୁମ ଓଡ଼ିଆ ତ ବେଶ୍ ଭଲ । ଏଇ ଯେଉଁ ରମା ଦି' ଆମ ଉପର ବ୍ୟାଚ୍‌ରେ ପଢ଼େ, ସେ ଆଠ ବର୍ଷ ତଳେ ଓଡ଼ିଶାକୁ ଆସିଥିଲା । ଅଥଚ ଏବେ ବି ଓଡ଼ିଆ କହିବା ବେଳେ ଅଟକି ଅଟକି ଯାଏ । ଆଉ ତୁମେ ତ ଏଇ କେତେ ମାସ ତଳେ କଟକ ଆସିଛ ବୋଲି

କହୁଥିଲ । ସେଇ ଅନୁସାରେ ତୁମ ଓଡ଼ିଆ ବହୁତ ଭଲ ।''

ମୀରାର କଥାରେ ଆବିଳତା ନ ଥିଲା । ସେଇଥିପାଇଁ କି କ'ଣ, ଅନୁପମା ଭିତରୁ ସ୍ନେହର ଧାରାଟିଏ ବହି ଆସିଥିଲା ।

ତା' ପରେ ପରେ ସେ କଲେଜ୍‌ର ଅଧିକାଂଶ ଖାଲି ସମୟ ମୀରା ସାଙ୍ଗରେ କଟାଉଥିଲା । ମୀରା କଟକର ଏକ ପୁରୁଣା ଖ୍ରୀଷ୍ଟିଆନ୍ ପରିବାରର ଝିଅ । କିନ୍ତୁ ଘରର ପରିବେଶ ରକ୍ଷଣଶୀଳ ଆଦୌ ନୁହଁ । ମୀରାର ବାପା ଓ ମା' - ଉଭୟ ଜଣାଶୁଣା ଡାକ୍ତର । ସେମାନେ ଚାହିଁଥିଲେ ଯେ ଝିଅ ତାଙ୍କରି ଭଳି ଡାକ୍ତର ହେଉ । ବାପା, ମା'ଙ୍କ କ୍ଲିନିକ୍ ସମ୍ଭାଳୁ । କିନ୍ତୁ ମୀରାର ଫିଜିକ୍ସରେ ରିସର୍ଚ୍ଚ କରିବାର ଆଗ୍ରହ ଅଛି ଜାଣିବା ପରେ ଡାକ୍ତରୀ ପଢ଼ିବାକୁ ଆଦୌ ବାଧ କରି ନ ଥିଲେ ।

ନିଜ ବାପା ମା'ଙ୍କ କଥା କହୁ କହୁ ମୀରାର ଆଖି ଉଜ୍ଜ୍ୱଳ ହୋଇ ଉଠେ । ଅନୁପମା ସବୁ ମନ ଦେଇ ଶୁଣେ । ବେଳେବେଳେ ଖୁବ୍ ଧୀର ସ୍ୱରରେ ନିଜ ବାବାଙ୍କ କଥା କୁହେ । ପୁଣି ମନେ ପକାଇ କୁହେ ନିଜ ପିଲା ଦିନ କଥା । ପାବ୍‌ନା କଥା । କୁହେ ସ୍ୱାଧୀନତା ପରର ବିଭୀଷିକା କଥା ।

ମନ ପ୍ରାଣର କଥା କୁହାକୁହି ଭିତରେ ଦୁଇ ଜଣଙ୍କର ଅନ୍ତରଙ୍ଗତା ଦିନକୁ ଦିନ ବଢ଼ିବାକୁ ଲାଗେ ।

ସେଦିନ କମନ୍ ରୁମ୍‌ରେ ବସି ମୀରା ପାଇଁ ଅପେକ୍ଷା କରୁ କରୁ ଅନୁପମା ଲାଇବ୍ରେରୀରୁ ଆଣିଥିବା ଇଂରାଜୀ କବିତାର ବହିଟିଏ ଓଲଟାଉଥିଲା । ତା' କ୍ଲାସ୍ ସରିଗଲାଣି କେତେବେଳୁ । କିନ୍ତୁ ମୀରା କହି ଯାଇଛି, ଅନୁପମା ଯେମିତି ତା' ପାଇଁ ଅପେକ୍ଷା କରି ରହେ । ସେ ଘରକୁ ଯିବା ବାଟରେ ତାକୁ ଛାଡ଼ିଦେଇ ଯିବ । ଅଯଥା ରିକ୍ସା କରିବାର କିଛି ମାନେ ହୁଏ ନାହିଁ ।

ଅନୁପମା ଅପେକ୍ଷା କରିଥିଲା । କିନ୍ତୁ ଅପେକ୍ଷା କରି କରି ଚିଡ଼ି ଯାଉଥିଲା ମନେ ମନେ । ଏତେ ଡେରି ହେଲାଣି, ଦିଦି ଅଯଥାରେ ଘରେ ଚିନ୍ତା କରୁଥିବ । କେତେବେଳେ ଆସିବ ମୀରା !

ଅନୁପମାର ବିରକ୍ତି ବୁଝି ପାରିଲା କି କ'ଣ, ହଠାତ୍ ବଡ଼ ବଡ଼ ପାଦ ପକେଇ ଝଡ଼ ଭଳି ମୀରା କମନ୍ ରୁମ୍ ଭିତରକୁ ପଶି ଆସିଲା । ଅନୁପମା ଚିଡ଼ି ଯାଇ କିଛି କହିବା ଆଗରୁ ସେ ତା' ପାଖରେ ବସି ଯାଇ ତରବର

ହୋଇ କହି ପକେଇଲା, ''ଏଇ ଅନୁପମା, ତତେ ମିଶ୍ର ସାର୍ ଡକାଇ ପଠେଇଛନ୍ତି।''

ଅନୁପମା ବିରକ୍ତ ହେବା କଥା ଭୁଲିଗଲା। ଆଶ୍ଚର୍ଯ୍ୟରେ ପଚାରିଲା, ''ମିଶ୍ର ସାର୍। କୋଉ ମିଶ୍ର ସାର୍?''

''ଆମ ଫିଜିକ୍ସର ଯେଉଁ ନୂଆ ସାର୍ ଆସିଛନ୍ତି। ସେଇ।''

'ତମ ଫିଜିକ୍ସ ସାର୍??'' ଏଥର ଅଧିକ ଆଶ୍ଚର୍ଯ୍ୟରେ ଅନୁପମା ମୀରା ମୁହଁକୁ ଚାହିଁଲା। ''ଫିଜିକ୍ସ ସାର୍ ମତେ କାହିଁକି ଡକେଇଛନ୍ତି?''

''କେଜାଣି? ମତେ ଆଜି ହଠାତ୍ କ୍ଲାସ୍ ପରେ ସେ ପଚାରିଲେ - 'ଅନୁପମା ମୁଖୋପାଧ୍ୟାୟକୁ ଚିହ୍ନ?' ମୁଁ କହିପକେଇଲି ଯେ - 'ହଁ, ଚିହ୍ନେ। ସେ ଇଂଲିସ୍ ଅନର୍ସ ନେଇ ଏଠି ପଢ଼େ। ଆମ ସାଙ୍ଗରେ'।''

''ତା'ପରେ?''

''ସାର୍ ହଠାତ୍ କହିଲେ- 'ତାକୁ ଟିକିଏ କହି ପାରିବ, ମତେ ଆସି ଦେଖା କରିବାକୁ? ଦରକାର ଅଛି।' ''

''କି ଦରକାର?'' ଏଥର ସତରେ କିଛିଟା ଆତଙ୍କିତ ହୋଇ ପଡ଼ିଲା ଅନୁପମା।

ମୀରା ବି ବୋଧହୁଏ ସେଇ ଏକା କଥା ଭାବି ହେଉଥିଲା। ରହି ରହି ସେ କହିଲା, ''ଆଚ୍ଛା ଅନୁପମା, ତୁ ଗୀତ ଫୀତ ଗାଉ କି? ଏଇ ଯେଉଁ ତୁମମାନଙ୍କର ରବୀନ୍ଦ୍ରସଙ୍ଗୀତ ଭଳିକା।''

''ନା।''

''ତା'ହେଲେ ଡ୍ରାମା କରୁ ନିଶ୍ଚୟ।''

''ନା ବାବା, ମୁଁ ଏସବୁ କିଛି କରେନି। କାହିଁକି ପଚାରୁଛୁ?''

''ଯା' ଭିତରେ ଫିଜିକ୍ସ ଡିପାର୍ଟମେଣ୍ଟର ଫଙ୍କସନ୍ ହେବାର ଅଛି। ଗତ ବର୍ଷ ଫଙ୍କସନ୍‌ରେ ବଢ଼ିଆ ଗୀତ, ଡ୍ରାମା ହୋଇଥିଲା। ଇକୋନମିକ୍ସର ନନ୍ଦିତା ମିତ୍ର ସେଥର ଯାହା ଆକ୍ଟିଂ କରିଥିଲା ନା, ନ ଦେଖିଲେ ତୁ ବିଶ୍ୱାସ କରି ପାରିବୁନି। ନନ୍ଦିତା ବି' ତ ପାସ୍ କରି ଚାଲିଗଲା। ସେଥିପାଇଁ ସାର୍‌ମାନଙ୍କର ଚିନ୍ତା ହୋଇ ଯାଇଥିବ। ମତେ ଲାଗୁଛି ସେଇଥିପାଇଁ ସାର୍ ତତେ ଡକେଇ ପଠେଇଛନ୍ତି।''

ଏଥର କିଛିଟା ନିଶ୍ଚିନ୍ତ ହେଲା ଅନୁପମା। କହିଲା, ''ତୁ ତା'ହେଲେ ଯା।

ସାର୍‌ଙ୍କୁ କହିଦେ ଯେ ମୁଁ ଏସବୁ କିଛି କରେ ନାହିଁ। ବରଂ ଏ ବର୍ଷ ସେ ଯେଉଁ ଝିଅଟି ଆଇ.ଏ.ରେ ଆଡ୍‌ମିଶନ୍ ନେଇଛି - ଲତିକା - ସେ ହିଁ ଏସବୁରେ ଦକ୍ଷ।''

''ନାଇଁ ବାବା, ମୁଁ କହି ପାରିବିନି ମିଶ୍ର ସାର୍‌ଙ୍କୁ ଏତେ କଥା। ସେ ଯେଉଁ ଗମ୍ଭୀର ଲୋକ ନା, ତାଙ୍କ ସାଙ୍ଗରେ ବେଶୀ କଥାବାର୍ତ୍ତା କରିବାକୁ ଡର ଲାଗେ। ...ତୁ ଚାଲ୍ ମୋ ସାଙ୍ଗରେ। ତୁ ନିଜେ କହି ଦେବୁ ଏକଥା।''

ମନେ ମନେ ବିରକ୍ତ ହେଲେ ବି ଅନୁପମା ଉଠିଲା। ସାର୍‌ଙ୍କ ତାକକୁ ଅବଜ୍ଞା କରି ହେବନି। ସେ ଫିଜିକ୍ସ ସାର୍ ହୁଅନ୍ତୁ ନା କାହିଁକି।

ଷ୍ଟାଫ୍ କମନ୍ ରୁମ୍ ପାଖରେ ପହଞ୍ଚୁ ପହଞ୍ଚୁ ମୋଟାଏ ବହି, ଖାତା, କାଗଜ ଓ ରେଜିଷ୍ଟର୍ ଧରି ଜଣେ ଯୁବକ ବାହାରି ଆସିଲେ। ତରବର ହେଇ ଅନ୍ୟ ଦିଗରେ ଯାଉ ଯାଉ ତାଙ୍କ ଆଖି ମୀରା ଓ ଅନୁପମା ଉପରେ ପଡ଼ିଗଲା। ହଠାତ୍ ରହିଗଲେ ସେ।

''ଏଇ ହେଉଛନ୍ତି ମିଶ୍ର ସାର୍।'' ଫିସ୍‌ଫିସ୍ କରି ମୀରା କହିଲା।

ସାର୍! ହାତରେ ରେଜିଷ୍ଟର୍ ନ ଥିଲେ, ମୀରା କହି ନ ଥିଲେ, ସାର୍ ବୋଲି ଜମା ଜାଣି ପାରି ନ ଥାଆନ୍ତା ଅନୁପମା। ମନେ ହେଉଛି ଯେମିତି ପି.ଜି. କରୁଥିବା ଛାତ୍ର ଜଣେ।

''ସାର୍, ଏଇ ଅନୁପମା ମୁଖୋପାଧ୍ୟାୟ।'' ମୀରା ସରୁ ସ୍ୱରରେ କହିଲା।

''ହୁଁ।'' ଗମ୍ଭୀର ଭାବରେ ଅନୁପମାକୁ ଦେଖିଲା ଅରୁଣାଭ ମିଶ୍ର। ଆଖିରେ ଆଶ୍ଚର୍ଯ୍ୟ ଓ ଅବିଶ୍ୱାସର ମିଶାମିଶି ଭାବଟିଏ ଖେଳିଗଲା ତା'ର।

ଅନୁପମା ମୁହଁ ପ୍ରାୟ ତଳକୁ ପୋତି ଠିଆ ହୋଇଥିଲା। କିନ୍ତୁ ମିଶ୍ର ସାର୍‌ଙ୍କ ମୁହଁ ଉପରେ ପ୍ରତିଫଳିତ ଭାବ ଦେଖିବାକୁ ତା'ର ଅସୁବିଧା ହେଲାନି। ମନେ ମନେ ଚିଡ଼ିଗଲା ସେ। ଦେଖୁଛ, ଏ ମୀରାର କୀର୍ତ୍ତିକୁ? ସାର୍ ନିଶ୍ଚୟ ଆଉ କାହା କଥା ପଚାରିଥିବେ, ଆଉ ଏ ମୀରା ତାକୁ ଧରି ଆଣିଛି ଏଠିକି।

ମୁହଁ ଉପରକୁ ଟେକି ସେ ଏକା ନିଶ୍ୱାସକେ କହି ପକେଇଲା, ''ମୁଁ ଗୀତ, ଡ୍ରାମା କିଛି କରେନି।''

''ଗୀତ, ଡ୍ରାମା !!'' ନୂଆ ଅଧ୍ୟାପକ ଅରୁଣାଭ ଏଥର ସତରେ ଆଶ୍ଚର୍ଯ୍ୟ ହୋଇଗଲା।

"ମୀରା କହୁଥିଲା ଫିଜିକ୍ସ ଡିପାର୍ଟମେଣ୍ଟର ଫଙ୍କସନ୍ ପାଇଁ ଆପଣ..."

ଅନୁପମାର କଥା ଅଧାରୁ ବନ୍ଦ କରି ଦେଇ ଅରୁଣାଭ କହିଲା, "ଫଙ୍କସନ୍ ଦାୟିତ୍ୱରେ ମୁଁ ନାହିଁ। ସୁନୀଲ ଦାସ ଅଛନ୍ତି।"

ତା'ହେଲେ କାହିଁକି ତାକୁ ଡକେଇଛନ୍ତି ଏ ମିଶ୍ର ସାର୍? ଅବୁଝା ଆଖିରେ ତାକୁ ଦେଖିଲା ଅନୁପମା।

ଅରୁଣାଭ କିଛି ନ କହି ହାତରେ ଧରିଥିବା ଖାତା ବହି ତଳୁ ପତ୍ରିକାଟିଏ ବାହାର କଲା। ଅନୁପମାର ଖୁବ୍ ଭଲ ଭାବରେ ଚିହ୍ନା ପତ୍ରିକା। ଢୋକ ଗିଳି ସେ ଆଖି ତଳକୁ କରି ନେଲା।

ତା'ର ଅବନମିତ ମୁହଁ ଉପରେ ଥରେ ଦୃଷ୍ଟି ଘୁରାଇ ନେଇ ଅରୁଣାଭ କହିଲା, "ତୁମେ ତା'ହେଲେ ଏଇ ଅନୁପମା ମୁଖୋପାଧ୍ୟାୟ।"

ଅନୁପମା କିଛି କହିଲା ନାହିଁ। କିଛି କୁଣ୍ଠା, କିଛି ଲଜ୍ଜା ଯେମିତି କଥା କହିବାର ଶକ୍ତି ନେଇ ଯାଇଥିଲା ତା'ର। ଅବାକ ମୀରା ଥରେ ଅନୁପମାକୁ ଦେଖୁଥିଲା, ଆଉ ପୁଣି ଥରେ ଦେଖୁଥିଲା ମିଶ୍ର ସାର୍‌ଙ୍କୁ। ମାତ୍ର କେଇଟି ଶବ୍ଦର ବିନିମୟରେ ଏଠି ସେମାନଙ୍କର କି ଆଲୋଚନା ହୋଇଗଲା, ତା' ସେ ବୁଝି ପାରିଲାନି ଆଦୌ।

ଅରୁଣାଭ କହିଲା, "ଆଗରୁ ଥରେ ଦି'ଥର ପଢ଼ିଛି ତୁମର କବିତା। ବଡ଼ ଇନ୍‌ଟେନ୍‌ସ। ମୁଁ ତ ଭାବି ନେଇଥିଲି କୌଣସି ଅଭିଜ୍ଞା ବୟସ୍କା ମହିଳାଙ୍କ ଲେଖନୀ ବୋଧହୁଏ। କିନ୍ତୁ ଏଥର ଏଇ ପତ୍ରିକାରେ ତୁମ କବିତା ପଢୁ ପଢୁ ଆଖିରେ ପଡ଼ିଗଲା ତଳେ ଦିଆ ହୋଇଥିବା ଠିକଣାଟା। ବଙ୍ଗଳା ପତ୍ରିକାରେ କଟକ ନାଁଟା ଦେଖି ଆଖି ସ୍ୱତଃ ଚାଲିଗଲା ସେଠିକୁ। ତା'ପରେ ଯେମିତି ଦେଖିଲି ରେଭେନ୍ସା କଲେଜ୍, ମୀରାଙ୍କୁ ମୁଁ ପଚାରିଲି।"

ନିଜ କବିତା ବିଷୟରେ ଆଲୋଚନା ବନ୍ଦ କରେଇ ଦେବା ପାଇଁ ଅନୁପମା ତରବର ହୋଇ କହିପକେଇଲା, "ଆପଣ ବଙ୍ଗଳା ପଢ଼ି ଜାଣନ୍ତି?"

"ହଁ। ଭଲ ଭାବରେ ପଢ଼ି ପାରେ। କହି ପାରେ। ଲେଖି ପାରେନି ଅବଶ୍ୟ। ମୋ ପଡ଼ିଶା ଘରେ ଘୋଷ ବାବୁ ରହୁଥିଲେ। ତାଙ୍କ ପାଖରେ ଥିବା ଅସଂଖ୍ୟ ବଙ୍ଗଳା ବହି ପଢ଼ିବାର ଲୋଭରେ ମୁଁ ଭାଷାଟା ଶିଖି ନେଲି। ଘୋଷ ବାବୁ ତ ଏଠୁ ଚାଲିଗଲେ। କିନ୍ତୁ ମୁଁ ବଙ୍ଗଳା ପଢ଼ା ଛାଡ଼ି ପାରିଲିନି।

ଏବେ ବି ନିୟମିତ ଭାବରେ ବହୁ ପତ୍ରପତ୍ରିକା ମଗେଇ ପଢ଼େ।'' ଅରୁଣାଭ ଫେରି ଆସିଲା ଅନୁପମାର କବିତାକୁ। ''ତୁମର ଏଥରର କବିତାଟା ବହୁତ ଭଲ ହେଇଛି।''

ଅନୁପମା କିଛି କହିଲା ନାହିଁ। ମୁହଁ ଆଉ ଟିକିଏ ତଳକୁ ପୋତି ହୋଇଗଲା ତା'ର।

''ଲେଖାଲେଖି ଛାଡ଼ିବନି, ଅନୁପମା। ...ଆଚ୍ଛା, ଯାଅ ତୁମେମାନେ। ମୋର ବି କ୍ଲାସ୍ ପାଇଁ ଡେରି ହେଉଛି।'' ଅରୁଣାଭ ଚାଲିଗଲା।

ଷ୍ଟାଫ୍ କମନ୍ ରୁମ୍ ପାଖରୁ ଫେରିଯିବା ବେଳେ ବିସ୍ମୟ ଓ ଅଭିମାନ ଭରା ସ୍ୱରରେ ମୀରା ପଚାରିଲା, ''ତୁ କବିତା ଲେଖୁ, ଅନୁପମା? ମତେ କେମିତି କହିନୁ ଏଯାଏଁ?''

''ଧେତ୍, କି କବିତା ମ। ବେଳେ ବେଳେ ଗାରେଇ ଦିଏ ଦି' ଚାରି ଧାଡ଼ି।'' ଆଡ଼େଇ ଦେବା ଭଳି ଅନୁପମା ଉତ୍ତର ଦେଲା।

ମୀରା କିନ୍ତୁ ନଛୋଡ଼ବନ୍ଧା। ''ଗାରେଇ ଦେଉ ଖାଲି! ଆଉ ପତ୍ରିକାର ସମ୍ପାଦକମାନେ ସବୁ ବୋକା। ନାହିଁ କି? ସେଇ ଗାରା ହେଇଥିବା ଲେଖାକୁ ସେମାନଙ୍କର ପତ୍ରିକାରେ ଛପେଇ ଦିଅନ୍ତି। ନାହିଁ?''

''ଓହୋ, ତୁ ବନ୍ଦ କର ତ। ଏମିତି ପଚାରୁଛୁ ଯେମିତି କି ମୁଁ ପୃଥିବୀ ଜୟ କରି ନେଇଛି ଏକା ଏକା।'' ସ୍ୱରରେ ମିଛ ବିରକ୍ତି ଗୋଳେଇ ସେ କହିଲା।

''ଏଇଟା ପୃଥିବୀ ଜୟ କରିବା ଘଟଣାଠୁଁ କୌଣସି ଗୁଣରେ କମ୍ ନୁହଁ, ଅନୁପମା!''

''ତୁ ବନ୍ଦ କରିବୁ କି ନାହିଁ କହିଲୁ।''

ତା' କଥା ନ ଶୁଣିବା ଭଳି ମୀରା କହି ଚାଲିଥିଲା, ''...ମୁଁ ସିନା ଲେଖି ଜାଣେନି। କିନ୍ତୁ ଲେଖାଲେଖିର ଦୁନିଆରେ ସବୁବେଳେ ଥାଏ ମୁଁ।''

ଅନୁପମା କାବା ହୋଇ ଚାହିଁଲା ମୀରାକୁ। ଫିଜିକ୍ସର ଛାତ୍ରୀ। ପଢ଼ାଶୁଣାର ଚାପ ବହୁତ ବୋଲି ସେ ଶୁଣିଛି। ସେଥିରେ ପୁଣି ବାପା, ମା' ଡାକ୍ତର। ଅଥଚ ଝିଅ କହୁଛି କ'ଣ ନା ସେ ଲେଖାଲେଖିର ଦୁନିଆରେ ଥାଏ!

''ତୁ ସନ୍ତୋଷ ଦାସ୍‌ଙ୍କ ନାଁ ଶୁଣିଛୁ?''

ମୁଣ୍ଡ ହଲେଇଲା ଅନୁପମା ।

‘‘ସେ ମୋ ବଡ଼ ପିଉସା । ଓଡ଼ିଶାର ଜଣେ ନାଁ କରା ଲେଖକ ସେ । ତାଙ୍କ ଘରେ ମାସକୁ ଥରେ ନୂଆ ପୁରୁଣା ବହୁତ ଲେଖକ ଏକାଠି ହୁଅନ୍ତି । କେତେ ଆଡ୍ଡା କେତେ ଆଲୋଚନା ହୁଏ । ନୂଆ ଲେଖକମାନେ ବେଳେବେଳେ ନିଜ ଲେଖା ପଢ଼ନ୍ତି । ସେସବୁର ଆଲୋଚନା ସମାଲୋଚନା ହୁଏ । ମୁଁ ଲେଖାଲେଖି ନ କଲେ ବି ସେଇ ସବୁ ଆଲୋଚନା ମତେ ଏତେ ଭଲ ଲାଗେ ଯେ ମୁଁ ଯାଇଁ ବସିରହେ । ଚୁପ୍‌ଚାପ୍ ସବୁ ଶୁଣେ ।’’

‘‘ସମାଲୋଚନା !!’’

‘‘ଆରେ, ଛି ଛାକର କରିବା ଭଳି ସମାଲୋଚନା ନୁହଁ । ନୂଆ ଲେଖକର କୋଉଠି ଭୁଲ ରହିଯାଉଛି, ତା’ ଚେତାଇ ଦେବା ପାଇଁ ଆଲୋଚନା । ମୋ ପିଉସା କହନ୍ତି ଯେ ଏଇଟା ହେଉଛି ବରିଷ୍ଠ ସାହିତ୍ୟିକମାନଙ୍କର ପରବର୍ତ୍ତୀ ପିଢ଼ି ପାଇଁ ବିଶେଷ କର୍ତ୍ତବ୍ୟ ।’’

ଅନୁପମା ଯେମିତି ନୂଆ ପୃଥିବୀର ସମ୍ବାଦ ପାଉଥିଲା ।

ମୀରା ତାକୁ ହଲେଇ ଦେଇ କହିଲା, ‘‘ତୁ ନିଶ୍ଚୟ ବହୁତ ଭଲ ଲେଖୁ, ଅନୁପମା । ନହେଲେ କି ମିଶ୍ର ସାର୍ ତତେ ଡକେଇ କହିଥାଆନ୍ତେ ଏତେ କଥା ? ... ଜାଣିଛୁ, ମିଶ୍ର ସାର୍ ବି ବଢ଼ିଆ ଲେଖନ୍ତି ଯେ । ଅବଶ୍ୟ ଓଡ଼ିଆରେ । ଗପ ଲେଖନ୍ତି । ତାଙ୍କର ବହିଟାଏ ବାହାରିଛି ଗତ ବର୍ଷ । ପିଉସାଙ୍କ ଘରେ ଯେଉଁ ସାହିତ୍ୟ ସଭା ହୁଏ, ସେଠିକି ସେ ସବୁବେଳେ ଆସନ୍ତି ।’’

ଅନୁପମା ପାଇଁ ଏ ନୂଆ ଖବର । ‘‘ସତରେ ?’’ ମନଟା ଉତ୍ଫୁଲ୍ଲ ହୋଇ ଉଠୁଥିଲା ତା’ର । ଏପର୍ଯ୍ୟନ୍ତ ସେ ଭାବି ନେଇଥିଲା ଯେ ଜଣେ ପାଠକଠୁଁ ନିଜ କବିତାର ପ୍ରଶଂସା ମିଳିଛି । କିନ୍ତୁ ସେଇ ପାଠକଟି ଯେ ନିଜେ ଜଣେ ଭଲ ଲେଖକ, ଏକଥା ଶୁଣି ଆନନ୍ଦର ମାତ୍ରାଟି ଯେମିତି ବଢ଼ିଗଲା ତା’ର ।

କାହିଁକି କେଜାଣି, ଆହୁରି ବେଶୀ ବେଶୀ ଲେଖିବାର ଗୋଟାଏ ଦୁରନ୍ତ ଇଚ୍ଛା ନିଜ ଭିତରୁ ବାହାରି ଆସି ତା’ ଚାରି ପାଖରେ ବେଢ଼ାଇ ହୋଇଗଲା ।

ଦିନ ଗଡ଼ି ଚାଲିଥିଲା । ବି.ଏ. ଫାଇନାଲ୍ ଇଅର୍‌ରେ ପାଦ ରଖି ସାରିଥିଲା ଅନୁପମା ।

ସେ ବୁଝୁଥିଲା ଯେ ଯେଉଁ ଅନ୍ଧ କୂପ ଭିତରେ ସେ କେଇ ମାସ ତଳେ ପଡ଼ି ରହିଥିଲା, ସେଥିରୁ ସେ ଧୀରେ ଧୀରେ ପାଦେ ପାଦେ ହୋଇ ବାହାରି ଯାଇ ସାରିଛି। ଆଗର ଦବିଲା ଦବିଲା ଭାବ ଆଉ ନାହିଁ ତା' ଭିତରେ। ସେ ସେଇ ପୁରୁଣା ଅନୁପମା ହୋଇ ଯାଇ ସାରିଛି, ଯିଏ ଦିନେ ପ୍ରତିକୂଳ ପରିସ୍ଥିତି ଭିତରେ ସୂର୍ଯ୍ୟଙ୍କ ଦ୍ୟୁତି ଦେଖି ପାରୁଥିଲା। ଯିଏ ରାତିର ଅନ୍ଧକାରରେ ପ୍ରଭାତର ଆଗମନୀ ସମ୍ବାଦ ପାଉଥିଲା। ସେଇ ଅନୁପମା।

ଏବେ ତା' ସାମ୍ନାରେ ପ୍ରତିଶ୍ରୁତିମୟ ଭବିଷ୍ୟତ। ଢେଙ୍ଗ ଢେଙ୍ଗ ପୂରାଟା ରାସ୍ତା ଅତିକ୍ରମ କରିବାକୁ ମନ ବିକଳ ହୋଇ ଉଠୁଛି ତା'ର।

ସେ ବୁଝୁଥିଲା, ଏ ସବୁ ତା' କଲମର ଦୟା। ପୁଣି ଥରେ କବିତାର ପୃଥିବୀକୁ ଫେରି ଆସି ନିଜକୁ ଯେମିତି ସେ ନୂଆ ଭାବରେ ଆବିଷ୍କାର କରିଛି। ହଜି ଯାଇଥିବା ଅନୁପମାକୁ ଫେରି ପାଇଛି ସେ।

ମଝିରେ ମଝିରେ ତାକୁ ଡକାଉଥିଲା ଅରୁଣାଭ। ବିଶେଷ କରି ଅନୁପମାର କବିତା ପ୍ରକାଶ ପାଇଲେ। ପ୍ରଥମେ ପ୍ରଥମେ ଅନୁପମାକୁ ଅସ୍ୱସ୍ତି ଲାଗୁଥିଲା। କିନ୍ତୁ ଏବେ ଅଭ୍ୟାସରେ ପଡ଼ିଗଲାଣି। ମୀରା ସାଙ୍ଗରେ ଷ୍ଟାଫ୍ କମନ୍ ରୁମ୍ ଯିବା ବେଳେ ପାଦ ଆଉ ବାନ୍ଧି ହୋଇ ଯାଉ ନ ଥିଲା ତା'ର। ବରଂ କବିତାଟିଏ ଛପା ହେବା ପରେ ସେ ଅପେକ୍ଷା କରି ରହୁଥିଲା ଅରୁଣାଭର ପ୍ରତିକ୍ରିୟାକୁ।

ଅରୁଣାଭ ଓ ଅନୁପମାର ଆଲୋଚନାକୁ ମନଯୋଗ ଦେଇ ଶୁଣେ ମୀରା ଏବଂ ଅନୁପମାର କୃତିତ୍ୱ ଶୁଣି ମନଟା ତା'ର ଖୁସୀ ହୋଇଯାଏ।

ସେଦିନ କଲେଜ ଛୁଟି ହେବା ବେଳେ ମୀରା ଅନୁପମା ପାଖରେ ପହଞ୍ଚି ଯାଇ କହିଲା, "ଏଇ ଅନୁପମା, ତୁ ଆସନ୍ତା ରବିବାର ଗୋଟାଏ ଜାଗାକୁ ଯାଇ ପାରିବୁ ? ଚାରିଟା ବେଳେ।"

"କୋଉଠିକି ?"

"ମୋ ବଡ଼ ପିଉସୀଙ୍କ ଘରକୁ।     ତୁ କ'ଣ ଭାବିଲୁ ହାଓ୍ୱା ଖାଇ ଯିବାକୁ ନଈ କୂଳକୁ ଯିବା କଥା କହୁଛି ?" ମୀରା ଦାନ୍ତ ଦେଖାଇ ହସିଲା।

"ହଠାତ୍..."

"ସାହିତ୍ୟ ସଭା ଅଛି। ମୁଁ ଏମିତି କଥାରେ କଥାରେ କାଲି ପିଉସାଙ୍କୁ

କହିଥିଲି ତୋ କଥା। ସେ ତ ସବୁ ଶୁଣି ମୋ ଉପରେ ରାଗି କରି ଖପା। କହିଲେ - 'ତାକୁ ଏତେ ଦିନ ଆମ ସାହିତ୍ୟ ସଭାକୁ ଡାକିନୁ କାହିଁକି ?' ''

''ଧେତ୍, ମୁଁ ସେଠି ଯାଇ କ'ଣ କରିଥାଆନ୍ତି ?''

''ସେୟା ତ। ମୁଁ ବି ସେଇ ଏକା କଥା ଭାବିଥିଲି। ପିଉସାଙ୍କ ଘରେ କେବଳ ଓଡ଼ିଆ ସାହିତ୍ୟର ଆଲୋଚନା ହୁଏ। ତୁ ସେଠି କ'ଣ ବା କରିବୁ ? ସେଥିପାଇଁ କେବେ ସେଠିକି ଯିବା କଥା ଉଠେଇନି। କିନ୍ତୁ ପିଉସାଙ୍କର କହିବା କଥା - ସାହିତ୍ୟ ହେଉଛି ସାହିତ୍ୟ। ସାହିତ୍ୟିକ ହେଉଛି ସାହିତ୍ୟିକ। ସବୁ ଭାଷାର ସାହିତ୍ୟିକ ଏକା ରକମର।''

''ଠିକ୍ କହିଛନ୍ତି ସେ।'' ବିହ୍ୱଳ ସ୍ୱରରେ ଅନୁପମା କହିଲା।

''ତା'ହେଲେ କହ, ତୁ ଆସିବୁଟି ?''

ଅନୁପମା ବାସ୍ତବ ପୃଥିବୀକୁ ଓହ୍ଲେଇ ଆସିଲା। ଏମିତି ଭାବରେ ସେ କୁଆଡ଼େ କେବେ ଯାଇନି। ମୀରା ଘର ଛଡ଼ା ଆଉ କୋଉଠିକି ଯିବା କଥା ସେ କେବେ ଭାବି ପାରିନି। ଏବେ ଏଇ ସାହିତ୍ୟ ସଭାକୁ ଯିବା ପାଇଁ ତା'ର ଶତ ଆଗ୍ରହ ରହିଛି ବୋଲି ସେ କ'ଣ ଚଟ୍ କରି ରାଜି ହୋଇଯିବ ? କେମିତି ବା ରାଜି ହୋଇଯିବ। ଏଠି ଦିଦି ତା'ର ଅଭିଭାବକ। ଦିଦିକୁ ନ ପଚାରି ସେ କେମିତି 'ହଁ' କରି ଦେବ ? କୁଣ୍ଠିତ ସ୍ୱରରେ ସେ ଉତ୍ତର ଦେଲା, ''ଆସି ପାରିବିକି ନାହିଁ ଜାଣିନି। ଦିଦିକୁ ପଚାରିବାକୁ ହେବ।''

''ଆଚ୍ଛା, ପଚାରି କାଲି କହିବୁ ମୋତେ। ମୁଁ ନିଜେ ଆସି ଆମ ଗାଡ଼ିରେ ତତେ ନେଇଯିବି। ଆଉ ଘରେ ଛାଡ଼ି ଦେଇଯିବି। ତା'ହେଲେ ତ ଅର୍ଚ୍ଚନା ଦିଦି କିଛି କହିବେନି।''

ନା, ଅର୍ଚ୍ଚନା କିଛି କହି ନ ଥିଲା। ବରଂ ମନେ ମନେ ଖୁସୀ ହୋଇଥିଲା। ତା' ସାଙ୍ଗରେ ରହି ରହି ସାନ ଭଉଣୀଟା ତା'ର କେମିତି ଅନ୍ୟ ରକମର ହୋଇ ଯାଉଛି। ସନ୍ନ୍ୟାସିନୀ ଭଳି ଦିନଗୁଡ଼ିକ ତା'ର କଟି ଯାଉଛି। ଏମିତି ତ ଜମା ହେବା ଉଚିତ ନୁହଁ ତା'ର। କେତେ ବା ବୟସ ଏମିତି। ସେ ବରଂ ଯାଉ ବାହାରକୁ। ପାଞ୍ଚଟା ଲୋକଙ୍କ ସାଙ୍ଗରେ ମିଶୁ। ସେଇ ଭଲ। ମନକୁ ମନ କହିଥିଲା ଅର୍ଚ୍ଚନା।

କିନ୍ତୁ ଅନୁପମାଠୁଁ ମାତ୍ର ତିନି ବର୍ଷ ବଡ଼ ନିଜକୁ ଛମା ଦେଖି ପାରି ନ ଥିଲା ସେ।

ଅନୁପମା ମନଯୋଗ ଦେଇ ସବୁ ଶୁଣୁଥିଲା। ସବୁ ଯେ ବୁଝି ପକାଉଥିଲା, ତା' ଅନ୍ତତଃ କହି ପାରିବ ନାହିଁ। କିନ୍ତୁ ଯେତିକି ବୁଝୁଥିଲା, ସେଥିରେ ଯେମିତି ଧନ୍ୟ ହୋଇ ଯାଉଥିଲା ସେ। ମନ କାନ ପବିତ୍ର ହୋଇ ଯାଉଥିଲା ତା'ର।

ସାହିତ୍ୟର ଏତେ ଗୁଣ !!

ଏଇ ପ୍ରଥମ ସାହିତ୍ୟ ସଭାରେ ସେ ପାଦ ଦେଲା। ଏଇ ପ୍ରଥମ ଲେଖାଲେଖିରେ ରୁଚି ରଖୁଥିବା ଏତେ ଜଣଙ୍କୁ ସେ ନିକଟରୁ ଦେଖିଲା। ତାକୁ ଲାଗୁଥିଲା ସେ ଯେମିତି ହଠାତ୍ କରି ଗୋଟାଏ ସୁନ୍ଦର ପୃଥିବୀରେ ପହଞ୍ଚି ଯାଇଛି। ଶବ୍ଦ ଆଉ କଲମର ପୃଥିବୀ।

ନୂଆ ନୂଆ କଲେଜରେ ପାଦ ରଖିଥିବା ପିଲାଟିଏ ନିଜର କବିତା ପଢୁଥିଲା। ରହି ରହି। ଲାଜୁକ ଲାଜୁକ ଭାବରେ। କବିତା ପଢ଼ା ଶେଷ ହେବା ମାତ୍ରକେ ଆରମ୍ଭ ହୋଇଗଲା ତା' ଉପରେ ବିଭିନ୍ନ ଆଲୋଚନା। କେଉଁଠି କେଉଁ ଉପମାଟି ଦେଲା ସେ। ନିଜକୁ ଯଦି ଅନ୍ୟ ଭାବରେ ସେ ପ୍ରକାଶ କରିଥାଆନ୍ତା, ତେବେ କ'ଣ ଆହୁରି ଭଲ ହୋଇ ନ ଥାଆନ୍ତା ?

ହଠାତ୍ ଆଲୋଚନା ମଝିରୁ ହୁଙ୍କାର ଦେବା ସ୍ୱରରେ ମୀରାର ପିଉସା ବଡ଼ ପାଟିରେ କହି ଉଠିଲେ, ''ତଣ୍ଟି ଶୁଖି ଗଲାଣି ହୋ। ଗୃହିଣୀ ଚୁଲିରେ ପାଣି ଢାଳି ଦେଇ ବସିଗଲେ ନା କ'ଣ ହଇହୋ, ହେ ହଇହୋ, ଆଜି ଚାହା ପାହା ଦେବନି କି ?''

''ଦେଉଛି ଦେଉଛି।'' ଭିତରୁ ଉତ୍ତର ଆସିଲା।

ଏତେ ସମୟ ଅନୁପମା ପାଖରେ ଚୁପ୍ ହୋଇ ବସିଥିବା ମୀରା ଉଠି ପଡ଼ିଲା। ପିଉସୀଙ୍କୁ ସାହାଯ୍ୟ କରିବାକୁ ହେବ। କାମ କରିବା ପିଲାଟା ଗାଁକୁ ଯାଇଛି। ବଜାରରୁ ଜିନିଷ ପତ୍ର ଆଣି ଦେଇ ତା' ପିଉସୀ ପୁଅ ଭାଇ ବାହାରକୁ ଚାଲି ଯାଇ ସାରିବଣି। ସେ ଏସବୁ ସାହିତ୍ୟ ସଭା ଫଭାରେ ନଥାଏ। ଶେଷରେ

କ'ଣ ତା' ପିଉସୀଙ୍କୁ ଆସି ଏତେ ଜଣଙ୍କୁ ଦିଆ ଥୁଆ କରିବାକୁ ହେବ ? ଏ କାମଟି ଅନ୍ତତଃ ମୀରା ନିଜ ହାତକୁ ନେଇ ଯାଇ ପାରିବ ।

ମୀରାକୁ ଉଠିବାର ଦେଖି ଅନୁପମା ବି ଉଠି ପଡ଼ିଲା ।

''ଆରେ ଆରେ, ତୁ କାହିଁକି ଉଠିଲୁ ? ତୁ ବସ ଏଠି । ସେ ଛୋଟ ରୋଷେଇ ଘରେ ଏତେ ଜଣ ପଶିଲେ ବେଶୀ ବିଭ୍ରାଟ ହେବ ବରଂ ।''

ଅନୁପମା ଜୋର କଲାନାହିଁ । ସେଇଠି ବସି ବସି ଅନ୍ୟମାନଙ୍କର ସ୍ୱର ଶୁଣିବାକୁ ଭାରି ଭଲ ଲାଗୁଥିଲା ତାକୁ । ପ୍ରାୟ ସମସ୍ତେ ଅଚିହ୍ନା । ତଥାପି ଅଜଣା କେହି ମନେ ହେଉ ନ ଥିଲେ । ସାହିତ୍ୟର ଗୋଟାଏ ସୂକ୍ଷ୍ମ ବନ୍ଧନ ଯେମିତି ସମସ୍ତଙ୍କୁ ବାନ୍ଧିକରି ରଖିଥିଲା ।

''କେମିତି ଲାଗୁଛି, ଅନୁପମା ?'' ଚିହ୍ନା ସ୍ୱରଟିଏ ଶୁଣି ମୁହଁ ବୁଲାଇଲା ଅନୁପମା । ଅରୁଣାଭ । ଅନୁପମା ଆସି ପହଞ୍ଚିବା ବେଳକୁ ସେ ଆସି ନ ଥିଲା । କେତେବେଳେ ଆସି ଦୂରେଇ ବସି ରହିଥିଲା ବୋଧହୁଏ । ଅନୁପମା ଆଖିରେ ପଡ଼ିନି ।

ହସି ଦେଇ ଅନୁପମା ହାତ ଯୋଡ଼ିଲା । ''ଭାରି ଭଲ ଲାଗୁଛି ଏଠି ।''

''ରଜତର କବିତା କେମିତି ଲାଗିଲା ?'' ନୂଆ କବିଟିର କବିତା ବିଷୟରେ ଅରୁଣାଭ ପଚାରିଲା ।

''ଭାରି ଭଲ । ତାଙ୍କ ଲେଖିବା ଶୈଳୀଟି ଭାରି ସୁନ୍ଦର ।''

''ହଁ । ... ଜାଣିଛ, ଏଇ ରଜତ ମୋ ଛାତ୍ର । ଲୁଚେଇ ଲୁଚେଇ କବିତା ଲେଖୁଥିଲା । କେବେ କେଉଁଠିକି ପ୍ରକାଶ କରିବାକୁ ଦେଉ ନ ଥିଲା । ଆଉ କାହାକୁ କେବେ ଦେଖାଉ ବି ନ ଥିଲା । ଥରେ ଫିଜିକ୍ସ ପ୍ରାକ୍‌ଟିକାଲ୍ ରେକର୍ଡ଼ ଦେଖୁ ଦେଖୁ ମୋ ଆଖିରେ ତା' କବିତାଟିଏ ପଡ଼ିଗଲା । ତା'ପରେ ଜୋର କରି ମୁଁ ତା'ର ବାକୀ କବିତା ସବୁ ଦେଖିଲି । ଆଉ ଆଶ୍ଚର୍ଯ୍ୟ ହୋଇଗଲି । ... କେତେ ବାଧବାଧକତା ପରେ ଯାଇଁ ସେ ଏଠିକି ଆସିବାକୁ ରାଜି ହେଲା । କବିତା ବିଭିନ୍ନ ପତ୍ର ପ୍ରତିକାକୁ ପଠେଇବା ଆରମ୍ଭ କଲା । ସମସ୍ତେ କେତେ ପ୍ରଶଂସା କରୁଛନ୍ତି ତାକୁ । ହେଲେ ଆଜିଯାଏଁ ତା' ଲାଜ ଗଲାନି ।''

ଅନୁପମା ହସିଲା ।

ତା'ର ସେଇ ହସନ୍ତ ମୁହଁକୁ ସାମାନ୍ୟ ମୁଗ୍ଧ ଭାବରେ ଚାହିଁ ଅରୁଣାଭ

ପଚାରିଲା, "ତୁମେ ଗୋଟାଏ କବିତା ଏଠି ପଢ଼ନ୍ତୁ, ଅନୁପମା। ମୁଁ କହିବି ସନ୍ତୋଷ ବାବୁଙ୍କୁ ?"

"ନା ନା।" ଆତଙ୍କିତ ସ୍ୱରରେ ଅନୁପମା କହି ପକେଇଲା। ତା' ବଙ୍ଗଳା କବିତା ପୁଣି ଏଠିକାର ଓଡ଼ିଆ ସାହିତ୍ୟ ସଭାରେ !! ହସିବେନି ସମସ୍ତେ ! ଆଉ ଯାହା ତ ଦିବ୍ୟ ଲେଖା ତା'ର।

"ନା କାହିଁକି ?"

"ନା। ବାଧ କରନ୍ତୁ ନାହିଁ। ମୋ ବିଷୟରେ କାହାକୁ କିଛି କହନ୍ତୁ ନାହିଁ। ମୁଁ ଏଠି କବିତା ପଢ଼ି ପାରିବିନି।" ପ୍ରାୟ ଅନୁନୟ କରିବା ସ୍ୱରରେ ଅନୁପମା କହି ପକେଇଲା। ଯା'ହେଉ, ଅରୁଣାଭ ବି ବେଶୀ ବାଧ କଲା ନାହିଁ। ତାହା, ଜଳଖିଆ ଖିଆ ପରେ ପୁଣି ଆରମ୍ଭ ହୋଇଗଲା ଗପ, କବିତା ପଢ଼ା। ବିଭିନ୍ନ ଆଲୋଚନା। ସଭା ଶେଷ ହେଉ ହେଉ ରାତି ବେଶ୍ ଡେରି। ମୀରା ନିଜେ ଆସି ଛାଡ଼ି ଦେଇଗଲା ଅନୁପମାକୁ।

"କ'ଣ ରେ ଅନି, ଭଲ ଲାଗିଲା ସାହିତ୍ୟ ସଭା ?" କବାଟ ଖୋଲି ଦେଇ ଅର୍ଚ୍ଚନା ପଚାରିଲା।

"ଓଃ ଦିଦି, କ'ଣ କହିବି ତତେ ! ବହୁତ ଭଲ ଲାଗିଲା। ଆର ଥରକୁ ତୁ ମୋ ସାଙ୍ଗରେ ଚାଲନାରେ ଦିଦି। ଦେଖିବୁ, ତତେ ଭାରି ଭଲ ଲାଗିବ।"

"ମୋତେ ବାଦ୍ ଦେ ସେସବୁରୁ। ସାହିତ୍ୟ ସାଙ୍ଗରେ ମୋର ପୁଣି କ'ଣ ମେଳ ?" କବାଟ ପାଖରୁ ଘୁଞ୍ଚିଗଲା ଅର୍ଚ୍ଚନା। "ଆ, ଭିତରକୁ ଆ। ଦେଖ କିଏ ଆସିଛନ୍ତି।"

"କିଏ ?" ଅନୁପମା କବାଟ ପାଖରୁ ହିଁ କାହା କାହାର ଶାଢ଼ି ଓ ଧୋତିର ଝଲକ ଦେଖି ପାରୁଥିଲା। କିନ୍ତୁ ସେମାନଙ୍କ ଘରେ ପୁଣି କିଏ ? ଦିଦି ସ୍କୁଲର କୌଣସି ଶିକ୍ଷୟିତ୍ରୀ ବୋଧହୁଏ। ଆଜି ରବିବାର ଦେଖି ସ୍ୱାମୀ ଓ ପିଲାଙ୍କୁ ନେଇ ଆସିଛନ୍ତି।

ଘର ଭିତରେ ଚଟ୍ କରି ପଶି ନ ଯାଇ ଫିସ୍‌ଫିସ୍ କରି ଅନୁପମା ପଚାରିଲା, "କିଏ କି ଦିଦି ?"

"ଶୁଭେନ୍ଦୁ ମାମା ଓ ଅଞ୍ଜଳି ମାମି ଆସିଛନ୍ତି। ଆଉ ମାମିଙ୍କ ଭାଇ।" ହସ ହସ ମୁହଁରେ ଅର୍ଚ୍ଚନା ଉତ୍ତର ଦେଲା।

''ଏମିତି ହଠାତ୍ ! ପୁଣି ଆମ ଘରେ ?''

''ପୁରୀ ଯାଉଛନ୍ତି । ମା' ଆଉ ଦାଦା କହିଥିଲେ ବୋଲି ଏଠି ଦି' ଦିନ ପାଇଁ ଓହ୍ଲେଇ ଗଲେ । ମାମିଙ୍କର କିଏ ଆତ୍ମୀୟ ଅଛନ୍ତି କଟକରେ । ସେଇଠି ରହୁଛନ୍ତି ।'' ଅର୍ଚ୍ଚନା ସିଧା ସଳଖ ଭାବରେ ଉତ୍ତର ଦେଲା । କିନ୍ତୁ ତା' କଥାରେ, ବ୍ୟବହାରରେ କିଭଳି ଏକ ରହସ୍ୟର ବାସ୍ନା ପାଉଥିଲା ଅନୁପମା ।

ହଠାତ୍ ଶୁଭେନ୍ଦୁ ମାମା ଆସି ପହଞ୍ଚିଲେ କାହିଁକି ? ଘର ଭିତରେ ପାଦ ଦେବା ବେଳେ ନିଜକୁ ନିଜେ ପଚାରୁଥିଲା ଅନୁପମା ।

ଶୁଭେନ୍ଦୁ ମାମା । ଅର୍ଥାତ୍ ସେମାନଙ୍କ ମାଇଁଙ୍କ ଉପର ଭାଇ । ଯିଏ ବୁନୁ ମାମୁଁଙ୍କ ସାଙ୍ଗରେ କଲେଜ୍‌ରେ ପଢୁଥିଲେ, ସେଇ । ସେ ପୁଣି ଏଠି କେମିତି ? ଯେଉଁ କେତେଟା ଦିନ ବିନୟର ଶ୍ୱଶୁର ଘରେ ସେମାନେ ରହିଥିଲେ, ସେତେବେଳେ ଶୁଭେନ୍ଦୁ ଓ ତା' ସ୍ତ୍ରୀ ଅଞ୍ଜଳିକୁ କିଛିଟା ଜାଣିବାର ସୁଯୋଗ ହୋଇଥିଲା ଅନୁପମାର । ଲତାର ଅନ୍ୟ ତିନି ଭାଇ, ଭାଉଜଙ୍କ ଭଳି ଏତେଟା ଗର୍ବୀ, ଅଭିମାନୀ ନହେଲେ ବି କିଭଳି ଏକ କରଛଡ଼ା ଭାବ ସବୁବେଳେ ସେମାନଙ୍କ ପାଖରେ ଦେଖିବାକୁ ମିଳିଥିଲା । ତା'ଛଡ଼ା ପାବ୍‌ନାରୁ ଆସି ସେମାନଙ୍କ ଘରେ ରହି ଯାଇଥିବା କୁଟୁମ୍ବମାନଙ୍କ ପ୍ରତି କିଛି କିଛି ହତାଦାର ଭାବ ବେଳ ଅବେଳରେ ମୁହଁ ଉପରେ ଖେଳି ଯାଉଥିଲା । ଅଥଚ ସେଇମାନେ ପୁଣି ଆସି ପହଞ୍ଚିଛନ୍ତି ତାଙ୍କ ଛୋଟ କୁଡ଼ିଆରେ ? ବିନା ଅନୁରୋଧରେ ? ଆଗରୁ କୌଣସି ଖବର ନ ଦେଇ ? ଖାଲି ଦାଦା ଆଉ ମା' କହିଦେଲେ ବୋଲି ! ଆଶ୍ଚର୍ଯ୍ୟ ତ !

ଅନୁପମା ଚୁପ୍‌ଚାପ୍ ଘର ଭିତରକୁ ଆସି ପ୍ରଣାମ ପର୍ବ ସାରି ଦେଲା ।

''କୁଆଡ଼େ ଯାଇଥିଲ କି ଅନି ଏ ସନ୍ଧ୍ୟା ବେଳଟାରେ ?'' ମାଇଁଙ୍କ ଭାଉଜ ଜେରା କରିବା ସ୍ୱରରେ ପଚାରିଲେ ।

''ସାହିତ୍ୟ ସଭାଟିଏ ଥିଲା ମୋ ସାଙ୍ଗର ପିଉସୀଙ୍କ ଘରେ ।'' ସଂକ୍ଷେପରେ ଉତ୍ତର ଦେଲା ଅନୁପମା ।

''ସାହିତ୍ୟ ସଭା !! ଓଡ଼ିଆ ସାହିତ୍ୟ ସଭା !'' ବେଖାତିର କରିବା ସ୍ୱରରେ ଅଞ୍ଜଳିର ସାନ ଭାଇ ଜୟଦୀପ କହିଲା ।

ତା' କଥାର କୌଣସି ଉତ୍ତର ଦେଲା ନାହିଁ ଅନୁପମା । କେବଳ ମୁଣ୍ଡ ଟିକିଏ ଟୁଙ୍ଗାରି ଦେଲା । କିନ୍ତୁ ତା'ର ସ୍ୱର ଜମା ଭଲ ଲାଗିଲା ନାହିଁ ତାକୁ ।

ଜୟଦୀପର କଥା କିନ୍ତୁ ଶେଷ ହୋଇ ନ ଥିଲା । "ଓଡ଼ିଆ ଭାଷାରେ କ'ଣ ସାହିତ୍ୟ ଅଛି ଯେ ସେଥିପାଇଁ ସାହିତ୍ୟ ସଭା ହେଉଛି !"

ଅନୁପମା ଦେହରେ ନିଆଁ ଚରିଗଲା । ଇଏ କିଏ ମ ! ମନକୁ ମନ ଆସି ଭାଷଣ ଦେବା ଆରମ୍ଭ କରିଦେଲେଣି ! କି ଅଧିକାର ଅଛି ଅନ୍ୟ ଗୋଟାଏ ଭାଷାର ସାହିତ୍ୟକୁ ସମାଲୋଚନା କରିବା ? ନିଜେ ଯୋଉ ବିଷୟରେ କିଛି ଜାଣିନ, ସେ ବିଷୟରେ ପାଣ୍ଡିତ୍ୟ ଦେଖାଇବ କାହିଁକି ? ଢଙ୍ଗ ସବୁ ଯେତେକ...

ଜୟଦୀପର କଥା ଶୁଣି ଅନୁପମା ମୁହଁରେ ଯେଉଁ ଭାବାନ୍ତର ହେଲା, ସେଇଟା ଆଉ କାହା ଆଖିରେ ନ ପଡ଼ୁ ପଛକେ ପଡ଼ିଥିଲା ଅଞ୍ଜଳିର ଆଖିରେ । ମଣିଷର ମୁହଁ ଦେଖି ତା' ଅନ୍ତରର ଭାବ ପଢ଼ି ନେବାରେ ସେ ଅଭ୍ୟସ୍ତ । ଚଟ୍ କରି ବୁଝିଗଲା ଯେ ସାନ ଭାଇର କଥା ଅନୁପମାକୁ ବାଧିଛି । ଏଇଥିରୁ ଯେ ଝିଅଟି ଅଡ଼ି ବସି ନ ଯିବ, ତା' କହି ହେବନି । ତା'ହେଲେ ତ ଗଲା । ସବୁ ଯିବ ଫସର ଫାଟି ।

ନା, ଏମିତି ହେବା ଠିକ୍ ନୁହଁ । ଜମା ଠିକ୍ ନୁହଁ । ତା'ହେଲେ ଯେଉଁ ଉଦ୍ଦେଶ୍ୟ ନେଇ ପୁରୀର ଉପଲକ୍ଷ ଦେଖାଇ କଟକ ଆସିବା ହୋଇଛି, ସେଇ ଉଦ୍ଦେଶ୍ୟଟା ହିଁ ଧୂଳିସାତ୍ ହୋଇ ଯିବ । ତା'ର ସୁଚିନ୍ତିତ ଯୋଜନାରେ ପାଣି ଢାଳି ହୋଇଯିବ ।

ଅଞ୍ଜଳି ବିନା କାରଣରେ ସ୍ୱାମୀ ଓ ସାନ ଭାଇକୁ ଧରି ଅର୍ଚ୍ଚନା ଘରକୁ ଆସି ନାହିଁ । ବିନା କାରଣରେ ସେ କିଛି ବି କରେ ନାହିଁ । ଆଗ ପଛ ଭାବି ଚିନ୍ତି ଗୋଟିଏ ଗୋଟିଏ ପାଦ ପକାଏ । ସେଥିପାଇଁ ବାପ ଘର, ଶ୍ୱଶୁର ଘର - ଦୁଇ ଜାଗାରେ ସୁନାମ ଅଛି ତା'ର । ମା', ବାପା ତା' କଥାର ଗୁରୁତ୍ୱ ଦିଅନ୍ତି । ସେ କିଛି କହିଲେ ଶୁଣନ୍ତି । ଆଉ ଶ୍ୱଶୁର ଘରେ କୌଣସି ଗୁରୁତ୍ୱପୂର୍ଣ୍ଣ ନିର୍ଣ୍ଣୟ ନେବା ଆଗରୁ ବ୍ରଜେନ୍ଦ୍ର ଶୁଭେନ୍ଦୁକୁ ଡାକି କହନ୍ତି, "ଟିକିଏ ମେଜୋ ବୌମାର ମତଟା ବୁଝିନେ ।"

ବ୍ରଜେନ୍ଦ୍ର ନିଜ ସ୍ତ୍ରୀକୁ କିଛି ପଚାରନ୍ତି ନାହିଁ । ଘରେ ଯେ ଆଉ ଦିଇଟା ବୋହୂ ଅଛନ୍ତି, ସେମାନଙ୍କୁ ବି କିଛି ପଚରା ଯାଏ ନାହିଁ । ତେବେ ଅଞ୍ଜଳିର ମତାମତ ଜାଣିବା ନିହାତି ଜରୁରୀ । ଘରୁଆ ବ୍ୟାପାରରେ ତ ନିଶ୍ଚୟ । କେତେବେଳେ କେମିତି ବ୍ୟବସାୟିକ ବ୍ୟାପାରରେ ବି ।

ଏଭଳି ସୁଉଚ୍ଚ ସ୍ଥାନ ତ ସେ ଦିନକରେ ହାସଲ କରି ନାହିଁ।

ଅଞ୍ଜଳି କଲିକତାର ବେଶ୍ ଥିଲାବାଲା ଘରର ବଡ଼ ଝିଅ। ଶୁଭେନ୍ଦୁର ବାପାଙ୍କ ଭଳି ତା' ବାପା ବଦ୍ରୀନାରାୟଣ ବନ୍ଦୋପାଧ୍ୟାୟ ମଧ୍ୟ ଚାକିରି ଛାଡ଼ି ବ୍ୟବସାୟ ଆରମ୍ଭ କରିଥିଲେ। ତେବେ ବ୍ୟବସାୟର ଧରଣଧାରଣ ଭିନ୍ନ। ଠିକ୍ କେଉଁ ଜିନିଷର ବ୍ୟବସାୟ କରୁଥିଲେ, ତାହା କହିବା ବା ବୁଝେଇବା କଠିନ ଏବଂ ଏମିତିରେ ଦେଖିଲେ ସେ ବିଷୟରେ କିଛି ନ କହିଲେ ଭଲ। କାରଣ ପ୍ରଥମ ବିଶ୍ୱ ଯୁଦ୍ଧର ଭୟଙ୍କର ପରିସ୍ଥିତିର ସୁବିଧା ନେଇଥିଲେ ସେ। ନିଜ ଦେଶ ପ୍ରତି ସାମାନ୍ୟ ପରିମାଣରେ ବିଶ୍ୱାସଘାତକତା ବି ଯେ କରି ନ ଥିଲେ, ତା' କେହି ଜୋର୍ ଦେଇ କହି ପାରିବନି। ସେତିକି ବେଳେ ତାଙ୍କ ହାତରେ ଜମିଥିଲା ବେଶ୍ ମୋଟା ଧରଣର ଅର୍ଥ। ସେଇ ପୁଞ୍ଜି ନେଇ ସେ ପରବର୍ତ୍ତୀ ଜୀବନର ସମ୍ମାନଜନକ ବ୍ୟବସାୟ ଆରମ୍ଭ କରିଥିଲେ। କିନ୍ତୁ ବ୍ୟବସାୟର ପ୍ରତିପତ୍ତି ଓ ସଫଳତା ଭେଦ କରି ତାଙ୍କ ବଂଶରେ ଯେ କେମିତି ଅସମ୍ମାନର ଛିଟା କେଇ ବୁନ୍ଦା ଲାଗି ଯାଇଥିଲା, ତାହାର ସେ କୌଣସି ଆଭାସ ପାଇ ନ ଥିଲେ।

ସେ ଆଭାସ ମିଳିଥିଲା ସାତ ଝିଅଙ୍କ ବାହାଘର କରିବା ବେଳେ। ଝିଅମାନଙ୍କୁ ବିଦା କରିବା ସମୟରେ କମ୍ ହନ୍ତସନ୍ତ ହୋଇ ନ ଥିଲେ ସେ! ଭାଗ୍ୟକୁ ଝିଅମାନଙ୍କର ରୂପ ଥିଲା। ତେଣୁ ରୂପ ଓ ଯୌତୁକର ଓଜନରେ କୌଣସିମତେ ଭଲ ଘର, ଭଲ ବର ଦେଖି ଝିଅମାନଙ୍କୁ ଟେକି ଦେଇ ପାରିଥିଲେ।

ହେଲେ ଜୟଦୀପଟା ବଡ଼ ହଇରାଣରେ ପକେଇ ଦେଲା ତାଙ୍କୁ। ସାତ ଝିଅ ପରେ ପୁଅ ବୋଲି ମା'ର ନୟନର ମଣି। ନିଜେ ବଦ୍ରୀନାରାୟଣ ମଧ୍ୟ ପୁଅକୁ କମ୍ ମୁଣ୍ଡରେ ବସେଇ ନାହାନ୍ତି। ସବୁବେଳେ ତା' କଥାରେ ହଁ ଭରିଛନ୍ତି। ସେ ଯାହା ଯେତେବେଳେ ଚାହିଁଛି, ତା' ଆଣି ଯୋଗେଇ ଦେଇଛନ୍ତି। ଖୁବ୍ କମ୍ ବୟସରୁ ତାକୁ କଥା କଥାକେ ନିଜ ଖର୍ଚ୍ଚ ପାଇଁ ଟଙ୍କା ଯୋଗେଇ ଦେଇଛନ୍ତି। ହେଲେ ସେଇ ଆଦର, ସେଇ ସ୍ନେହ ଶେଷରେ କାଳ ହେଲା ତାଙ୍କର।

ପୁଅଟି ତାଙ୍କର ବିଗିଡ଼ି ଗଲା ସମ୍ପୂର୍ଣ୍ଣ ଭାବରେ। କଲିକତା ସହରରେ ପକେଟ ଗରମ ରହିଲେ କାହୁଁ କେଉଁଠୁ ଆସି ମଜଲିସିଆ ସଙ୍ଗୀ ଜୁଟି ଯାଆନ୍ତି। ଚିନି ଡବାରେ ପିମ୍ପୁଡ଼ି ଭିଡ଼ ଜମେଇବା ଭଳି ଚାରି ଆଡୁ ବେଢ଼ିଯାଆନ୍ତି ସେଇ

ପଇସାବାଲା ପ୍ରାଣୀଟିକୁ। ସେ କାର୍ଯ୍ୟଟି ପୁଣି ଏତେ ସୁନ୍ଦର ଭାବରେ ସେମାନେ କରନ୍ତି ଯେ ଦୁଇ ହାତରେ ପଇସା ଫୋପାଡୁଥିବା ମଣିଷଟି ଭାବେ ଏମାନେ ତା'ର ପ୍ରିୟତମ ବନ୍ଧୁ।

ଏଇଭଳି କେତେଜଣ ମନ ପ୍ରାଣର ବନ୍ଧୁଙ୍କ ସହାୟତାରେ ଜୟଦୀପ ଜୀବନରେ ଆଉ କିଛି ଅଜଣା ରହିଲା ନାହିଁ। ସବୁରକମର ନିଶା ଦ୍ରବ୍ୟର ବ୍ୟବହାରରେ ସେ ହୋଇ ଉଠିଲା କୁଶଳୀ। କଲିକତାର ଅଖ୍ୟାତ ଗଳିମାନଙ୍କରେ ତା' ପାଦ ଚିହ୍ନ ବେଶ୍ ଜଣାଶୁଣା ହୋଇଗଲା। ବଦ୍ରୀନାରାୟଣ ଯେ କିଛି କିଛି ଉଡ଼ା ଖବର ଶୁଣି ନ ଥିଲେ, ତା' ନୁହଁ। ତେବେ ସେ ଭାବିଥିଲେ ଯେ ପୁରୁଷ ପୁଅ। ବାପର ପଇସା ଅଛି, ଟିକିଏ ଆଉ ଫୁର୍ତ୍ତି କରନ୍ତା ନାହିଁ କି? ବାହା ପାଣି ମୁଣ୍ଡରେ ପଡ଼ିଲେ ସବୁ ଠିକ୍ ହୋଇଯିବ।

ଜୟଦୀପର ମା' ପୁଅକୁ ବାହା କରେଇବା ପାଇଁ ବ୍ୟସ୍ତ ହୋଇ ପଡୁଥିଲେ। ବେଶୀ ବୟସର ସନ୍ତାନ ତାଙ୍କର। ଶୀଘ୍ର ବାହାସାହା ନ କଲେ ହୁଏତ ନାତିର ମୁହଁ ଦେଖିବାର ସୌଭାଗ୍ୟ ତାଙ୍କର ହେବ ନାହିଁ। କିନ୍ତୁ ସହଜେ ରାଜି ହେଉ ନ ଥିଲା ଜୟଦୀପ। ଏତେ ଶୀଘ୍ର ବିବାହ ବନ୍ଧନରେ ବାନ୍ଧି ହୋଇ ଯିବା ପାଇଁ ତା'ର ଜମା ଇଚ୍ଛା ନ ଥିଲା।

ଏଇମିତି କଟିଗଲା ଗୁଡ଼ାଏ ବର୍ଷ। ଅଠେଇଶରେ ପାଦ ରଖିଲା ଜୟଦୀପ। ସେତିକିବେଳେ ବିରାଟ ଝଞ୍ଜାଟିଏ ବହିଗଲା ବଦ୍ରୀନାରାୟଣଙ୍କ ଉପରେ। ଦିନେ ହଠାତ୍ କରି ଅଫିସ୍ ଘରେ ବସିଥିବା ବେଳେ ଚୌକିରୁ ତଳକୁ ଗଳି ପଡ଼ି ଅଜ୍ଞାନ ହେଇଗଲେ। ଡାକ୍ତର ଆସି ଦେଖି କହିଲେ - ହାର୍ଟ ଆଟାକ୍। ଭୟର କିଛି କାରଣ ନାହିଁ। ତେବେ ସାବଧାନ ରହିବାକୁ ହେବ। ଆଗ ଭଳି ବ୍ୟବସାୟର ଦୁଶ୍ଚିନ୍ତା ଆଉ ଚଳିବ ନାହିଁ।

ବଦ୍ରୀନାରାୟଣ ବୁଝିଥିଲେ ଏଥର ପୁଅକୁ ବ୍ୟବସାୟ ବୁଝିବାକୁ ହେବ। କିନ୍ତୁ ଏତେ ଗୁଡ଼ାଏ ବର୍ଷ ଫୁଲାଫାଙ୍କିଆ ଭାବରେ ବୁଲିବା ପରେ ହଠାତ୍ କରି ଜୟଦୀପ ବିରାଟ ବ୍ୟବସାୟ ମୁଣ୍ଡେଇବ କେମିତି? କିଏ କିଏ ଉପଦେଶ ଦେଇଥିଲେ - ବାହା କରେଇ ଦିଅ। ଯୁଆଳିରେ ପଡ଼ିଲେ ଆପେ ବାଟକୁ ଆସିଯିବ। ଦାୟିତ୍ୱଶୀଳ ହୋଇଯିବ।

ବଦ୍ରୀନାରାୟଣ ପୁଅ ସାଙ୍ଗରେ କଥା କହିଲେ ପ୍ରଥମେ। ବହୁତ ବୁଝାଇବା

ପରେ ଜୟଦୀପ ବୁଝିଥିଲା, ତେବେ ସର୍ତ୍ତ ରଖିଥିଲା ଗୋଟାଏ। ଅତି ସୁନ୍ଦରୀ ଝିଅ ହୋଇଥିବା ଦରକାର।

ତା' ଆଉ ହୁଅନ୍ତା ନାହିଁ କି? ଗୋଟାଏ ବୋଲି ପୁଅ ତାଙ୍କର। ତା' ବୋହୂ ଯେ ବଙ୍ଗ ପ୍ରଦେଶର ସର୍ବଶ୍ରେଷ୍ଠ ସୁନ୍ଦରୀଙ୍କ ମଧ୍ୟରେ ଅନ୍ୟତମ ହେବ, ତା' ତ ଜଣାଶୁଣା କଥା। ମହା ଉତ୍ସାହରେ ବଦ୍ରୀନାରାୟଣ ପୁଅ ପାଇଁ କନ୍ୟା ଖୋଜା ଆରମ୍ଭ କରିଦେଲେ। ସାତ ଝିଅଙ୍କୁ ବାହା କରେଇଥିବା ପରିବାରର ବୃଦ୍ଧ ମଧ୍ୟସ୍ଥିଙ୍କୁ ଡକେଇ ଭଲ ଘରୁ ବୋହୂଟିଏ ଆଣିବା ବ୍ୟବସ୍ଥା କରେଇବାକୁ କହିଥିଲେ।

ହେଲେ ଏଥର ଅସଫଳ ହୋଇଗଲେ ମଧ୍ୟସ୍ଥି। ଘରେ ସୁନ୍ଦରୀ ଝିଅ ଥିବା କଲିକତାର ନାମଜାଦା ପରିବାରର ଲୋକମାନେ ତାଙ୍କ ପୁଅ ପାଇଁ ଝିଅ ଦେବାକୁ ମୁହଁ ଉପରେ ମନା କରି ଖବର ପଠାଇ ଦେଲେ। କାରଣ କ'ଣ ନା - ପୁଅ ମଦ୍ୟପ, ଲମ୍ପଟ, ଚରିତ୍ରହୀନ। ଏମିତିଆ ପୁଅକୁ ସେମାନେ ଝିଅ ଦେବେ ନାହିଁ। ଆଦୌ ଦେବେ ନାହିଁ। ସେମାନଙ୍କର ଝିଅ କ'ଣ ବନ୍ୟାରେ ଭାସି ଆସିଛି କି?

ବଦ୍ରୀନାରାୟଣ ମୁହଁ ଉଠେଇ ପାରି ନ ଥିଲେ। ଏ କି ଘୋର ଅପମାନ! ଛି ଛି!

ଚିନ୍ତାରେ ଚିନ୍ତାରେ ମ୍ରିୟମାଣ ହୋଇ ପଡ଼ିଥିଲେ ସେ। ଏଣେ ଡାକ୍ତରଙ୍କ ଚେତାବନୀ। ବେଶୀ ଚିନ୍ତା କଲେ ଦ୍ୱିତୀୟ ଥର ପାଇଁ ହାର୍ଟ ଆଟାକ୍ ହୋଇଯିବ। ଆଉ ସେଇଟା ଯେ କାଳ ନ ହେବ, ତା' କେହି କହି ପାରିବେନି। ଶେଷରେ ଦିନେ ବଦ୍ରୀନାରାୟଣ ବଡ଼ ଝିଅକୁ ଡକାଇ ପଠାଇଥିଲେ।

ବାପାଙ୍କ କଥା ମନ ଦେଇ ଅଞ୍ଜଳି ଶୁଣିଥିଲା। ତାଙ୍କ ଚିନ୍ତାର କାରଣ ବି ବୁଝିଥିଲା। କିଛି ସମୟ ଏ ବିଷୟରେ ଭାବିବା ପରେ ସେ ଶେଷରେ ସମସ୍ୟାର ପଥ ଦେଖାଇଥିଲା। ସେ କହିଥିଲା, "ଦୀପୁ ପାଇଁ ଧନୀ ଘରୁ ଝିଅ ଆଣିବାର କି ପ୍ରୟୋଜନ ଯେ? ତମେ ତ ଆଉ ଝିଅ ଘରର ଯୌତୁକକୁ ଚାହିଁ ବସିନ! ତା'ଛଡ଼ା ବଡ଼ ଲୋକ ଘରୁ ଝିଅ ଆସିଲେ ହଜାର ସମସ୍ୟା ଲଗେଇବ। ସାତ ନଣନ୍ଦଙ୍କ ସାଙ୍ଗରେ ମନ ମିଳେଇ ପାରିବ କି ନାହିଁ ସନ୍ଦେହଜନକ। ଆଉ ମା'ଙ୍କ ସାଙ୍ଗରେ ସେ ଝିଅ ମିଶି କରି ଯେ ଚଳି ପାରିବ, ତା' ନେଇ

ମୋର ସନ୍ଦେହ ଅଛି। ମୋ ମତରେ ବଡ଼ଲୋକିଆ ଝିଅ ଆସିଲେ, ସେ ଏଠି ସମସ୍ୟା ବଢ଼େଇବ ସିନା, କମେଇବ ନାହିଁ। ଏଇ ଯୋଉ ସେମାନେ ମନା କରୁଛନ୍ତି ଝିଅ ଦେବାକୁ, ସେ ବରଂ ଭଲ। ଶାପେ ବର ହୋଇଛି ଆମର।''

''ତା'ହେଲେ କ'ଣ କରିବାରେ ମା'? ଦୀପୁଟା ତ ଦିନକୁ ଦିନ ବିଗିଡ଼ି ଯାଉଛି। ତାକୁ ବାହା ଦେବାନି?''

''କ'ଣ ଯେ କୁହ ତୁମେ ବାବା! ଏ ବଂଶର ଗୋଟିଏ ବୋଲି ପୁଅ ଦୀପୁ, ତାକୁ ବାହା କରେଇବନି? ବରଂ ମୋ କଥା ଶୁଣ। ସାଧାରଣ ଘରୁ ଶିକ୍ଷିତା, ସୁନ୍ଦରୀ ଝିଅଟିଏ ଆଣ ଯେ ସେ ଘରକୁ ଘର ସମ୍ଭାଳିବ, ଆଉ ଦୀପୁକୁ କାନିରେ ବାନ୍ଧି ରଖି ପାରିବ।''

''କହିଦେଲେ ଯଦି ଏମିତି ଝିଅଟିଏ ମିଳିଯାଉଥାଆନ୍ତା, ତା'ହେଲେ ଆଉ ଚିନ୍ତା କ'ଣ?''

''ବାବା, ତୁମେ ଯଦି ରାଜି ହୁଅ, ତେବେ ଝିଅ ମିଳିବ। ମୋ ନଜରରେ ଦି' ଭଉଣୀ ଅଛନ୍ତି। ଆମ ଲତାଙ୍କର ଦି' ଭାଣିଜୀ। ଦୁହିଁଙ୍କ ଭିତରେ ବଡ଼ ଭଉଣୀଟି ବେଶୀ ସୁନ୍ଦର। ଶାନ୍ତ ସରଳ। ବୋହୂ ହିସାବରେ ଅତୁଳନୀୟ। କିନ୍ତୁ ଦୀପୁକୁ ସେ ସମ୍ଭାଳି ପାରିବନି। ଦବି କରି ରହିଯିବ ଘର କଣରେ। ହେଲେ ସାନ ଭଉଣୀଟି ଠିକ୍ ତା'ର ଓଲଟା। କାହାକୁ ଡରେ ନାହିଁ। ଦବି ହୋଇ ରହେ ନାହିଁ। ଅଥଚ ବଡ଼ମାନଙ୍କୁ ଯଥୋଚିତ ସମ୍ମାନ ଜଣାଏ ଠିକ୍।'' ଅଞ୍ଜଳି ତା' ବାବାଙ୍କୁ ଅନୁପମା କଥା କହିଥିଲା। ''ସେମାନେ ଯୌତୁକ ଦେଇ ପାରିବେ ନାହିଁ। ହେଲେ ସେ ଝିଅକୁ ଦେଖିଲେ ତୁମେ ଆଖି ଫେରାଇ ପାରିବ ନାହିଁ, ବାବା। ଏଣେ ଝିଅଟି ବି ବଡ଼ ଶକ୍ତ। ଏତେ ସହଜରେ ହାର ମାନି ନେବନି। ଦୀପୁକୁ ଠିକ୍ ବାଟକୁ ନେଇ ଆସିବ ସେ।''

ବଦ୍ରୀନାରାୟଣଙ୍କ ମନ ତଳେ ତଥାପି ଦ୍ୱନ୍ଦ୍ୱ ଥିଲା। ''ଦୀପୁ ରାଜି ହେବ ତ?''

''ମୁଁ ଫୋଟୋ ମଗେଇ ଆଣୁଛି। ଥରେ ଫୋଟୋ ଦେଖୁ ଦୀପୁ। ମୁଁ ଜୋର୍ ଦେଇ କହୁଛି, ସେ ମନା କରି ପାରିବନି ଆଦୌ।''

ଅଞ୍ଜଳି ଠିକ୍ କଥା କହିଥିଲା। କେବଳ ଫୋଟୋଟି ଦେଖି ଜୟଦୀପ

ନିଜର ସମ୍ମତି ଦେଇ ଦେଇଥିଲା। ତା'ଛଡ଼ା ବଡ଼ ଦିଦି ଯେତେବେଳେ କହୁଛନ୍ତି ଯେ ଝିଅଟି ଅନିନ୍ଦ୍ୟ ସୁନ୍ଦରୀ, ସେତେବେଳେ ଜୟଦୀପର ଆଉ ଭାବନା କରିବାର କିଛି ନ ଥିଲା।

ପ୍ରସ୍ତାବ ନେଇ ଅନୁପମାର ମା'ଙ୍କ ପାଖକୁ ଯାଇଥିଲା ଅଞ୍ଜଳି ନିଜେ। ଅନିରୁଦ୍ଧ ଓ ଶ୍ରଦ୍ଧା ଅବାକ୍ ହୋଇ ଯାଇଥିଲେ। ଅଭିଭୂତ ହୋଇ ଯାଇଥିଲେ। ପୁଅ ଘରୁ ଆଗତୁରା ଆସିଛି ପ୍ରସ୍ତାବ।

ଅନିରୁଦ୍ଧ ଯଦି ଏଠି ସେଠି ବେଶୀ ପଚରାପଚରି କରିଥାଆନ୍ତା, ତେବେ ହୁଏତ ଜୟଦୀପ ବିଷୟରେ କିଛି କିଛି ଖବର ଶୁଣି ପାରି ଥାଆନ୍ତା। କିନ୍ତୁ ପାତ୍ରଟି ମାମୁଙ୍କ ଶଳାଙ୍କର ନିଜ ଶଳା ଯେତେବେଳେ, ହଜାରେ ଜାଗାରେ ଖୋଜ ନେବା ଅସମ୍ମାନଜନକ। ସେ ନିଜର ସମ୍ମତି ଦେଇ ଦେଇଥିଲା। ବାହାଘର ବିଷୟରେ ଅନୁପମାକୁ ପଚାରିବା କଥା ତା' ମନକୁ ଆସି ନ ଥିଲା। ଯେତେବେଳେ ପୁଲକ ସାଙ୍ଗରେ ବାହାଘର ପ୍ରସ୍ତାବ ପୁଅ ଘରୁ ଆସିଥିଲା, ସେତେବେଳେ ଅନି ତ ନିଜେ ଇ କହିଥିଲା - 'ତମେମାନେ ଯୋଉଠି ସ୍ଥିର କରିବ, ମୁଁ ସେଇଠି ରାଜି।'

ତେଣୁ ଜୟଦୀପ ସାଙ୍ଗରେ ବାହାଘର ସ୍ଥିର ହେବା ବେଳେ ଏତେ କୁହାକୁହିର ପ୍ରଶ୍ନ ଆଉ କାହିଁ?

ତେବେ ଆଶୀର୍ବାଦ ଯାଏ କଥା ଯିବା ବେଳେ ହନ୍ତସନ୍ତ ହୋଇ ଜୟଦୀପ ହିଁ ଝିଅକୁ ଥରେ ସ୍ୱଚକ୍ଷୁରେ ଦେଖିବା କଥା ଉଠେଇ ଥିଲା। ଅନିରୁଦ୍ଧ ବୁଝି ପାରି ନ ଥିଲା ଏଇ କାମଟି କରିବ କେମିତି। ବିନା ଛୁଟିରେ ଯେ କଲେଜ ବନ୍ଦ କରି ଅନି କଲିକତା ଆସିବ, ତା' ନେଇ ତା'ର ଘୋର ସନ୍ଦେହ ଥିଲା। ତା'ହେଲେ ଖରା ଛୁଟି ଯାଏ ଅପେକ୍ଷା କରିବାକୁ ହେବ, ଅନିରୁଦ୍ଧ ଜଣେଇ ଥିଲା।

ଖରାଛୁଟିରେ ଝିଅ ଦେଖା ଦେଖି ମାନେ ବାହାଘର ହେଉ ହେଉ ଆହୁରି ଅନେକ ଡେରି। ତା'ରି ଭିତରେ ଯଦି କିଛି ଉଡ଼ା ଖବର ଏମାନେ ପାଇ ଯାଆନ୍ତି, ସରି ଯିବ। ସେଇଠି ସବୁ ଶେଷ ହୋଇଯିବ। ଶୁଭସ୍ୟ ଶୀଘ୍ରମ୍। ଅଞ୍ଜଳି ମନେ ମନେ ଏସବୁ ଭାବିଥିଲା। ସେଇଥି ପାଇଁ ଏତେସବୁ ଆୟୋଜନ। ପୁରୀ ଯିବାର ଉପଲକ୍ଷରେ ଝିଅ ଦେଖାର ଆୟୋଜନ।

ଅନୁପମାକୁ ଦେଖୁ ଦେଖୁ ଜୟଦୀପର ଆଖି ଉଜ୍ଜ୍ୱଳ ହୋଇ ଉଠିଥିଲା। ଝିଅ ଯେ ତା'ର ପସନ୍ଦ ହୋଇ ଯାଇଛି, ସେକଥା ସାନ ଭାଇର ହାବଭାବରୁ ପଢ଼ି ନେଇଥିଲା ଅଞ୍ଜଳି।

ତା'ହେଲେ ଏମିତି ଅହଙ୍କାରୀ କଥା କହୁଛି କାହିଁକି ସେ? ନିଜ ସ୍ୱଭାବ ଉପରେ ସାମାନ୍ୟତମ ଲଗାମ ଦେଇ ପାରୁନି? ଏଇ ସାମାନ୍ୟ କଥାରୁ ଝିଅଟାର ମନ ଭାଙ୍ଗିଯିବା ଅସମ୍ଭବ ନୁହଁ। ଜୟଦୀପକୁ ଆଖିରେ ଆଖିରେ ଅଞ୍ଜଳି ଶାସନ କଲା।

ବଡ଼ ଭଉଣୀର ଆଖିର ଭାଷା ସାନ ଭାଇଟି ବୁଝି ନେଲା। ଚଟ୍ କରି ମୁହଁରୁ ତାଚ୍ଛଲ୍ୟ ଭାବଟି ପୋଛି ନେଇ ମୁହଁରେ ହସ ଫୁଟାଇ କହିଲା, "ରାଗି ଗଲ କି? ଥଟ୍ଟା କରୁଥିଲି ପରା। କ'ଣ ଜାମାଇ ବାବୁ, ଅନୁପମା ସହିତ ମୋର ଥଟ୍ଟା ସମ୍ପର୍କ ନାହିଁ?" ଶୁଭେନ୍ଦୁ ଆଡ଼କୁ ମୁହଁ ବୁଲାଇ ଜୟଦୀପ ପଚାରିଲା।

ଶୁଭେନ୍ଦୁ କିଛି କହିବା ଆଗରୁ ଅନୁପମା ସାମାନ୍ୟ କଠୋର ସ୍ୱରରେ କହିଲା, "ନା, ମୋ ସାଙ୍ଗରେ ଆପଣଙ୍କର ଗୁରୁଜନର ସମ୍ପର୍କ। ଥଟ୍ଟାର ପ୍ରଶ୍ନ କେଉଁଠି ଉଠୁଛି? ଆପଣ ଅଞ୍ଜଳି ମାମି ମା'ଙ୍କ ସାନ ଭାଇ। ସେ ଦୃଷ୍ଟିରୁ ଦେଖିଲେ, ଆମର ମାମୁ।"

"ଏଇ ସାବାସ୍। ମତେ ତ ଏ ଝିଅ ମାମୁ ପର୍ଯ୍ୟାୟରେ ପକେଇ ଦେଲାଣି।"

"ସମ୍ପର୍କରେ ତ ତୁ ତା'ର ମାମୁ। ଭୁଲ କ'ଣ କହିଲା ସେ? ତେବେ ବୟସ ଦୃଷ୍ଟିରୁ ଦେଖିଲେ ଅଲଗା କଥା।" ଅଞ୍ଜଳି ଦୁଇ ପଟ ରକ୍ଷା କରିବା ସ୍ୱରରେ ଉତ୍ତର ଦେଲା।

ଅର୍ଚ୍ଚନା କେହି ନ ଦେଖି ପାରିବା ଭଳି ଅନୁପମା ହାତରେ ଅଳ୍ପ ଚାପ ଦେଇ ତାକୁ ଶାନ୍ତ କରେଇ ଦେଲା। ମୁହଁ ଉପରେ ହସ ଫୁଟେଇ କହିଲା, "ଯା, ଚାହା ଟକିଏ ବସା, ଅନି। ... ଜାଣନ୍ତି ମାମି ମା', ଚାହା ଫାହା ମୋ ହାତରେ ଭଲ ହୁଏନି। ଆମ ଅନି କିନ୍ତୁ ବଢ଼ିଆ ଚାହା କରେ।"

"ଭଲ ଚାହା କରି ପାରିବାଟା ଗୋଟାଏ ଆର୍ଟ୍। ଜଣେ ପ୍ରକୃତ କଳାକାର ହିଁ ଭଲ ଚାହା କରି ପାରେ।" ଜୟଦୀପ ସ୍ୱରରୁ ମହୁ ଝରି ପଡୁଥିଲା।

ଅନୁପମା ପ୍ରଥମେ ଭାବିଲା କଡ଼ା କରି ଉତ୍ତରଟିଏ ଦେବ ଏ କଥାର। କିନ୍ତୁ ଦିଦିର ମୁହଁର ଭାବ ଦେଖିନେବା ପରେ କିଛି ନ କହି ଚୁପ୍‌ଚାପ୍ ଗମ୍ଭୀର

ଭାବରେ ଚାଲିଗଲା ରୋଷେଇ ଘରକୁ। ସାହିତ୍ୟ ସଭାର ମାଦକତା ସମ୍ପୂର୍ଣ୍ଣ ରୂପେ ହଜି ଯାଇ ସାରିଥିଲା ସେତେବେଳକୁ।

ଚାହା, ଜଳଖିଆ ଖାଇ ସେମାନେ ବାହାରିଲେ। ବାହାରକୁ ବଳେଇ ଦେବା ବେଳେ ଅର୍ଚ୍ଚନା ଉଲ୍ଲସିତ ସ୍ୱରରେ କହିଲା, ''କାଲି ସନ୍ଧ୍ୟା ବେଳ କଥା ଭୁଲିବେନି। ଏଇଠି ଦିଇଟା ମାଛ, ଭାତ ନିଶ୍ଚେ ଖାଇବେ।''

''ଆଉ କହିବାକୁ ହେବନି। ଆମେ ଆସିବୁ। ତେବେ ଟିକିଏ ଶୀଘ୍ର ଆସି ପୁଣି ଶୀଘ୍ର ବାହାରି ଯିବୁ। ପଅର ଦିନ ସକାଳୁ ସକାଳୁ ପୁରୀ ଯିବାର ଅଛି ତ।''

ଅନୁପମା ମନେ ମନେ ରାଗିଗଲା ଅର୍ଚ୍ଚନା ଉପରେ। ଗୋଟାଏ ସନ୍ଧ୍ୟାର ଯନ୍ତ୍ରଣା ଯେମିତି ଯଥେଷ୍ଟ ହେଲାନି, ସେମାନଙ୍କୁ ପୁଣି ଖାଇବାକୁ ଡାକୁଛି ଦିଦି। ସେମାନଙ୍କର ଘୋଡ଼ା ଗାଡ଼ି ଚାଲି ନ ଯାଉଣୁ ଅର୍ଚ୍ଚନା ଉପରେ ଚଢ଼ାଉ ଆରମ୍ଭ କରିଦେଲା ସେ- ''ଦିଦି, ଏତେ ଖାତିରଦାରି କାହିଁକି? ସେମାନଙ୍କ ଘରେ ଆମେ ଯେତେବେଳେ ଅବାଞ୍ଛିତ ଭାବରେ ପହଞ୍ଚି ଯାଇଥିଲୁ, ସେତେବେଳେ ତ ଭଲ କରି ପଦେ କଥା ଆମ ସାଙ୍ଗରେ କହୁ ନ ଥିଲେ ଶୁଭେନ୍ଦୁ ମାମା, ଅଞ୍ଜଳି ମାମି ମା'। ଦୀନ ହୀନ ଦୃଷ୍ଟିରେ ଦେଖୁଥିଲେ ଆମକୁ। ଆଉ ଆଜି ଏଠି ଆସି ପହଞ୍ଚି ଯାଇଛନ୍ତି ବୋଲି ତୁ ଏତେ କାହିଁକି ଢ଼ରଳି ଯାଉଛୁ? ସେମାନଙ୍କୁ ଏତେ ଭକ୍ତି କରିବାର କ'ଣ ଅଛି?''

ଆଗର ରହସ୍ୟମୟ ହସ ହସିଲା ଅର୍ଚ୍ଚନା। ''ଅଛି ବାବା ଅଛି। ଏବେ ତ ଖାଲି ଶୁଭେନ୍ଦୁ ମାମା, ମାମି ମା' ନାହାନ୍ତି। ତାଙ୍କ ସାଙ୍ଗରେ ମାମି ମା'ଙ୍କର ଭାଇଟି ବି ଅଛି।''

''ସେଇଠୁ କ'ଣ ହେଲା? ଆମେ ଯେତେବେଳେ କଲିକତାରେ ଥିଲୁ, ଥରେ ଆସି ଦେଖା କରି ଯାଇଛନ୍ତି ଅଞ୍ଜଳି ମାମି ମା'ଙ୍କ ବାପ ଘର ଲୋକ? ଥରେ ସେମାନଙ୍କ ଘରକୁ ନିମନ୍ତ୍ରଣ କରିଛନ୍ତି? ତୋର କାହିଁକି ଏତେ ଗରଜ ପଡ଼ିଛି?''

''ବାବାରେ! କି ରାଗ! ଏଇମିତି ରାଗ ଦେଖାଇବୁ ଶ୍ୱଶୁର ଘର ଲୋକଙ୍କ ଉପରେ?''

ଶ୍ୱଶୁର ଘର!! ହାଁ କରି ଚାହିଁ ରହିଲା ଅର୍ଚ୍ଚନା ମୁହଁକୁ ଅନୁପମା। କ'ଣ

କହୁଛି ଏ ବିବି ?

ମୁରୁକି ହସି ଅର୍ଚ୍ଚନା କହିଲା, "କିଛି ଦିନ ତଳେ ମା'ଙ୍କ ଚିଠିଟିଏ ଆସିଥିଲା ସ୍କୁଲ୍ ଠିକଣାରେ। ତତେ ମୁଁ ଜାଣି ଜାଣି ଦେଖାଇନି। ମା' ଲେଖିଥିଲେ ଯେ ଶୁଭେନ୍ଦୁ ମାମା ଭରିକାଙ୍କର ଆସିବାର ଅଛି। ତେବେ କୋଉ ଦିନ ଠିକ୍ ଆସିବେ, ତା' ସେ ଜାଣି ନ ଥିଲେ। ... ମାମି ମା' ନିଜ ତରଫରୁ ଯାଇ ମା' ଆଉ ଦାଦା ସାଙ୍ଗରେ କଥା କହିଛନ୍ତି। ତାଙ୍କର ଏଇ ଯୋଉ ସାନ ଭାଇ ଜୟଦୀପ - ତାଙ୍କ ସାଙ୍ଗରେ ତୋ ବାହାଘର ପାଇଁ।"

ବାହାଘର ! ଅନୁପମାର ମୁଣ୍ଡ ଘୂରୁଥିଲା ଯେମିତି।

ଅର୍ଚ୍ଚନା ସାନ ଭଉଣୀର ଚିବୁକଟି ଧରି ଟିକିଏ ହଲେଇ ଦେଲା, "ବୁଝିଲୁ ଲୋ ହୁଣ୍ଡୀ ?"

"ଦିଦି... ଦିଦି..." ଫିସ୍ ଫିସ୍ କରି ଅନୁପମା ପଚାରିଲା, "ମା' ଆଉ ଦାଦା..."

"ରାଜି। ରାଜି। ରାଜି। ଏଇମିତି ପ୍ରସ୍ତାବ କିଏ ହାତରୁ ଛାଡ଼େ ? ଜାଣିଛୁ କି ଖାନଦାନ୍ ଘର ସେମାନେ ? ତାଙ୍କର ସାତ ଝିଅରେ ଗୋଟିଏ ପୁଅ। ଖାଲି ଭଲ ବୋହୂଟିଏ ଦରକାର ବୋଲି ସିନା ଆମ ଭଳିଆ ନିମ୍ନ ମଧ୍ୟବିତ୍ତ ପରିବାରର ଝିଅକୁ ମାଗିଛନ୍ତି। ନହେଲେ ତ ତା' ପାଇଁ କୋଉ ରାଜା ରାଜୁଡ଼ା ଘରୁ ଝିଅ ଖୋଜି ଥାଆନ୍ତେ।" ସରଳ ଭାବରେ ଅର୍ଚ୍ଚନା କହିଲା।

ଅନୁପମା ଆଉ କିଛି କହିଲା ନାହିଁ। କହିବାର ବା କ'ଣ ଥିଲା ? ତା' ପାଇଁ ଯେ ମା' ଓ ଦାଦା ପାତ୍ର ଖୋଜୁଛନ୍ତି, ସେକଥା ତ ତାକୁ ଅଜଣା ନ ଥିଲା। ହେଲେ ତାକୁ କିଛି ନ କହି ଏମିତି ଭାବରେ ତା' ବାହାଘର କେମିତି ଠିକ୍ କରି ଦେଲେ ସେମାନେ ? ପୁଲକ ସାଙ୍ଗରେ ବାହାଘର କଥା ଆଗେଇବା ଆଗରୁ ତ ପୁଣି ତାକୁ ପଚରା ହୋଇଥିଲା। ଆଉ ଏଥର ଥରଟିଏ ଉପର ଠାଉରିଆ ଭାବରେ ବି କେହି କିଛି ପଚାରିଲେ ନାହିଁ ତାକୁ ? ସେଥର ସେ କହିଦେଇଥିଲା - ତା'ର କିଛି ମତ ଅମତ ନାହିଁ। ଯେଉଁଠି ମା' ଚାହିଁବେ, ଦାଦା ଯେଉଁଠି ଠିକ୍ କରିବେ, ସେଇଠି ସେ ରାଜି। ସେଥର ସେଇ କଥା କହିଥିଲା ବୋଲି ଏଥର ପାଇଁ ସେଇ କଥା ପ୍ରଯୁଜ୍ୟ ହୋଇଗଲା ? ସେଥର ଏଥର ଭିତରେ ପାର୍ଥକ୍ୟ ନାହିଁ ?

ପାର୍ଥକ୍ୟ ? କି ପାର୍ଥକ୍ୟ ? ନିଜକୁ ନିଜେ ପଚାରିଲା ଅନୁପମା । ନିଜେ ହିଁ ପୁଣି ନିଜକୁ ଉତ୍ତର ଦେଲା - ଅଛି ପାର୍ଥକ୍ୟଟିଏ । ସେ ଠିକ୍ ଧରି ପାରୁନି, ଜାଣି ପାରୁନି । କିନ୍ତୁ କିଛି ଗୋଟାଏ ଅଛି । ନହେଲେ ଏମିତି ଭୀଷଣ ଅସ୍ଥିରତା ତାକୁ ମାଡ଼ି ବସନ୍ତା ନାହିଁ ।

ତା'ର ଶୁଖିଲା ମୁହଁକୁ ଚାହିଁ ଅର୍ଚ୍ଚନା ଭରସା ଦେବା ସ୍ୱରରେ କହିଲା, "ଓହୋ ଅନି,. ତୁ ତ ଏବେଠୁ ମୁହଁ ଶୁଖେଇବା ଆରମ୍ଭ କରି ଦେଲୁଣି । ଏବେ ମାନେ କ'ଣ କାଲିକୁ ତୋ ବାହାଘର ହୋଇ ଯାଉଛି ? ଆଶୀର୍ବାଦ ହେବ । ଦିନ ବାର ସ୍ଥିର ହେବ । ତେବେ ଯାଇଁ ନା ବାହାଘର ।"

ଅନୁପମା ଶୁଣିଲା, କିନ୍ତୁ ତଥାପି ତାକୁ କିଛି ଭଲ ଲାଗୁ ନ ଥିଲା ।

ଆଗରୁ ଥରେ ଏଇମିତି ବାହାଘର ପୁରା ଠିକ୍ ହେଇ, ନିର୍ବନ୍ଧ ହୋଇ ଭାଙ୍ଗି ଯାଇଥିଲା । ସେଇଥି ପାଇଁ କ'ଣ ତା' ମନରେ ଭୟ ବସି ଯାଇଛି ?

ନା । ଆଦୌ ନୁହଁ ।

ତା'ହେଲେ ? କଟକ ଛାଡ଼ି ଯିବା କଥା ତାକୁ କଷ୍ଟ ଦେଉଛି କି ?

ହଁ । କିଛି ମାତ୍ରାରେ । ନିଜ ପାଖରେ ସ୍ୱୀକାର କଲା ସେ । କିନ୍ତୁ ସେଇଥିପାଇଁ ତ ମନ ଏଭଳି ଦବିଯିବା କଥା ନୁହଁ । ସେ ଭଲ ଭାବରେ ଜାଣିଛି ଯେ ତା' ବାହାଘର ପାଇଁ ଜୋର୍ ଖୋଜାଖୋଜି ଚାଲିଥିଲା । ସେ ବି.ଏ.ରେ ଆଡ୍‌ମିଶନ୍ ନେବା ପରଠୁ ହିଁ ଏ ବିଷୟରେ ଶୁଣି ଆସୁଛି । ତଥାପି କାହିଁକି ଅଜଣା ଶୋକଭାର ତା' ଛାତି ଉପରେ ମାଡ଼ି ବସିଛି ? କ'ଣ ହୋଇଛି ଅନୁପମାର ? କାହିଁକି ସେ ନିଜ ଖବର ନିଜେ ଜାଣି ପାରୁନି ?

ଜୟଦୀପ ସାଙ୍ଗରେ ଅନୁପମାର ବାହାଘର ସ୍ଥିର ହୋଇଗଲା । ତେବେ ପୃଥକ ଜାତକରେ କ'ଣ ଟିକିଏ ଅସୁବିଧା ରହି ଯାଇଥିଲା ଯେ ସେବର୍ଷ ବାହାଘର କରେଇବା ପାଇଁ ସେମାନଙ୍କ ଘର ଜ୍ୟୋତିଷ ମନା କଲେ । ଜାତକକୁ ଅଗ୍ରାହ୍ୟ କରି ଆଶୀର୍ବାଦ ବା ବାହାଘର କରେଇଲେ ପିତୃ ମାତୃ ଘାତ ଯୋଗ ଦେଖା ଦେଇ ପାରେ । ଏକଥା ଜାଣିବା ପରେ ବଦ୍ରୀନାରାୟଣ ଓ ତାଙ୍କ

ପଦ୍ଧୀ କେମିତି ପାଦ ଆଗକୁ ବଢ଼େଇ ନେଇଥାଆନ୍ତେ? ଅନିଚ୍ଛାରେ ସେମାନେ ଅପେକ୍ଷା କରିବାକୁ ରାଜି ହେଲେ। କଥା ହେଲା, ଅନୁପମାର ବି.ଏ. ପରୀକ୍ଷା ସରୁ ସରୁ ହିଁ ନିର୍ବନ୍ଧ କାମ ବଢ଼ିଯିବ। ତା'ପରେ ଭଲ ଦିନ ଦେଖି ଯେତେ ଶୀଘ୍ର ସମ୍ଭବ ବାହାଘର ହୋଇଯିବ।

କାହିଁକି କେଜାଣି, ଏ ଖବର ପାଇ ସ୍ୱସ୍ତିର ନିଶ୍ୱାସ ନେଇଥିଲା ଅନୁପମା। ଶୂଳି ଚଢ଼ିବା ଆଗରୁ କେଇଟା ଦିନ ହାତରେ ପାଇଗଲା ଯେମିତି। ବାହାଘର ଘଟଣାକୁ ସମ୍ପୂର୍ଣ୍ଣ ଭାବରେ ମନରୁ ଦୂରେଇ ଦେଇ ସେ ଆଗ ଭଳି ଘର, କଲେଜ ଓ କବିତା ନେଇ ଦିନ କଟେଇବାକୁ ଲାଗିଲା।

ଏସବୁ ଭିତରେ ମାସକୁ ଥରେ ହେଉଥିବା ସାହିତ୍ୟ ସଭାକୁ ଯିବା ଅନୁପମାର ଅଭ୍ୟାସରେ ପଡ଼ିଗଲା। ଆଜିକାଲି ତାକୁ ନେଇ ଯିବା ପାଇଁ ଆଉ ମୀରାକୁ ତଳ ତେଲେଙ୍ଗା ବଜାର ଆସିବାକୁ ହୁଏ ନାହିଁ। ରିକ୍ସା ନେଇ ଏକା ଏକା ଚାଲିଯାଏ ଅନୁପମା। କଟକରେ ବାଟଘାଟ ଚିହ୍ନିଗଲାଣି ସେ। ଭାଷାଟାକୁ ବି ମୋଟାମୋଟି କରାୟତ କରି ପାରିଛି ସେ। ଆଉ ପୁଣି ଅସୁବିଧା କ'ଣ? ତେବେ ସଭା ସରୁ ସରୁ ସନ୍ଧ୍ୟା ଗଡ଼ି ଯାଏ ତ, ସେଥିପାଇଁ ଘରକୁ ଫେରିବା ବେଳେ ମୀରା ଛାଡ଼ି ଦେଇ ଯାଏ।

ସେଦିନ ରବିବାର। ସାହିତ୍ୟ ସଭାର ତାରିଖ। ଅନୁପମାର ବହୁ ଆକାଂକ୍ଷିତ ଦିନ। ସେ ସଫା ଶାଢ଼ି ଖଣ୍ଡେ ପିନ୍ଧି ବାହାରୁଥିଲା। କିନ୍ତୁ ଶାଢ଼ି ପିନ୍ଧିବା ଭିତରେ, ମୁଣ୍ଡ କୁଣ୍ଡେଇବା ଫାଙ୍କରେ ସେ ଉଦ୍‌ବିଗ୍ନ ଭାବରେ ବାହାରକୁ ଚାହିଁ ଦେଖି ନେଉଥିଲା ଝର୍କା ଦେଇ। ବାହାରେ ଅଦିନିଆ ଝିପିଝିପି ବର୍ଷା। କିଛି କୁଆଡ଼େ ନ ଥିଲା, ହଠାତ୍ କୋଉଠୁ ଚାଲି ଆସିଲା କେଜାଣି। ଗଦାଏ କାଟି ଦେଇ ପୁଣି ଚାଲି ଯାଇଥାଆନ୍ତା କି ତା' ବାଟରେ। କିନ୍ତୁ ନା, ଝିପି ଝିପି କରି ମଠେଇ ମଠେଇ ଚାଲିଥିଲା ନିରନ୍ତର ବିରକ୍ତିକର ବର୍ଷା। ରାସ୍ତା କାଦୁଅ, ମାଟି ଚପଚପ। ଆଗରୁ କହି ରଖିଥିଲା ବୋଲି ରିକ୍ସାଟା ଆସି ଠିଆ ହୋଇଛି ଘର ବାହାରେ। ରିକ୍ସାବାଲା ମୁଣ୍ଡରେ ବର୍ଷାରୁ ମୁକ୍ତି ପାଇବା ପାଇଁ ଅଜବ ଟୋପିଟିଏ। ତଥାପି ସେ ମଝିରେ ମଝିରେ ମୁହଁରୁ ବର୍ଷା ପାଣିର ଛିଟା ନାଲି ଗାମୁଛାଟିରେ ପୋଛି ନେଉଛି।

"ଆଜି ନ ଗଲେ ହୁଅନ୍ତାନି, ଅନି? କି ବାଛେ ପାଗ।" ଅର୍ଚ୍ଚନା ଠିକ୍

ଆଙ୍କଟିଲା ନାହିଁ, କେବଳ ଉପଦେଶ ଦେବା ସ୍ୱରରେ କହିଲା ।

"ଘରେ ବସି ବସି ଚିଡ଼ି ଲାଗିଗଲାଣି, ଦିଦି । ମୁଁ ଯାଏ ବରଂ । ସେଠି ଅନ୍ୟମାନଙ୍କ ସାଙ୍ଗରେ ହୁଏତ ଭଲ ଲାଗିବ ।"

"ହଉ । ଡେରି କରିବୁନି ଆଦୌ । ପାରିବୁ ତ ରାତି ହେବା ଆଗରୁ ଚାଲି ଆସିବୁ । ଆଜି ଯୋଉ ବର୍ଷା, ସେଥିରେ ରାସ୍ତା ଘାଟ ନିଛାଟିଆ ହୋଇଯିବ ଅନ୍ଧାର ହେଉ ହେଉ ।"

"ତୁ ଆଉ ଏତେ ଚିନ୍ତା କରନା, ଦିଦି । ଫେରିବାବେଳେ ତ ମତେ ମୀରା ଛାଡ଼ି ଦେଇ ଯିବ ତାଙ୍କ ଗାଡ଼ିରେ ।"

"ତଥାପି..."

"ହଉ ବାବା, ମୁଁ ଶୀଘ୍ର ଚାଲି ଆସିବି ।"

ଅନୁପମା ଭାବିଥିଲା ବର୍ଷା ଯୋଗୁ ଆଜି ମୀରାର ପିଉସାଙ୍କ ଘରେ ଭିଡ଼ କମ୍ ଥିବ । ଲୋକମାନେ ଅଳସେଇ ରହି ଯାଇଥିବେ ନିଜ ନିଜ ଘରେ । ରବିବାରିଆ ଦିପହରର ବିଶ୍ରାମକୁ ଆଉ ଟିକେ ଲମ୍ୱେଇ ଦେଇ ରେଜେଇ ତଳେ ପଶି ଗରମ ଗରମ ଚାହା ପିଉଥିବେ ପାଟିରେ ସୁଡୁକି ଦେଇ ଏବଂ ହାତରେ ଥିବ ପ୍ରିୟ ବହିଟିଏ ।

କିନ୍ତୁ ଅନୁପମା ଭୁଲ ଭାବିଥିଲା । ସାହିତ୍ୟିକ ଜୀବମାନେ ହିଁ ଅନ୍ୟରକମ । ସାହିତ୍ୟର ବାସ୍ନା ପାଇଲେ ସେମାନେ ସବୁ ଛାଡ଼ିଛୁଡ଼ି ଗୋଟାଏ ଦୁର୍ବାର ଆକର୍ଷଣରେ ଟାଣି ହୋଇ ଆସନ୍ତି । ଠିକ୍ ତା'ରି ଭଳି ।

ସେଦିନର ସାହିତ୍ୟ ସଭାରେ ନିୟମିତ ଆସୁଥିବା ଲୋକଙ୍କ ଭିତରୁ କେହି ବାଦ ପଡ଼ି ନ ଥିଲେ । ତେବେ ବାହାରର ବାଜେ ପାଗ ସାଙ୍ଗରେ ତାଳ ଦେଇ ବେଶ୍ କେଇ ଜଣଙ୍କର ମନ ମିଜାଜ ଦବି କରି ଥିଲା । ଏଭଳି ମିଜାଜ ନେଇ ଅନ୍ୟମାନଙ୍କର ଲେଖା ଶୁଣିଲେ ଯାହା ହୁଏ । ଆଲୋଚନା ଅପେକ୍ଷା ସମାଲୋଚନା ହିଁ ଚାଲିଥିଲା ବେଶୀ ।

ହଠାତ୍ ଜଣେ କହି ଉଠିଲେ, "ଆହେ ଅରୁଣାଭ, ତମେ ପରା ଆଜି କବିତାଟିଏ ପଢ଼ିବ ବୋଲି କହୁଥିଲ । କାଇଁ, ଏପର୍ଯ୍ୟନ୍ତ ତ ପଢ଼ିଲନି ।"

"କିଓ ଅରୁଣାଭ, ତମେ ଆଜିକାଲି କବିତା ଲେଖା ଆରମ୍ଭ କଲଣି କିହେ ?" ଆଉ ଜଣେ ସାମାନ୍ୟ ଶାଣିତ ସ୍ୱରରେ କହି ଉଠିଲେ, "ପଢ଼ ପଢ଼, ଆମେ

ବି ଟିକିଏ ଶୁଣ, ଆମ ଗାଳ୍ପିକଙ୍କ କବିତା ହାତଟି କେମିତି।''

ଅନୁପମା ଆଗ୍ରହରେ ଉଦୁକି ବସିଲା। ଅରୁଣାଭ ମିଶ୍ର ତା'ହେଲେ କବିତା ବି ଲେଖନ୍ତି ?

କିନ୍ତୁ ଅରୁଣାଭ କବିତା ପଢ଼ା ସାଙ୍ଗେ ସାଙ୍ଗେ ଆରମ୍ଭ କଲା ନାହିଁ। ହସି ଦେଇ କହିଲା, ''ପଢ଼ିବି ଯେ, କିନ୍ତୁ ଏବେ ନୁହଁ। ବର୍ଷାରେ ଅଧା ଭିଜି ଆସି ବିରକ୍ତ ଲାଗୁଛି। ଆଗେ ଚାହା ପର୍ବଟି ଶେଷ ହେଉ, ମନ ମିଜାଜ ଭଲ ହେଉ, ତେବେ ଯାଇ କବିତା।''

ଠିକ୍ ସେତିକି ବେଳେ ଆଲୁଚପ୍ ଓ ଚାହା ନେଇ କରି ଆସିଲା ନଗି। ଚାହା କପ୍‌ଟି ହାତରେ ଧରି ଅନୁପମା ପାଖକୁ ଉଠି ଆସିଲା ଅରୁଣାଭ। ଓଠରେ କିଛି କିଛି କହିବା ଭାବ। ସେ କିଛି କହିବା ଆଗରୁ ଅନୁପମା ଚଟ୍ କରି ପଚାରି ଦେଲା, ''ଆପଣ କବିତା ଲେଖନ୍ତି ?''

ଏ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ଅରୁଣାଭ କେହି ନ ଶୁଣି ପାରିବା ଭଳି ଚାପା ସ୍ୱରରେ କହିଲା, ''ତୁମକୁ ମୋର ଗୋଟାଏ ଅନୁରୋଧ, ଅନୁପମା।''

ଅନୁରୋଧ ! ତାକୁ ? ଅନୁପମା ଆଶ୍ଚର୍ଯ୍ୟରେ ତା' ମୁହଁକୁ ଚାହିଁ ରହିଲା।

ଅରୁଣାଭ ଆଗ ଭଳି ଚାପା ସ୍ୱରରେ କହିଲା, ''ମୁଁ ଆଉ ଟିକକରେ କବିତା ପଢ଼ିବି। ମୋର ଅନୁରୋଧ, ତୁମେ କବିତା ଶୁଣି ରଗାରଗି କରିବ ନାହିଁ।''

ଅନୁପମା ମୁହଁରେ ଆଗର ଅବାକ ଭାବଟି ଆଉ ଟିକିଏ ଗଭୀର ହୋଇଗଲା। କବିତା ଶୁଣି ପୁଣି ରାଗିବାର କ'ଣ ଅଛି ? ସେ ସେଇ କଥାଟି ପଚାରିବାକୁ ଯାଉ ଯାଉ ମୀରାର ପିଉସା ବଡ଼ ପାଟିରେ କହି ଉଠିଲେ, ''ହଉ, ଏଥର ଆରମ୍ଭ କର, ଅରୁଣାଭ।''

ଅରୁଣାଭ ନିଜ ଜାଗାକୁ ଚାଲି ଆସି ଗୋଡ଼ ଭାଙ୍ଗି ବସିଲା। ସାର୍ଟ ପକେଟରୁ ଚାରି ଭାଙ୍ଗ ହୋଇଥିବା କାଗଜ ଖଣ୍ଡିଏ କାଢ଼ିଲା। କାଗଜର ଭାଙ୍ଗ ନ ଖୋଲି ସମସ୍ତଙ୍କ ମୁହଁ ଉପରେ ଆଖି ବୁଲେଇ ନେଇ କହିଲା, ''କବିତାଟିର ଶୀର୍ଷକ - 'କିଛି ପ୍ରଶ୍ନ'।''

ଚାଉଁ କରି ହୋଇଗଲା ଅନୁପମାର ଛାତି ଭିତରଟା। ତା' ଅଜାଣତରେ ତା' ଶରୀରଟା କଠିନ ହୋଇଗଲା ସାମାନ୍ୟ। ଏଥର ତା'ର ପ୍ରଶ୍ନ କରା

ଆଖି ଦିଓଟି ଉପରେ ନିଜ ଆଖି ରଖି ଅରୁଣାଭ କାଗଜର ଭାଙ୍ଗ ଖୋଲିଲା। କିନ୍ତୁ ଥରେ ବି କାଗଜ ଆଡ଼େ ନ ଚାହିଁ ସେ କବିତା ଆବୃତ୍ତି ଆରମ୍ଭ କଲା।

ଶବ୍ଦ ସବୁ ଓଠ ଦେଇ ନୁହଁ, ହୃଦୟ ଦେଇ ଝରି ଯାଉଛି। ମନ ତଳର ଭାବନା, ଚିନ୍ତନ - ସବୁ କିଛି ସ୍ପଷ୍ଟ ଭାବରେ ଲେଖି ହୋଇ ଯାଉଛି ତା' ମୁହଁ ଉପରେ। ତା' ଆଖି ଦୁଇଟିରେ।

ଅନୁପମା ଆଉ ପାରୁନି। ଅରୁଣାଭର ଆଖିରେ ଆଖି ମିଳେଇ ପାରୁନି। ତା' ଓଠ ଦେଇ ଝରି ଯାଉଥିବା କବିତା ବି ଶୁଣି ପାରୁନି। ଶୁଣିବାର ଆବଶ୍ୟକତା ବା କୋଉଠି ଅଛି? ତା' ଆଖି ଲାଖି ଯାଇଛି ବସିଥିବା ଚଦରର ଗୋଟାଏ ଛିଣ୍ଡା ସୂତାରେ। ଡାହାଣ ହାତର ବୁଢ଼ା ଓ ବିଣି ଆଙ୍ଗୁଠି ଦେଇ ସେ ଉଖାରି ଚାଲିଛି ସେଇ ସୂତାକୁ। ସତେ ଯେମିତି ଅଦୃଆ ସୂତାର ଖିଅ ଭିତରେ ସେ ହଜିଯିବ। ଲୁଚିଯିବ।

ଅଚ୍ଛ ସାଜସଜାର ଘରଟି ଭିତରେ ଅଖଣ୍ଡ ନିସ୍ତବ୍ଧତା। କେବଳ ବାହାରର ବର୍ଷା ଓ କବିତାର ବାରିଧାରା।

ଅନୁପମା ଆଉ ପାରୁନାହିଁ ଜମା। ଆଉ ଶୁଣି ପାରୁ ନାହିଁ ଅରୁଣାଭ ଓଠରୁ ବୋହି ଆସୁଥିବା ଚିହ୍ନା ଚିହ୍ନା ଭାବନାର ସ୍ରୋତ। ସେ ଆଖି ତଳକୁ କରି ନେଲା। ଅଜାଣତରେ ତା' ମୁଣ୍ଡ ବି ନଇଁ ଯାଉଛି ତଳକୁ। ଆହୁରି ତଳକୁ। ସତେ ଯେମିତି ସେ ମାଟିରେ ମିଶିଯିବ। ଓଃ, ଦିଦିର କଥା ରଖି ସେ ଆଜି ନ ଆସିଥାଆନ୍ତା ହେଲେ!

ଅରୁଣାଭର କବିତା ପଢ଼ା ଶେଷ ହେଲା।

କିଛି ସମୟର ନିରବତା। ତା'ପରେ ହଠାତ୍ କରି ସମସ୍ତେ ଏକା ସାଙ୍ଗରେ କଥା କହିବା ଆରମ୍ଭ କରି ଦେଲେ। କୌଣସି ଆଲୋଚନା ସମାଲୋଚନା ନୁହଁ, ନିଛକ ପ୍ରଶଂସାରେ ପୋତି ଦେଇଗଲେ ଅରୁଣାଭକୁ। ପୂର୍ବର ଶାଣିତ ସ୍ୱରମାନ ବେଶ୍ କୋମଳ ହୋଇ ଯାଇଥିଲା ଭଲ କବିତାଟିଏର ସ୍ପର୍ଶ ପାଇ।

ଏମାନଙ୍କ ଭିତରେ ଏକମାତ୍ର ଜଣେ କିଛି କହୁ ନ ଥିଲା। ପାଟି ଖୋଲୁ ନ ଥିଲା। ଆଖି ଉପରକୁ ତୋଳୁ ନ ଥିଲା। ଅନୁପମା କାଠ ହୋଇ ବସି ରହିଥିଲା କେବଳ।

ସନ୍ତୋଷ ଦାସ ନିଜ ବଡ଼ ପାଟିରେ ଅନ୍ୟ ସମସ୍ତଙ୍କୁ ଦବେଇ ଦେଇ କହି ଉଠିଲେ, ‘‘ହଇହୋ ଅରୁଣାଭ, ତମେ ତ ଆମ ସମସ୍ତଙ୍କୁ ଚମକେଇ ଦେଲ ହେ। ଏତେ ଭଲ କବିତା ଲେଖିପାର, ଅଥଚ ଆମମାନଙ୍କୁ କେବେ ଯାର ସୁରାକ ଦେଇ ନାହିଁ।’’

ଅରୁଣାଭ ହସିଲା। କଣେଇ ଅନୁପମାକୁ ଥରେ ଦେଖି ନେଇ କହିଲା, ‘‘ଏଇଟା ମୋ କବିତା ନୁହଁ, ଆଜ୍ଞା।’’

‘‘ତମ କବିତା ନୁହଁ ? ମାନେ ?’’

‘‘ଏଇଟା ଗୋଟାଏ ବଙ୍ଗଳା କବିତାର ଅନୁବାଦ।’’

କେଇଟା ମୁହୂର୍ତ୍ତ ପାଇଁ ସମସ୍ତେ ଚୁପ୍ ହୋଇଗଲେ। କିଛିଟା ଅବାକ ଭାବ। ସାଙ୍ଗେ ସାଙ୍ଗେ ସେଗୁଡ଼ିକ ରୂପାନ୍ତରିତ ହୋଇଗଲା ବିରକ୍ତିରେ। ଫେରି ଆସିଲା ଆଗର ଶାଣିତ ସ୍ୱର। ସମାଲୋଚନାର ତୀରମାନ।

‘‘ଅନୁବାଦ !!’’ ଜଣେ ତୀକ୍ଷ୍ଣ ଭାବରେ କହି ଉଠିଲେ, ‘‘ଆଜି ଏଠି ଅନୁବାଦ କବିତା ପଢ଼ିବାର ମାନେ କ’ଣ ?’’

ତାଙ୍କ କଥାରେ ସହମତ ହୋଇ ମୁଣ୍ଡ ହଲେଇ ହଲେଇ ସନ୍ତୋଷ ଦାସ କହିଲେ, ‘‘ଠିକ୍ କଥା। ଏଠି ଆମର କେବଳ ନିଜ ଲେଖା ପଢ଼ା ହୁଏ। ଅନୁବାଦ ସାହିତ୍ୟ ପାଇଁ ଆଗରୁ ଦିନ ସ୍ଥିର ହେଲେ, ତେବେ ଯାଇ ସେସବୁର ଚର୍ଚ୍ଚା। ... ତମେ ତ ଏଠି ନୂଆ ନୁହଁ ହେ ଅରୁଣାଭ। ଏ ଭୁଲ କଲ କେମିତି ?’’

‘‘ନାଇଁ ଆଜ୍ଞା, ଭୁଲ ନୁହଁ। ଏ କବିତା ଯିଏ ରଚନା କରିଛନ୍ତି, ସେ ଏଇଠି ଉପସ୍ଥିତ।’’ ମୁରୁକି ହସି ଅରୁଣାଭ କହିଲା।

ଉପସ୍ଥିତ ? ଯା ମାନେ କ’ଣ ? ସେମାନଙ୍କ ଭିତରୁ ବଙ୍ଗଳା କବିତା ପୁଣି ଲେଖିଲା କିଏ ? ପରସ୍ପରର ମୁହଁ ଚହାଁଚହିଁ ହେଲେ ସେମାନେ।

‘‘ଏ କବିତାଟି ଯିଏ ଲେଖିଛନ୍ତି ତାଙ୍କର ଭୀଷଣ ଲଜ୍ଜା ଆମ ସାମ୍ନାରେ ବଙ୍ଗଳାରେ ଲେଖା କବିତା ପଢ଼ିବାକୁ। ସେଥିପାଇଁ ମୁଁ ଭାବିଲି ତା’ର ଅନୁବାଦ କରି ସମସ୍ତଙ୍କୁ ଶୁଣେଇ ଦିଏ।’’

‘‘ଲେଖକଙ୍କର ନାଁଟା ଟିକିଏ ଆମକୁ ଜଣେଇବ ନା ସେଇଟା ତୁମର ଏକଚାଟିଆ ଅଧିକାର ?’’ ପୂର୍ବର ତୀକ୍ଷ୍ଣ ସ୍ୱର ସାମାନ୍ୟ ନରମ ହେଇଛି ଏହା

ଭିତରେ ।

"ଲେଖକ ନୁହଁ, ଲେଖିକା ।"

"ଲେଖିକା ??"

ରହସ୍ୟର ଯବନିକା ଟାଣି ଦେଇ ଆଗ ଭଳି ହସନ୍ତ ସ୍ୱରରେ ଅରୁଣାଭ କହିଲା, "କବିତାଟି ଲେଖିଛନ୍ତି ଅନୁପମା । ... ଏଇ ଅନୁପମା ।" ତଳକୁ ମୁହଁ ପୋତି ବସିଥିବା ଅନୁପମା ଆଡ଼କୁ ଆଙ୍ଗୁଠି ଦେଖାଇଦେଲା ଅରୁଣାଭ ।

"ଅନୁପମା ! ଏଇ ଆମ ମୀରାର ସାଙ୍ଗ ଅନୁପମା ।" କିଏ ଜଣେ କହି ଉଠିଲେ । ଏତେ ଦିନ ଯାହାକୁ ଦେଖି ନ ଦେଖିବା ଭଳି ରହି ଯାଉଥିଲେ, ସେ ଯେ କାଗଜ କଲମରେ ଏଭଳି ଭାବ ଫୁଟେଇ ପାରେ, ତାହା ବୋଧହୁଏ ବିଶ୍ୱାସ କରିବାକୁ ଅସୁବିଧା ହେଉଥିଲା ।

ଭାବି ହେବା ଭଳି ବସି ରହିଥିଲେ କିନ୍ତୁ ମୀରାର ପିଉସା । ମୋଟା ଭ୍ରୁ ଦି'ଟା କୁଞ୍ଚେଇ ହୋଇ ନାକ ଉପରେ ପ୍ରାୟ ମିଶି ଯାଇଛି । ହଠାତ୍ ଯେମିତି କିଛି କଥା ମନେ ପଡ଼ିଗଲା ତାଙ୍କର । "ଆହେ, ସତ କଥା ହୋ । ମତେ ପରା ମୀରା କହିଥିଲା ତା' ସାଙ୍ଗଟି ଲେଖାଲେଖି କରେ ବୋଲି । ବଙ୍ଗଳାରେ । ସେଇଥିପାଇଁ ତ ମୁଁ ତାକୁ ବାଧ କରେଇ ଏଠିକି ଅଣେଇ ଥିଲି । ଆଉ ଏଭଳି ଭୋଳା ମନ ମୋର, ସେକଥା ମୁଁ ଏକେବାରେ ପାଶୋରି ଯାଇଛି ।" ମୁଣ୍ଡ ହଲେଇ ହଲେଇ କହିଲେ ସେ ।

ତା'ପରେ ମୁହଁ ବୁଲେଇ ନେଇ ଅନୁପମାକୁ ସ୍ନେହଭରା ଦୃଷ୍ଟିରେ ଦେଖି ସେ ଯୋଡ଼ିଲେ, "ହେଲେ ମା' ରେ, ତୋ ଲେଖା ଏମିତି ପୋଖତ ବୋଲି ତ ଜଣା ନ ଥିଲା ।"

ପ୍ରଶସ୍ତି ଭାରରେ ସମସ୍ତେ ପୋତି ପକାଉଥିଲେ ଅନୁପମାକୁ । କିନ୍ତୁ ସେ କିଛି ଶୁଣି ପାରୁ ନ ଥିଲା ।

ସମସ୍ତଙ୍କର ସପ୍ରଶଂସ ଆଖି ଲାଖି ରହିଥିଲା ତା' ଉପରେ । କିନ୍ତୁ ଅନୁପମା ଗୋଟିଏ ଯୋଡ଼ା ଆଖି ବ୍ୟତୀତ ଆଉ କାହାକୁ ଦେଖି ପାରୁ ନ ଥିଲା ।

ହାଲୁକା ନୀଳ, ବାଇଗଣି, ଗୋଲାପୀ ରଙ୍ଗର ଛୋଟ ଛୋଟ ଫୁଲପକା ଉପତ୍ୟକା । ସେ ଉପତ୍ୟକା ଭିତରେ କେବଳ ଅନୁପମା ଆଉ ଅନୁପମାକୁ ଦେଖୁଥିବା ସେଇ ମୁଗ୍ଧ, ଉଜ୍ଜ୍ୱଳ, ହସନ୍ତ ଆଖି ଦୁଇଟି । ଆଉ କେହି ନାହିଁ ।

କିଛି ନାହିଁ।

କାହାର ସେ ଆଖି ? କିଏ ସେ ଆଖି ଦୁଇଟିର ମାଲିକ ?

ନା, ପଚାରି ବୁଝିବାର ଆବଶ୍ୟକତା ନାହିଁ। ଅନୁପମା ଜାଣେ ଯେ ସେ ଅରୁଣାଭ ଛଡ଼ା ଆଉ କେହି ନୁହଁ। ଆଉ କେହି ହୋଇ ପାରିବ ନାହିଁ। କେବଳ ଅରୁଣାଭ।

ଏତେ ଦିନ ବୁଝି ମଧ୍ୟ ଅବୁଝା ରହିଯାଇଥିଲା ସବୁ କିଛି। କବିତାର ଛୋଟ ଛୋଟ ଆଲୋଚନା ଭିତରେ ଯେ ଭବିଷ୍ୟତ ପାଇଁ ବିରାଟ ପ୍ରତିଶ୍ରୁତି ଦିଆନିଆ ହୋଇ ଯାଇଛି, ସେକଥା ସେ ଜାଣି ପାରି ନ ଥିଲା। କେଇଟା ମୁହୂର୍ତ୍ତ ଭିତରେ କିଏ ଏମିତି ପରିଷ୍କାର କରି ଦେଲା ସବୁ କଥା ?

ଏବେ ଦୁଇ ଜଣଙ୍କୁ ଘେରି ଅପାର୍ଥିବ ଦୁନିଆର ପରିଧି। ଭଲ ପାଇବାର ସୁବାସିତ ବଗିଚା। ଫୁଲ ଫୁଟା ରାସ୍ତା। ହାତରେ ହାତ ରଖି କେବଳ ଆଗେଇ ଯିବାକୁ ହେବ। ଆହୁରି ଆଗକୁ। ନିର୍ଜନ ଉପତ୍ୟକା ଭିତରେ ରହିଥିବେ କେବଳ ସେମାନେ ଦୁଇ ଜଣ ଏବଂ ସେମାନଙ୍କର ଭିଜା ଭିଜା ସ୍ୱପ୍ନ।

ଚମକି ଉଠି ବାସ୍ତବ ଜଗତକୁ ଫେରି ଆସିଲା ଅନୁପମା।

ସ୍ୱପ୍ନ ? ନୂଆ ସ୍ୱପ୍ନ ? ଭବିଷ୍ୟତ ପାଇଁ ସ୍ୱପ୍ନ ??

ସେ ସ୍ୱପ୍ନ ତ ବୁଣା ସରିଛି ତା' ପାଇଁ। ଆଗେଇ ଯିବାର ରାସ୍ତାଟି ମଧ୍ୟ ତିଆରି ସରିଛି ଅନ୍ୟମାନଙ୍କ ଦ୍ୱାରା। ଅନିଚ୍ଛାରେ ସେଇ ଭିନ୍ନ ରାସ୍ତାରେ ଆଗେଇ ଯିବ ବୋଲି ଅନୁପମା ମୌନ ଭାବରେ ସମ୍ମତି ଜଣେଇ ସାରିଛି।

ଏସବୁ ସତ୍ତ୍ୱେ ସେ ଏ କ'ଣ କରିବାକୁ ଯାଉଥିଲା ? କି ଭାବନାର ସ୍ରୋତରେ ଭାସି ଯିବାକୁ ବସିଥିଲା ସେ ? ଭଲ ପାଇବାର ପୃଥିବୀ ? ଅରୁଣାଭ ସାଙ୍ଗରେ ଭବିଷ୍ୟତର ସ୍ୱପ୍ନ ? ଫୁଲ ଫୁଟା ରାସ୍ତା ?

ନା ନା ନା। ବିବ୍ରତ ଭାବରେ ନିଜ ଭିତରେ ନିଜେ ଚିତ୍କାର କରି ଉଠିଲା ଅନୁପମା।

ତାକୁ ମନା। ସେଇ ପୃଥିବୀରେ ପାଦ ରଖିବାକୁ ତାକୁ ମନା। ନିଜ ଇଚ୍ଛାରେ ଏଭଳି ସ୍ୱପ୍ନ ଦେଖିବା ପାଇଁ ତାକୁ କଡ଼ାକଡ଼ି ନିଷେଧ।

ସେ ଯେ ବାଗ୍‌ଦତ୍ତା।

ସ୍ୱପ୍ନାବିଷ୍ଟ ଆଖିକୁ ନିଜ ପାଖକୁ ଫେରାଇ ଆଣିଲା ଅନୁପମା। ଥର ଥର ପାଦରେ ଠିଆ ହୋଇ ଯାଇ ଦୁଇ ହାତ ଯୋଡ଼ି ସନ୍ତୋଷ ବାବୁଙ୍କୁ ଉଦ୍ଦେଶ୍ୟ କରି କହିଲା, ''ମତେ ଏବେ ଯିବାକୁ ହେବ, ପିଉସା।''

''ଯିବୁ ? ହଉ ଯା। ବେଶୀ ଡେରି ହୋଇନି ଯେ ତେବେ ଯଦି ପରେ ଜୋର୍ ବର୍ଷା ଆସେ, ତା'ହେଲେ ଗୁଡ଼ାଏ ହଇରାଣ ହେବୁ। ମୀରା, ଯା। ତୋ ସାଙ୍ଗକୁ ଛାଡ଼ି ଦେଇ ଆ। ... ହଁ ରେ ମା' ଅନୁପମା, ଆର ଥର ତୋ ନିଜସ୍ୱ କବିତାଟିଏ ନେଇ ଆସିଥିବୁ। ବଙ୍ଗଳା କବିତା ବୁଝିବାକୁ ଜମା ଅସୁବିଧା ହେବନି।''

ଏ କଥାର ଉତ୍ତରରେ ଅନୁପମା ଏଭଳି ଅସ୍ପଷ୍ଟ ଶବ୍ଦଟିଏ କଲା ଯେ ସେଇଟି 'ହଁ' କି 'ନା' - ତା' ଠିକ୍ ବୁଝି ହେଲା ନାହିଁ।

ଘରକୁ ଫେରିବା ବାଟରେ ଅନୁପମା ବୁଝି ପାରିଥିଲା ସବୁ କଥା। କାହିଁକି ଯେ ଜୟଦୀପ ସାଙ୍ଗରେ ବାହାଘର ଘଟଣା ନେଇ ସେ ଖୁସୀ ହୋଇ ପାରି ନ ଥିଲା, ତା'ର କାରଣ ଏତେ ଦିନ ପରେ ବୁଝୁଥିଲା।

ଏବେ ସେ କ'ଣ କରିବ ? ଅନୁପମା ଆଖିରେ ଲୁହ ଚିକ୍‌ଚିକ୍ କରିଥିଲା।

ମୀରା କଣେଇ କରି ଚାହିଁ ଅନୁପମା ଆଖିର ଲୁହ ଦେଖି ପାରିଥିଲା। କିନ୍ତୁ ସେ କିଛି କହିଲା ନାହିଁ। ଏତେ ବଡ଼ ବଡ଼ ଲେଖକ ଲେଖିକାଙ୍କଠୁ ପ୍ରଶଂସା ପାଇବା ପରେ ଆଖିକୁ ଲୁହ ଆସିବାଟା କି ଏମିତି ବିଚିତ୍ର ? ଅନୁପମାର ଗୌରବରେ ଗୌରବାନ୍ୱିତ ହୋଇଯାଇଥିଲା ମୀରା। କିନ୍ତୁ ତା' ଅନ୍ତରର ଭାବକୁ ପଢ଼ି ପାରି ନ ଥିଲା। ତା' ଭିତରେ ଯେ କି ଭାବନା ଖେଳି ବୁଲୁଛି, ତା' ଦେଖି ପାରି ନ ଥିଲା।

ଖାଲି ମୀରା ନୁହଁ, ଅର୍ଚ୍ଚନା ବି କିଛି ଜାଣି ପାରି ନ ଥିଲା।. ତା' ଆଖିରେ ଅନୁପମାର ଅନ୍ୟମନସ୍କ, ଗମ୍ଭୀର ରୂପ ପଡ଼ିଥିଲା। କିନ୍ତୁ ବି.ଏ. ଫାଇନାଲ୍ ପରୀକ୍ଷା ପୂର୍ବରୁ ଏମିତି ହେବାରେ ଆଶ୍ଚର୍ଯ୍ୟ କ'ଣ ?

ଅନୁପମା କଲେଜ ଯାଉଥିଲା। ଆଉ କଲେଜ ସାରି ଫେରି ଆସୁଥିଲା

ଘରକୁ। ମୀରା ପାଇଁ ବି ଅପେକ୍ଷା କରୁ ନ ଥିଲା ଅଧିକାଂଶ ଦିନ। ମୀରା ପଚାରିଲେ ଉତ୍ତର ଦେଉଥିଲା - 'ଗୁଡ଼ାଏ ପାଠ ବାକି ଅଛି।' ଆଉ ବାଧ କରୁ ନ ଥିଲା ମୀରା।

ଅନୁପମାର କବିତା ଲେଖା ବି ପ୍ରାୟ ବନ୍ଦ ହୋଇ ଯାଇଥିଲା। ଯାହା ଯେତିକି ନିଜ ଅଜାଣତରେ ଲେଖି ହୋଇ ଯାଉଥିଲା, ସେସବୁକୁ ବହି, ଖାତା ତଳେ ମାଡ଼ି କରି ରଖି ଦେଉଥିଲା ସେ। କୌଣସି ପତ୍ରପତ୍ରିକାକୁ ପଠାଉ ନ ଥିଲା। ଲେଖା ନ ବାହାରିଲେ ତ ଅରୁଣାଭ ଆଉ ତାକୁ ଡକାଇ ପାରିବ ନାହିଁ। ତା' ସାଙ୍ଗରେ କଥା କହିବାର ମାଧ୍ୟମ ଖୋଜି ପାଇ ପାରିବ ନାହିଁ।

ସାହିତ୍ୟ ସଭାକୁ ବି ଯିବା ବନ୍ଦ କରି ଦେଇଥିଲା ଅନୁପମା। ଏ ବିଷୟରେ ଅବଶ୍ୟ ଅର୍ଚ୍ଚନା ଆଶ୍ଚର୍ଯ୍ୟ ପ୍ରକାଶ କରି ନ ଥିଲା। ପରୀକ୍ଷା ତ ଆଉ ଅଳ୍ପ କିଛି ମାସ କଥା। ଏମିତି ସମୟରେ ଯେ ସେ ପାଠ ଛଡ଼ା ଆଉ କିଛି ଭାବି ପାରିବ ନାହିଁ, ତା' ତ ଜଣାଶୁଣା କଥା।

ପରୀକ୍ଷା ଆସିଗଲା।

ସେଦିନ କଲେଜକୁ ଯାଇଥିଲା ଅନୁପମା ଆଡ଼୍‌ମିଟ୍ କାର୍ଡ଼ ଆଣିବାକୁ। ଆଡ଼୍‌ମିଟ୍ କାର୍ଡ଼ ନେଇ ବାହାରି ଆସୁ ଆସୁ ପାଦ ଅଟକି ଗଲା ବାହାରେ ସ୍ଥିର ଭାବରେ ଠିଆ ହୋଇଥିବା ଜଣଙ୍କୁ ଦେଖି। ଯେମିତି ଯୁଗ ଯୁଗ ଧରି ଅପେକ୍ଷା କରି ରହିଛି, ସେଇ ଭାବ ସମଗ୍ର ଶରୀରରେ। ଅରୁଣାଭ ସତରେ ବହୁତ ସମୟ ଧରି ଅପେକ୍ଷା କରି ରହିଥିଲା। ସେ ଜାଣିଥିଲା ଆଜି ଅନୁପମା ଆସିବ ନିଶ୍ଚୟ। ତାକୁ ଥରେ ଦେଖିବା ପାଇଁ, ତା' ସାଙ୍ଗରେ ପଦେ କଥା କହିବା ପାଇଁ ଆକୁଳ ହୋଇ ଯାଇଥିଲା ସେ।

ଅନୁପମା ଭାବିଲା ଅରୁଣାଭକୁ ଟପି ଚାଲିଯିବ ସେ। କିନ୍ତୁ କାହିଁକି ଯେ ପାଦ ଦିଇଟା ତା'ର ଅଟକିଗଲା ଠିକ୍ ସେଇଠି, ତା' ସେ ଜାଣେ ନାହିଁ।

''ଅନୁପମା, ସନ୍ତୋଷ ବାବୁଙ୍କ ଘରକୁ ଆଉ ଆସୁନ କାହିଁକି ?''

''ପରୀକ୍ଷା ଆସିଲାଣି। ପଢ଼ାପଢ଼ି ଅଛି।''

''କବିତା ବାହାରିନି ଏହା ଭିତରେ ?''

''ନା, ଲେଖି ପାରିନି।''

ଅନୁପମା ସ୍ୱରରେ କ'ଣ ଥିଲା କେଜାଣି, ତାକୁ ଏକା ଦୃଷ୍ଟିରେ ଚାହିଁ

ରହିଲା ଅରୁଣାଭ। ତା'ପରେ ଧୀର ସ୍ୱରରେ କହିଲା, ''ତୁମକୁ ମୋ ମନ କଥା ଆଉ ଅଜଣା ନାହିଁ, ଅନୁପମା। କୁହ, କୌଣସି କାରଣରୁ ତୁମ ମନରେ କଷ୍ଟ ଦେଇଛି କି ମୁଁ?''

ଅନୁପମା ଆଉ ଟିକକରେ କାନ୍ଦି ପକେଇବ। ଏଇ କଲେଜ ଭିତରେ, ଆତଯାତ ହେଉଥିବା ଛାତ୍ରଛାତ୍ରୀ, ଶିକ୍ଷକ - ସମସ୍ତଙ୍କ ସାମ୍ନାରେ ସେ କାନ୍ଦି ପକେଇବ। ନିଜ ଭାବନାକୁ ଚାପି ରଖିଲା ଅନୁପମା। ଅଦ୍ଭୁତ ସ୍ୱରରେ, ଅଦ୍ଭୁତ ଭଙ୍ଗୀରେ କହିଲା, ''କିଛି ନାହିଁ। କିଛି ନାହିଁ।''

''କ'ଣ କିଛି ନାହିଁ? ସବୁ କିଛି ପରିଷ୍କାର ଭାବରେ କହୁନ କାହିଁକି, ଅନୁପମା?'' ଅରୁଣାଭ ମୁଣ୍ଡ ଭିତରେ ଗୋଳମାଳ ହୋଇଯାଉଛି। ସେଦିନ ତା'ହେଲେ କ'ଣ ସେ ଅନୁପମା ଆଖିର ଭାଷା ଠିକ୍ ଭାବରେ ପଢ଼ି ପାରି ନ ଥିଲା? ଦୁଇ ଜଣଙ୍କ ଭିତରେ ଯେଉଁ ଅଦୃଶ୍ୟ ସେତୁ ସ୍ଥାପିତ ହୋଇଯାଇଛି ବୋଲି ସେ ଧରି ନେଇଥିଲା, ତା' କ'ଣ ଭୁଲ?

''କହିବାର କିଛି ନାହିଁ।''

''ଅନୁପମା, ମୁଁ ତୁମକୁ ସତରେ ନିଜର ...'' ଅରୁଣାଭର କଥା ଅଧାରୁ ବନ୍ଦ କରି ଦେଲା ଅନୁପମା। ପ୍ରାୟ କାନ୍ଦ କାନ୍ଦ ସ୍ୱରରେ ସେ କହିପକେଇଲା, ''ଆଉ କିଛି କୁହନ୍ତୁ ନାହିଁ। ଆଉ କିଛି କୁହନ୍ତୁ ନାହିଁ।''

''ନିଶ୍ଚୟ କିଛି ଅଛି। ତୁମେ ଡରୁଛ ବୋଧହୁଏ, ତୁମ ଘରେ କ'ଣ କହିବେ। ହୁଏତ ଅରାଜି ହେବେ। ମୁଁ ନିଜେ ଯାଇ କଥାବାର୍ତ୍ତା କରିବି ସେମାନଙ୍କ ସାଙ୍ଗରେ।'' ଆତ୍ମପ୍ରତ୍ୟୟ ନେଇ ଅରୁଣାଭ କହିଲା।

''ନା, କିଛି ଲାଭ ନାହିଁ। କିଛି ଲାଭ ନାହିଁ।'' ଏଥର ସତରେ ତା' ଆଖିରେ ଲୁହ ଚକ୍‌ଚକ୍ କଲା। ଅନୁପମା ପ୍ରାୟ ଦୌଡ଼ି ଦୌଡ଼ି ସେ ଜାଗା ଛାଡ଼ି ଚାଲିଗଲା।

ଅରୁଣାଭ ଅବାକ ଭାବରେ ତା'ର ଯିବା ବାଟକୁ ଚାହିଁ ରହିଲା କେବଳ। ଅଳ୍ପ ସମୟ ଆଗରୁ ଯାହା ଘଟିଗଲା, ତାହା ବାସ୍ତବ ନା ଅବାସ୍ତବ - ସେକଥା ସେ ଠିକ୍ ବୁଝିପାରୁ ନ ଥିଲା। ଘଟଣାର ବାସ୍ତବତା, ଅବାସ୍ତବତାକୁ ଆଉ ଥରେ ପରୀକ୍ଷା କରି ନେବାକୁ ଇଚ୍ଛା ହେଉଥିଲା ତା'ର। କିନ୍ତୁ କିଏ ଯେମିତି ତା' ଚେତନା ଭିତରୁ କହୁଥିଲା - ରହିଯା। ରହିଯା। ଧୈର୍ଯ୍ୟ ଧରି ରହିଯା।

ପ୍ରଶ୍ନ ପଚାରିବା ପାଇଁ ବର୍ତ୍ତମାନର ସମୟ ଠିକ୍ ନୁହଁ।

ଅରୁଣାଭ ମୁଣ୍ଡ ତଳକୁ ପୋତି ଗମ୍ଭୀର ଭାବରେ ଷ୍ଟାଫ୍ କମନ୍ ରୁମ୍ ଆଡ଼େ ଚାଲିଗଲା।

ବି.ଏ. ପରୀକ୍ଷାରେ ମୋଟାମୋଟି ଭାବରେ ଭଲ କରିଲା ଅନୁପମା। ସେ ଜାଣିଥିଲା ଯେ ଅନର୍ସ କଟିବା ଭଳି ଅବସ୍ଥା ଉପୁଜିବ ନାହିଁ। କିନ୍ତୁ ପ୍ରଥମ କେଇ ଜଣଙ୍କ ଭିତରେ ରହିବା ଅସମ୍ଭବ।

ରହିଥିଲେ ବା କ'ଣ ହୋଇଥାଆନ୍ତା? ଅନୁପମା ନିଜକୁ ନିଜେ କହିଥିଲା। ଆଉ କେଇଟା ମାସ କଥା। ତା'ପରେ ମୁଣ୍ଡରେ ଲମ୍ବା ଓଢ଼ଣା ଟାଣି ବୋହୂପଣିଆ କରି ଦିନ କଟିବ। ପାଠ ନା କବିତା। ସବୁ ମରି ହଜି ଯିବ କୋଉଠି।

ଯାଉ। ସବୁ ସରି ଯାଉ।

ପଥର ମୂର୍ତ୍ତି ଭଳି ବସି ବସି ମନକୁ ମନ କହେ ଅନୁପମା। ଏତେଦିନ ସାନ ଭଉଣୀର ଗୁମ୍‌ସୁମ୍ ଭାବକୁ ଗୁରୁତ୍ୱ ଦେଇ ନ ଥିଲା ଅର୍ଚ୍ଚନା। ପରୀକ୍ଷାର ଚାପ ଭାବି ମନକୁ ଏଡ଼ାଇ ଦେଇଥିଲା। କିନ୍ତୁ ପରୀକ୍ଷା ପରେ ଜଣେ ଏତେ ଅନ୍ୟମନସ୍କ ରହିବ କାହିଁକି? କିଛି ନ କରି ଏମିତି ନିସ୍ତେଜ ଭାବରେ ପଡ଼ି ରହିବ କାହିଁକି? ଅସ୍ୱସ୍ତି ହେଉଥିଲା ଅର୍ଚ୍ଚନା ମନରେ। ସେ ବୁଝୁଥିଲା, ସାନ ଭଉଣୀକୁ କଲିକତା ନେଇ ଗଲେ ହୁଅନ୍ତା। କିନ୍ତୁ ଏବେ ତା' ପକ୍ଷରେ ଯିବା ସମ୍ଭବ ନୁହଁ। ପିଲାଙ୍କ ପରୀକ୍ଷା ପାଇଁ ତାକୁ ସିଲେଇ କାମର ବାହାରେ ଆହୁରି ଅନେକ କିଛି କରିବାର ଦାୟିତ୍ୱ ଦିଆ ସରିଛି। ଅବଶ୍ୟ ଛୁଟି ମାଗିଲେ ହେଡ୍ ମିଷ୍ଟ୍ରେସ୍ ମନା କରିବେ ନାହିଁ। କିନ୍ତୁ ଅନୁପମା ବାହାଘର ବେଳେ ଲମ୍ବା ଛୁଟି ମିଳିବାରେ ଅସୁବିଧା ହେବ। ବରଂ ସେତେବେଳେ ଛୁଟି ନେଲେ ହଜାର କାମରେ ମା'ଙ୍କୁ ସାହାଯ୍ୟ କରି ପାରିବ ସେ।

ଚୁପ୍‌ଚାପ୍ ଅର୍ଚ୍ଚନା ଚିଠି ଲେଖିଲା ଶ୍ରଦ୍ଧାଙ୍କ ପାଖକୁ। ଅନିରୁଦ୍ଧ ଆସି ଯେମିତି ଅନୁପମାକୁ କଲିକତା ନେଇଯାଏ। ଏଠି ଦିନଯାକ ଏକା ଏକା ଘର ଭିତରେ ବସି କେମିତି ମନମରା ହୋଇଯାଉଛି ସେ।

ଶ୍ରଦ୍ଧା ବି ଚାହୁଁ ଥିଲେ ସେଇ ଏକା କଥା। ବାହା ହୋଇ ବଡ଼ ଘରର ବୋହୂ ହୋଇଗଲେ ସେମାନେ ତାଙ୍କ ଝିଅକୁ ବେଶୀ ଦିନ ପାଇଁ ବାପଘରକୁ

ଛାଡ଼ିବେ କି ନାହିଁ କିଏ ଜାଣେ ? ଏକା ସହରରେ ପୁଣି ରହୁଛନ୍ତି ଯେତେବେଳେ ଖାଲି ମୁହଁ ମାରି ଦେଇ ଆସିବାକୁ କହି ଦେଇ ପାରନ୍ତି ତା' ଶାଶୁଘର ଲୋକେ। ଏବେ ବରଂ କିଛିଦିନ ପାଖରେ ରହୁ କୋଳ ପୋଛା ସାନ ଝିଅ ତାଙ୍କର। ମା' ହାତରନ୍ଧା ଖାଉ ମନ ଖୁସିରେ। ନିଶ୍ଚିନ୍ତ ଭାବରେ।

ସେ ହିଁ ବାଧ କରି ଅନିରୁଦ୍ଧକୁ ପଠେଇ ଦେଲେ କଟକ।

କଥା ଥିଲା ଅନିରୁଦ୍ଧ ଆସି ରହିବ ଦୁଇଟା ଦିନ। ତା'ପରେ ସାନ୍ ଭଉଣୀକୁ ଧରି ଫେରି ଆସିବ କଲିକତା। ବେଶୀ ଦିନ କଟକରେ ରହି ହେବ ନାହିଁ। କାରଣ ଆଶୀର୍ବାଦର ଦିନ ଆଉ ବେଶୀ ଡେରି ନାହିଁ। ସେଥିପାଇଁ ତ କିଛୁତ ବ୍ୟବସ୍ଥା କରିବାକୁ ହେବ।

ଆଶୀର୍ବାଦ ବେଳେ ଅର୍ଚ୍ଚନା ରହି ପାରିବ ନାହିଁ। କିନ୍ତୁ ପରେ ସ୍କୁଲ୍ ଛୁଟି ହେଲେ ସେ ଆସିବ। ସେଇ ଛୁଟି ଭିତରେ ଯଦି ବାହାଘର କାମ ଆଗେଇ ଦିଆ ଯାଇ ପାରେ, ତେବେ ବହୁତ ଭଲ ହେବ। ତା'ମାନେ ଅସଂଖ୍ୟ କାମ ତା' ମୁଣ୍ଡ ଉପରେ। ଶୀଘ୍ର ଫେରିଯିବାକୁ ହେବ କଲିକତା। ସେଇ ଅନୁସାରେ ଟିକେଟ କଟା ସରିଥିଲା।

କଟକରେ ପହଞ୍ଚିବା ମାତ୍ରକେ ଅନିରୁଦ୍ଧ ବୁଝି ପାରିଲା ଯେ କିଛି ଗୋଟାଏ ଘଟି ଯାଇଛି ଅନୁପମା ଭିତରେ। ସେ ଯେମିତି ଭୀଷଣ ଭାବରେ ବଦଳି ଯାଇଛି। କିନ୍ତୁ ହୋଇଛି କ'ଣ ?

"କ'ଣ ଆଉ ହେବ ମ, ଦାଦା ?" ଅର୍ଚ୍ଚନା ଉତ୍ତର ଦେଲା। "ସବୁବେଳେ ଏକା ରହି ରହି ଏମିତି ଅବସ୍ଥା। ଘର ବାହାରକୁ ଯାଏ ନାହିଁ। ବେଶୀ ସାଙ୍ଗ ବି ନାହାନ୍ତି ତା'ର। ଗୋଟିଏ ବୋଲି ସାଙ୍ଗ ମୀରା ଯେ ସେ ବି ଛୁଟି କଟେଇବାକୁ ଚାଲିଯାଇଛି ବାଲେଶ୍ୱର।"

ଅର୍ଚ୍ଚନାର ଉତ୍ତର ଅନିରୁଦ୍ଧର ମନଃପୂତ ହେଲା ନାହିଁ। ତା'ର ଷଷ୍ଠ ଇନ୍ଦ୍ରିୟ ତାକୁ ଯେମିତି ତାଗିଦା କରେଇ ଦେଉଥିଲା ବାରମ୍ବାର। କହୁଥିଲା, ଘଟଣା ଏତେ ସରଳ ନୁହଁ। ୟା ଭିତରେ କିଛି ଗୁରୁତର ବିଷୟ ଅଛି ନିଶ୍ଚୟ।

ଅନିରୁଦ୍ଧ ଖୋଳି ତାଡ଼ି ବହୁତ ରକମର ପ୍ରଶ୍ନ କରିଥିଲା ଅନୁପମାକୁ। କିନ୍ତୁ ଗୋଟିଏ ବି ବିଶ୍ୱାସଯୋଗ୍ୟ ଉତ୍ତର ତାକୁ ମିଳୁ ନ ଥିଲା।

ଅନିରୁଦ୍ଧର କିଛି ସନ୍ଦେହ ହେଉ ଥିଲା। ହେଲେ ସନ୍ଦେହଟି ସତ କି

ମିଛ ଜାଣିବାର ଉପାୟ ନ ଥିଲା।

ଅନୁପମା ଜୟଦୀପକୁ ବାହା ହେବାକୁ ଚାହୁଁ ନାହିଁ କି ?

ଅସମ୍ଭବ ନୁହଁ। କଲିକତାରେ କିଛି କିଛି ଉଡ଼ା ଖବର ଅନିରୁଦ୍ଧ କାନରେ ବି ବାଜିଛି। କେହି କେହି ଏମିତି ଘରେ ତା' ସାନ ଭଉଣୀର ବାହାଘର ସ୍ଥିର ହୋଇଛି ଶୁଣି ଚମକି ଯାଇଛନ୍ତି। କ'ଣ କହିବେ କହିବେ ହୋଇ ରହି ଯାଇଛନ୍ତି। ପ୍ରଥମେ ଅନିରୁଦ୍ଧ ଭାବୁଥିଲା ଯେ ତା' ଭଳି ଲୋକର ଭଉଣୀ ଯେ ଏମିତି ବୁନିଆଦୀ ପରିବାରର ବୋହୂ ହେବାକୁ ଯାଉଛି, ସେଇ କଥା ଲୋକଙ୍କୁ ଆଶ୍ଚର୍ଯ୍ୟ କରେଇ ଦେଉଛି। କିନ୍ତୁ ପ୍ରାୟ ସେଇ ଏକା ଭଳି ପ୍ରତିକ୍ରିୟା ଦେଖି ଦେଖି ମନ ଭିତରେ ଦୁଶ୍ଚିନ୍ତା ଆରମ୍ଭ ହୋଇ ଯାଇଥିଲା। ସେ ଚୁପ୍‌ଚାପ୍ ଖବର ନେବା ଆରମ୍ଭ କରିଥିଲା।

କହିବା ବାହୁଲ୍ୟ, ଯେତିକି ତା' କାନରେ ପଡ଼ିଥିଲା ସେତିକି ଖୁବ୍ ଗୋଟାଏ ଭଲ ଖବର ନୁହଁ। କିନ୍ତୁ ଖବରତକ ଏତେ ଗୁରୁତର ନୁହଁ ଯେ ବାହାଘର ଭାଙ୍ଗି ଦେବା ଭଳି ପଦକ୍ଷେପ ସେ ନେଇଯିବ।

ସେସବୁ ଉଡ଼ା ଖବର ଆସି ଅନୁପମା କାନରେ ପଡ଼ିଛି କି ?

ଅନିରୁଦ୍ଧ କ'ଣ କରିବ ବୁଝି ପାରୁ ନ ଥିଲା।

ସେଦିନ ସନ୍ଧ୍ୟାବେଳେ କଲିକତା ଯିବା କଥା। ଅନିରୁଦ୍ଧ ବାରଣ୍ଡାରେ ଚଉକିଟିଏ ପକେଇ ବହି ଖଣ୍ଡେ ପଢୁଥିଲା। ଅର୍ଚ୍ଚନା ସ୍କୁଲ୍ ଯାଇଛି। ଭିତରେ ଜିନିଷପତ୍ର ସଜଡ଼ା ସଜଡ଼ି କରୁଛି ଅନୁପମା। ଆଉ କଟକ ଆସିବାର ହେବ କି ନାହିଁ କିଏ ଜାଣେ ? ସେଥିପାଇଁ ନିଜର ସବୁ ଜିନିଷ ସଜଡ଼ା ସଜଡ଼ି କରି ନେଇ ଯାଉଛି ସେ। ରୋଷେଇର ଜଂଜାଳ ନାହିଁ। ହେମଲତା ଆସି ଡାକି ଯାଇଛନ୍ତି। କଲିକତା ଯିବା ଆଗରୁ ସେମାନେ ଯେମିତି ତାଙ୍କ ଘରେ ଖିଆ ପିଆ କରି ଦେଇ ଯାଆନ୍ତି।

"କ୍ଷମା କରିବେ..."

କାହା ସ୍ୱରରେ ଆଖି ସାମ୍ନାରୁ ବହି ଘୁଞ୍ଚେଇ ନେଲା ଅନିରୁଦ୍ଧ। ସାମ୍ନାରେ ପତଳା ହୋଇ ଯୁବକ ଜଣେ ଠିଆ ହୋଇଛନ୍ତି। ଉଜ୍ଜ୍ୱଳ ଶ୍ୟାମ ବର୍ଣ୍ଣ। ମୁହଁରେ ଗାମ୍ଭୀର୍ଯ୍ୟ। ଆଖି ଦୁଇଟିରେ ସାମାନ୍ୟ ବିବ୍ରତ ଭାବ।

"କାହାକୁ ଖୋଜୁଛନ୍ତି ?" ବଙ୍ଗଳା ଭାଷାରେ ସେ ପଚାରିଲା।

ଅନିରୁଦ୍ଧଠୁ ବଙ୍ଗଳା ଭାଷା ଶୁଣି ଟିକିଏ ରହିଗଲା ଅରୁଣାଭ। ତା'ପରେ ଧୀରେ ଧୀରେ ଅଭ୍ୟାସ ନ ଥିବା ବଙ୍ଗଳାରେ ପଚାରିଲା, "ଅନୁପମା ଦେବୀ ଏଇଠି ରହନ୍ତି ?"

"ହଁ। ଆପଣଙ୍କୁ ତ ଚିହ୍ନି ପାରିଲି ନାହିଁ ?"

"ଆପଣ... ?"

"ମୁଁ ଅନୁପମାର ବଡ଼ ଭାଇ।"

"ନମସ୍କାର। ମୋ ନାଁ ଅରୁଣାଭ ମିଶ୍ର। ମୁଁ ରେଭେନ୍ସା କଲେଜ୍‌ରେ ଲେକ୍‌ଚରର୍।"

"ଓହୋ, ଆସନ୍ତୁ ଆସନ୍ତୁ। ଏଇଠି ବସନ୍ତୁ।" ପାଖ ଚୌକିକୁ ଦେଖାଇ ଦେଲା ସେ। "ଆପଣ ଅନିର ଶିକ୍ଷକ ?"

"ନା ନା।" ବିବ୍ରତ ଭାବରେ ଅରୁଣାଭ କହିଲା, "ମୁଁ ଅନୁପମାଙ୍କୁ ପଢ଼ାଏ ନାହିଁ। ମୁଁ ଫିଜିକ୍ସରେ ଲେକ୍‌ଚରର୍।"

ଫିଜିକ୍ସ ଲେକ୍‌ଚରର୍ ଏଠି କାହିଁକି ? ଅନିରୁଦ୍ଧ ଆଶ୍ଚର୍ଯ୍ୟ ଭାବରେ ଚାହିଁ ରହିଲା।

"ମୁଁ ଅନୁପମାଙ୍କର ବଙ୍ଗଳା କବିତାର ଓଡ଼ିଆ ଅନୁବାଦ କରିଛି। ଛପେଇବାକୁ ଦେବି। ଭାବିଲି ଯଦି ଅନୁମତି ପତ୍ରଟା ସେ ଦେଇ ଦିଅନ୍ତି..." ଗତ କେଇ ଦିନ ଧରି ମୁଖସ୍ଥ କରି ଆସୁଥିବା ସଂଳାପଟିକୁ ପ୍ରାୟ ଏକା ନିଶ୍ୱାସରେ କହି ଦେଲା ଅରୁଣାଭ।

ଅନୁମତି ପତ୍ର ? ଅନିରୁଦ୍ଧ ଅରୁଣାଭକୁ ଦେଖୁଥିଲା କେବଳ।

ଆଉ ଘର ଭିତରେ ?

ଘର ଭିତରେ ହାତ ଗୋଡ଼ କାଠ ହୋଇ ଯାଇଛି ଅନୁପମାର। ଅରୁଣାଭ ଏଠି ?? ସେ ଜାଣେ ଅନୁମତି ପତ୍ର ପାଇଁ ଆସିନି ଅରୁଣାଭ, ଆସିଛି ତାକୁ ଦେଖିବାକୁ। ତାକୁ ସେଇ ଗୋଟିଏ କଥା ପଚାରିବାକୁ। ଏବେ କ'ଣ କରିବ ଅନୁପମା ? କେମିତି ତା'ର ସାମ୍ନା କରିବ ? କେମିତି କିଛି ହୋଇ ନ ଥିବା ସ୍ୱରରେ, କିଛି ଘଟି ନ ଥିବା ଆଖିରେ ଅରୁଣାଭ ସାଙ୍ଗରେ କଥା କହିବ ?

ପୁଣି ସେଇଠି ବସି ରହିଛନ୍ତି ତା' ବଡ଼ ଦାଦା। ଥରି ଉଠୁଥିଲା ଅନୁପମାର ଦେହ ହାତ।

କିଛି ସମୟ ଅରୁଣାଭକୁ ଦେଖିବା ପରେ ଭିତରକୁ ଯିବା ପାଇଁ ଉଠିଲା ଅନିରୁଦ୍ଧ। ''ଆପଣ ବସନ୍ତୁ, ମୁଁ ଅନିକୁ ଖବର ଦେଉଛି।''

ଘର ଭିତରେ ପାଦ ଦେଲା ସେ ଏବଂ ପାଦ ଦେଇ ଅନୁପମାକୁ ଅବାକ ଭାବରେ ଚାହିଁ ରହିଲା କେବଳ।

ଆଉ କୌଣସି ସନ୍ଦେହ ନ ଥିଲା ତା' ମନରେ।

ଖୁବ୍ କୋମଳ ଭାବରେ ଅନିରୁଦ୍ଧ ପଚାରିଲା, ''ଭଦ୍ରଲୋକଙ୍କୁ ଜାଣିଛୁ, ଅନି ?''

ଅନୁପମା କଥା କହିବାକୁ ଚେଷ୍ଟା କଲା। କିନ୍ତୁ ଆଖିରେ କେବଳ ଲୁହ ଭର୍ତ୍ତି ହୋଇଯାଉଥିଲା ତା'ର।

''ଜାଣିଛୁ ତା'ହେଲେ ? ... ସେ ଏଠିକି କାହିଁକି ଆସିଛନ୍ତି ?''

ଅନୁପମା ଆଉ କିଛି କହି ପାରିଲା ନାହିଁ। ମୁଣ୍ଡ ଘୂରେଇ ନେଇ ଦୁଇ ହାତ ମୁହଁରେ ଘୋଡ଼େଇ ଦେଇ ସକସକ ହୋଇ କାନ୍ଦି ପକେଇଲା ସେ।

ସାନ ଭଉଣୀକୁ ସ୍ଥିର ଭାବରେ କିଛି ସମୟ ଦେଖି ନେଇ ଅନିରୁଦ୍ଧ ବାହାରକୁ ଚାଲି ଆସିଲା। ଅରୁଣାଭ ତାକୁ ଦେଖି ତରବର ହୋଇ ଚୌକିରୁ ଉଠି ଠିଆ ହେଲା।

''ଆରେ ଆରେ ବସନ୍ତୁ। ଉଠିଲେ କାହିଁକି ?''

ଚୌକିରେ ପୁଣି ଆଗ ଭଳି ବସିଯାଇ ଅନିରୁଦ୍ଧ ଅରୁଣାଭ ଆଖିରେ ଆଖି ରଖି ସିଧା ସଳଖ ଭାବରେ ପଚାରିଲା, ''କବିତା ପାଇଁ ଅନୁମତିପତ୍ର ନେବାକୁ ଆସିଛନ୍ତି ନା ଅନ୍ୟ କିଛି କାରଣ ବି ଅଛି ?''

ଏଭଳି ପ୍ରଶ୍ନଟିଏ ଶୁଣିବାକୁ ହେବ ବୋଲି ଜାଣି ନ ଥିଲା ଅରୁଣାଭ। ସେଥିପାଇଁ ପ୍ରସ୍ତୁତ ହୋଇ ନ ଥିଲା ସେ। କ'ଣ କହିବ ବୁଝି ନ ପାରି ସତ କଥାଟି ହିଁ ପାଟିରୁ ବାହାରି ଗଲା। ''..କି..କିଛି ପଚାରିବାର ଥିଲା।''

''ହୁଁ।'' ଅନିରୁଦ୍ଧ ଗମ୍ଭୀର ଭାବରେ କହିଲା। ''ଆପଣ କିଛି ସମୟ ଅପେକ୍ଷା କରନ୍ତୁ ଏଠି। ଅନିକୁ ଆପଣ କିଛି ପଚାରିବା ଆଗରୁ ତାକୁ ମୋର କେତୋଟି ପ୍ରଶ୍ନ ପଚାରିବାର ଅଛି।''

ପୁଣି ଘର ଭିତରକୁ ଚାଲିଗଲା ଅନିରୁଦ୍ଧ।

ଆଗ ଭଳି ସିଧା ସଳଖ ଭାବରେ ପଚାରିଲା, ''ଅନି, ବଦ୍ରୀନାରାୟଣ

ବାବୁଙ୍କ ସାଙ୍ଗରେ ମୁଁ କଥା କହିବି କି ?''

ଏ ଅପ୍ରତ୍ୟାଶିତ ପ୍ରଶ୍ନ କିଛି ବୁଝିଲା ନାହିଁ ଅନୁପମା। ଲୁହବୋଳା ମୁହଁ ନେଇ ବଡ଼ ଭାଇକୁ ଚାହିଁ ରହିଲା ସେ।

''ତୁ କହିଲେ, ଜୟଦୀପ ସାଙ୍ଗରେ ବାହାଘର ଭାଙ୍ଗି ଦେବି।'' ଓଠରେ ବିଶ୍ୱାସ ଦେବା ଭଳି ସରୁ ହସଟିଏ ଖେଳାଇ ଅନିରୁଦ୍ଧ ଉତ୍ତର ଦେଲା।

ଓଠ ଥରି ଉଠିଲା ଅନୁପମାର। ଆଉ ନିଜକୁ ସମ୍ଭାଳି ନ ପାରି ଅନିରୁଦ୍ଧ ଡାହାଣ ହାତରେ ନିଜ ମୁହଁ ମାଡ଼ି ଦେଇ ତଳେ ବସିଗଲା ସେ।

''ଅରୁଣାଭ ତୋ ସାଙ୍ଗରେ କଥାବାର୍ତ୍ତା କରିବାକୁ ଆସିଛି। ମୁଁ ତାକୁ ଭିତରକୁ ପଠେଇ ଦେଉଛି। ତୁ ମୁହଁ ହାତ ଧୋଇ ନେ।''

''ଦାଦା !''

ସାନ ଭଉଣୀର ମୁଣ୍ଡ ଆଉଁଶି ନେଇ ଅନିରୁଦ୍ଧ କହିଲା, ''ଅରୁଣାଭକୁ କହିବୁ, କାଲି ସକାଳେ ଆଉ ଥରେ ଆସିବ ସେ।''

''କାଲି ?? ଆଜି ଆମେ କଲିକତା...''

''ନା, ଆଜି ଆଉ କଲିକତା ଯିବା ହେବନି। ମୁଁ ଟିକେଟ ଫେରାଇବା ବ୍ୟବସ୍ଥା କରୁଛି।''

ବିହ୍ୱଳ ଭାବରେ ଅନୁପମା ଚାହିଁ ରହିଥିଲା ତା' ବଡ଼ ଭାଇକୁ। ସେ ବା କେମିତି ଜାଣିବ ଯେ ବହୁତ ବର୍ଷ ତଳେ ଅନିରୁଦ୍ଧ ଯେଉଁ ପାପ କରିଥିଲା, ତା'ର କାଣିଚାଏ ପ୍ରାୟଶ୍ଚିତ କରିବାର ଚେଷ୍ଟା ସେ କରୁଛି।

ଦୃଶ୍ୟଟି ଅବିଶ୍ୱାସମୟ ମନେ ହେଉଥିଲା ଅନୁପମାକୁ। ଏସବୁ ଘଟଣା ଯେ ସତରେ ତା' ଆଖି ସାମ୍ନାରେ ଘଟୁଛି, ସେ ଯେ ସ୍ୱପ୍ନ ଦେଖୁ ନାହିଁ - ତା' ଠିକ୍ ପ୍ରତ୍ୟୟ ହେଉ ନ ଥିଲା ତା'ର।

ଦାଦା ବସିଛନ୍ତି। ତାଙ୍କ ସାମ୍ନାରେ ଅରୁଣାଭ। ଦୁଇ ଜଣଙ୍କ ଭିତରେ ବାହାଘର ବିଷୟ ନେଇ ଆଲୋଚନା ଚାଲିଛି।

ବାହାଘର ! ତା' ବାହାଘର ! ଅରୁଣାଭ ସାଙ୍ଗରେ ତା'ର ବାହାଘର !

ଅଭୂତପୂର୍ବ ଏକ ପୁଲକ ଅନୁପମାକୁ ବେଢ଼ାଇ ଧରିଥିଲା । କବାଟ ସେପାଖରେ ଠିଆ ହୋଇ ସବୁ କଥା ତା' କାନରେ ପଡୁଥିଲା । ସବୁ ଶୁଣୁଥିଲା ସେ ।

''ବାହାଘର ବିଷୟରେ କାହା ସାଙ୍ଗରେ କଥା କହିବାକୁ ମୁଁ ଯିବି, ଅରୁଣାଭ ?''

''ଆପଣ ଯିବେ ??''

''ଯିବିନି ? ଯେତେ ଯାହା ହେଲେ ଝିଅର ବଡ଼ ଭାଇ ମୁଁ । ତୁମ ଘରେ ମୁରବି କିଏ ?''

''ଘରେ କେବଳ ମା' । ଆଉ କେହି ନାହିଁ ।''

''ତାଙ୍କ ସାଙ୍ଗରେ ମୁଁ କେବେ କଥା କହିବାକୁ ଯିବି, କୁହ । ଏମିତିଆ ପରିସ୍ଥିତି ! ତାଙ୍କର ଆପତ୍ତି ଥାଇ ପାରେ ।''

''ମା'ଙ୍କ ସାଙ୍ଗରେ ମୁଁ କଥା କହି ସାରିଛି । ସେ ସବୁ ଜାଣନ୍ତି । ତାଙ୍କ ଆଶୀର୍ବାଦ ବି ଦେଇ ସାରିଛନ୍ତି ।''

''ସତରେ ?? ବାଃ, ତାହେଲେ ତ ସୁବିଧା ହୋଇଗଲା । ମୁଁ ତା'ହେଲେ ମୋ ମା'ଙ୍କୁ ଡକେଇ ଆଣୁଛି । ଆମେ ଦୁଇଜଣ ମିଶି ତୁମ ଘରକୁ ଯିବୁ । ବାହାଘର ଦିନ ସ୍ଥିର କରେଇ ଦେବୁ । କ'ଣ କହୁଛ ?''

ଆଖି ଉପରକୁ ଉଠେଇଲା ଅରୁଣାଭ । କ'ଣ କହିବ କହିବ ହୋଇ କିଛି ସମୟ ପାଇଁ ଚୁପ୍ ରହିଲା ।

ଅନୁପମା କବାଟ ସେପାଖରୁ ଆଶ୍ଚର୍ଯ୍ୟ । ଦାଦା କଥାର କୌଣସି ଉତ୍ତର କାହିଁକି ଅରୁଣାଭ ଓଠରୁ ଝରୁ ନାହିଁ ?

ଗଳା ଝାଡ଼ିଲା ଅରୁଣାଭ । ତା'ପରେ ସ୍ପଷ୍ଟ ଭାବରେ କହିଲା, ''ଆପଣ ମୋ ମା'ଙ୍କ ସାଙ୍ଗରେ କଥାବାର୍ତ୍ତା କରି ପାରନ୍ତି । କିନ୍ତୁ ବାହାଘର ନେଇ ମୋର ଗୋଟିଏ ସର୍ତ୍ତ ଅଛି, ଅନିରୁଦ୍ଧ ବାବୁ ।''

ସର୍ତ୍ତ !!

ଅନିରୁଦ୍ଧ କିଛି କହିବା ଆଗରୁ ଅନୁପମା ମୁହଁରୁ ସବୁତକ ରଙ୍ଗ ପୋଛି ହୋଇଗଲା । ସର୍ତ୍ତ ? ପୁଣି ସେଇ ସର୍ତ୍ତ ??

କବାଟ ସେପାଖରୁ ଘୁଞ୍ଚି ଯାଇ ରୋଷେଇଘର କବାଟ ଦେଇ ବାହାରକୁ ବାହାରି ଆସିଲା ଅନୁପମା । ଭଲ ଲାଗୁନି । କିଛି ଭଲ ଲାଗୁନି । ଗତ ଚବିଶ ଘଣ୍ଟା ଭିତରେ ଏତେ ଗୁଡ଼ାଏ ସ୍ୱପ୍ନ ବୁଣି ନେଇଥିଲା ସେ । କାହିଁକି ? କେଉଁଥି

ପାଇଁ ? ସେ କ'ଣ ଜାଣିନି ଯେ ତା' ଜୀବନରେ ସୁଖର ପ୍ରବେଶ ନିଷେଧ ।

ଅରୁଣାଭ ସର୍ତ୍ତ ରଖି ପାରିଲା ବାହାଘର ନେଇ ? ଅରୁଣାଭ ?

ଏଇଭଳି ଦିନେ ମାନି ନ ପାରିବା ଭଳି କିଛି ସର୍ତ୍ତ ରଖିଥିଲେ ଚକ୍ରବର୍ତ୍ତୀ ବାବୁ । ଆଜି ପୁଣି କି ସର୍ତ୍ତ ଦାଦା ଆଗରେ ରଖିବ ଅରୁଣାଭ ?

ଓଃ, କି ପାପ ସେ କରିଥିଲା ଯେ ପ୍ରତ୍ୟେକ ଥର ଏମିତି ଭାବରେ ଅପମାନିତ ହେବାକୁ ହେଉଛି । ଏଇ ଯେଉଁ ଥର ସେ ପ୍ରକୃତ ସୁଖ, ପ୍ରକୃତ ପ୍ରେମର ଅଧିକାରିଣୀ ହୋଇଛି ବୋଲି ଭାବି ନେଇଥିଲା, ସେ ଥର ବି...

''ଅନି, କୁଆଡ଼େ ଗଲୁ ଅନି ?'' ସେପାଖରୁ ପାଟି କରୁଛି ଅନିରୁଦ୍ଧ ।

କ'ଣ ହେଲା ଦାଦାର ?

''ଓହୋ, ଅନି, ଶୁଣିଯା । ଅରୁଣାଭ କ'ଣ କହୁଛି ଶୁଣିଯା ଟିକେ ।'' ଅଧୈର୍ଯ୍ୟ ସ୍ୱର ଅନିରୁଦ୍ଧର ।

କାହିଁ, ଏଥିରେ ତ ଯନ୍ତ୍ରଣାର ଛିଟା ନାହିଁ ? ଦୁଃଖର ପ୍ରତିବିମ୍ବ ତ ନାହିଁ ?

''ଆସୁଛି, ଦାଦା ।'' ଧୀର ପାଦରେ ସାମ୍ନା ଘର ଭିତରକୁ ପଶିଲା ଅନୁପମା । ''ମତେ କ'ଣ କହିବ ?''

''ମୁଁ ଆଉ କ'ଣ କହିବିରେ, ଅନି । ଅରୁଣାଭର କଥାଟା ଖାଲି ଶୁଣିଯା ।'' ଗଦଗଦ ସ୍ୱରରେ ଅନିରୁଦ୍ଧ କହିପକେଇଲା, ''କୁହ ଅରୁଣାଭ, କୁହ । ତୁମର ସର୍ତ୍ତଟା ମୋ ଭଉଣୀ ସାମ୍ନାରେ ଖୋଲି କରି ଆଉ ଥରେ କହି ଦିଅ ।''

ଅନୁପମାକୁ ସିଧା ଭାବରେ ଚାହିଁଲା ଅରୁଣାଭ । ''ଅନୁପମା, ତୁମ ଦାଦା ବାହାଘର କଥା କହୁଛନ୍ତି । କିନ୍ତୁ ମୁଁ ରାଜି ନୁହଁ ଜମା ।''

ରାଜି ନୁହଁ ?

''ମୁଁ ମୋ ମା'ଙ୍କୁ ବି ଏ ବିଷୟରେ ଜଣେଇ ଦେଇଛି । ତୁମର ଏମ.ଏ. ସରିବ । ତୁମେ ଲେକ୍‌ଚରର୍ ହୋଇ ସାରିବ । ତା'ପରେ ଯାଇ ବାହାଘର । ... ଆଶା କରୁଛି ମୋର ଏଇ ଇଚ୍ଛାକୁ ତୁମେ ସମ୍ମାନ ଦେବ ।''

ଅନୁପମା ମୁଗ୍ଧ ଓ ଅବାକ୍ ଭାବରେ ନୂଆ କରି ଦେଖୁଥିଲା ଅରୁଣାଭକୁ ।

ଏଭଳି ସର୍ତ୍ତ !

ଆଃ, ଏ କି ଆନନ୍ଦର ଫଲ୍ଗୁ ବହି ଚାଲିଛି ତା' ଭିତରେ ! କି ଅପୂର୍ବ ଝଙ୍କାରରେ ଅଳଙ୍କୃତ ହୋଇ ଉଠୁଛି ତା' ମନ ପ୍ରାଣ ! ଏତେ ସୁଖ, ଏତେ

ଆନନ୍ଦ କେଉଁଠି ସାଇତି ରଖିବ ଅନୁପମା ?

ଏତେ ଦିନ ଧରି ସମୟ ଓ ଘଟଣାର ପ୍ରବାହରେ ଦିଗହରା ହୋଇ କେବଳ ଭାସି ଚାଲିଥିଲା ସେ। ଏଇ ପ୍ରଥମ ଥର ପାଇଁ ଯେମିତି ତା'ର ମନେ ହେଉଛି ଯେ ସେ ରାସ୍ତା ପାଇ ଯାଇଛି। ତା'ର ଏତେ ବର୍ଷର ଅଶାନ୍ତ ଯାତ୍ରା ସମାପ୍ତ ହେବାକୁ ଆଉ ଡେରି ନାହିଁ।

କି ଶାନ୍ତି ! କି ଶାନ୍ତି !

ଅନୁପମା ଆଖି ବନ୍ଦ କରି ନେଲା।

ଆବେଗରେ ନା ପରିତୃପ୍ତିରେ ? ◻◻

ପାବ୍‌ନାର ସକାଳ ଆସେ, ସକାଳ ପୁଣି ଚାଲିଯାଏ । ଏତେ ବର୍ଷ ଏଇ ସହରରେ ରହିଲେଣି ଶ୍ରଦ୍ଧା, କିନ୍ତୁ ତାଙ୍କୁ କେବେହେଲେ ଚହଲେଇ ଦେଇ ଯାଇ ପାରି ନାହିଁ ପାବ୍‌ନା ସହରର ସକାଳ । ପଢ଼ା ଗାଁର ଝିଅ ସିଏ । ସକାଳର ନରମ ରୂପ, ସ୍ନିଗ୍ଧ ରୂପ ଦେଖିଛନ୍ତି । ସହରିଆ ସକାଳ କାହିଁକି ରେଖାପାତ କରନ୍ତା ତାଙ୍କ ମନ ଭିତରେ ?

ହେଲେ ଆଜିକାଲି ଏଥିରେ ବ୍ୟତିକ୍ରମ ଆସିଛି । ସକାଳ ହେବା କ୍ଷଣି ମନ ଚହଲି ଯାଉଛି ତାଙ୍କର । ନା, ଆନନ୍ଦରେ ନୁହଁ । ବରଂ ଅନାଗତ ଆତଙ୍କରେ । ଯେଉଁ ଆତଙ୍କଟା ଆଜିକାଲି ପାବ୍‌ନା ସହରକୁ ଘୋଡ଼େଇ ରଖିଛି, ତା'ରି ଚାପରେ ସକାଳ ହେବା କ୍ଷଣି ମ୍ରିୟମାଣ ହେଇ ପଡୁଛନ୍ତି ଶ୍ରଦ୍ଧା । କାହାକୁ କହି ହୁଏ ନାହିଁ । କିଛି ମଧ କରି ହୁଏ ନାହିଁ । ଘର ଭିତରେ ଏକା ବସି ବସି କେବଳ ଛାଟିପିଟି ହୁଅନ୍ତି ଶ୍ରଦ୍ଧା । ଅନୁପମା କଲେଜରୁ ଫେରିବା ପରେ ଓ ଅନିରୁଦ୍ଧ ଅଫିସ୍, କ୍ଲବ୍‌ରୁ ଆସିବା ପରେ ଯାଇ ସେ ଏଇ ଆତଙ୍କର ଆକ୍ରମଣରୁ ରକ୍ଷା ପାଆନ୍ତି । ହେଲେ କେତେ କ୍ଷଣ ?

ଅନିରୁଦ୍ଧର ସିନା ଉପାୟ ନାହିଁ ବୋଲି ତାଙ୍କୁ ଅଫିସ୍ ଯିବାକୁ ହୁଏ, ହେଲେ ଅନି କାହିଁକି ଘର ବାହାରେ ପାଦ ରଖେ ? ଶ୍ରଦ୍ଧା ମନେ ମନେ ଯେତେ ବିବ୍ରତ ହେଲେ ବି ପାଟି ଖୋଲି ପାରନ୍ତି ନାହିଁ ।